# ନୀତିପୂର୍ଣ୍ଣ

# ଲୋକନାଥ ଗ୍ରନ୍ଥାବଳୀ



ଡ଼ା: ଲୋକନାଥ ମିଶ୍ର

# ନୀତିପୂର୍ଣ୍ଣ

# ଲୋକନାଥ ଗ୍ରନ୍ଥାବଳୀ



ଲେଖକ – ଡ଼ା. ଲୋକନାଥ ମିଶ୍ର

ପୂର୍ବତନ-ଏମ୍. ଏଲ୍. ଏ

ମହାତ୍ମାଗାନ୍ଧି ରୋଡ଼

ପୋ: ଆସିକା – ୭୬୧୧୧୦

ଜ:—ଗଞ୍ଜାମ

ଓଡ଼ିଶା (ଭାରତ)

ମୂଲ୍ୟ – ୭୫ ଟଙ୍କା

# ଭୂମିକା

ଏଥିରେ ପ୍ରକାଶ ପାଇଥିବା ସବୁତକ ଲେଖା ପୂର୍ବରୁ ପ୍ରକାଶିତ ହୋଇଅଛି ଏବଂ
ଓଡ଼ିଶା ସାହିତ୍ୟ ଏକାଡେମୀକୁ ଖଣ୍ଡିଏ ଲେଖାଏଁ କପି ମଧ୍ୟ ପଠାଯାଇଅଛି ।
ଏକତ୍ରୀକରଣ ଉଦ୍ଦେଶ୍ୟରେ **ନୀତିପୂର୍ଣ୍ଣ ଲୋକନାଥ ଗ୍ରନ୍ଥାବଳୀ** ପ୍ରକାଶ
କରିବାକୁ ବାଧ୍ୟହେଲି, ସମାଜରେ ଦୁର୍ନୀତି ଦିନକୁ ଦିନ ବଢ଼ିଚାଲିଥିବାରୁ
ଜନସାଧାରଣଙ୍କୁ ଉପଦେଶ ଦେବା ଉଦ୍ଦେଶ୍ୟରେ ହିଁ ନୀତିଗୁଡ଼ିକ ବର୍ଣ୍ଣନା
କରାଯାଇଅଛି । ପାଣ୍ଡବ ବନବାସର ଦୁଃଖମୟ ଘଟଣା ଗୁଡ଼ିକ
ପ୍ରାଞ୍ଜଳ ଭାବରେ ବର୍ଣ୍ଣିତ ହୋଇଥିବା ଏବଂ ଯମକ, ଅନୁପ୍ରାସ,
ଉପଧା, ଉପମା, ଉପମେୟ ପ୍ରଭୃତି ସାହିତ୍ୟର ଯାହା
ଆବଶ୍ୟକ ଏହି ଗ୍ରନ୍ଥାବଳୀରୁ ପାଇବେ । ଅନ୍ୟାନ୍ୟ
ଗ୍ରନ୍ଥାବଳୀ ଏବଂ ଏ ଗ୍ରନ୍ଥାବଳୀ ଭିତରେ ପାର୍ଥକ୍ୟ
ଅନେକ ରହିଅଛି । ସାହିତ୍ୟିକ ମାନେ ପଢ଼ି
ହୃଦ୍‌ବୋଧ କରି ନିଜ ଜୀବନକୁ ସେହି
ଭାବରେ ଗଢ଼ିବାକୁ ଯତ୍ନଶୀଳ ହେବା
ଉଚିତ ମନେ କରେ ।

**ଆସିକା** — **ପ୍ରଣେତା – ଡା. ଲୋକନାଥ ମିଶ୍ର**

# ସୂଚୀ

### ନୀତିପୂର୍ଣ୍ଣ

# ଲୋକନାଥ ଗ୍ରନ୍ଥାବଳି

## ଭା ବ ନା

### ସ୍ତୁତି

ଅଜ୍ଞାନ ତିମିର ବିନାଶି
ଦେବି ! ବସ ମୋ ଗଳେ,
ମାତୃଭାଷା ସେବା କରିବା
ପାଇଁ ମାନସ ବଳେ ।
ତବ କୃପା ବିନା ଲେଖନୀ
ଚଳେ ନାହିଁ କାହାରି,
ବଞ୍ଚନା ନ କର ଜନନି !
ପଦେ କୃପା ଭିଖାରି ।
୧ ଧରିଛି ଧରିତ୍ରୁ ଲେଖନୀ
କରି ଅତି ଭରସା,
ତବ ପ୍ରସାଦରେ ଲେଖିବି
ମନେ କରଇ ଆଶା ।
ଶ୍ରେଷ୍ଠ କବି ନାମେ ଜଗତେ
ପରିଚିତ ବାଲ୍ମୀକି,
ବିନା କରୁଣାରେ ତୁମ୍ଭର
କେବେ କବି ହେବ କି ?

( ୧ ସାହାସ କରି )

ମୂର୍ଖ କାଳିଦାସ ଆଶ୍ରିତ
ହୋଇ ଦାସ ଲକ୍ଷିତ,
କବିକୁଳ ଠେକ ରହିଲେ
ପାଇ କରୁଣାମୃତ ।
ତବ ପଦ-କଞ୍ଜ ପ୍ରସନ୍ନ
ବାରେ ହୁଅ ପ୍ରସନ୍ନ,
ଜନମାତ୍ର ପାଇ ପ୍ରସାଦ
ଲୋଡ଼ିବ ଲେଖନୀ ।
ରଚନା ଶକତି ନାହିଁ ମୋ
ରଚିବାକୁ କବିତା,
ଅନୁକୂଳ ହେଲେ ମଣ୍ଡିବ
ଧୀରେ ମୋ ଆଶା-ଲତା ।
କୃପାମୟି ! ଦୟାକର ଗୋ
ଆଜି ଏ ମୋ ମାଗୁଣି,
ଦେଖାଅ ଦେଖାଅ ଦେବି ଗୋ !
ବିଚେନା-ସରଣୀ ।

*****

## ଗରିବ କୁଳ

ପାଁଚି ଅଛୁ ମୋର — କଥା କହିବାକୁ
ଛାତ ବୋହିବାକୁ କାନ୍ଦ,
କଲମ ଧରିବା — ଶିକ୍ଷା ନ ଥିବାରୁ
ଆଖି ଥାଉ ଥାଉ ଅନ୍ଧ ।
ମୁଣ୍ଡ ଖାଲ ହୋଇଛୁ — ଦିନ ସାରା ଖଟି
ପେଟକୁ ନ ମିଳେ ପୂରା,
ଅବା କରସିନ — ଖୋଜିବ କାହିଁକି
ମୁଣ୍ଡର ସଦା ଲୁଖୁରା ।
ବୋଲି କେ ପାରିବ — ମୋତେ ଅଳସୁଆ
ପିଲଟି କେଉଁକୁ ଭୁଲି,
ଫେରି ମୁଁ ଆସଇ — କୁଣ୍ଡିଆକୁ ଯେବେ
ଅଜଳା ହୋଇଥେ ଚୁଲି ।
ମୋ ବାଟକୁ ଜଗି — ରହିଥାନ୍ତି ଘରେ
ଅକୁଳ ନୟନେ ପିଲେ,
କା ହୃଦ ବିଦାରି — ନ ହେବ ପୁଣି ଏ
"ହା ଅନ୍ନ" ନାଦ ଶୁଣିଲେ ।
ଚାଉ ଅବା କାଞ୍ଜି — ଯା ମିଳେ କରମେ
ମଣି ଥାଏ ଗଣ୍ଡି ଧନ,
ତରକାରି ଅବା — ଦୃଷ୍ଟିବ କେଉଁଠୁ
ନ ମିଳେ ତ ଲଙ୍କା ଲୁଣ ।
ପଚ ଜାଳ ଦେଇ — ସିଝାଏ ମୁଠାକ
ବକଷା ମୋହର କାଳ,
ସାରା ଜୀବନଟା — ସହିଥାଏ ଦୁଃଖେ
ପ୍ରଖର କିରଣ ଜାଳ ।
ଶୀତ ଲୁଗା ଅବା — ପାଇବ କେଉଁଠୁ
କଟିକୁ ନ ମିଳେ କନା,
କର୍ମ ଆଦର — ଜାଡ଼େ ଧାଇଁଥାଏ
ଲେଖା ଏ ମୋ ବିଡ଼ମ୍ବନା ।
ରୋଗ ଯେବେ ହୁଏ — ଔଷଧ ନ ପାଏ
ବନ୍ଧୁ ଦିନ ଗୁଣି ଗୁଣି,
କର୍ମରେ ଥିଲେ — ବଞ୍ଚେ ଯାଏ ବା
ବୁଜିଦିଏ ବେନି ଆଖି ।
ଧୋବ ଧାଉଳିଆ — ଦେଖିଲେ ମୁଁ ଡରେ
ଖଟାନ୍ତି ବା କେବେ ବେଠି,
କଚେରି ଦୁଆର — ଶୁଣୁଛି କନ୍ଦରେ
ବସିଲେ ପିଠିରେ ଲଠି ।
ମୋ ରକତରେ ଗଢ଼ା — କଳ କାରଖାନା
ଶସ୍ୟଶାଳୀ ଜମିବାଡ଼,
ଗୁଡ଼ିକ ପଠାଏ — ଦେଶ ପାଇଁ ଆଗେ
ଶୁଖିଲେ ମୋର ରକ୍ତ ।
ଟଙ୍କକୁ ନ ଦେଇ — ପିଠିକୁ ମାରିବା
ପ୍ରଭୁ ପରେ ଅଭାଜନ,
ଚନ୍ଦ୍ର ଭଗ୍ନ ସୁଖ — ଦୁଃଖ ପୁଞ୍ଜି ଅଛୁ
ସବୁ ନିଷ୍ଠୁର ଅଧୀନ ।

*****

## କୋଣାର୍କ ବାରତା

କୃଷ୍ଣ କଳା ପୂର୍ଣ୍ଣ — ଭଗ୍ନ ଦେବାଳୟ
ବର୍ଦ୍ଧମାନ କୋଣାରକେ,
ଓଡ଼ିଆ ପୁଅକୁ — ଦେଖିଦେଲେ ବାରି
ଧୀରେ ଧୀରେ କହେ ଶୋକେ ।
"ତୋ ପୂର୍ବ ପୁରୁଷେ — କେତେ ଉତ୍ସାହରେ
ଦିବସ ରଜନୀ ଖଟି,
ଭବେ ଅନୁପମ — ମୋ ତନୁ ଗଢ଼ିଲେ
ଧନ୍ୟ ଓଡ଼ିଶାର ମାଟି ।
ଆଳସ୍ୟ ତଳରେ — କେତେ ଦିନ ଆଉ
ଶୋଇଥିବ ଆଖି ବୁଜି,
ଦେଖେ ଉନ୍ମାଦନା — ଓଡ଼ିଆ ଛାତିରେ
ଉଠ ଜନନୀ ଗରଜି ।
ଯଥା ସମୟରେ — ରୋଗୀକୁ ଔଷଧ
ନ ମିଳିଲେ ଯାଏ ପ୍ରାଣ,
ଶୁଣିଛ କି କାହିଁ — ପିଲା ନ କାନ୍ଦିଲେ
ମାତା କରେ କ୍ଷୀର ଦାନ ।
ବେଳୁଁ ନ ଚେତିଲେ — ସଢ଼ିଯିବ ରକ୍ତ
ହାତ ଗୋଡ଼ ଝିବ ପଡ଼ି,

ଶୋଇଲ ପୃଥିର ଘାସ ଯାଏ ବୁଡି
ଚକ୍ଷୁରେ ନ ଶୋଭେ ଭୂଇଁ ।
ଉପଯୁକ୍ତ ସାରେ କ୍ଷେତ୍ର ସସ୍ୟଶାଳୀ
ବୃଷ୍ଟି ବର୍ଷିତ ଜଳ ଦାନେ,
ତର୍ଷଣ ନିବୃତ୍ତି ଲଭଇ ସତତ
ପିପାସିତ ଜଳ ପାନେ ।
ମାଟିକି ଖୋଳିଲେ ଝରେ ହିମା ଜଳ
ଦେଖ ଦୁଇ କୂପିଆର,
ତର୍ପଣ ଆଶାରେ ଚାହିଁଛି ଜନମ
କରିକର ପ୍ରତିକାର ।
"ମୋ ଦେଶ ଉଜ୍ଜଳ" ବୋଲି ଅବଶ୍ରାନ୍ତ
ନାଚ ଉଠୁ ଯୁବା ପ୍ରାଣେ,
ଫୁଟିବ ଗୋଲାପ ଯୁଇ ଯାଇ ମଲ୍ଲୀ
ଏଣୁ ଜନମ-କାନନେ ।"

*****

## ପ୍ରଭାତ

ବନ୍ଧୁଳି କୁସୁମ ବିବରନେ ଜଣି ପରାଚୀ ଆଶା,
ଆବାହାନ କରେ ଖମଣି ପିନ୍ଧି ଲୋହିତ ଭୂଷା ।
ନବ ପ୍ରାଣ ଲଭି ବିହଙ୍ଗ ପୁଲକିତ ଅନ୍ତର,
କୂଜନେ ବାନ୍ଧିଲେ ମିହିର ନିନାଦିତ ଅମ୍ବର ।
ଖେଚର-ଭୂଚର ଶବଦେ ପୁଣି କମ୍ପିତ କ୍ଷିତି,
ସନ୍ଧ୍ୟାବଳୀ ଗଣ ଲୁଚିଲେ ଦେଖି ମୟୂଖ ଗତି ।
ଉଷା ବେଶଛାଡ଼ି ଚଣ୍ଡାଂଶୁ ଧୀରେ ବଢ଼ାଇଲେ କର
ପ୍ରଖର ତାପରେ ଦଗଧ ଏବେ ପ୍ରାଣୀନିକର ।
ଉଷାକାଳ ପ୍ରଭା ଦର୍ଶନେ ମନ ଭୁଲଇ ଖେଦ,
ନିମିଷ ଦର୍ଶନ ନୁହଇ ଏବେ ବଡ଼ ଦରଦ ;
ବାସବ କୋଦଣ୍ଡ କେବେ ବା ଦିଶେ ପଶ୍ଚିମାକାଶେ,
ନୀରଦ ମଧ୍ୟରେ ସେ ଶୋଭା ଦେଖି ନେତ୍ର ଝଲସେ ।
ଦିନକର ତେଜ କମନେ ହେଲ ଅପସାରିତ,
ଜଗ ଜ୍ୟୋତି ବଳି ପଡ଼ିଲା ଏକ ବିଧି ବିହିତ ।
ଯାହାର ଆଦେଶ ପାଳଇ ସଦା ଦେବ ଭାସ୍କର,
ସେ ଆଦି କରତା ଚରଣେ ରହୁ ମତି ମୋହର ।
ନିଜ ସଦନକୁ ବାହୁଡ଼ି ଯେବେ ଗଲେ ସବିତା,
କୋଳେ ଧବଳ ଜୋଛନା ବାଣ୍ଟେ ଚନ୍ଦ୍ର ଦେବତା ।
କ୍ଷୀଣୁ କ୍ଷୀଣତର ହୋଇ ଅସିତରେ ତା କାନ୍ତି,
ଶୁକ୍ଳ ପକ୍ଷରେ ବଢଇ କ୍ରମେ ରଜତ ଜ୍ୟୋତି ।
ଚଉପାଶେ ଘେରି ଯାହାଙ୍କ ନଭେ ତାରକା ରାଜି,
ତା ଶୋଭା ଦର୍ଶନେ ଶିଶୁଏ ଯାନ୍ତି ଆନନ୍ଦେ ମଜ୍ଜି ।
ଯାହାର ଆଦେଶ ପାଳଇ ଅବିରତ ଚନ୍ଦ୍ରମା,
ମାନସେ ଧିଆନ ରହୁ ମୋ ସଦା ତାଙ୍କ ମହିମା ।
ନିଦାଘ ପ୍ରାବୃଟ-ଶରଦ- ଶୀତ-ବସନ୍ତ ପୁଣି,
ନିଜ ନିଜ ବଳ ଦେଖାଇ ଛୁଡ଼ିଯାନ୍ତି ଧରଣୀ ।
କେବେ ବା ନୀରସ ସରସ ଧରାବକ୍ଷ ହୋଇ,
ବନ-ଉପବନ-ତଡାଗେ ପୁଷ୍ପ ଫଳ ଶୋଭଇ ।
ଋତୁ ପରେ ଋତୁ ଆସଇ ଯାହାଙ୍କର ବିଧାନେ,
ସେ ପରମ ପିତା ଚରଣେ ସଦା ରହୁ ମୋ ମନ ।

*****

## ମରୀଚିକା

ଜୀବନକୁ ଧରି ନିଜ ମଞ୍ଜୁଷ ଭିତରେ,
ରଖିବା ପ୍ରୟାସ କେତେ କରୁଛନ୍ତି ନରେ ।
ଦୟା-ଧର୍ମ-ସତ୍ୟ-ଶାନ୍ତି ମାନସୁ ବିସ୍ମୃତ,
ଲୋଭ-କ୍ରୋଧ-ମୋହେ ଦିନୁ ଦିନ ଆସକତ ।
ଜନମ ମରଣ କାଳେ ସର୍ବେ ଶୂନ୍ୟପାଣି,
ଏଇ ଶାଶ୍ୱତ ବିଧାନ ଅଛି କେ ନ ଜାଣି ।
ପଲକେ ପଲକେ କେତେ ଅଳୀକ ବାସନା,
ମାନସମୂର୍ତ୍ତିରେ ଭଙ୍ଗ ନ କର ଭାବନା ।
ପ୍ରତିଦିନ ଦୃଷ୍ଟିପଥେ ଆଲୋକ, ତିମିର,
ଖେଳି ଦେଖାଉଛି ଆହା ଭବଟି ନଶ୍ୱର ।
ସୁଖ ବୋଲି ମଣ ଯାହା ବିଳାସ ବ୍ୟସନ,
ହେଲା ପ୍ରାପ୍ତ ତା ଗତି ପ୍ରତ୍ୟକ୍ଷ ପ୍ରମାଣ ।
ଅନନ୍ତ ଗଗନପଟେ ଭ୍ରମେ ଶୀତକର,
ବଢ଼ିବା ଛୁଟିବା ରୂପ ଦେଖ ନିରନ୍ତର ।
ପ୍ରାକୃତିକ ପଦାର୍ଥରେ ନଶ୍ୱରତା ଚିହ୍ନ,
ଦେଖାଇ ଦିଅନ୍ତି ସଦା ପ୍ରଭୁ ଭଗବାନ ।
ଦେଖୁଛି କେ ରୋଧିବ ବା ଜୀବନ ପ୍ରବାହ,

ପଛକୁ ନ ଚାହିଁ ଧାଇଁ ଥାଏ ଅହରହ ।
ଗ୍ରହାବର୍ତ୍ତ ସହଗାମୀ କାଳ ଚକ୍ରକାଳ,
ଜାଣି ଧନେ ଅର୍ଥଲୋଭୀ ନିରତ ସକଳ ।
କୁହୁଡ଼ିରେ ସନ୍ତରଣ ଦେଖିଛ କି କାହିଁ,
ସାଧନାବଳେ ସଜାଡ଼ ଆତ୍ମା ମୁକ୍ତି ପନ୍ଥି ।
କାଦମ୍ବିନୀ କୋଳେ ଖେଳେ ଚପଳା ଯେସନ,
ସଂସାରର ଗତି ସଦା ଏ ଭବେ ତେସନ ।
ଅନନ୍ତ ପଥେ ପଥିକ ହୋଇବ ତ ଦିନେ,
ନିଶ୍ଚୟ ନିଶ୍ଚୟ ଏହା ପାଞ୍ଚୁଥାଅ ମନେ ।
ଲୋଡ଼ା ହେବ ନାହିଁ ଗାଡ଼ୀ, ଘୋଡ଼ା, ଅବା ହାତୀ,
ନଥିବେ ପଥରେ କେହି ପରିଜନ ସାଥୀ ।
ଲିଭି ଯାଇଥିବ ମାନସରୁ କ୍ଷୁଧା-ତୃଷା,
କେବଳ ହିଁ ଜଗଦୀଶ ହୋଇବେ ଭରସା ।
ନିତ୍ୟ ଯେ ପୁଞ୍ଜି ପୁଞ୍ଜି ଦେଖ ଯାଉଛନ୍ତି,
ଆବାଳବୃଦ୍ଧବନିତା ହୋଇ ଗତାସି !
ରାଜପୁତ୍ର ବୁଦ୍ଧଦେବ ସାରନ୍ତି ଶିକ୍ଷି,
ତେଜିଥିଲେ ସିଂହାସନ ଇତିହାସ ସାକ୍ଷୀ ।
ଦାମ୍ପତ୍ୟ-ପ୍ରଣୟ ପ୍ରତି ଦେଇ ଜଳାଞ୍ଜଳି,
ନିଶୀଥେ ଚଳିଲେ ମୁକ୍ତି ମାର୍ଗ ଅନୁସରି ।
ଅଧମର୍ଣ୍ଣ ଉତ୍ତମର୍ଣ୍ଣ ଦେଖ ଲଢ଼ି ଲଢ଼ି,
ନିଧନେ ଫେରନ୍ତି ରାଜଦ୍ୱାରରୁ ବାହୁଡ଼ି ।
ରହିବ କି ବାଲିବନ୍ଧେ ଖର ସ୍ରୋତସ୍ୱିନୀ ?
ବୃଥା ଭାବୁଅଛ କିମ୍ପା ନ ବଳାଅ ମତି ।
ପୁରାଣେ ଶୁଣିଛ ମହାରାଜା ଯଯାତି,
ମୋହେ ଯେ ହରାଇଲେ କ୍ଷାନ୍ତ ବଳବର ।
ଶକ୍ରରୂପ ସମରୂପ ଲାବଣ୍ୟ ଯୌବନ,
କର୍ଣ୍ଣ ବନିତାଙ୍କ ଲଭି ବ୍ୟାପ୍ତ ଆମନ୍ତ୍ରଣ ।
ଉଦକ ସଂଯୋଗେ ବାଲିହୋଇଛି ସମଦଶା,
ମାନବ ଜୀବନ ଜଡ଼ି କଳୁଷେ ସହସା ।
ମରୀଚିକା ସମ ଧନ-ଯୌବନ-ଖ୍ୟାତି,
ଦୂର କର ମାନସରୁ ଲାଳସା ପ୍ରବୃତ୍ତି ।
ବ୍ୟାଧି ଗଜ ଯାକ ହେଉ ଲୋଏ ବଳନ୍ଦ,
ଧର୍ମଭୀ ରାଜନ୍ତି ତେଜନ୍ତି ପ୍ରାଣ୍ୟ ଫାଟଖେଦ ।

୦୦୦

## ପ୍ରଭାତ

୧ ଚରଣାୟୁଧର ଡାକ ଶୁଣି ନେତ୍ର ସଂପୁଟକ ୨
ଧୀରେ ପଶୋଚୀ ନଗରୀ ଉଛ୍ୱ ଏ କାଳେ ।
ବ୍ରହ୍ମାଣ୍ଡ ଆଲୋକଦାତା ଦେବାଗ୍ରଗଣ୍ୟ ସବିତା
ସ୍ୱର୍ଣ୍ଣ ସିଂହାସନ ବସେ ଉଦୟାଚଳେ ।
ସତେ କି ସୁବର୍ଣ୍ଣ ନଗର
ନିମିଷେ ପାଲଟି ଦିବ ରଜତପୁର ! !
୩ ବନପୁଷ୍ପ ଜୀବଶୁଣି ଚେତନା ଲଭେ ଧରଣୀ
ଉପବନ ଗୁଣୁ ଗୁଣୁ ଅଳି ଗୁଞ୍ଜନେ ।
ନାରଦ ନାଦ ଶ୍ରବଣେ ୧ ସାରଙ୍ଗ ଉଷତଯନ୍ତି
ଷଟ୍କୋବିଦରେ ସରସିଜ ଦର୍ଶଇ ନେତ୍ରେ ।
ଦରଶନ ଲଭି ତମିର
ଲୋଏ ଯେସନ ମୃଗ ଦେଖି ଶାର୍ଦ୍ଦୂଳ ।
କଳକଣ୍ଠ ମରାଳ ଶୁକ ସାରସ କୋକିଳ
କାକଳୀ ରବେ ପୂରିତ ଧରା ଉଷାରେ ।
ଗୃହଶାଳୀ ଅଭିମୁଖେ ବାଳକେ ଯାଆନ୍ତି ସୁଖେ
ଅବଗାହି ବଧୂ ଲକ୍ଷ୍ମୀ ଫେରନ୍ତି ଘରେ ।
ବିକଶିତ କୁସୁମାବଳୀ,
ଭୃଙ୍ଗାର ଧରି ଧାବନ୍ତି ଚୟନେ ମାଳୀ ।
ବର୍ତ୍ତିକି ବନେ ଜାମ୍ବୁକ ଶୁଣି ବିହଙ୍ଗମ ରବ
ଗୁହା ମୁଖେ ଧାବମାନ ତରତରରେ ।
ରାତ୍ରିରେ କଉଳିକ ୨ ଚିନ୍ତନ୍ତି ଅତି ଭାବୁକ
ସତେ କି ଲୁଚନ୍ତି କାହିଁ ତପୀ ବେଶରେ ।
ପୌଷ ମାସ କାହା କପାଳେ,
କେଉଁଠି ଭୁଞ୍ଜଇ ଦୁଃଖ କରମ ଫଳେ ।
ସୁଲୁ ସୁଲୁ ବହି ବାତ ହରଇ ମାନବ ଚିତ୍ତ
ବିପ୍ରଙ୍କର ଉଷାସ୍ତୁତି ପଡ଼େ ଶ୍ରବଣେ ।
ପ୍ରତ୍ୟୁଷୁ ଜାଗି ଆହିର ଗୋ ଦୋହନେ ତତପର
କୃଷକ କେଦାରେ ଧାଏଁ ହରଷମନେ ।
ପ୍ରଭାତର ଏପରି ନାଟ
ଦେଖି ମନେମେ ଜନକ ଅବୋଧ ଗୃହ ?

---

୧ କୁକୁଡ଼ା, ୨ ଫରୁଆ, ୩ କାକ ।
୧ ଚାତକ, ୨ ପେଚା ।

ଆଶା ତରଣୀଟି ଭବ-ପାରାବାରେ
ବିଳମ୍ବ ନ ଭଜ ଘଟେ,
ଅଳ୍ପ ଧନ ପାଇଁ ଚିନ୍ତାଥାଏ ଯିଏ
ଆଉ ଯା ନୟନେ ଦିଶେ ।
ରାଜ୍ୟ ବିସ୍ତାର ପାଇଁ ଛଟପଟ
ବାଳବିଏ କେତେ ନର,
ଜୀବନ ଦୁଃଖ ଘୃଣା ଜୀବନ ପିପାସା
ଦେଖିଲେ କୋଟିପତିର ।
ଅନ୍ଧ ବାୟୁଡ଼ାଟି ଅଣ୍ଡାଳି ଅଣ୍ଡାଳି
ବୁଲଇ ମୁକତି ପାଇଁ,
ଜରାଜୀର୍ଣ୍ଣ ଏବେ ବ୍ୟସନ ଆଶାରେ
ଏଣୁ ତେଣୁ ଭ୍ରଷ୍ଟ ଥାଇ ।
କଣ୍ଠାଗତ ପ୍ରାଣ ହେଲେ ହେଁ ଅଳିତ
ମନୁ ନ ଛୁଟଇ ଆଶା,
କେତେ ଦେବତାଙ୍କୁ ଯାଚଥାଏ ଏବେ
ଦୀର୍ଘ-ଛତ୍ର-ଗ୍ରହ ପୋଷା ।
ଗଳିତ ଓ ଜୀର୍ଣ୍ଣ ନାହିଁ ମନେ କ୍ଷଣେ
"ଯାଉ ମୋର ପ୍ରାଣ" ବୋଲି,
ପ୍ରାଣ ବିକଳରେ ମାଗଇ ସେହିଠାରି
ଦ୍ୱାରେ ଦ୍ୱାରେ ବୁଲି ବୁଲି ।
ବୁଦ୍‌ବୁଦ୍ ସଦୃଶ କ୍ଷଣିକ ଏ ଆଶା
ଭାବୁ ନାହିଁ କେହି ଥରେ,
ଆଶା-ସିଂହାସନେ ବୃଥା-ବସିବାକୁ
ଚେଷ୍ଟିତ ସମସ୍ତ ନରେ ।
ଆଶାର ଅନୁଗ ନ ହେଉ ଜୀବନେ
ଆଶାତ ବିଷମ ବିଷ,
ଜାଣି ସାପଗାତେ ହାତ ପୂରାଇଲେ
ଘଟିଥାଏ ସର୍ବନାଶ ।

*****

## ମୃତ୍ୟୁଦେବ

କେତେ ବେଶ ଧରୁ ଦିନକ ମଧ୍ୟରେ
କରନ୍ତୁ କେ ତା କଳନା,
ନିତ୍ୟ ଦେଖିଲେ ହେଁ ତୋ ବିକଟ ରୂପ
ସଦା ତୁ ଭବେ ଅଚିହ୍ନା ।
ପ୍ରବଳ ତୋଫାନେ ଦେଖାଦେଇ ଆଜ
ସାଗରେ ମାନବ ଅଗ୍ରେ,
ବିନତି ନ ଶୁଣି ଟାଣି ନେଉଥାଉ
ଉଦଧି ଗର୍ଭକୁ ବ୍ୟଗ୍ରେ ।
ରଣଭୂମେ ଯାଉ କରେ ଶସ୍ତ୍ର ଧରି
ସାଜି ସଇନିକ ବେଶ,
ଘନ ବରଷାରେ ଥରେ ଥରେ ଉଭା
ଦେଖାଉ ରୂପ କୁଳଣ ।
ଅଝାଡ଼ ଜଙ୍ଗଲେ ବ୍ୟାଘ୍ର ରୂପେ ମୁଖ
ବ୍ୟାଦାନେ କମ୍ପାଉ ହୃଦ ।
କେବେ ବା ହାତରେ ରକ୍ତ ଖଣ୍ଡେ ଧରୁ
କିଏ ଜାଣେ ତୋ ଶବଦ ।
ହଇଜା-ବସନ୍ତ ତୋ ରୂପ ଦର୍ଶନେ
କାହାକୁ ନ ମାଡେ ଡର ?
କହ ଆହେ ଦେବ ! ଏ ଭବେ କେ ତୋର
ନୁହଇ ଚିର କିଙ୍କର ।

****

## ଶ୍ରୀପଞ୍ଚମୀ

ବରଷର ଧର୍ମ ମାସ ନାହି ଶୀତ ମାଘ ମାସ
ସିତ ପକ୍ଷେ ଶ୍ରୀପଞ୍ଚମୀ ନାମେ ପ୍ରଥିତ ।
ଚରଣ ପଙ୍କଜ ସେବା ମାନସେ ଭକତ ଉସ୍ତ
ଆସ ଆଜ ଭାରତି ଗୋ ! ହୋଇ ଉଦିତ ।
୧. ଘନସାର ସହ ଚନ୍ଦନ
ନେଇ ଅର୍ଘ୍ୟ ନାରିକେଳ ମାଳ ସୁମନ ।
ପୁଷ୍ପାଞ୍ଜଳି ୨. ଘନରସେ ପୂଜିବ ଚିନ୍ତି ମାନସେ
ଅନଶନେ ତବ ପଦେ ଶିର ଆନତ ।
ନେଇ ଏ ଉପଢୌକନ ହୁଅ ଭକତେ ପ୍ରସନ୍ନ
କରୁଣା ଊଣା ନ କରି ହର ଦୁରିତ ।
୩. ଭୁବନ କାସାରେ ମୀନ
ଦେବସ୍ୱେ ଜଣାଏ ନେଇ ଏ ନିବେଦନ ।

( ୧. କର୍ପୂର, ୨. ଜଳ, ୩. ଜଳ )

ଅଜ୍ଞାନ ତମିର ନାଶ ଦିବ୍ୟାଲୋକ ପରକାଶ
ପାଇଁ ଚରଣ-କମଳେ କରିଛୁ ଆଶା ।
ତବ କରୁଣା ଅଭାବେ ଅନ୍ଧକାର ସବୁ ଭବେ
ବିଦ୍ୟା ପ୍ରଦାୟିନି ମାତା ! ଦିଅ ଭରସା ।
କୋଟି କୋଟି ଅଧମ ଗୃହେ
ଦେଖାଅ ଦେଖାଅ ମା ଗୋ ! ସୁମନ୍ତ-ବାଟ ।



## ବସନ୍ତ ଭାବନା

ନିଷ୍ଠୁର ବିଧାନେ ନିର୍ବଶି ଶିଶିର
ଦେଖି ଆଗମ ବସନ୍ତ,
ଘନ ଅରଣ୍ୟନେ ଯାତନା ଦେଇଣ
ଭବଧାମୁଁ ତିରୋହିତ ।
ଦକ୍ଷିଣ ଦୂରୁ ଦିଅଇ ବାରତା
ସ୍ୱୈର ମଳୟ ଅନିଳ,
ସୌନ୍ଦର୍ଯ୍ୟ-ପେଟିକା ଦେଖାଇବା ଆଶେ
ପ୍ରକୃତି ରାଣୀ ଆକୁଳ ।
ସହକାର ତରୁ ବକୁଳିତ ବେଶେ
ହରଇ ମାନବ ମନ,
ପୁଲକେ ନାଚନ୍ତି ଶିଶୁଏ ଏକାଳେ
ଶୁଣି ପିକ କୁହୁତାନ ।
ସରସୀ ଶୋଭିତ ନବୀନ କମଳେ
ଦେଖିଣ ମିଳିନ୍ଦ ଏଣେ,
ତଥା କାଳେ ପୁଣି ବାହାରି ବେଗରୁ
ଚୁମ୍ବଇ ଗୁଞ୍ଜନ ସ୍ୱନେ ।
ବନେ ଉପବନେ ପାଦପ ସକଳ
ନବ ପଲ୍ଲବିତ ବେଶେ,
ଧରିପୁଷ୍ପ ଶୋଭା କରଣ ବର୍ଦ୍ଧନ
ଦର୍ଶକ ଚିତ୍ତ ଆକର୍ଷେ ।
ଗୋଲାପ, ବକୁଳ, ନିଆଳି, ବାସନ୍ତୀ୧.
ମଲ୍ଲୀ, ବାଣକେଶ୍ୱର, ୨.
ସେବତି, ମାଧବୀ, କାମିନୀ, କେତକୀ
ଉପବନେ ବିକସିତ ।

( ୧. ଜୁଇ, ୨. ନାଗେଶ୍ୱର )

ଅଶୋକ କଳିକା ଦେଖିଣ ଯୁବତୀ
ଖେଦେ ଭାଷଇ ଏସନ,
"ସତେ କି ଜାନକୀ ଏ ଅଶୋକ ବନେ
ଶୋକେ ଯାଉଥିଲେ ଦିନ" ।
ପରିମଳମୟ ମଳୟ ପବନ
ଚୁମ୍ବି କୁସୁମପୁଞ୍ଜେ,
ଧୀରେ ଧୀରେ ବହି ବାସ ବିତରଣେ
କରଇ ଆନନ୍ଦମୟ ।
ଶୋଭାଙ୍କନ ତନୁ ବସନ୍ତ ପବନେ
କମନୀୟ କାନ୍ତି ସାଜ,
ଦେଖାଇ ଦିଅଇ ନିଷ୍ଠୁର ରହସ୍ୟ
ନରନାରୀକୁଳେ ଆଜ ।
ମଧୁମାସ ଶେଷେ ପ୍ରକୃତି ମନ୍ଦିରେ
ଦାରୁଣ ନିଦାଘ ଏଣେ,
ବସନ୍ତ ବନ୍ଧୁମା ଭଙ୍ଗିଣ ଚେତନା
ଦିଅଇ ମାନବ ପ୍ରାଣେ ।



## ଗୋପବନ୍ଧୁ

ଜନନୀର ଦେଉଳେ ନିତିକର ଗୀତ,
ବାଷ୍ପକୁଳ ନେତ୍ରେ ସେବୁଥିଲେ ଯେଉଁ ଗୀତ ।
ସଂସାରିକ ସୁଖ ଦୁଃଖ ଦେଇ ଜଳାଞ୍ଜଳି,
ଫୋଡୁଥିଲେ ନେତ୍ର ନୀର ମନଃପ୍ରାଣ ଢାଳି ।
ଦୀନ ଅକିଞ୍ଚନଙ୍କର; ପିନ୍ଧିଣ କୌପୀନ,
ନାହାନ୍ତି ଆଜ ସେ ଗୋପବନ୍ଧୁ ପୁଣ୍ୟବାନ ।
ଶାନ୍ତ ନମ୍ର ଯୋଗ୍ୟତମ ଜନନୀ-ସେବକ,
କେ ଶୁଣିବ ଆଜ ଏବେ ଜନନୀର ଡାକ ।
କେ ବା ଶୟନ-ସ୍ୱପନେ-ବେହରଣ କାଳେ,
ଜନନୀ ଜନନୀ ବୋଲି ଡାକିବ ଆକୁଳେ ।
କର୍ଣ୍ଣଧାର ବିହୁନେ ବା ଭୀମ ପାରାବାରେ,
ତରିବାକୁ କା [illegible] ମଧ୍ୟରେ ?
କେ ଶୁଣିବ ଆରତର କରୁଣ କ୍ରନ୍ଦନ,
ବନବାସିନୀ ଜନନୀର ପୋଛିବ ଚରଣ ?

ବଙ୍କିମ ଜନନୀ ଅଙ୍କ ଏକଶୀ କରଣେ,
ଚେଷ୍ଟିତ ଅନବରତ ଦୁତ୍ପୀଡ଼ିତ ମନେ ।
ଯା ପାଇଁ ସ୍ପନ୍ଦନ କରେ ଶତ ଶତ ପ୍ରାଣ,
ଅକାଳେ ପୁଣ୍ୟାତ୍ମା ଆହା ! ସ୍ୱରଗେ ପ୍ରୟାଣ ।
ନିର୍ବେଦନରେ ଭରି ଆଜି ଜନନୀ ମାନସ,
ତପସ୍ୱିପ୍ରାଣ ସୁତ ତେଜ ଝୁରେ ଅହର୍ନିଶ ।
୧. ଷଡ଼ଷୋଡ଼ଶୀ ସାର ଭବେ ନକର ବେଦନ,
ଯେ ମିଶେ ମାଟିରେ ତାର ନମିଳେ ଦର୍ଶନ ।

*****

## ପରିଣତି

ବର୍ଷା ହେବ ବୋଲି ବାରୁଣୀ ଯେମା,
ଦେଖାଉଛି ଭଲେ ଅବା ସୁଷମା ।
ସୁନେଲି ଝୋଟି ଶିରେ ରଞ୍ଜିତ,
ବର୍ଣ୍ଣ ଦର୍ଶକ ହରଇ ଚିତ୍ତ ।
ବଳାକା ନିକର ତୋରଣ ଗଢ଼ି,
ଉଡ଼ୁଛନ୍ତି ନଭେ ଧାଡ଼ିକ ଧାଡ଼ି ।
ବର୍ଣ୍ଣେଦର୍ଶି ଦରଶି ଅଳକ ଚେର,
ବାହୁଟିକେ ପାରିବ ଛବି ମାଧୁରୀ ।
ଚଞ୍ଚଳ ଦ୍ରୁମର ଧରି ମରୁତ,
ମନ୍ଦେ ମନ୍ଦେ ବଂଶୀ ହୋଇ ଉଷନ୍ତ ।
ପାଦପେ ସଜାଡ଼ି ଅତି ଯତନେ,
ଭେଟନ୍ତି କୁସୁମ ହରଷ ମନେ ।
ମାଡ଼ି ପେଶୁଛନ୍ତି ବିହଙ୍ଗାବଳୀ,
ଫୁଲ ଫୁଲ ସମ କରି କାକଳୀ ।
ବାଉଁଶ ଟାଇଣ କୃଷକ ଯାଇ,
ଗୀତ ଗାଇ ଗାଇ କ୍ଷେତରୁ ଫେରଇ ।
ଗୋରୁ ହମ୍ବାରଡ଼ି ମସ୍ତକ ଟୀପା,
ବାଇଦ ଶବ୍ଦରେ ଝିଲିକ୍ଷେ ଟୋପା ।
କଅଁଳ ବାଛୁରୀ ଆନନ୍ଦ ମନେ,
ନାଚି ମାଆ ପାଖେ ମିଳେ ସଘନେ ।
ବଂଶୀ ବଜାନ୍ତି ଗୋପାଳକୁଳ,
ଶ୍ରବଣେ ଉପୁଜେ ମୋଦ ଅତୁଳ ।

ସ୍ମୃତି ପ୍ରତିବିମ୍ବ ସରସୀ ଜଳେ,
ଦେଖି ସୀମନ୍ତିନୀ କୂଳ ଏକାଳେ;
ବନାଦେନା ଦୀପ ସ୍ନାନ କରେ,
ସଧନୁ ଆସନ୍ତି ଅତି ସନ୍ଧେରେ ।
ଦେଖାଇ ଜଗତେ ଷଷ୍ଠୀକ ଶୋଭା,
ମିଶଇ ଅନ୍ଧାରେ ବାରୁଣୀ ବିଭା ।
ମୁଖେ ଫୁଲ ଦେଇ ଶିବା ବାହାର,
କ୍ଷଣେ ଦାଉ ଦାଉ କ୍ଷଣେ ଅନ୍ଧାର ।

*****

## ଗାନ୍ଧୀ

ବୀର ପ୍ରସବିନୀ ଭାରତ ମାତା
କୋଳେ ତୋଳି ଦର୍ପେ ଟେକଇ ମଥା
ବାଢ଼େ ଆଶେ ସ୍ୱାଧୀନତା-ତୃଷା
ତେଜିଲ ସକଳ ଯୁବ ଲାଳସା ।
ଦେଖାଇଛି ବୀର ପଣ,
ତବ ପୂଜା ପାଇଁ ସଜାଡ଼ିଛି କରୁଣ
ଦେବାକୁ ଏ ଅକିଞ୍ଚନ ।
ଉଦ୍ଦାମ କୁଞ୍ଜର ଚରଣେ ନର
ତଦ ଥାଇଁ ଏତେ ହୁଏ ଆକୁଳ ।
ଭୋକ ପେଟ ମାରି ସଞ୍ଚଇ ଧନ
ନିମିଷ ନଭାବ ଏ ସବୁ ଘେନ ।
ଶିଖାଇଲ ଯା ଜୀବନେ
କୋଟି କୋଟି କଣ୍ଠ ବାହାରିବ ଘନେ
ତବ ମହିମା କୀର୍ତ୍ତନେ ।
ଅହିଂସା-ଆୟୁଧ ଧରଣ କରେ
ଉଭା ହୋଇଲ ଆସି ରଣଭୂମିରେ ।
ଅଳକପୁ ନେତାଙ୍କ ଦେଖି ଡରିଲେ
ବିନା ରକ୍ତପାତେ ଦେଶ ଛାଡ଼ିଲେ ।
ତବ ସେନାପତି ପଣ,
ଭବିଷ୍ୟତ ଇତିହାସ ମୁକ୍ତ କଣ୍ଠେ
କରୁଥିବ ଗୁଣଗାନ ।
ପର୍ବତ କନ୍ଦରେ ତବ ବାରତା
ବଖାଣି ଘୋଷୁଅଛି ଜନତା ।

(୧. ସହସ୍ରସ୍ତୁତା)

ଯନ୍ତ ବେଶଧର ପଲ୍ଲୀ କୋଳେ
ଲଗି ଡେଥିଲ ଦୀନ ମଙ୍ଗଳେ
ନ ଡ଼ର ବରଷା ଖରା,
ଗ୍ରାମେ ଗ୍ରାମେ ବୁଲି ସନ୍ତର ମହିମା
ପ୍ରଚୁରିଲ ଦେଶ ସାରା ।

ସାମ୍ୟବାଦ ମନ୍ତ ଧରଣ ମନେ
ଯାପିଲ ଜୀବନ ଦେଶୀ କୌପୀନେ;
ସାରା ଦୁନିଆଟି ଦେଖି ଏ ଶାନ୍ତ
ମହାତ୍ମା ବୋଲାଣ କରନ୍ତେ ସ୍ତୁତ ।
ଯାଚଶୋରକ ନଏ ମନ୍ତ୍ର,
ତବ ନାମ ପୁଣି ଏ ଭାରତ ଭୂମେ
ଯାବତ ଆକାଶେ ଚନ୍ଦ୍ର ।

ଏକତା ଅଭାବ ଭାରତେ ଦେଖି
ହରିଜନ ପ୍ରତି ଚଡ଼ିଲ ଆଖି;
ସମାଜ ଘଟ୍ଟାରେ ମନ୍ତ ବଳାଇ
ଅସ୍ପୃଶ୍ୟତା ଦୋଷ ଦେଲ ଲିଭାଇ ।
ଥୋକେ ଚିହ୍ନେଲେ ବରଗେ,
ହରିଜନ ଗଣ ତବ ପୁଣ୍ୟ ନାମ
ଗାଉଥିବେ ଯୁଗେ ଯୁଗେ ।

ବାଳକେ ବୋଲନ୍ତି ସତ୍ୟ ଯୁଗରେ
ରାବଣ ମଣେ ରାଘବ କରେ ।
ଦ୍ୱାପର ଯୁଗରେ କୃଷ୍ଣ ପ୍ରକାଶ
ଘଟାଇବା ପାଇଁ କଂସ ବିନାଶ ।
ଗବର୍ଣ୍ଣମେଣ୍ଟକୁ ଗାନ୍ଧୀ
କଳଯୁଗେ ଘଟାଉଲେ ବିନା ଅସ୍ତ୍ରେ
ଦେଶୀ କଉପୀନ ପିନ୍ଧି ।

କାହିଁ ଗୁଡ଼ଗନ୍ତି ଲୋଭ ମାନବେ
ଜାଣି ଅନିଷ୍ଟ ସବୁ ଏ ଭବେ ।
କଲୁ ବତଲେ ଧନ ସମ୍ପତ୍ତି
ସଦା ଦେଖାଇଣ ନିର୍ଲୋଭ ମତ ।
ସନ୍ତ ଦେବତାଙ୍କୁ ଅସି,
ଜନମ ହୋଇଲ ଏ ଭାରତ ଭୂମେ
ଦିବ୍ୟଜ୍ୟୋତ ପରକାଶି ।

ଦିବ୍ୟଲୋକେ ଥାଇ ଦିଅ ଆଶିଷ
ତବ ଆଦର୍ଶରେ ଗଢ଼ୁ ଏ ଦେଶ ।
ତବ କୃପାବଳେ ଦୀନ ରଙ୍କୀଏ
ପେଟକୁ ପାଆନ୍ତୁ ଅନ୍ନ ମୁଠିଏ ।
ଦୁର ହେଉ ଦରିଦ୍ରତା,
ନ ରହିଥିବ ଦ୍ୱେଷ ଭରତ ସନ୍ତାନ
ଅଚିରେ ଆସୁ ଏକତା ।

*****

## ପ୍ରକୃତି

ତାରାବଳୀ ମଧ୍ୟେ ସ୍ଥିର ସିଂହାସନେ
ବସିଛନ୍ତି ତାରା ରମଣ,
କାନନ ପ୍ରାନ୍ତର ଜନପଦ ପୁଣି
ଶୁଭ୍ରାଲୋକେ ପରିପୂର୍ଣ୍ଣ ।
ଉଲ୍ଲାସେ ଉତ୍ଫୁଲ୍ଲ ମହାସିନ୍ଧୁ ପ୍ରାଣ
ଦେଖି ସେ ରଜତ ଜ୍ୟୋତ୍ସ୍ନା,
ମାତା ସ୍ନେହ ଭାସି ଶିଶୁ ମନେ ହୁଏ
ଅତୁଳ ମୋଦ ଉତ୍ପତ୍ତି ।
କ୍ଷେତେ ଚକ୍ୟ ଶାଳୀ ଦର୍ଶନେ କୃଷକ
ପୁଲକେ ନାଚଇ ପ୍ରାଣ,
ଅବନତ ଆମ୍ର ତରୁ ଫଳଭରେ
ହରଇ ଦର୍ଶକ ମନ ।
ସହସା ପ୍ରକୃତି ନମସ୍କାର ବେଶ ସାଜ
ଆବରଇ ଇନ୍ଦୁ ଦୀପ୍ତି,
ଝାଡ଼ ୧. ପିକ ବନ୍ଧୁ ଭସାଇ କେଦାର
ଟାଳଇ ଦର୍ଶକ ଚିତ୍ତ ।



## ବାଳ ବିଧବା

ସୁଗନ୍ଧ ତଇଲେ ଲେପି ଚିକୁର,
ବେଣୀ ଲମ୍ବାଇଣ କଟି ଉପର,
ଖଞ୍ଜି ନାନାପୁଷ୍ପ ତଥି ଯତନେ,
ଉଷା ଆସି ଯେବେ ବାନ୍ଧ ଦର୍ପଣରେ,

( ୧. ଆମ୍ବଗଛ )

କାଚଦ୍ଧ୍ନା ସେ କିଶୋରୀ,
ନାନା ଅଳଙ୍କାରେ ବିଭୂଷିତା ତନୁ
ଦିଶିଥାଏ ହରିଣୀ ।
କେତକୀ ବରନା, କୁନ୍ଦ ରଦନା,
ଡାଳିମ୍ବ ଦଶନା, ପଦ୍ମ ନୟନା ।
ଗୁରୁ ବିମ୍ବାଧରୀ ପଟ୍ଟବସନ
ପରିଧାନ କରି ସଖୀ ମେଳନ ।
କାଚଦ୍ଧ୍ନା ସେ କିଶୋରୀ,
ନାନା ଅଳଙ୍କାରେ ବିଭୂଷିତା ତନୁ
ଦିଶିଥାଏ ହରିଣୀ ।
ଅତି ଦୟାବତୀ ଅନବାଧା ବାଳା
କପଟ ରହିତା ଅତି ସରଳା,
ଜନକ ଜନନୀ ପ୍ରତି ଭକତି
ପ୍ରଦର୍ଶନେ ପୁଣି ସଦା ତା ମତି ।
କାଚଦ୍ଧ୍ନା ସେ କିଶୋରୀ,
ନାନା ଅଳଙ୍କାରେ ବିଭୂଷିତା ତନୁ
ଦିଶିଥାଏ ହରିଣୀ ।
ଧିକ ଧିକ ଏହି ବ୍ରାହ୍ମଣ ଜାତି
ଆହା ! କିଶୋରୀର ଏ କି ଦୁର୍ଗତି ।
ପୁଂଷ ଚେଣପୁ ଇଚ୍ଛା ଅଧୀନ
କି ବିଚିତ୍ର ପୁଣି ଶାସ୍ତ୍ର ବିଧାନ ;
କେଉଁ ପାପଫଳୁ ଆଜି,
ବୈଧବ୍ୟ ଯନ୍ତ୍ରଣା କିଶୋରୀ ରତନ
ଭୋଗଇ ଶଙ୍କରେ ଭଜି ।

*****

## ବୃକ୍ଷର ତିରସ୍କାର

"ଛି ! ଛି ! ଏକି ମାନବରେ କରୁଛୁ ଅନୀତି,
ତସ୍କର ପରାୟେ ହରିନେଲୁ ମୋର ଭିତ୍ତି ।
ଅପରର ବିପତ୍ତିରେ ଦେଇ ଘୃତାହୁତି,
ଏହି କି ମାନବିକତା ବଢ଼ାଉ ସମ୍ପତ୍ତି ?
ଖୋଜି ତୁ ଔଷଧ ପୁଣି କିଞ୍ଚିତ ଆଘାତେ,
ମୋ ତନୁ ତୋ ନଖାଘାତେ ଖସୁଛି ଶୋଣିତେ ।
ନିର୍ଦ୍ଦୋଷକୁ ଏ କି ଦଣ୍ଡ ଦିଅ ଅକାରଣେ,
ଖସିଛି ମୋ ତନୁ ଗତା ଅନ୍ୟ ଉପାଦାନେ ।
ମେଧାବୀ, ବଳୀ, କୌଶଳୀ, ବୋଲାଉ ଜଗତେ,
ଦୟାନାହିଁ ଦେଖିଲି ମୁଁ କିଞ୍ଚିତେ ତୋ ଚିତ୍ତେ ।
କେତେ ସ୍ନେହେ ପାଳିଥିଲି କୋଳେ ମୋ ସନ୍ତତି,
ବଳେ ଛିଣ୍ଡାଇ ନେଲୁଛୁ ଏକି, ରେଭ ଖତି ।
ତସ୍କର ଦଣ୍ଡିତ ଯିବା ବିଚାରାଳୟରେ,
ସମୀଚୀନ ଦଣ୍ଡ ତୋର ଧର୍ମଙ୍କ ଦୁଆରେ ।
ସନ୍ତାପିତ ହୃଦ ଆଜି ଜଳେ ଶୋକାନଳେ,
କହନ ନିଭାଇବ ପୁଣି କେ ମହୀମଣ୍ଡଳେ ?
ଆମରଣ କୁହୁଳଇ ଜନନୀ-ଜଠର
ସନ୍ତତି ବିରହେ ନିରବାଣ ଅଗୋଚର ।
ଲୁବ୍‌ଧକ କି ବୁଝେ କେବେ କୁରଙ୍ଗୀର ଶୋକ,
ବଳେ ଧରି ନିଏ ଯେବେ ତା ଶିଶୁଶାବକ ।
କୁକୁରର ଧ୍ୟାନ ଯଥା ଉଚ୍ଛିଷ୍ଟ ପତ୍ରରେ,
ପରସ୍ୱ ହରଣେ ତଥା ପରଶ୍ରୀକାତରେ ।
ବାତ୍ସଲ୍ୟ ପ୍ରେମରେ ଭବେ ସର୍ବେ ଜଡ଼ୀଭୂତ,
କି କଷଣ ତା ବିରହେ ବାକ୍ୟ ଅବର୍ଣ୍ଣିତ ।
ଅନୁଭବୀ ଯିବା ଜାଣେ ବାଧା ବିରହର ।
ଅପରର ବିବେଚନା କିଞ୍ଚିତ ମାତର ।
ସହିଲି ବରଷା, ଖରା, ଦାରୁଣ ଶୀତର,
ବଢ଼ାଇଲି ଅତିଯତ୍ନେ ଜାଣୁ କି ପାମର ?
ଭାବିଥିଲି ସୁଜନମାନୁ ଜଗତେ କେବଳ,
ମାନି ତୋ ଠାରେ ମହତ୍ୱ ଏ ଭବେ ବିରଳ ।
ସ୍ୱାର୍ଥପର ଅନ୍ଧରେ ଘୃଣିତ ନିନ୍ଦିତ !
ସମାଜେ, ତଥାପି କ୍ଷୁଦ୍ର ସ୍ୱାର୍ଥେ ଜର୍ଜରିତ ।
ସ୍ଥିର ପାଦପ ପ୍ରତି ତୋ ଏକି ଅତ୍ୟାଚାର !
ଅପର ସମ୍ପତ୍ତି ବଳ ବଳେ ଅଧିକାର ।
ଧର୍ମନୁହେ ଧର୍ମନୁହେ ଏହାରେ ପାଷାଣ,
ଅବିମୃଷ୍ୟକାରିତା ତୋ ନଷ୍ଟେ ହେବ ପଣ୍ଡ ।
ଆତ୍ମକାର୍ଯ୍ୟ ସାଧନ ହିଁ ବେଉସା ତୋହର,
କପଟ ବା ହେବ ମନେ ଧରମ ସଞ୍ଚାର ।
ଯା ପିଠିରେ ବାଜି ନାହିଁ ବିଷାଦ ପ୍ରହାର,
ବିଳାସର ଅନୁଚର ସଦା ତା ଅନ୍ତର ।
କେ ବୋଲଇ ସତ୍ୟବନ୍ତ କେହି ବା ଧାର୍ମିକ,
ନିର୍ଦ୍ଦୋଷ ଉପରେ ଏଣେ ବସାଇ ବନ୍ଧୁକ ।

ଅନ୍ୟାୟର କରବାଳ ଧାରଦେଲେ ସାଚ,
ଛଡ଼ାଇବ ନ୍ୟାୟକାଳ ପଛୁ ଧକ୍କା ଦେଇ ।
ସୁଜନାହିଁ ଫିଟିବାକୁ କା'ର ତା ଆଗରୁ,
କର୍ମ ଅନୁଯାୟୀ ଦଣ୍ଡ ଦିଏ ଲଘୁ ଗୁରୁ ।
ଚିତ୍ତ ଶୁଦ୍ଧି କେବଳ ହିଁ ଭକ୍ତି ଉପହାର,
ଝଟକେ ସତତ ସତ୍ୟ-ସ୍ନାତ କଳେବର ।
ତରିବାକୁ ଶ୍ରେଷ୍ଠ ନୌକା ସଂସାର-ଜଳଧି,
ପରସେବା ନେଣୁ ହେଉ ଜୀବନ ସମାଧି ।
ପରେ ପୀଡ଼ା ନ ଲଗାଅ ତରସେ କାଳିମା,
ନଶ୍ୱର ଜୀବନ ଘୋଷୁ ଶାଶ୍ୱତ ମହିମା ।
ଭ୍ରମେ ପଡ଼ ହରିଲୁ ଯେ ସୁମନ ସୁଷମା,
୧. ସମାପ୍ତରେ ବୁଝିବୁ ଏ କାହାର ମହିମା ।
ଜାଣୁ ତୋ ମୋ ଜନ୍ମଦାତା ଜଣେ ଏ ମର୍ତ୍ତ୍ୟରେ,
ତୋର ବାସ ଘୁଞ୍ଚଇ ନେଲେ ମୋ ବାସ ଖସାରେ ।
ପ୍ରଭୁଦନ ଭକ୍ତିରେ ମୁଁ କୁସୁମ ସେଚିଲି,
ଅର୍ପେ ସେ ମେଶ ପଦେ ନଜାଣେ ମାନବ" ।

*****

## ଗ୍ରୀଷ୍ମ ଭାବନା

ବିଗତ ଜଗତ ବସନ୍ତ ଧରାଧାମୁ ତିରୋହିତ
ତଣ୍ଡବେଶ ଉପଗତ ନିଦାଘ କାଳ,
ବହ୍ନି ସଙ୍ଗେ ଗ୍ରସ୍ତୁ ପତି ୨. ବଢ଼ାଇଲେ ଦୁରଗତି
ଖେଚର-ଭୂଚରଗତ ଅତି ଆକୁଳ,
ଧନ୍ୟ ଧନ୍ୟ ସଂସାର ଲୀଳା !
କେବେ ଗଲା ଫୁଲମାଳା କେବେ ତୋହିଲା ।
ବେଣୁନବଳ ଭଣ୍ଡିଖର ଦିଅଇ ସନ୍ତାପ ଘୋର
ଅଥୟ ଅସ୍ଥିର ଭାବ ପ୍ରାଣୀ-ଜୀବନ ।
କୃଶତନୁ ପୁଷ୍କରିଣୀ, କୂପ, ଘାଟ, ତରଙ୍ଗିଣୀ
୩. ବ୍ରତତି ପାଦପ ଶ୍ରେଣୀ ପତ୍ରବିହୀନ ।
ନ ସହି ମହିଷ ଆତପ
୪! ଜମ୍ବାଳେ ଲୋଟନ୍ତି ନିଘ ନିଦାଘତାପ ।

(୧. ଧାନ)

(୨. ସୂର୍ଯ୍ୟ ୩. ଲତା ୪. ପଙ୍କ)

୫. ଧନଞ୍ଜୟ ଜନପଦେ ଖେଳଇ ଅତି ପ୍ରମୋଦେ
ଅଧିବାସୀ ଅତିଖେଦେ ନିନ୍ଦେ କରମ ।
ତୃଷାରେ ହୋଇ ଆକୁଳ ପ୍ରଦୋଷେ ଖୋଜନ୍ତି ଜଳ
ମୃଗ ଶୂକର ଶାର୍ଦ୍ଦୂଳ କରି ବିଭ୍ରମ ୬ ।
ଅକାଳ ରସାଳ ଫଳେ
ଜୀବନ ରଖନ୍ତି ଏହି ଗ୍ରୀଷମ କାଳେ ।
ନିରନ୍ନ ନଜର ଖର ଝାଳପୋଛୁ ଦିନସାର
ସ୍ୱକର୍ମେ ନିଯୁକ୍ତ ପରନ୍ତୁ ଝାଞ୍ଜିରେ ।
ଦାବାନଳେ ମ୍ରିୟମାଣ ବନ୍ୟଚର ଜନ୍ତୁଗଣ
ବିପନ୍ନ କୁଳୀର ମୀନ ବକ-ଧୀବରେ ।
୭. ଉଶୀର ୮. ପମର-ଚନ୍ଦନ,
କା ଭାଗ୍ୟେ ଘଟଇ ପୁଣି ଦେଖେ ନୟନ ।

*****

## ସଭ୍ୟତା

କାହିଁ ଅଛି ଏ ସଭ୍ୟତା ଦୂତ,
ହର ତେଜ-ଓଜ-ମାନ ମହତ ।
ତା ରୂପ ଦର୍ଶନେ ମାଡ଼ଇ ଡର,
ଭାବନା-ନିକଟ ହୁଏ ଅନ୍ତର ।
ସଭ୍ୟତା-ନାଗରୀ କରଇ ରଡ଼,
ଦଶନ ପଡ଼ଇ ଅକାଳେ ଝଡ଼ ।
ଶିକୁଳି ପକ୍ୱତା ଭଜେ ଅକାଳେ,
ଯେତୁ ନିବେଶିତ ସୁଗନ୍ଧ ତୈଳେ !
ଗୁଡ଼ ଦନ୍ତକାଷ୍ଠ ଦନ୍ତ ଘର୍ଷଣେ,
ଅପବ୍ୟୟ ଅର୍ଥ କୃତ୍ରିମ ଚୂର୍ଣ୍ଣେ ।
ଛାଡ଼ି ପଦଯାନ କୃତ୍ରିମ ଯାନ-
ଆରୋହୀ କରଇ ମୃତ୍ୟୁବରଣ ।
ଏହି କି ଅଟଇ ସଭ୍ୟତାଚିହ୍ନ,
ହାତେ ସିଗାରେଟ ବଦନେ ପାନ ।
ସଭ୍ୟତା କେତନ ଯହିଁ ଉଡ଼ଇ,
ସମର ହୁଙ୍କାର ତହିଁ ଶୁଭଇ ।
ନିଶ୍ଚୟ ମାନବ ଶମନାଳୟ,
ଅଜାଣତେ କରଥାନ୍ତି ଆଶ୍ରୟ ।

(୫. ଅଗ୍ନି ୬. ଭ୍ରମଣ ୭. ବେଣାଚେର ୮. ପଇଡ଼ ଜଳ)

ସହରରେ ପଶିଣ ସଭ୍ୟତା ରୋଗ,
କେତେ ଅସାଧୁତା କରଇ ସାଙ୍ଗ ।
ନର୍ଦ୍ଦମା ଅଟଇ ବ୍ୟାଧି ଆକର
ଯହିଁ ଅପରସ ମିହ୍ନର କର ।
ଇଷ୍ଟିର ବସନ ପରେ ଆଦର,
ମାସେ ବା ଦ୍ୱିମାସ ଆୟୁଷ୍ଟ ତାର ।
ହୋଟେଲ ଭୋଜନେ ଅନେଶ ମନ,
ରୋଗ ଆମନ୍ତ୍ରଣ ଅର୍ଥ ଦୋହଣ ।
କୁଳସୀମନ୍ତିନୀ ଦାଣ୍ଡରେ ଉଭା,
ମନଦେଖିବାକୁ ପୁରୁଷ ଶୋଭା ।
ଦେଖିଛ କି କାହିଁ ପଲ୍ଲୀ-ପଙ୍କାଳେ,
ମରଣ ଲଭେ କେ ପ୍ରସବ କାଳେ ।
କେବେ ଲେଉଟନ୍ତି ଭଟାମିନ୍କ,
ଯୌବନ ଭଲ କଥା ଭାଲଙ୍କି ।
ଦେଖ ଦେଖ ତାଙ୍କ ଦୃଢ ଶରୀର,
କର ସଭ୍ୟତାକୁ ଦୂରୁ ଜୁହାର ।
ଯେତିକ ସଭ୍ୟତା ଆସଇ ପଶି,
ଦରିଦ୍ରତା ରୋଗ ଦଅଇ ଗ୍ରାସି ।
ସୁବିଶାଳ ତନୁ ପୂର୍ବ ପୁରୁଷେ,
ସଭ୍ୟତା ନ ଥିଲା ଯେବେ ଏ ଦେଶେ ।
କେତେଗୁଣେ ତାଙ୍କଠାରୁ ଅଧିକ,
ଭାବି ଭାବି ହଜି ଗଲା ବିବେକ ।

*****

## ନିୟତିର ଭ୍ରୂକୁଟୀ

ସ୍ୱାର୍ଥର ଦୋକାନ ବସିଛି ଆଜି ହାଟ ବାଟରେ,
ନିରଙ୍କୁଶେ ଖେଳେ ମୃତ୍ୟୁ ଦେଖି ହୃଦୟ ଥରେ ।
ହାହାକାର ଉଡ଼ି ଶୁଭୁଛି ଅବିରତ ଜଗତେ,
ନୈରାଶ-ବିନାଶ ବଢୁଛି ଆହା ! ନିରତ ତତେ ।
ଜନକ ଜନନୀ ବଚନେ ଏଡ଼ି ଦେଉଛି ସୁତ,
ପୂର୍ବ ଗୁରୁଶିଷ୍ୟ ସମ୍ବନ୍ଧ ଏକାବେଳକେ ଲୁପ୍ତ ।
ଶିଖା କାଟିବାକୁ ତିଆରି ସାଉକାରକୁ ଚାର,
ନଉକରି ଏଣେ ଗୋପନେ କରି ଧର୍ମ ଅନ୍ତର ।
ଶାଶୂ ଶ୍ୱଶୁରଙ୍କୁ କେ ଅବା ପରିହାସେ ତତ୍ପର,
ସ୍ନେହ-ଭକ୍ତି-ଦୟା ପୀରତି ମନେ ନାହିଁ କାହାର ।
ହସି ଯାଉଛି କି ଜଗତୁ ପତିପତ୍ନୀ ସମ୍ବନ୍ଧ,
ଦିନୁଁ ଦିନ କାଳସ୍ରୋତରେ ଚିର ବନ୍ଧି ନିବନ୍ଧ ।
ହଣାହଣି କେତେ ଚଳାଛି ନିଜ ନିଜ ମଧ୍ୟରେ,
ନାସ୍ତିକତା ଭାବ ଖେଳାଛି ମାନବର ହୃଦରେ ।
ପୁରାଣ ଗାପୂଜ ଉଦ୍ଦେଶ୍ୟ କେବା ବୁଝୁଛି ଏବେ,
ନାସ୍ତିକତା ପଛେ ନ ଭାବ ଧାଉଁଛନ୍ତି ସଭିଏ ।
ଭାତୃହିଂସା ଗତି ପ୍ରବଳ ଏବେ ଦିନକୁ ଦିନ,
ଅଳ୍ପଡ଼ା ବର୍ଷା କରଇ କ୍ଷେତ୍ରୁଁ ଶସ୍ୟ ପ୍ଲାବନ ।
ଲଗି ରହିଅଛି ମଡ଼କ ମଣି ବୁଜନେ ଭରି,
ହୋଇ ସହୋଦର କାନ୍ତାର ଦହୁଅଛି ସଂସାର ।
ନାହାନ୍ତି ଅଶୋକ ଶଙ୍କର ବୁଦ୍ଧ ଚୈତନ୍ୟ ଆଜି,
ଆସ୍ତିକ ହୃଦୟେ ଅବନୀ ଉଠନ୍ତା ଗରଜି ।
ନିୟତି ସଙ୍ଗରେ ଲଢ଼ିବ ଅବା କେଉଁ ମନ୍ତ୍ରରେ,
ନିୟତି ଭ୍ରୂକୁଟୀ ଏ ପର ଉଦେ ହୁଏ ମନରେ ।

****

## ସ୍ତବ

କରୁଣାମୟ ଶ୍ରୀହରି ନଦାବନେଜ ମୁକ୍ତି-ଭଣ୍ଡାର
କରୁଣା-କଣା ନକର ଡାକେ ଆରତେ,
ସାଥି ଭବ-ପାରାବାରେ ପ୍ରକାଶ ଦିନ ତମିରେ
ବରଜ ବରଜ ହୃଦ ପଟେ ନିରନ୍ତେ,
ଦୁଃଖୀ ସିନା ବୁଝେ ମହିମା,
ପ୍ରାଣେ ଝୁରଇ ଯେବେ ଦୁଃଖ କାଳିମା !

ହସି ଉଠେ, ସରୋବରେ ତବ ମହିମା ପ୍ରଭାବେ
ନିଶାନ୍ତେ ନଳିନୀ ଲଭି ମିହିର ଦର୍ଶନ,
ପୁଣି ଶରଦ କୈରବ ଲଭେ କୁମୁଦ ବାନ୍ଧବ
ପ୍ରାବୃଟେ ଚାତକ କରେ ଘନ ବାରଷଣ,
ବସନ୍ତ ଆଗମେ କୋକିଳେ,
କୁହୁ କୁହୁ ତାନେ ବସି ରସାଳ ଡାଳେ ।

ଅଗ୍ରଜ ଅଜ୍ଞାରେ ଦୁଃଶା ହୃଦେ ଲଭି ତବ ଭୃଷା
ଦ୍ରୌପଦୀ ବସ୍ତ୍ରହରଣେ କଲା ପ୍ରୟାସ,
ଦୁଃଖିନୀ ବାଣୀ ଶ୍ରବଣେ ଶୂନ୍ୟ ପଡ଼ିଲା ତକ୍ଷଣେ
ଅସୀମ ନିର୍ଭେଳ ଶେଷେ ଦୁଃଶା ନିରାଶ,

ଦାରୁଣ ନକ୍ରର ମୁଖରୁ,
ମୁକତି ଲଭିଲା ପୁଣି ତବ କୃପାରୁ ।

ଫେଡ଼ି ତବ ପଦଧୂଳି ଅହଲ୍ୟା ଗଲା ମୁକୁଳି
ଧ୍ରୁବ ପ୍ରହ୍ଲାଦ ତାପ କଲ ମୋଚନ,
ପାଣ୍ଡବଙ୍କ ହୋଇ ସଖା ସକଳ ବିପଦୁଁ ରକ୍ଷା
କରିବାରୁ ହେଲ ତବ ସଙ୍କୀର୍ତ୍ତନ,
ସ୍ଥାବର ଜଙ୍ଗମ ସର୍ବେ,
କୃପା ବିହୁନେ ଲଭନ୍ତି ପ୍ରଳୟ ଜବେ ।

ଧରାପୃଷ୍ଠେ ଜୀବାବଳୀ ତରୁଲତା ଅଂଶୁମାଳୀ-
ଅଂଶୁମାଳ ତାରକା ପ୍ରକର ଆକାଶେ,
ଅଗଣିତ, ଅକଳ୍ପିତ; ତୁମ୍ଭର ମହିମା ତତ୍ତ୍ୱ
ତଥାପି ନ ଚିହ୍ନଇ ମାନବ ମାନସେ,
ଭଲ ଭଲ ବୁଦ୍ଧିକ ବେଢ଼ି,
କେତେ ଦିନ ରହିବ ଏ ନଯାଇ ଛାଡ଼ି ।

କୋଟି କୋଟି ତାରାଗଣ ଆଦିତ୍ୟ ତାରାରମଣ
କିଙ୍କର ପରାୟେ ସଦା ତୋ ପଦତଳେ,
ବେଳା ନ ଲଙ୍ଘେ ତା ତଟ ତବ ମହିମା ପ୍ରକଟ
ନଭେ, ସାଗରେ, ଭୂଧରେ, କନ୍ଦରେ ବନେ
କୃପା କର ଅଧମେ ଆଶୁ,
ସତ୍ତ୍ୱ ଗୁଣ ହୃଦୟେ ମୋ ସଦା ବରଷୁ ।



## ଅଶାନ୍ତି

ଜଗତର ବୋଲି ଯାହା ହୋଇଛନ୍ତି ସୃଜନ,
ନାହିଁ ତା ଶରୀର କେଉଁଭି ଶାନ୍ତି ନିକେତନ ।
ଅମରପୁରୀ ସମାନ ଯାହାଙ୍କ ନିବାସ,
ଯହିଁ କ୍ରୀଡ଼ନ୍ତି କମଳା ଶର୍ବରୀ ଦିବସ ।
ଶୟନେ, ସ୍ୱପନେ ଅବା ଜାଗରଣ କାଳେ,
ଘୂର୍ଣ୍ଣିବାୟୁ ସମ ଘୂରେ ମାନସ ଚଞ୍ଚଳେ ।
ଲକ୍ଷ୍ମୀହିଁ କେବଳ ତାଙ୍କ ବିଭୂତି ସମୀପେ,
ଅକୁଣ୍ଠିତେ ଚଣ୍ଡି ଥାନ୍ତି ଅଧମର୍ଣ୍ଣ ଆପେ ।
ମୁକୁଟଧାରୀ ଜୀବନ ପରରାଜ୍ୟ ଆଶ,
ତେଣୁ ଅବିରତ ଚିନ୍ତା ଅନଳେ ବିବଶ ।
କେହୁ ସୀମନ୍ତିନୀ ଏଣେ ସନ୍ତତି ବିହୁନେ,
ସନ୍ତାପିତା ନିରନ୍ତର ଆକୁଳ ନୟନେ ।
ଆଳୟେ ପ୍ରବେଶ ଯେବେ ମୃତ୍ୟୁଦେବଙ୍କ ଛବି,
ଗର୍ବ, ଦମ୍ଭ, ଅଭିମାନ ଯାଇଥାଏ ଲିଭି ।
ପ୍ରେମିକ ପ୍ରତିମା ନାରୀ ସଦା ପତି ପ୍ରାଣେ,
ଦାରୁଣ କଷଣ ଦିଏ, ସ୍ୱଭାବ ବିହୁନେ ।
ଚିର ଦୁଃଖୀ ଭବେ ସିନା କୁଟୁମ୍ବୀ କେବଳ,
ଅହରହ ଶୁଭୁଥାଏ ଅଶାନ୍ତିର ରୋଳ ।
ଅଶାନ୍ତି-କାରାରେ ସଦା କ୍ଷୁଧିତ ରଙ୍କୀଏ,
ପିଞ୍ଜରେ ଆବଦ୍ଧ ଶୁକ ଶାରୀକା ପରାୟେ ।
କୁପୁତ୍ର ଦିଅଇ ପ୍ରାଣେ ନିରତ ଯାତନା,
ନିର୍ଗୁଣୀ ହୁଅଇ ଯେବେ ସହୋଦରା-କନ୍ୟା ।
ରୋଗେ ପଡ଼ି ସଢ଼ୁଥାଏ ନିଭୃତେ ଜୀବନ,
ଦ୍ୱିଦାର ପରିଗ୍ରହରେ ତାପ ଅକଥନ ।
ଅନନ୍ତ କଳ୍ପନା-ରାଜ୍ୟେ ଭ୍ରମି ଅନୁକ୍ଷଣେ,
ଲଭିଛି କେ ଶାନ୍ତି କାହିଁ ଦେଖିଛ ଲୋଚନେ ।
କାହିଁ ଶାନ୍ତି ଏ ଜଗତେ ଦେଖିଛ କି ବୁଧେ ?
ଶାନ୍ତି ମିଳେ ଶାନ୍ତି ମିଳେ ବିଭୁଙ୍କ ସନ୍ନିଧେ ।



## ଶବର

ଦେଖି ଊଷା ଆଗମନ ହରଷେ ତେଜି ଶୟନ
ବନାଭିମୁଖେ ଗମନ ପାଇଁ ଶବର,
ଗୃହଶର ଧରି କରରେ ପ୍ରଣମି ଦେବୀ ପଦରେ
ବାହାରିଲା ତରତରେ ଦେଖି କୁମର,
ପେଟ ପାଇଁ ବୁଲି ବିକଳେ
ଉପଗତ ଶେଷେ ଶାଳ ବନ ଗହଳେ ।

ଦେଖି ଏକ ଶାଳ ଡାଳେ ଉପବିଷ୍ଟ ଶୁକ ଦଳେ
ଉଡ଼ିଗଲା ଚଞ୍ଚଳେ ବୃକ୍ଷ କୋଟର,
ଥାପି ତଳେ ଗୃହଶର ବୃକ୍ଷେ ଉଠିଲା ସତ୍ୱର
ଶୁକ ଦମ୍ପତି କାତର ଦେଖି ଶବର,
୧. ମେଧାବୀ ଶାବକ ଯୁଗଳ
ପାଇ କୋଟରୁ ଶବର ମୋଦେ ବହିଲା ।

( ୧. ଶୁକ )

ବୃକ୍ଷୁଁ ଅବରୋହି ଧୀରେ      ଫେରିଲେ ପିତାକୁମରେ
ଧରି ଶୁକ ଶିଶୁ ଘରେ; ଶୁକଦମ୍ପତି
କରି ଅତି ଉଚ୍ଚସ୍ୱର      ଗୋଡ଼ାଇଲେ ବହୁଦୂର
ଶେଷେ ନିରାଶେ ଫେରିଲେ ବିଧୁରି ଅତି,
ଦୁର୍ବଳର କେ ସାହା ଭବେ
କରମ ଆଦରି ସବୁ ସହିବ ନୀରବେ ।

***

## ପିଞ୍ଜରସ୍ଥ ଶୁକ

"ଦେଖେ ନାହିଁ ଜଣେ କେହି ଏହି ରସାତଳେ,
ପର ଆତ୍ମା ଚିହ୍ନିବାକୁ ଜୀବନରେ ଭାଳେ ।
ସ୍ୱାର୍ଥ ପଛେ ଧାଇଁଅଛି ମାନବ ସତତ,
କ୍ଷୁଦ୍ର ପ୍ରାଣୀ ସ୍ୱାଧୀନତା ବଳେ ଅପହୃତ ।
ଶୁଣିବାକୁ ମୋର ରବ ନୁହେ ମୁଁ କୋକିଳ,
ପିଞ୍ଜରରେ କଲୁ ମୋର ଜୀବନ ବିକଳ ।
ମାସେ ବା ବରଷେ ନୁହେ ପ୍ରାଣଥିବା ଯାଏ,
ରୁଦ୍ଧ ପିଞ୍ଜରରେ ଆହା ! ଜୀବନ କଟାଏ ।
ସୂଚିକ୍ୱଣ କାରାଗାର ଇଷ୍ଟକ ନିର୍ମିତ,
ଯଥାକାଳେ ମିଳେ ଯହିଁ ପେଟ ପୂରି ଭାତ ।
ତଥାପି ନିଃସ୍ୱଙ୍କୁ ନରୁଚଇ କାରବାସ,
ଛାଡ଼ି ପରିଜନ ଘରେ ଝୁରଇ ଅନଶ ।
ମାତୃସ୍ନେହ ଭରେ ସିନା ଅମୂଲ୍ୟ ରତନ,
ହରାଇ ଜନନୀ ବାଲ୍ୟେ ଦଗ୍ଧ ଶିଶୁପ୍ରାଣ ।
ନିଜ ନିଜ ମାତାସଙ୍ଗେ କେତେ ଶିଶୁ ପକ୍ଷୀ,
ଖଣ୍ଡିଉଡ଼ା ଶିଖୁଛନ୍ତି ସ୍ୱ ଆହାର ଭକ୍ଷି ।
ନ ଜାଣିଲି ମାତୃସ୍ନେହ ସ୍ୱାଧୀନ ବିହାର,
ପୂର୍ବକୃତ ପାପେ ବୃଥା ଜୀବନ ମୋହର ।
ପୂର୍ଣ୍ଣଗ୍ରାସେ ବନ୍ଧାଥିଲେ ନ କରେ କି ଧ୍ୱନି ?
ଫିଟାଇ ଦେବାକୁ ଗୋରୁ ବେଙ୍କୁ ଉଦ୍‌ବାହିନୀ ।
ମୂଢ଼ର କି ତୃପ୍ତ କେବେ ଲଭି ଘୃତାହାର ?
ନରପକ୍ଷେ ଆହାର ମୋ ଜାଣିବା ଦୁଷ୍କର ।
ନହୁଏ ହଜମ ଖାଦ୍ୟ ବିନା ପରିଶ୍ରମେ,
ପିଞ୍ଜରେ ମୋ ଦିନ ଯିବ ଲେଖା କି କରମେ ।
ଆହା ! କେତେ ବିହଙ୍ଗମେ ଉଷା ଆଗମନେ,
ମୋଦଭରେ ବନ୍ଦୁଛନ୍ତି ଭାସ୍କର ଚରଣେ ।
ସ୍ୱାଧୀନତା ସ୍ୱାଧୀନତା ଚଉଦିଗେ ଶୁଭେ,
ପକ୍ଷୀ ସ୍ୱାଧୀନତା ଥରେ ନ ଭାବେ କେ ଭବେ ।
ଭ୍ରମୁଛି ହରଷେ ଅଳି ପ୍ରତ୍ୟହ ସ୍ୱାଧୀନେ,
ମୋ ଦେଖା ବାରତା ଦେବୁ ମାତାକୁ କାନନେ ।
ମୋହପାଇଁ ଝୁରି ଝୁରି ଶୁଖିଥିବ ତନୁ,
ସନ୍ତତି ବିରହ କିଏ ପାଶୋରିବ ମନୁ ।
ଉଡ଼ୁଛନ୍ତି ବିହାୟସେ କେତେ ପକ୍ଷୀ ହର୍ଷେ,
ସ୍ୱାଧୀନ ବିହାରେ କା'ର ଆନନ୍ଦ ନ ଆସେ ?
ସ୍ୱାଧୀନ ହେବାକୁ କା'ର ନ ବଢ଼େ ଲାଳସା ?
ଆମରଣ ଭୋଗେ କପାଁ ପିଞ୍ଜରେ ଏ ଦଶା ।
ଖେଳିବାକୁ ଶିଶୁଗଣ ନୁହେ ମୁଁ ଖେଳନା,
ଜଣକର ଆମୋଦ ହିଁ ଅନ୍ୟର ଯାତନା ।
ଅମୃତ ସୃଷ୍ଟିରେ ଏ କି କର୍ମ ଅବହିତ !
ନାହିଁ କି ହେ ପ୍ରଭୁ ଏଥି କିଛି ପ୍ରାୟଶ୍ଚିତ୍ତ !
କଳୁଷେ ମାନବ ଜନ୍ମ ନ ହେଉ ଅସାର,
ନହୁଅ ମଉନ ଶୁଣି ଦୁର୍ବଳ ଚିତ୍କାର ।
ଅପରର ଧନ ପ୍ରତି ନ ବଢ଼ୁ ଲାଳସା,
ଦରିଦ୍ର ଶୋଣିତେ କଦା ନ ମେଣ୍ଟୁ ପିପାସା" ।

***

## ଓଡ଼ିଆ ପୁଅ

ଉଠରେ ଉଠରେ ଓଡ଼ିଏ ଉଠ,
ବେଳତ ଯାଉଛି ନ କର ମଠ,
କେତେ ଦିନ ଆଉ ଭୋକ ଉପାସେ,
ପେଟର ଖଟିବ ଦେଶ ବିଦେଶେ,
ଦେଖି ଦୁରଦଶା ଏହି
ସମ୍ମାନ ପାଇବ      କିଏ ଏ ଉତ୍କଳେ
ନୟନୁ ନୀର ନ ବହି ।
କାହିଁ ବା ଉତ୍ତରେ କାହିଁ ଦକ୍ଷିଣେ
ପେଟ ବିଖଣ୍ଡିକ ପାଇଁ କଷଣେ,
ଖଟି ଦିବା ନିଶି ଓଡ଼ିଆ କୁଲି,
ଶେଷରେ ବୋଲଏ ଅତି କାଙ୍ଗାଳି,
ଶୁଣି ଏ କଟୁ ବଚନ

କର୍ମଫଳ ବୋଲି ଭାବନ୍ଦଏ ସିନା
ନୁହେଁ କି ଶ୍ରେଷ୍ଠ ମରଣ ।
ଉତ୍କଳ ଗରଭେ ଜନମ ହୋଇ,
କୁଳ ଗଉରବ ଦେଲ ଜଳାଞ୍ଜଳି,
ଲଜ୍ଜା ଅପମାନେ ମୁଣ୍ଡ ନୁଆଇଁ,
ପରତୋଷୀ ଗଞ୍ଜଣା ଖଟିଲ ସହି,
ଯାଦବେଶ ଚନ୍ଦ୍ରଶେଖର
ଜନମି ସାଧିଲେ ବିନା ଯନ୍ତ୍ର ଗ୍ରହ
ଜଗତେ ହେଲେ ଅମର ।
କଳା ଚିତ୍ରଣରେ ଭରି ଏ ଦେଶ,
କୋଣାର୍କ ଦେଉଳ ବାର ବରଷ,
ଲଗି ନିର୍ମାଇଲେ ବର୍ଦ୍ଧକୀକୁଳ,
ଭବେ ଅନୁପମ ଯାହାର ଚୂଳ,
ଯହିଁ ନୀଳାଚଳ ସାଇଁ,
କୋଟି କୋଟି ଯାତ୍ରୀ ଦୂର ବିଦେଶରୁ
ଆସନ୍ତି ଦର୍ଶନ ପାଇଁ ।
କାନ୍ତିମାଳା ରାଜେ ଭୁବନେଶ୍ୱରେ,
ମନ ଲାଗିଥାଏ ଦେଖିଲେ ଥରେ,
ଓଡ଼ିଆ ପାଇକେ ଲଢ଼ି ସମରେ,
ଟେକି ରଖିଥିଲେ ରଣ ଭୂମିରେ,
ନୁହେଁକି ଓଡ଼ିଆ ବୀର ?
ନାବିକ ବର୍ଦ୍ଧନ ତରଣୀଟି ସିନା
ଦୋଳିଥାଏ ଥର ଥର ।
ଅକ୍ଷୁର୍ଣ୍ଣ ମର୍ଯ୍ୟାଦା ରଖି ରାଜନେ,
ସିଦ୍ଧହସ୍ତ ଏଣେ ରାଜ୍ୟ ଶାସନେ,
କିଏ ନ ଜାଣଇ ଓଡ଼ିଆ କବି,
ଯା ମର୍ମରେ ଯାଏ ହୃଦୟ ଦ୍ରବି,
ଅଛି କି ତା ପଟାନ୍ତର ?
ଭାବିଛ କି ଥରେ କରିବାକୁ ସେବା
ତବ ଉତ୍କଳ ମାତାର ।
କବି ଯଦୁମଣି, ଉପେନ୍ଦ୍ର ଭଞ୍ଜ
ଗଢ଼ିଛନ୍ତି ଯେଉଁ କବିତା-କୁଞ୍ଜ,
ଅକ୍ଷୟ ରତନ ଜ୍ଞାନ ଭଣ୍ଡାରେ,
ଥିବ ଚିରକାଳ ସ୍ମୃତି ପଥରେ,
ଯହିଁ କବି ଗୋପବନ୍ଧୁ
ଆଜୀବନ ପଣ ତାରିବାକୁ ପୁଣି
ଓଡ଼ିଆଙ୍କୁ ଦୁଃଖସିନ୍ଧୁ ।
କେତେ ସଜାଇଛି ପ୍ରକୃତି ରାଣୀ,
ଦେଖଣାହାରୀଙ୍କ ଦୁଃଖ ହାରିଣୀ,
ପାଇଛୁ କି କରି କେ ତା କଳନା,
ମାନସେ ଥରେ କି କର ଭାବନା ?
ନୀଳାମ୍ବୁ ଚିଲିକା କୂଳେ
ସମ୍ପଦ କୁସୁମ ଢାଳଇ ଦିଅନ୍ତି
ସତେ ଲକ୍ଷ୍ମୀ ତବ ଗଳେ ।
ଆହା ! ସ୍ୱର୍ଣ୍ଣପ୍ରସୂ ଉତ୍କଳ ମାତା
ଦେଖୁନାହଁ କେତେ ଅବହେଳିତା,
ମାତା ସେବା ଠାରୁ ବଳି ଧରମ,
କିଛି ନାହିଁ ଜବ ଲୋକେ କରମ,
ମନେ ରଖି ଆପ୍ତ ବାଣୀ
ପ୍ରସାଦନେ ଫେଡ଼ ଉତ୍କଳ ମାତାର
ଭକ୍ତ ଭରେ ଯୋଡ଼ି ପାଣି ।

***

## ଶୋକ

କେତେ ମୋ କୋଳରୁ ଚାଲିଗଲେ ଧୀରେ
କା ପାଇଁ କାନ୍ଦିବି ଅବା,
କୋଟିକେ ଗୋଟିଏ ଦେଖୁନାହିଁ ଏବେ
କରିବାକୁ ମୋର ସେବା ।
ଡାକ ଡାକ ମୋର ଗଲା ବସିଲାଣି
ନ ପଡ଼େ ଶ୍ରବଣେ କା'ର,
ବିପଦ ସାଗରୁ ତାରିବାକୁ ମୋତେ
ନାହାନ୍ତି କେ କର୍ଣ୍ଣଧାର ।
ବଞ୍ଚାଇଲି ପ୍ରାଣେ ଯୋଗାଇ ଆଧାର
ସହି ନାନା କ୍ଳେଶ ଦୁଃଖ,
ବଢ଼ାଇ ଆଦରେ ପଢ଼ାଇଲି ପାଠ
ନ ଶୁଣେ ଏବେ କେ ଡାକ ।
ଲେଖି ଯାଇଛନ୍ତି ଗୁରୁଜନ ଗଣ
"ଜନନୀ ସେବାହିଁ ବଡ଼",

କିଏ ନ ଜାଣଇ ସେଦିନ ବାଡ଼ଇ
ଗୋଦାବରୀକୁ ଯେତେ କୋଡ଼ ।
ଉନ୍ମୀଳିତ ନେତ୍ରେ ଦେଖ ଚତୁର୍ଦ୍ଦିଗେ
ସ୍ରୋତବେଣୀଏ ଆବେଗେ,
ଦିବା କିବା ରାତି ଖଟିବାରୁ ଜଳେ
ଉଠୁଛି ଜନମା ରଙ୍ଗେ ।
ମୋ ଗର୍ଭରୁ ଜାତ କୁମର ଯେତେକ
ଚିତ୍ରରୁଣୀ ମୋ କୁହରେ,
ମୋ ଅଙ୍ଗ ଅପାଙ୍ଗ ଦେଖି ନିରେଖି
ରହୁଛନ୍ତି ମାରିବାରେ ।
ପୂର୍ବଠାରୁ ବଳ ପାଇଥିଲି ଯେବେ
ଫୁଲିଥିଲା ମୋର ଅଙ୍ଗ,
ନିଜପେଟ ଚିହ୍ନା ପାଠୁଆ କି ଏବେ
ଜାଣି ସହୁଛନ୍ତି ବ୍ୟଙ୍ଗ ।
ଜାଗରେ ଜାଗରେ ମୋ କୋଳ କୁମରେ
ତେଜି ଆଳସ୍ୟ ଚଞ୍ଚଳ,
ଅରଣ୍ୟ ରୋଦନ ପରାପ୍ତେ ନ ହେଉ
ମୋର କ୍ରନ୍ଦନ ବିଫଳ ।

***

## ମହାଜନ

ବିଦଳିତ ଯା'ର ପଦେ ହେଲା ଅହଂକାର,
ପର ଦୁଃଖ ଦେଖି ଯେହୁ ସତତ ବିଧୁର ।
ଭ୍ରାତୃଭାବ ବନ୍ଧନେ ପରସେବା ବ୍ରତ,
ବିନମ୍ର ବଚନେ ସଦା ହରେ ଜନମତ ।
ସମ୍ପଦ ବା ବିପଦରେ ସମଭାବାପନ୍ନ,
ଆତିଥ୍ୟ-ସତ୍କାରେ ଆଜୀବନ ଯତ୍ନବାନ ।
ପର ସ୍ତ୍ରୀ ଦର୍ଶନେ ନିଜ ମାତୃତୁଲ୍ୟ ଭକ୍ତି,
ଅପର ସନ୍ତତି ପ୍ରତି ଥାଏ ଅନୁରକ୍ତି ।
ପରିହାସ ଛଳେ କେଭେ ନ ଦିଏ ପ୍ରଶ୍ରୟ,
ଅନୃତ ଯେ ହେତୁ ହୃଦ ସଦା ପାପମୟ ।
ତୃଣପରି ମଣିଥାଏ ଏ ମାୟା ସଂସାର,
ଆଳସ୍ୟ ବା ବିଳାସର ନ ଛୁଏଁ ନିକର ।
ଜଗତ ମଙ୍ଗଳ ଅର୍ଥେ ସର୍ବଦା ଭାବୁକ,
ଆତ୍ମବଳୀ ଦେବାପାଇଁ ନୁହେଁ ପରାଙ୍ମୁଖ ।
ପୁଲକିତ ପ୍ରାଣେ କର୍ମେ ରତ ଆଜୀବନ,
ନିଷ୍କାମ ହୃଦୟେ ଚିନ୍ତେ ପ୍ରଭୁ ଅନୁକ୍ଷଣ ।
ସାର୍ଥକ ଜୀବନ ତାର ସେହି ମହାଜନ,
କାଳେ କାଳେ ପୂଜ୍ୟ ସେ ବା ଲଭିଲେ ମରଣ ।
ଅବତରି ରାଜବଂଶେ ତେଜି ରାଜଗାଦି,
ପ୍ରପଞ୍ଚ ବନ୍ଧନ ମନ-କୁଠାରରେ ଛେଦି ।
ନିଦ୍ରାଦେବୀ ଅଙ୍କେ ଘୋର ତାମସୀରେ ତେଜି,
ବାହାରିଲେ ଶାକ୍ୟସିଂହ ମୁକ୍ତିମାର୍ଗ ଖୋଜି ।
କେ ନଗରେ ଖ୍ୟାତ ଦେଖି ରାଜ ବିଳାସିକା,
କେ ବା ବାହାରେ ନିର୍ଜନ ନିଶୀଥରେ ଏକା ?
କୁହରିତ ଧରାପୃଷ୍ଠ ବୃକ୍ଷେ କଉଶିକେ,
ଯୁବକ ବୈରାଗୀ ବେଶେ ଗମନ୍ତି ନିଃଶଙ୍କେ ।
ଗନ୍ତବ୍ୟ ପଥରେ ଯେତେ ହିଂସ୍ର ଜନ୍ତୁଗଣ,
ବାଟ ଛାଡ଼ି ଦେଉଛନ୍ତି ନ କରି ଦଂଶନ ।
ଶକ୍ତି କା'ରି ଅଛି ଭବେ ରୋଧିବାକୁ ପଥ,
ପ୍ରଭୁଚରଣ ଦର୍ଶନେ ଧାଇଁଛି ଯା ଚିତ୍ତ ।
ଶିହରିତ ପ୍ରାଚୀ ଆଶା ଉଷା ଆଗମନେ,
ହସୁଅଛି ବନସ୍ଥଳୀ କାକଳୀ-ନିଃସ୍ୱନେ ।
ନାହିଁ ମନ କେଉଁଥିରେ ଏକାଗ୍ର ମାନସେ,
ପ୍ରବେଶିଲେ ଶାକ୍ୟସିଂହ ବନେ ପରିଶେଷେ ।
ପରମାତ୍ମା ଦରଶନ ଲଭି ତପସ୍ୟାରେ,
ଅହିଂସା ପ୍ରଚାର କଲେ ଭାରତ ସଂସାରେ ।
କଠୋର ସାଧନା ଭାଇ, ନ ହୁଏ ବିଫଳ,
ଦିଅନ୍ତି ଦର୍ଶନ ପ୍ରଭୁ ଭକ୍ତେ ଅବିରଳ ।

***

## ପରିଶ୍ରମ

ପ୍ରବାହ ପରାଏ ଧାବମାନ ଖରେ
ମାନବ ଜୀବନ ଭବେ,
୧. ଅନସୂୟ କର୍ମେ ଅବିଶ୍ରାନ୍ତ ମୂଢ଼
ଲାଗିପଡ଼ି ଶ୍ରମୀ ଜବେ ।

---

( ୧. ନିଦ୍ରାଶୂନ୍ୟ )

କର୍ମେ ରତ ଥିଲେ    କୁପ୍ରବୃତ୍ତିଚୟ
ପଶି ନପାରନ୍ତି କେଭେ ।
ଯହିଁ ବୃହିଁ ତହିଁ    ଅନଳସ ନର
ମଥା ଟେକେ ସଦା ଛତ ।
ଆଳସ୍ୟ ସେବକ    ଭବେ ବୁଭୁକ୍ଷିତ
ଦୃଶ୍ୟମାନ ନିରନ୍ତର,
ବ୍ୟାଧି-ନିକେତନ    ସତତ ଶରୀର
ପରିଶ୍ରମେ ଯେ କାତର ।
ସରେ ନଦୀ ବାଲି    ଆଳସ୍ୟ ସ୍ରୋତରେ
ବନ୍ଧହରନ୍ତି ଯେଉଁ ନରେ,
ଦେଶର ଉନ୍ନତି    ଜାତିର ଗୌରବ
ବଦଳିତ ତା ହୃଦରେ ।
ମଧୁକର ଉଇ    ପିମ୍ପୁଡ଼ିକା ଶ୍ରେଣୀ
ବାୟୁ ବିହଙ୍ଗ ଅନେକ,
ସୁଖ ଉପଭୋଗ    କରନ୍ତି ଜୀବନେ
ନୋହି କର୍ମେ ଅନଳସ ।
ସ୍ୱକର୍ମ ସାଧନ    ମାନବ ଧରମ
କର୍ମମୟ ଏ ଜୀବନ,
ବୃଥା ପାଣିକର    ବସିଲେ ନମିଳେ
ଲକ୍ଷ୍ମୀଙ୍କର ଆଲିଙ୍ଗନ ।
ଦେଖିଛକି କାହିଁ    ବୃକ୍ଷମୂଳ ଶୁଷ୍କ
ଦିଅ ଯେତେ ନିତ୍ୟ ଜଳ,
ମନ ରଖ ଭାଇ    ଓଦା ରହିଥାଏ
ସଦା ପରିଶ୍ରମ ମୂଳ ।
ସ୍ୱକର୍ମ ସାଧନେ    ଇତର ପ୍ରାଣୀଏ
ଅବିରତ ତତପର,
ଅର୍ବାଚୀନ କିନ୍ତୁ    ମାନବ କ୍ଷେତ୍ରରେ
ହେବା ଆଳସ୍ୟ କିଙ୍କର ।

***

## ଉପେନ୍ଦ୍ର ଭଞ୍ଜ

ଘେନ ନମ୍ର ପ୍ରଣତି    ହେ ଭଞ୍ଜ ନୃପତି
ଉପେନ୍ଦ୍ର କବି ପତି,
କବିତା-କୁସୁମ    ଯା ଗୁନ୍ଥିଲ ବସି
ଅଛି କି ତା ପଟାନ୍ତର ?
ଉତ୍କଳର ସୁଧୀ    ସାହିତ୍ୟ ପ୍ରେମିକେ
କରୁଥିବେ ଗଳମାଳ,
ସାହିତ୍ୟ ଆକାଶେ    ଜ୍ୟୋତିଷ୍କ ପରାୟେ
ରାଜୁଥିବ ଚିରକାଳ ।
ରାଜକୁଳେ ବଡ଼    ବଳିସକୁ ଦଳି
ଯୋଗ୍ୟ ବାଣୀ ଉପହାର,
ହେଛି ଅମରତ୍ୱ    ଲଭିଛ ଜଗତେ
ଧନ୍ୟ ଉତ୍କଳ କୁମର ।
ସାଧନା ବୃକ୍ଷର    ଭାଷାର ମାଧୁରୀ
ନହୁଏ ଉତ୍କଳ ପ୍ରାଣ,
ଧରିତବ ନାମ    ଓଡ଼ିଆ ଗୌରବ
କେବେ କି ହେବ ମଳିନ ?

***

## ନଶ୍ୱରତା

ଉଡ଼ୁଛି କି କାହିଁ ତୋ କେଶ କୁଞ୍ଚିତ ?
ସୁଗନ୍ଧ ତଇଲେ ସଦା ଯା ଲେପିତ ।
ଟାଉଡ଼ର ବୋଲି ତୋ ଚନ୍ଦ୍ର ବଦନ,
ଆଜି ପିତୁଳକେ ଲଭିଛୁ ମଳିନ ।
ଚିକୁର ଡ଼ାଳମ୍ବ ମଞ୍ଜୁଳ ଦଶନ,
ଝଡ଼ଇ ଦେଉଇଁ ପଥର ଯେସନ ।
ବାନ୍ଧବକେ କହୁ କେତେ ନିଶ ମୋଡ଼ି,
ହାତେ ନ ଥିଲେ ହେଁ କଡ଼ାଏ କଉଡ଼ି ।
ତୋ ଗୁଣେ ଉରଜ ପ୍ରତିବେଶୀ ଲୋକ,
ଜାଣି ଏ କାଳକୁ କଣ୍ଟିତ ମାତର ।
ଧନେ ଭୋଳ ହୋଇ ପରର କାମିନୀ,
ହରିବାକୁ ଭାଳୁ ଦିବସ ରଜନୀ ।
କି ଗୃହ ସଉଧ କି କୁଟୀର ପର୍ଣ୍ଣ,
କାଳ ବାତ୍ୟା ବନ୍ଧ ଭଙ୍ଗେ ସବୁ ଲୀନ !
କେତେ ଆଶାକୁଞ୍ଜ ଗଢ଼ିଛୁ ଜୀବନେ,
ନିମିଷେ ମିଶିଛି ଅନନ୍ତ ଗଗନେ ।
ବାଢ଼ିବାକୁ ମନ ସୌନ୍ଦର୍ଯ୍ୟ ପସରା,
ନ ଭାବୁ ଭଲେହେଁ କ୍ଷଣସ୍ଥାୟୀ ଧରା ।

ସ୍ୱପ୍ନେ ଭାବୁଛୁ ଯେତେ ଯେତେ କଥା
ଦିବାସ୍ୱପ୍ନ ପରି ହୁଅଇଟି ବୃଥା ।
ସୁଗନ୍ଧିର ପକ୍ୱ ଫଳଟି ଆଦରେ,
ଧରୁ ଯା କାଳକ ଫୋପାଡ଼ୁଛୁ ଦୂରେ ।
ସୁଗନ୍ଧ ଚନ୍ଦନ ଆଜର ସୁମନ,
ଦେଖାଇ ଦିଅଇ ନଶ୍ୱରତା ଚିହ୍ନ ।
ଭବର ଭଙ୍ଗୁର ଲୀଳା ଏହିପରି,
ଅଧମ ମାନବ ଦେଉଛୁ ପାସୋରି ।
ଏପରି ଘଟଣା ଦେଖି ଶତ ଶତ,
ତଥାପି କପଟେ ଭୁଲୁଛୁ ଶାଶ୍ୱତ ।

***

## ଶ୍ମଶାନ

ଏହିକି ! ସେ ଶ୍ମଶାନ ଭୂମି ଯାର କ୍ରୋଡ଼େ ଶତ,
ଶତ ନରନାରୀ ପୁଣି ଜଳରେ ଶାୟିତ ।
କୋମଳ କୁଞ୍ଚିତ କେଶ ଉଡ଼େ ଫର ଫର,
ମଳିନ କୁତ୍ସିତ ଜ୍ୟୋତି ରମ୍ୟ ଅଧରର ।
କି ବିକଟ ଦିଶୁଅଛି ନୟନ ଯୁଗଳ,
ଯେ ପୁଣି କବିଙ୍କ ଥିଲା ଉପମାର ସ୍ଥଳ ।
ପଡ଼ିଛି ଭୂତଳେ ଦନ୍ତ ଶୋଭାମୟ ମଞ୍ଜୁଳ,
ଭ୍ରମୁଛନ୍ତି ଚଉପାଶେ ଶ୍ୱାନ ଶିବାକୁଳ ।
ଭୁଲ ନାହିଁ କବି ଯାକୁ ଦେବାକୁ ଉପମା,
କେବଳ ଉଚ୍ଛିଷ୍ଟ କାଳକଣ୍ଠ ଛଡ଼ାଏ ବଡ଼ିମା ।
ଭେଦାଭେଦ ଭାବ ନାହିଁ ଏ ମଶାଣ ଭୂମେ,
ମୁଖରିତ ସଦା ଯହିଁ ଶିବାଙ୍କ ନିଃସ୍ୱନେ ।
କହେ ଯହିଁ କାଳ ବସି ଅଟେ ପ୍ରବଞ୍ଚକ,
କେମନ୍ତ ଶୋଭାମୟ ଏ କି କାଳ ଯାକ ?
କାହିଁ ସେ ରସିକ ଏବେ ପଡ଼ନ୍ତା ନୟନ,
ଆଲିଙ୍ଗନ ଧ୍ୟାନ ଯାଇ ଗଣିକା ଚରଣ ।
ଡାକ ଡାକ ମହାଶୟ ବାରେ ଦରଶନ,
କରି ଏ ମଶାଣ ଭୂମି ଲଭ୍ୟ ଅବ୍ୟଞ୍ଜନ ।
ନିଗୂଢ଼ ଖାତକ ଶୋଣିତ ସ୍ୱାଉକାର ଦଳ,
ଲଭୁଥିଲେ ସୁଖ, ଏଥି ସାଧୁନି ପତଳ ୧. ।

( ୧. ପରିଚ୍ଛଦ )

ଲଗାଇ କଳଙ୍କ ଯେ ବା ଗ୍ରନ୍ଥ ଥିଲେ ଅର୍ଥ,
ଏ ଶ୍ମଶାନ ଭୂମେ ତାର ମନୋରଥ ବ୍ୟର୍ଥ ।
ଜ୍ୟୋତିଷୀ, ଭିକ୍ଷୁକରେ ରାଜା ଅବା ରଙ୍କୀ,
ଆଚଣ୍ଡାଳ, ବୁଧ, ମୂର୍ଖ, ଅତଙ୍କୀ, ଦୁଃଖୀ ।
କପଟୀ, ନିର୍ଧନ, ଧନୀ, ସାଧୁ, ଭଗବତପ୍ରୀ,
ପ୍ରବଳ, ଦୁର୍ବଳ, ଏକ ସଙ୍ଗେ ଭୂମିଶାୟୀ ।
ନୋହି ଏ ନାହିଁ ଭୁଞ୍ଜନ୍ତି ପର୍ଯ୍ୟଙ୍କ ଆସନ,
ସମଭାବେ ଦେଖୁଛନ୍ତି ଯହିଁ ପଞ୍ଚାନନ ।
ଭବର ଭଙ୍ଗୁର ଲୀଳା ଦେଖି ଅହରହ,
ତଥାପି ନ ଛୁଟେ ନର ସଂସାରେ ମୋହ ।

***

## ବର୍ଷା ମଙ୍ଗଳ

କରି ଧରା ପରିବେଶ ୧. ନିଦାଘ ହୋଇଲା ଶେଷ
୨. ବ୍ୟୋମପଥେ ମେଘମାଳ କଲେ ପ୍ରବେଶ,
ପରିତପ୍ତ କରି ରିଡ଼ି ବରଷା ଆସଇ ମାଡ଼ି
ଧରିବ ବସୁମତୀ ନୂତନ ବେଶ
ଦୁଃଖ ମଧ୍ୟ ସୁଖ ନିହିତ
ହସାଇବା, କନ୍ଦାଇବା ବିଧି ବିହିତ ।
୩. ସାଗରେ ହରିଷେ ଭରି ଦେଇଣ ବରଷାନୀର
କମ୍ପଇ ଧରଣୀ ଦରଦୁର ରବରେ,
୪. କେକାବଳ ଶିଖାଟେକ ଉଲ୍ଲାସେ ଜଳଦ ଦେଖି
କେକାରବେ ନାଚେ ଏବେ ଗିରି ଦେଶରେ,
ବଣଧର ଲୁଚିଲେ ଭୟେ
୫. ବୃଷଦଂଶ ଦର୍ଶନେ ଇନ୍ଦୁର ପଳାୟେ ।
ବସୁମତୀ ସୁଶ୍ୟାମଳା ଖେଳଇ ଘନେ ଚପଳା
କେଦାର, ସରସୀ, ପାଟ ପୟରେ ଭରି,
ଶସ୍ୟରୂପ ଶୋଭେ ନାକ ୬. ବାଟ ଘାଟ ପୂରିଲେକି
ବଚନ ଦୁଃଖୀଏ ଦେଖି ବର୍ଷାଧାରା,
ପ୍ରଭଞ୍ଜନ ଦେଖାଏ ବଳ
ପୁଲକେ ବିହ୍ୱଳ ଜଳଚରେ ସକଳ ।

୧. ପଙ୍କର ୨. ଆକାଶ ୩. ବୃଶ୍ଚିକ
୪. ମୟୂର ୫. ବିରାଡ଼ି ୬. ଆକାଶ

୧. ବିଭାବସୁ ଉଷ୍ଣଦୀପ୍ତ ୨. ନିର୍ଦ୍ଧୂତ ବ୍ୟୋମ ଦେଶ
ତାମସୀ ଛାୟା ଘୋଟିଛି ଚଉଦିଗରେ,
ବାରିବାହ ବର୍ଷିବାର — ହଅଇ ସନ୍ତାପ ହର
ବାରି ବିନା କେ ବଞ୍ଚିଛି କହ ସଂସାରେ,
ଅନ୍ତ ମୋଦଭରେ କାମର ୩.
ବିଧୁ ପ୍ରକାଶ ଦର୍ଶନେ ଯଥା ଚକୋର ।
ବେଳେ ବେଳେ ବଜ୍ରନାଦ — ଚମକାଏ ପ୍ରାଣୀହୃଦ
ବର୍ଷାଧିବା ସହ କେବେ ଖସେ କରକା,
କାଦମ୍ବିନୀ ଅନ୍ତରାଳେ — ଲୁଚିଲେ ଇନ୍ଦୁ ଏକାକେ
ବିରହ ବାଧାରେ ସଙ୍ଗଗଲେ ତାରକା,
ସେତେ କି ସହିଭ ଉତ୍କଟେ
କ୍ଷଣପ୍ରଭା ସମ ମିଳଣ ପ୍ରିୟ ନିକଟେ ।
କଦମ୍ବ ମୋ, ମାଲତୀ — ଫୁଟି ଦିଗନ୍ତ ଶୋଭାଅତି
ଶୁଭଇ ଗୀତ ଲହରୀ ବୃନ୍ଦୀର ଏବେ,
ନର୍ତ୍ତକୀ କଳନାଦେ — ବଜାଇ ଶଙ୍କ ପଦେ
ମୋଦ ଭରେ ବଣକୁଞ୍ଜ ଡାହୁକ ରବେ,
ଧନ୍ୟ ପ୍ରଭୁ ତବ ବିଧାନ
ତୋ ଅଧମ ସୁତେ ଦିଅ ତବ ଶରଣ ।

***

## ସମୁଦ୍ର ପ୍ରତି

କେତେ ଥର ଯାଇଛି ଦେଖି ତୋ ତଟେ,
ଲଭିଛି ତୋ ଶୋଭା ମୋ ନୟନ ପଟେ ।
କ୍ଷଣେ ଉଠଇ ଊର୍ମି ପଡ଼ଇ କ୍ଷଣେ,
ଜଣାଉ ସମଦଶା ମାନବ ପ୍ରାଣେ ।
କେତେ ମୂଲ୍ୟ ରତ୍ନ ତୋ ବକ୍ଷଦେଶେ,
ମହତ ଗୁଣ ସିନା ତୋର ବିକାଶେ ।
ପାନ୍ଥ ସହିତ ବହୁଦୂରୁ ଆସଇ,
ତେଜଇ ପଥଶ୍ରମ ଦର୍ଶନ ପାଇ ।
ସାଦର ଅଭ୍ୟର୍ଥନା ଗାଇ ସତେ,
ଭକ୍ତି ଗଦ୍‌ଗଦ ଚିତ୍ତେ ପଦଧଉତ ।
ଅନନ୍ତ ତୋ ବିସ୍ତାର ଅନନ୍ତ ବାରି,
ଅତୁଳ କୀର୍ତ୍ତି ପୂର୍ଣ୍ଣ ରତନ ଭରି ।
ବୃକ୍ଷଲତା ନିକର, ପଶୁବିହଙ୍ଗ,
ମାନବ, ଜଳଚର, ତୃଣ ପତଙ୍ଗ, ।
ପାଉଛନ୍ତି କିଏ ତୋ ଅମୃତ ଦାନ,
ମରୁଭୂମି ତୋ ବିନା ଭବ ସୃଜନ ।
ବେଦପୁରାଣେ ଉକ୍ତ ସତ୍ୟ ମହିମା,
ଦେଖାଉ ତୁ ପ୍ରତ୍ୟକ୍ଷେ ନ ଲଙ୍ଘି ସୀମା ।
ବର୍ଷାକାଳେ ନଦୀ ସମୀପେ ଆସି,
ଢାଳଇ ହୃଦୟରେ ତା ଜଳରାଶି ।
ମାତ୍ର ଉଦଧି ତୁହି ଗର୍ବେ ନ ଫୁଲି,
ଜଣାଉ ମାନବଙ୍କୁ ଏ ତୁଚ୍ଛ ବୋଲି ।
ପୌର୍ଣ୍ଣମାସୀ ନିଶିରେ ଦେଖି ଶଶୀଙ୍କି,
ଉଲ୍ଲାସେ ତୋ ପରାଣ ନାଚେ ନାହିଁ କି ?
ମାତ୍ର ଉଠଇ ଦେଶ [illegible] ବିଭବ,
ବାଣିଜ୍ୟରେ, ତୋ ବିନା ଏ ଅସମ୍ଭବ ।
ମହନ୍ତ ଜନ ଲଭି ତୋହରି ଦର୍ଶନ,
ମହତ ଗୁଣ ମୋଦେ କରେ ଗ୍ରହଣ ।
ଅଚଳକୀର୍ତ୍ତି କାହିଁ ସ୍ମରେ ମାନବ,
ପର ଉପକାରିତା କାହୁଁ ବୁଝିବ ।

***

## ଦୂତ

କେଉଁ ରାଜ୍ୟରୁ — ଆସିଛ ହେ ଦୂତ
ମୋ ଆଗେ ଫେଡ଼ିଣ କହ,
ଶୁଭ କି ଅଶୁଭ — ଆଣିଛ ସନ୍ଦେଶ
ମନେ ନଉଠି ସନ୍ଦେହ ।
ତବ ଦରଶନେ — ମୋ ଅନ୍ତର ଦେଶ
କମ୍ପଇ କମ୍ପା ସଘନେ,
ନ ଜାଣେ ମୁଁ ଏଥି — କାରଣ ବିଶେଷ
ପଡ଼ି ଏ ମୋହ ବନ୍ଧନେ ।
ପଡ଼ିଲି ଯେବେ — ଆଗମନ ହେତୁ
କମ୍ପୁଛି ନିର୍ଭୟେ ଏବେ
ପ୍ରଭୁଙ୍କ ଆଦେଶ — ଅଳ୍ପ ଦିନେ ଭବୁ
ଫେରିବ ନ ରହି ଲବେ ।
ଫୁଲଡିଆ ବୋଲି — ବୋଲୁଛି ଯାହାକୁ
ସେତ ଫୁଲଶା ନୁହଇ,

---

୧. ସୂର୍ଯ୍ୟ ୨. ଚନ୍ଦ୍ର ୩. ମନ୍ମଥ

ଗ୍ରହ ନକ୍ଷତ୍ରବାଦ ସବୁରେ । ରହିଛି ସନ୍ଦେହ,
ପ୍ରତ୍ୟକ୍ଷ ପ୍ରମାଣ ଜଗତେ । ଯହିଁ ସତ୍ୟ ନିହିତ ।
ସତ୍ୟ ପରଂବ୍ରହ୍ମ ଶ୍ରୀରାମ । ଧରି ତପସ୍ୱୀ ବେଶ,
ଚଉଦ ବରଷ ଭ୍ରମିଲେ । ତେଜି ଅଯୋଧ୍ୟା ଦେଶ ।
ନଳ-ଦମୟନ୍ତୀ, ସାବିତ୍ରୀ- । ସତ୍ୟବାନ ଚରିତ,
ସତ୍ୟ ପରାକାଷ୍ଠା ଦେଖାଇ- । ବାରୁ ନରେ ଘୋଷିତ ।
ଭବ-ପାରାବାର-ତରଣୀ । ସତ୍ୟ ସଦା କେବଳ,
ସଚ୍ଚ ଜନହୃଦ କୁସାପି । ପାପେ ନୁହେ ଅବିକଳ !
ମାୟାର ଛଳନା ନ ବୁଝି । ଯେଉଁ କରେ ଅନୃତ,
ମହାପାପୀ ଭବେ ସେ ଜିନା । ଗଣ୍ୟ ବେଦେ କଥିତ ।
କଲ୍ୟାଣ-ଆଗାର ଶୁଭଦ । ସତ୍ୟ ତତ୍ତ୍ୱ ଅତରେ,
ଶକ୍ତି, ଶାନ୍ତି ମିଳେ ମାନବେ । କହିଲେ ମୋତେ ଆଦରି ।

***

## ଅଭିସାର

ଚଉଦିଗେ ଜନମନେ ତ୍ରାସ ପ୍ରବଳ,
ଶୁଭୁଅଛି ଅହରହ ବିଗ୍ରହ ରୋଳ ।
ଅକୂଳରେ ସହାୟକ କଦଳୀ ଭେଳା,
ବୃଥା ଘଟାଉଛ ବସି ତାଣ୍ଡବ ଲୀଳା ।
ମକରନ୍ଦ ଆଣେ ପୁଷ୍ପେ ଅଳି ଆଦରି,
ମୃଗତୃଷ୍ଣା ସମ ଏବେ ମନ-ବିକାର ।
ରାଜ୍ୟଲୋଭୀ ବଳୁଆଙ୍କ ବୃଥା ପ୍ରୟାସ,
ନିସ୍ତବ୍ଧ ନିସ୍ତବ୍ଧ ହେବ ଅଚିରେ ନାଶ !
ଲକ୍ଷ ଲକ୍ଷ ନିରୀହଙ୍କ ପରାଣ ଲୋଟି,
ବୋଲଉଛ ଧରାପୃଷ୍ଠେ ଅତି ପ୍ରତାପୀ ।
ନଶ୍ୱର ଜୀବନ ପିଶାଚ ବୃତ୍ତି,
ସମୂଳେ ପ୍ରତିଶୋଧ ଲଭିବ ସୃଷ୍ଟି ।
ବାର୍ତ୍ତାବହ ହେବ ଗୁପ୍ତ ଶୋଣିତ ଧାର,
ତୋଳାଇବ ସୁପ୍ତ ନର ଧରି ଚପୁର ।
ନାରେ କି ଅଟଇ ଭବେ ସେହି ବପୁରା,
ଚିନ୍ତା କେବେ ନ ଦେଖେ ଯେ ବିଗ୍ରହ ଛବି ।
ସତ୍ୟବନ୍ତ ବୀରଶ୍ରେଷ୍ଠ ଯୁଧିଷ୍ଠିର ରଣେ,
କାଳଚକ୍ର ରୋପିଥିଲା ଯୁଦ୍ଧ ପ୍ରାଙ୍ଗଣ ।
କୌରବ ପାଣ୍ଡବ ଅଭିସାରେ ଯୁଦ୍ଧରେ,
ସ୍ୱୟଂ କେଶବ ସାରଥି ହେଲେ କି ଲାଭେ ।

ଜ୍ଞାତି ବନ୍ଧୁ ହରାଇଣ ପାଣ୍ଡବ ନୃପ,
ଚିନ୍ତା-ସାଗରେ ବୁଡ଼ିଲେ ପାଇ ସନ୍ତାପ ।
ଈର୍ଷାପରାୟଣ ଯୁଦ୍ଧ ବୀଜ ବନେ,
କରି ଚିରଶାନ୍ତି ସଦା ଲଭେ ନିର୍ବାଣ ।
ନରହିଂସା ଧୁରନ୍ଧର ରାଷ୍ଟ୍ର ନାୟକ,
ସଦା ପରିଚିତ ଭବେ ଦେଶକଣ୍ଟକ ।
ଯୁଦ୍ଧ କେଉଁ ଦେଶ କେବେ ଦେଖେ କି ଠିକ,
ଚିରନ୍ତନ ପରାଜିତ ଯୁଦ୍ଧ କାମୁକ ।
ସମଦୃଷ୍ଟି ସମଭାବ ଦେଖାଅ ନରେ,
ଜାଗି ଉଠୁ ମୈତ୍ରୀଭାବ ସଦା ମନରେ ।
ଖେଳ ଶେଷେ ନ ରହନ୍ତି ଷଣ୍ଡେ ମାନବେ,
ସମ୍ବରଣ କରି ଈର୍ଷା ଭଜ କେଶବେ ।

***

## ଭାବନା

ଭବ ରଙ୍ଗାଳୟ କି ଛଳନା ପୂର୍ତ୍ତି
ଦେଖୁଅଛି ଅବହେଳେ,
କା ଘରେ ଶୁଭଇ ଉତ୍ସବର ଧ୍ୱନି
କା ଘରେ କ୍ରନ୍ଦନ ରୋଳ ।
କି ବେଗରେ ଆହା ! ଗ୍ରହ ଗଡ଼ନ୍ତି
କାଳ ସ୍ରୋତେ ଭାସି ଭାସି,
ଚଳିଲୁ ନ ବୁଝି ପଦାର୍ଥ ପାଇଛୁ
ଭବ-ପାରାବାରେ ଆସି ।
ପେଟପାଇଁ ଦାନା କଟିପାଇଁ କନା
ନଥିଲା ଭାବନା ମନେ,
ପଠନାନ୍ତେ ଯାଇ ସହପାଠୀ ସଙ୍ଗେ
କଟାଉଥିଲି କ୍ରୀଡ଼ନେ ।
ଅଧ୍ୟୟନ କାଳେ ଉପଦେଶ ବାଣୀ
ଗୁରୁଠାରୁ ଶୁଣି ଶୁଣି,
ଅତି ଯତନରେ ଭରି କରୁଥିଲି
ହୃଦୟେ ମାନସ ମୂର୍ତ୍ତି ।
ନଥିଲା ଆଳସ୍ୟ ନଥିଲା ବିଳାସ
ତଥାପି ନଥିଲା କ୍ଲେଶ,

ଧୀରେ ଧୀରେ ଗମୁ- ଥିଲି ମନୋରାଜ୍ୟେ
ଦେଖି ପ୍ରକୃତି ବିଭବ ।
ନାହିଁତ ଇସ୍ପ୍ରିଙ୍ଗ କେତେ ଯେ ବାଜଇ
ପିଠିରେ ଦାରୁଣ ଧକା,
ଭବ-ପାରାବାରେ ପହଞ୍ଚେ ଯେକାଳେ
ମାନସ ଜାଣଇ ଏକା ।
ଦୁଃଖ ତାପ ଶୂନ୍ୟ ମାନସ ନିକୁଞ୍ଜ
ଯାଇଛି ଧୀରେ ମଉଳି,
ଲୋଭ-କ୍ରୋଧ-ମୋହ ତାମସ ମାତ୍ସର୍ଯ୍ୟ
ରସୁକୁଳେ ହୋଇ ଦଳି ।

***

## ସ୍ଥବିରର ଅନୁତାପ

ଜୀର୍ଣ୍ଣ ମୋର କଳେବର ଛୁଇଁବାରୁ ଜରା,
କେତେ ମୋର ସଙ୍ଗୁ ଏବେ ଛାଡ଼ିଲେଣି ଧରା ।
ଭ୍ରମି ଭ୍ରମି ମନୋରାଜ୍ୟେ କ୍ଳାନ୍ତ ଅବସନ୍ନ,
ଶରୀରର ରୁଚିରତା କ୍ରମେ କ୍ରମେ ମ୍ଳାନ ।
ଅନ୍ତିମର ପ୍ରତୀକ୍ଷାରେ ବସିଛି ନୈରାଶ୍ୟେ,
ବିଚାରନ୍ତି ତହୁଁ ଅବା କାଳ ଉପହାସ୍ୟେ ।
ବିସୋରି ପରାଣ ଦାତା ମାତିଲି ଯୌବନେ,
ଧର୍ଷିତ ହୃଦୟ ଦମ-ହର୍ଷ-ପ୍ରଲୋଭନେ ।
କେତେବେଳେ ତୃପ୍ତ ଅବା ଲକ୍ଷ୍ମୀ ଆଲିଙ୍ଗନେ,
ମୁଖ-ଜ୍ୟୋତି ନିମିଳିତ ଖେଳି ବିଦ୍ରୁମେ ।
ବାରମ୍ବାର ପଲ୍ଲବିତ ପାଦପ ଯେସନ,
ଭାବୁଥିଲି ମୋ ଶରୀର ହୋଇବ ତେସନ ।
ବିବେକ-ପ୍ରହରୀ ଜଗି ନ ଥିଲା ଯେ କାଳେ,
ଖେଳୁଥିଲି କେତେ ରଙ୍ଗେ ବସି ତୃଷା କୋଳେ ।
ବିସୋରିଲି ଅଶୋକଙ୍କ ମୁଦ୍ରିକା ଅସନ,
ଯେ ପୁଣି ଅନ୍ତିମେ ଦିଏ ନିଜ ବକ୍ଷେ ସ୍ଥାନ ।
ଅନାଶ ସଂଯମ ଜ୍ଞାନ ବାକ୍ୟ ବିନମ୍ରେ,
ଉଗ୍ରମୂର୍ତ୍ତି ଧରୁଥିଲି ବଡ଼ିମା ଉଦୟେ ।
କୃପଣତା ଦେଖି ଲୋକେ କରୁଥିଲେ ଥଟ୍ଟା,
ଭଗ୍ନ ମନୋରଥ ଏବେ ଦେଖି କାଳଛଟା ।
ଜୀବନ-ପ୍ରଦୀପ ମିନା ସନ୍ଧ୍ୟାତ ନିର୍ବଳ,
ଏ ଘୁଣ ଜୀବନେ ପୂର୍ଣ୍ଣ ମିଥ୍ୟା କଳିସାର ।
ସ୍ୱାର୍ଥକୁ ସାରଥିକରି କଟାଇଲି କାଳ,
କିଏ ବା ଚିନ୍ତିତ କେବେ ଏସବୁ ନିଷ୍ଫଳ ।
ଅଭିରାମ ପରିଚ୍ଛଦେ ସଜାଇଲି ଅଙ୍ଗ,
ପ୍ରାଣ ଛାଡ଼ିଗଲେ ଆହା ! କରିନ୍ତି ଉଲଙ୍ଗ ।
ଦିଗମ୍ବର ଦିଗମ୍ବର ବୋଲିବ ଜଗତ,
ଅମ୍ବରଶୀ ବୋଲି ଆହା ! ହେବ ଉଚ୍ଚାରିତ ।
ସରିଛି ଚଳଳ ତେଣୁ ନିର୍ବାପିତ ଘାତ,
ବୁଝୁଥା ଯେସନ ପ୍ରସୂତିର ମନସ୍ତାପ ।
ପୂଜିଥିଲେ ମଧୁକର ଦେଇଥାନ୍ତା ମନ୍ତ୍ର,
କରନ୍ତି ହୁଅନ୍ତା ନାହିଁ ଏବେ ହୃଦଯନ୍ତ୍ର ।
ମାତୃଣ କି ଆମ୍ଭହରା ହୁଅନ୍ତି ସରବେ,
ମହାଜନ ବାକ୍ୟ ଏଡ଼ି ଯୌବନେ ଗରବେ ।
ରକ୍ତମାଂସ ମଳମୂତ୍ରେ ଏ ଶରୀର ପୂର୍ଣ୍ଣ,
ତେଜି ପ୍ରପଞ୍ଚ ଭିଆଣ ଧନ୍ୟ ଋଷି ପ୍ରାଣ ।
ଊର୍ଣ୍ଣନାଭି ଜାଲେ ପଡ଼ି ମକ୍ଷିକା ଯେସନ,
ଛଟପଟ ମାୟାଜାଲେ ମୋ ଚିତ୍ତ ତେସନ ।
ଜୀବନର ପୂର୍ଣ୍ଣଚ୍ଛେଦ ଆସୁଛି ଘନେଇ,
ରଖିବ ଯତନେ କେବେ ଉତ୍ତର ସଜାଇ ।

***

## ଶି ଶି ର

ହେମନ୍ତ ଅନୁଗ ଶିଶିର ଜଗତେ
ପ୍ରବେଶିଲା ଧୀରେ ଧୀରେ,
କାନନ ପ୍ରାନ୍ତର ପୃଥ୍ୱୀ ଜନପଦ
ଭସାଇ ଦେଲା ନୀହାରେ ।
ଜାଡ଼େ ବିକମ୍ପିତ ସ୍ଥଳଚର ସର୍ବେ
ବିଶୁଷ୍କ ରୁଚିର କାନ୍ତି,
ଧନବନ୍ତ ଘନ- ଙ୍କର ବଢ଼ିଗଲା
୧. ସବିତା ୨. ଜନଧା ପ୍ରୀତି ।
ଦିଗ୍‌ଭ୍ରାନ୍ତ ଜନ୍ତୁଏ କୁଟୁଡ଼ି ଆହ୍ଲାଦ
କେ ଯତେ ଭାଲୁ ହାବୁଡ଼େ,
କାନନ ପଥରେ ବ୍ୟାଘ୍ର ଉପଦ୍ରବ
ଶଗଡ଼ିଆ ଦେଖି ବୁଡ଼େ ।

( ୧. ସୂର୍ଯ୍ୟ ୨. ଅଗ୍ନି )

ବାହର ହ୍ରାସତା ରଜନୀ ଦୀର୍ଘତା,
ବାଧା ଦିଏ ଜୀବ ବୃନ୍ଦେ,
ପ୍ରଧାନ ସମ୍ବଳ ଧାନ୍ୟ ଆଦାପୂରେ
ରହି ନରେ ଜନପଦେ !
ପ୍ରାଣ ରକ୍ଷାକାରୀ ସଲିଳ ପବନ
ସୁଖ ନ ଲାଗଇ ଏବେ,
ନିଶ୍ଚିତ ଜାଣନେ କିବା ପ୍ରତିକାର
କେ ବା ନ ସମ୍ଭବ ଭବେ ।
ତାରକା, ଚନ୍ଦ୍ରମା ଅମ୍ବରକରର
ନିଜ ନିଜ ଜ୍ୟୋତି ହ୍ରାସ,
ନିଶ୍ଚିତ ଅଳକ୍ଷ୍ୟ କରୁଛି କି ସତେ
ଜନତାକୁ ଉପହାସ ।
ଇକ୍ଷୁରସେ ଭୋଳ ଭଲ୍ଲୁକ-ଜମ୍ବୁକ ୧.
ଯେସନ ମଦ୍ୟପ ନର,
ଇକ୍ଷୁ ହ୍ରାସାବସ୍ଥା ଦେଖିଣ କୃଷକ
ମୁଣ୍ଡେ ମାରି ବସେ କର ।
ସର୍ଷପ କୁସୁମେ ୨. ଭ୍ରମୀ କରି ମଧୁ
ହଶଇ କେଦାର ଶୀତେ,
ସୋମ, ଶତବର୍ଗ ପୁଷ୍ପ ପ୍ରସ୍ଫୁଟିତ
ସର୍ବ ସୃଷ୍ଟି ଜନ ହିତେ ।

***

## ଅଳସୁଆ

ଅଛେଇଛି ବାପା ମୋର ଖାଉଅଛି ବସି,
ଯାଉଅଛି ସୁଖେ କାଳ ଏବେ ଦିବାନିଶି ।
କର୍ମ୍ମପାତ ନ କରଇ ପିଲଙ୍କର ଗୋଳେ,
ମନଖୁସୀ କାରବାର ସଦା ମୋର ଚଳେ ।
ସତ୍ୟ, ଧର୍ମ, ନ୍ୟାୟ ସର୍ବ ନାହିଁ ମୋ ମାନସେ,
ମିଥ୍ୟା ପଛେ ଧାଉଁଅଛି ଠିକେକ ରଭସେ ।
ଜାଣଇ କଲମ ଧରି ମାତ୍ର ବୁଦ୍ଧିହୀନ,
ଦୋଷ ଜାତ ଛନ୍ତି ତେଣୁ ମୋର ପରିଜନ ।
ଅନେକେ ଦୋଷନ୍ତି ଦାନ୍ତ ନିତ କରଣେ ଗାଳ,
ଅସନ୍ତି କାଳ ପର ଅମଙ୍ଗଳ ଭାଳ ।
ଦେଖାନ୍ତି ମୁଁ ଯେବେ ମୋର କଲମର ଛଟା,
ନ ସହନ୍ତି ଏ ଜୀବନେ ପ୍ରତିବେଶୀ ଥଟା ।
ପ୍ରଭୁ ଅନୁରୂପ ମିଳିଅଛି ଅନୁଚର,
ପ୍ରତାରଣା କରିବାକୁ ସତତ ତିଆର ।
ବେଙ୍ଗ ବୋଲେ ବେଙ୍ଗୁଲିକି ଘଡ ଘଡ଼ି ଆନ,
ଏ ଜଗତ," କେତେ କଥା ଦେଖେ ଏ ନୟନ ।
ମନେ ରଖି ଆଜିଠାରୁ ହେବ ହୁସିଆର,
ନ ପଡ଼ିବ ଆଖି ଯେବେ ସରିବ ଭଣ୍ଡାର ।
ହାତ ଗୋଡ଼େ ବଳଅଛି କରିବାକୁ କାମ,
ଉଚିତ କମାଇ ପୁଣି କରିବାକୁ ଶ୍ରମ ।

***

## ଭାଗ୍ୟ

ଭୁଲି ପରାଣ-ଦେବତା ସମ୍ପଦ କାଳରେ,
ମାନବ ସକଳ ରତ ବିଷୟ-ଭୋଗରେ ।

ଲିଭିଯାଏ ମାନସରୁ ହିତାହିତ ଜ୍ଞାନ,
ଜୀବକାର୍ଯ୍ୟ ଏକ ମାତ୍ର କୁକର୍ମ ସାଧନ ।

କେ ବୁଝୁଛି ସମ୍ପଦ ହିଁ ଶୋଷାର ବେଳ,
ଥାପିବାକୁ ଦାତାଠାରେ ବିଶ୍ୱାସ ଅଟଳ ।

ବେଳ ଆସେ ଉଡ଼ିଯାଏ ରତନ ଭଣ୍ଡାର,
ଅଟ୍ଟାଳିକା ବାସୀ ଆଜି ପଥର ଫିକାର ।

ଲକ୍ଷ୍ମୀ ଆବରଣ କାଢି କରକୁ ପ୍ରସାର,
ଅପର ଦ୍ୱାରସ୍ଥ ହୁଏ କରମ ଧିକ୍କାର ।

ପ୍ରଭୁ ନାମ ଧରି ବୁଲେ କରି କରି ରଡ଼ି,
ନ ଶୁଣେ କେ ଯାଏ ଶେଷେ ନିରଶେ ବାହୁଡ଼ି ।

ଲାଗିଛି ସତତ ଭବେ ଉତ୍ଥାନ-ପତନ,
ପ୍ରତିକୂଳ ହେଲେ ଭାଗ୍ୟ କେ କରେ ଖଣ୍ଡନ ।

ଭାଗ୍ୟଦେବୀ ଅନୁକୂଳ ଦୀନ ଅକିଞ୍ଚନ,
ଲଭି ଅପାର ସମ୍ପଦ ପୁଲକିତ ମନ ।

ବୁଝିବାକୁ କେ ବା କ୍ଷମ ବିଚିତ୍ର ସୃଜନ,
କ୍ଷଣେ ସୁଖ କ୍ଷଣେ ଦୁଃଖ ଏ ସାରା ଜୀବନ ।

***

( ୧. ବିଲୁଆ ୨. ସ୍ୱର୍ଣ୍ଣମଧୁ )

## ଉଲ୍ଲାସ

ପ୍ରେମ ଗଦ ଗଦ    ଜନକ-ଜନନୀ
ଆବର ଭାଇ-ଭଉଣୀ,
ଶ୍ରବଣ-କୁହରେ    ଢାଳିଗଲେ ବାରେ
ଶିଶୁ ଅର୍ଦ୍ଧସ୍ଫୁଟ ବାଣୀ ।
ନାଲି, ନେଳୀ, କଳା    ଖେଳନା ବାଣ୍ଟଣେ
ଶିଶୁଗଣ କୁତୁହଳୀ,
ଖେଳଇ ଉଲ୍ଲାସ    କୃଷକ ମାନସେ
ଦେଖି କ୍ଷେତ୍ର ଶସ୍ୟଶାଳୀ ।
ସମର ପ୍ରାଙ୍ଗଣୁ    ଫେରେ ସଇନିକ
ଅରାତିଙ୍କୁ ଦଳି ମୁଦେ,
କୃତୀ ସନ୍ଦେଶ    ବାଳକ ବାଳିକା
ପାଇ ନାଚନ୍ତି ଆମୋଦେ ।
ବାଳକେ କ୍ରୀଡ଼ାରେ    ହଟାଇ ବିପକ୍ଷ
ଫେରନ୍ତି ଆହ୍ଲାଦ ଅତି,
ବନ୍ଧ୍ୟା ଲଳନାର    ନବୀନ କୁମର-
ପ୍ରସବେ ବଢଇ ପ୍ରୀତି ।
ଘନ ଗମ ଦେଖି    ନାଚେ ଶିଖାଟେକ
କଳାପୀ କାନନ ଦେଶେ,
ରଥାଙ୍ଗଦମ୍ପତି    ତରଣି ବୀକ୍ଷଣେ
ହରଷଭର ଆଶ୍ଳେଷେ ।
ହସଇ ଧରଣୀ    ବସନ୍ତ ସୌନ୍ଦର୍ଯ୍ୟେ
ବର୍ଷାଗମେ ଜଳଚର,
ଶଶଧର ହେରି—    ଶତେ ବୀଚିମାଳ
ପଦ୍ମ ଲଭି ଭ୍ରମର ।

***

## କଳଙ୍କ ?

ବ୍ରାହ୍ମଣ ବେଶରେ ଶଶୀ    ଶଶା ଦୁଆରେ ପ୍ରବେଶି
ମାଗିଲେ ଆଧାର ହସି ହସି ସେ କାଳେ,
ଅତିଥିର ସତ୍କାରେ    ଶଶକ ହରଷଭରେ
ଅରପିଲା ନିଶାକରେ ତନୁ ବଲେଲେ,
ଅଙ୍କେ ଶଶା ଲଭିଛି ସ୍ଥାନ,
ଏଣୁହେ ଚନ୍ଦ୍ରଶରୀରେ କଳଙ୍କ ଚିହ୍ନ ।
ଜଟା ଆବରଣ ଗୁଡ଼ି    ଛିନ୍ନ କୃଷ୍ଣବର୍ଣ୍ଣ ଶାଢ଼ୀ
ଧରିଲେ ଚନ୍ଦ୍ରଙ୍କୁ ଭଣ୍ଡ କାନ୍ତା ରୋହିଣୀ
ମୁକୁଳ କୃଷ୍ଣ ଚକୁର    ଗଣ୍ଡବାହେ ଫରି ଫରି
ସିତେ ଅତି ମନୋହର ଚମକିମକି,
ଆଚ୍ଛାଦିଛି ଦେବର ଅଙ୍ଗ,
ଚନ୍ଦ୍ରଙ୍କ ଶରୀରେ ଏ ତ ନୁହେ କଳଙ୍କ ।

***

## ବିଚିତ୍ରତା

କା ପତରେ ପଡ଼େ    ଘୃତପକ୍ୱ ଅନ୍ନ
କା ପତର ପଡ଼େ ଖାଲି,
ତୁଳତଳ୍ପ ପରେ    କେ ଦୋଳେ ପୁଲକେ
କା ଶେଯ ଉନ୍ମୁକ୍ତ ବାଲି ।
କା କଟିରେ ଲାଗେ    ଭଲ ଭଲ ବାସ
କା କଟିରେ କଉପୀନ,
କା ପିଠିରେ ପଡ଼େ    ଜରିପକା ଶାଲ
କା ପିଠିଟି ଉଲଗନ ।
ରୁଚିର ପ୍ରସାଦ    ତଳେ ବହୁଛି
କେ ବା ଦିନରାତି ସୁଖେ,
କେ ବା ଗଛତଳେ    ବୁଜିଦିଏ ଆଖି
ପେଟକୁ ନପାଇ ଭୋକେ ।
ନ ଲଭି ସନ୍ତାନ    କେ ବା ଛଟପଟ
ସନ୍ତାନ ମାନ କା ଘର,
କେତେବେଳେ କାହା    ପିଠିରେ ବାଜୁଛି
ଅଲକ୍ଷ୍ୟ ବିଧି ପ୍ରହାର ।
ବେତସ ପାଦପ    ଦୋହଲୁଛି ମୁଦେ
ନଦୀ ବକ୍ଷେ ଦେଖି ବଢ଼ି,
ବୁଡ଼ିଯାଏ ଭେକ    ପାର୍ଶ୍ୱେ ପାଦପଙ୍କ
କାହିଁ ଶୁଭେ ଆର୍ତ୍ତିରଡ଼ ।
ସଲିଳ ସମାଧି    ଲଭି ଜନପଦ
ବହିଲେ ସ୍ରୋତ ଅନୁସରି,
ଛିଡ଼ିପଡ଼େ ଆହା .    ପଲକେ ପଲକେ
ଶତ ଶତ ଭାଗ୍ୟ ଡୋରି ।

ନ ବୁଝି କଳନ  ଅବା ପୁରକନ୍ୟା
ରକ୍ଷିବାକୁ ନିଜପ୍ରାଣ,
ଭାସମାନ ନର  ବଢ଼ାଏ କରକୁ
ଧରିବାକୁ ପାର୍ଶ୍ୱ ତୃଣ ।
କେ ଜାଣେ ଏପ୍ରାଣ  ସ୍ପନ୍ଦନ ପାଇଁ
କେତେବେଳେ ଯାଏ ଉଡ଼ି,
ଉଦ୍‌ବେଳିତ ବୃଥା  ଚେଷ୍ଟାନ ନର
ଅହମିକା ଜାଲେ ପଡ଼ି ।
ଚିତ୍ତହୁଏ ଭ୍ରମ  ଦେଖି ଏ ବୈଷମ୍ୟ
ଘାର ଘାର ମଧ୍ୟେ ଅତି,
ଜଡ଼ସତ୍ତା ପୂର୍ଣ୍ଣ  ପ୍ରପଞ୍ଚ ସୃଜନ
ବୁଝିବାକୁ କା ଶକତି ।

***

## ବିକ୍ରମ ଦେବ ବର୍ମା

ନ ଚଳେ ଲେଖନୀ ଅବା ନ ସ୍ଫୁରେ ବଚନ,
ଶୁଣିଲି ବେଳରୁ ବିକ୍ରମଙ୍କ ତିରୋଧାନ ।
ଉଦାରାତ୍ମା, ଦାନ ବୀର ନୃପତି ଲଲାମ,
ସାହିତ୍ୟ ଭଣ୍ଡାରେ ଥୋଇ ବିଭୂତି ଅସୀମ ।
ସତତ ପ୍ରଦୀପ୍ତ ଯାର ସୌଜନ୍ୟ ନମ୍ରତା,
ରାଜୁଥିଲା ଲୋଚନରେ କ୍ଷମା ସହିଷ୍ଣୁତା ।
ଜାତିଭାଷା ଦେଶପାଇଁ କାନ୍ଦେ ଯା ଅନ୍ତର,
ପୁଣ୍ୟାତ୍ମା ସେ ତେଜିଛନ୍ତି, ମର କଳେବର ।
ଶୋକୋଚ୍ଛ୍ୱାସ ଉଠୁଅଛି ଉତ୍କଳୀ ହୃଦରୁ,
ନୀରବ ପଶୁ-ପତଙ୍ଗ-ବିହଙ୍ଗମ-ତରୁ ।
ଜନନୀ ନୟନୁ ଆଜ ଝରଇ ଲୋତକ,
କ୍ଷମ କିଏ ଏଡ଼ିବାକୁ ନିୟତିର ଡାକ ।
ଆଜନ୍ମୁଁ ପ୍ରାଣୀମାନେ ମରଣ କିଙ୍କର,
ସାଧ୍ୟ ନାହିଁ ହେବ କା'ର ଦେବାକୁ ଉତ୍ତର ।
କାହୁଁ ଆସି କାହିଁଯାଏ ପରାଣ ଜୀବର,
ମୋହେ ଜଡ଼ି ନାହିଁକାର ଭାବିବାକୁ ତର ।

***

## କାଳ

କି ନିର୍ମମ ହୃଦୟା ନ ଶୁଣୁ କା ବାଣୀ,
କଲେହେଁ ଜୁହାର କୋଟି କୋଟି ପ୍ରାଣୀ ।
ଅଗଣିତ ଜୀବ ତୋ ମୁଖେ ଶିକାର,
ତଥାପି ଭୋକିଲା ସଦା ତୋ ଜଠର ।
ଖେଚର ଭୂଚର, ଅବା ଜଳଚର,
ତୋ କବଳୁଁ କେହି ନ ଲଭେ ନିସ୍ତାର ।
କରୁଛୁ ତୋହର ନିଜ ଇଚ୍ଛାମତେ,
ନ ଦିଏ ଉତ୍ତର କିଏ ଏ ଜଗତେ ।
ତୋ ଆସିବା ବେଳ ନ ପାରେ କେ ଉଣ୍ଡି,
ନାହିଁ କା ଶକତି ଯିବ ହେବ ଭଣ୍ଡି ।
କରିଦେଉ ପଣ୍ଡ ପ୍ରବଳଙ୍କୁ ବଳେ,
ଶଠତା-ଆସନ ତୋ ଦର୍ଶନେ ଟଳେ ।
ଦେଖି ତୋହର ରୂପ ଉପୁଜଇ ଧୃତି,
ଟଳିପଡ଼େ ଖରେ ଦାମ୍ଭିକର ସ୍ଥିତି ।
ସର୍ବ ଜୀବାବଳୀ ତୋ ନେତ୍ରେ ସମାନ,
ଭବ ଅଗୋଚର ତୋ ପୂଜ୍ୟ ବିଧାନ ।
ଚିହ୍ନିବାକୁ ଲୁଚି ନାହିଁ କାହିଁ ଠାବ,
ନିମିଷକେ ଦଳୁଁ ମାନବ ବିଭବ ।
ତୋ ଯୋଗୁଁ ଜଗତେ କ୍ରନ୍ଦନର ରୋଳ,
ରାଜା ପ୍ରଜା ଘରେ ଶୁଭେ ଅବିରଳ ।
ଦୁର୍ବଳ ଉପରେ ସଭିଙ୍କର ଟାଣ,
ତୋ ଆଗରେ ତିଳେ ନ ଥାଏ କା ପଣ ।
ତୋ ମାନସ କ୍ଷମା ଶିଖି ନାହିଁ ଲବେ,
ସଭିଙ୍କି ହାକିମ ସଦା ତୁ ଏ ଭବେ ।
ତୋଷିବ କେ ତୋତେ ହାତେ ଦେଇ ଲାଞ୍ଚ,
ନିମିଷେ ନାଶଉ ପ୍ରପଞ୍ଚ ପ୍ରପଞ୍ଚ ।
ମହାକାଳ ସମ ଏ ତମ କୁଟୀର,
ତୋ ବିନା କାହାର ନାହିଁ ଅଧିକାର ।
ଗନ୍ତାଘର କଞ୍ଚି ନେବାକୁ ସଙ୍ଗରେ,
ନଦେଉ କାହାକୁ ଅନୁମତି ବାରେ ।
ତୋଠାରୁ ନିରତ ଲଭେ ଫୁଲମାଳ,
ପର ସେବା ବ୍ରତୀ ମାନବ କେବଳ ।

( ପ୍ରପଞ୍ଚ—ସଂସାର  ପ୍ରପଞ୍ଚ—ମାୟା )

## ବୃକ୍ଷର ଶୋକ

ହାତଗୋଡ଼ ଭାଙ୍ଗି ପଡ଼ିଛି
ନାହିଁ ଶକତି ଆଉ,
କେତେକାଳ ଅବା ବଞ୍ଚିବି
ସହି ଟେକନ ଘାଉ ।
ପର ପରଶଂସା ଶ୍ରବଣେ
ନ ସହେ ତା ଅନ୍ତର,
ଜୁରି କରିବାକୁ ମୋ ଶିର
ଅବିରତ ତତ୍ପର ।
ଯେପାଞ୍ଚେ ଅନିଷ୍ଟ ଲଭେ ସେ
ମୋଠାରୁ ଆଦର ଅତି,
କେଉଁ ପାପଫଳୁ ଜଗତେ
ଭୋଗେ ଏ ଦୁରଗତି ।
ପର ଉପକାରେ ଜୀବନ
। ସାରି ବସିଛି ମୋର,
ନିର୍ଦ୍ଦୋଷ ପିଠିରେ ପ୍ରହାର
ବାଜେ ଅଶନି ଥର ।
ନରେ ଭକତି ଅନ୍ତରେ
ଗୁରୁଜନଙ୍କୁ ପୂଜ,
ସୁଖ ଅବା ଦୁଃଖ ଭୁଞ୍ଜିଲ
ନିଜ କରମେ ହେଜ ।
ମୋ ଦାନେ ଜଗତୁ ଲିଭିଛି
ହାହାକାର ଶବଦ,
ବୃଥା ଜନମତ ଦେବନ
ପିଇ ହରଷା-ମଦ ।
ନୁହେ ମୁଁ କାହାର ଭଗାରି
ଲଭିବାକୁ ତାଡ଼ନା,
ସଦା ସହି ଖରା, ବରଷା
ସାଧେ ପର ବାସନା ।
ହିଂସାର ଶାସନ ଚଳିଛି
ଦବାଗ୍ନି ଏ ଭବେ,
ବଳେ ଘଉଡ଼ାଇ ଦେଉଛି
ଉପକାରକୁ ଜବେ ।

***

## ବୁଢ଼ା

ଧିକ ଧିକ ବୁଢା-ବୟ ଏତେ ଶେଷ,
ଦୁଇ-ଦିନ ବାକି ଭାଙ୍ଗିବ ଡେରା ବାସ ।
ଶଯ୍ୟାକୁଳ ବନେ ହୋଇ ବଳଆର,
ଭୁଲିମନ ଜ୍ଞାନ ବିଜ୍ଞାନ ଅନ୍ତର ।
ଗଡ଼ିଲଣି ବେଳ ଆସୁଛି ଅନ୍ଧାର,
ହାତେ ନାହିଁ ପାପ ମାଡ଼ିବ ତ ଡ଼ର ।
ବାଜୁଅଛି କଣ୍ଟା ଅଣବାଟେ ପଶି,
ନ କହେ କେ ବାରେ କଥା ପଦେ ହସି ।
ଭିଜିଛି ପବାସ ଘୁଡ଼ନାହୁଁ ଆଣ୍ଠୁ,
ଚଉପାଶେ ଘେରି ଭିଜିଲେଣି ଖଣ୍ଡ ।
କେବେ ତାମସାରେ ଖେଳୁ ବସି ଖେଳ,
କଳା ପଡ଼ି ମୁହଁ ଫିଟିଗଲେ ତାଳ ।
ଉଠୁନାହିଁ ଅଣ୍ଟା ଧଇଲୁଣି ବାଡ଼ି,
ପଡ଼ିଲଣି ଦାନ୍ତ ଫାଟିଲଣି ଦାଢ଼ି ।
ଆଖିର ପିଚୁଳା ଗଲଣି ତ ଛାଡ଼ି,
ନାହିଁ କା ଶକତି ଉଠିବାକୁ ଉଡ଼ି ।
ଥରିଲଣି ହାତ ନାହିଁ ଲଭେ ଚିନ୍ତା,
ତେବୁ ମିଥ୍ୟା ଗିରେ ବନ୍ଧି ତୁ ଅହନ୍ତା ।
ସରିଛି ତେକତ ଅଛି ହାଡମାଳ,
ଚମ ଧୁକୁ ଧୁକୁ ନାହିଁ ବାହୁବଳ ।
ବଞ୍ଚିଲ ଜୀବନ ଯୋଡନାହୁଁ ହାତ,
ପ୍ରତିହିଂସା ହେଲା ଜୀବନ ସଙ୍ଗାତ ।
ଶୂନ୍ୟ ଶୂନ୍ୟ କାହିଁ ଲଗାଉ ତୁ ନିଆଁ,
ଦେଖି ତୋତେ ଛଟା ହସୁଛି ଦୁନିଆ ।
ଜାଣୁ ଅଛୁ ବୃଥା ହେଧାନକେ ମତ,
ଶଠାନକେ କାଳି ଟୋଇବୁ ଘୃତ ।

***

## ରଣଚଣ୍ଡୀ

ଲହ ଲହ କରି ଜିଭ ଆସୁଅଛି ଧାଇଁ,
କି ବେଗରେ ରଣଚଣ୍ଡୀ ପଛକୁ ନ ଚାହିଁ ।
ସମ୍ମୁଖେ ଆହୁତି ହେବେ ଲକ୍ଷ ଲକ୍ଷ ବୀର,
ଶତ ଶତ ଜନପଦ ହେବ ଛାରଖାର ।

ଦୁର୍ବଳକୁ ଗ୍ରାସିବାକୁ ସଂସାରେ ପ୍ରବଳ,
ବସିଥାଏ ଅହରହ ଜଗି କାଳ ବେଳ ।
ଘାରିହୁଏ ମାନବକୁ ସଦା ସ୍ୱାର୍ଥନିଶା,
ଝରିଥିବା ଯାଏ କା'ର ନ ମେଣ୍ଟଇ ତୃଷା ।
ରଣଚଣ୍ଡୀ ସହ୍ନରର କାମ୍ନାର ସତତ,
ଶୋଷନ୍ତି ଉଭୟେ ମିଶି ନିସ୍ୱହ ରକତ ।
ଜୟ ପରାଜୟ ରଣେ ନ ଥାଏ କା' ହାତେ,
ସ୍ୱାର୍ଥେ ବୃଥା ମରୁଆଳ ମାନବ ମରନ୍ତେ ।
ରକ୍ଷିବାକୁ ନିଜ ପ୍ରାଣ ନାହିଁ ଯା' ଶକତି,
ପରପ୍ରାଣ ନାଶେ କମ୍ପା ବଳେ ତା ପ୍ରବୃତ୍ତି ।
ସ୍ୱାର୍ଥାନ୍ଧ କି ଲଭେ ତୃପ୍ତି ନରମେଧ ଦେଇ ?
ବାସନାର ଅବସାଦ କେ ଦେଖିଛି ଭାଇ !
ଜ୍ୱଳନ୍ତ ଦୃଷ୍ଟାନ୍ତ ମିଳେ ଗ୍ରନ୍ଥ ଇତିହାସେ,
ଯିଏ ଯାହା ବୁଣେ ନିଜେ କାଟେ ପରିଶେଷେ ।
ବେଳ ଥାଉଁ ଚିହ୍ନି ରଖ ସ୍ୱାର୍ଥାନ୍ଧକୁ ଜବେ,
ଶାନ୍ତି ପଥ ଦେଖାଇବ ଏତତାହିଁ ଭବେ ।

***

## ହାଟ

ବସିଅଛି ହାଟେ ବିବିଧ ପସରା,
ନିରନ୍ତର ହଂସା ଫୁଟାଏ ଠାକରା ।
ଆସ୍ଫାଳନ ନାଚେ ନିଲଜ୍ଜ ସମୀପେ,
ଅସଂଯମ କାଳ ଯାପଇ ସନ୍ତାପେ ।
ଉଗ୍ରି ପ୍ରତାରଣା ମେଣ୍ଟାଏ କାମନା,
ନିନ୍ଦା ଗପିବାକୁ ନ ହାରେ ରସନା ।
ହସୁଅଛି ମିଥ୍ୟା ସତ୍ୟତାକୁ ଚଢ଼ି,
ଚାବଦା ଶ୍ରବଣ ଶୁଣି ସ୍ୱାର୍ଥ ରଡ଼ି ।
ଅବକାଶ ନାହିଁ ଔଦ୍ଧତ୍ୟକୁ ଲଭେ,
ଦେଖୁଅଛି କାଳ ଗୋପନେ ନିରବେ ।
ଛନ୍ଦାଛନ୍ଦ ଲୋଭମୋହ ପଟେଟର,
ଖୋଜୁଥାଏ ବେଳ ଖର ନିରନ୍ତର ।
କେତେ ସାମଗ୍ରିଷ ସଜାଡ଼ି ବିଳାସ,
ମୋହୁଅଛି ସଦା ଯୌବନ ମାନସ ।
ସାବଣ ସଉଦା କଏ ଯାଏକାହିଁ,
ଜାଣିବାକୁ ତଳେ କା ଶକତି ନାହିଁ ।

***





# ଗୁଣ୍ଡିଚା—ଭାବନା

## ଗୁଣ୍ଡିଚା-ଭାବନା

ଶରଣ ବତ୍ସଳ ହରି ଦୀନ ଜନ ତାପହାରୀ
ଶଙ୍ଖ ଚକ୍ର ଗଦାଧାରୀ ହେଉ ମାଗୁଣି,
ବୋଲନ୍ତି ଜଗତ ତାତ ବାଞ୍ଛା ସଦା ଅବନ୍ଧିତ
ଦୁଷ୍କୃତାଡ଼ ଟାଳ ସନ୍ତ, ଜ୍ଞାନ-ସରଣୀ
ଦେଖାଇ ଅଧମ ମାନବେ,
ପ୍ରକାଶ ଦିବ୍ୟ ଆଲୋକ ସଦା ଏ ଭବେ ॥
ଧନ୍ୟ ବିନ୍ଧାଣି ଯେଣିଆ ନିମିଷକେ ନୂଆ ନୂଆ
ଦେଖାଅ କୋଟି ହାଲିଆ ହୃଦେ ଛବି;
ଝଲସଇ ଜନ ଆଖି ଭକ୍ତ ମନ ଯାଏ ଲାଗି
ଇତର ପ୍ରାଣୀଏ ସୁଖୀ ଉନ୍ମତ୍ତ କବି
ଅଜ୍ଞାନ ମାନବ ସମାଜ,
ଜାଗିଉଠନ୍ତି ଜବେ ଲଭି ଶ୍ରୀପଦ ରଜ ॥
ଗର୍ବ ହିଂସା ଅଭିମାନ ଖେଳେ ଭବେ ପ୍ରତିଦିନ
କଳୁଷିତ ନର ପ୍ରାଣ ପରକୁ ପୀଡ଼ି,
ଆଖି ଆଗେ ଦେଖି ନିତି ନଶ୍ୱର ଭବପୀରତି
ତଥାପି ରହିତ ମତି ସତତ ଜଡ଼ି
ଫିଟାଅ ଏ କୁହୁକ ବେଢ଼ି,
ବର୍ଷର ହେଲେକ ଅବା ନଶ୍ୱର ରଡ଼ି ॥

***

ମହୋଦଧି କୂଳେ ରାଜେ ଶ୍ରୀକ୍ଷେତ୍ର ନଗର,
ଧନଧାନ୍ୟ ପରିପୂର୍ଣ୍ଣ ସଦା ତା ଭଣ୍ଡାର ।
ତଉହରେ ଉତ୍କଳର ବଢାଇ ଗୌରବ,
ଶିଖାଉଛି ଜଗତକୁ ସତତ ଆର୍ଜବ ।
ଲକ୍ଷ ଲକ୍ଷ ଯାତ୍ରୀଙ୍କର ସଦା ସମାବେଶ,
ମୁଖରିତ ହେଉଅଛି ପୁର ଦିବାନିଶ ।
ଧବଳିତ ଅଟ୍ଟାଳିକା ଜନପଦ ଲୋଭା,
ବେଳାଜଳେ ପ୍ରତିବିମ୍ବି ବଢ଼ାଉଛି ଶୋଭା ।
ନରେନ୍ଦ୍ର ମାର୍କଣ୍ଡ ଇନ୍ଦ୍ରଦ୍ୟୁମ୍ନ ଆଦି ସର,
ପିନ୍ଧିଛନ୍ତି ଅବା ଏକେ ଏକେ ଶ୍ୟାମାମ୍ବର ।
ରାଜପଥ ଦୁଇପାର୍ଶ୍ୱେ ଆପଣିକ କୁଳ,
ବିଭିନ୍ନ ପଣ୍ୟ ଦରବ କରନ୍ତି ତୁଳ ।
ଜନହିତେ ପାଠଶାଳା ମାରୱାଡ଼ି ଜାତି,
ନିରମାଣି ସ୍ଥାନେ ସ୍ଥାନେ ଅର୍ଜିଛନ୍ତି ଖ୍ୟାତି ।
ଶିକ୍ଷାର ଉନ୍ନତି କଲେ ମଠ ଅଧୀଶ୍ୱର,
ଖଞ୍ଜି ବୃତ୍ତି ସାଧୁଛନ୍ତି ପର ଉପକାର ।
ନଭସ୍ପର୍ଶୀ ଦେବାଳୟ ଅତି ମନୋହର,
ଦୁଃଖୀ ଅବସାଦ ମନୁଁ କରୁଛନ୍ତି ଦୂର ।
ମୁକତି ମନ୍ତ୍ର ଲଭି ଚୌଦିଗେ ପ୍ରଖ୍ୟାତି,
କରୁଅଛି ଲୋଡ଼ା ବେଳେ ସନ୍ଦେହ ନିଷ୍ପତ୍ତି ।

ମନ୍ଦିରର ଦକ୍ଷିଣକୁ ଗଲେ କିଛି ଦୂର,
ଦରଶନ ମିଳେ ପୂତ ସରଗ ଦୁଆର ।
ମାଟି ଆସ୍ୱାଦନ କରି ମତ୍ତ କୁଢ଼ କୁତ,
ବାଉଁଶ ଖଣ୍ଡିରେ ଖାଇ ଥରେ ଥରେ ମାଡ ।
ହେଉଛନ୍ତି ପୋଡ଼ା ଲଦି ବୁକେ ନିଆଁ ଗଡ଼,
ଜଣାଯାଏ ନାହିଁ କିଏ ସାନ କିଏ ବଡ଼ ।
ମାଲ ଭାଇ ଚଂଖା ଫଂଖା ହୋଇ ଚଉପାଶେ,
ଶ୍ମଶାନ ବିରାଗଭାବ ଆଣନ୍ତି ମାନସେ ।
ଅଙ୍କୁସୁ ବରଗ କେତେ ଚକ୍ଷୁଁ ମର ତେଜ,
ବିଷାଦ ଅଗ୍ନିରେ ଏଣେ ହେଉଛନ୍ତି ଭାଜ ।
ଭବର ଭଙ୍ଗୁର ଲୀଳା ଦେଖି ନିରନ୍ତର,
ଶିଖୁନାହିଁ ପଦେ ହେଲେ ମାନବ ଅନ୍ତର ।
ସ୍ୱାର୍ଥପାଇଁ ବ୍ୟସ୍ତ ସଦା ନ ଦେଖୁରେ ଆନ ।
ଧନ୍ୟ ଧନ୍ୟ ଜଗନ୍ନାଥ ଧନ୍ୟ ତୋ ବିଧାନ,
ପାରାବାର ଗରଜନ କମ୍ପାଏ ନଗର,
ଭେଦିବାକୁ ନାହିଁ ବଳ ମନ୍ଦିର ପ୍ରାଚୀର ।
ହର୍ଷ ଭରେ ମତ୍ସ୍ୟଙ୍କର ନୋଳିଆ ବାଳକ,
ବୁଡ଼ୁଅଛି ପାରାବାରେ ସମ ଜଳକାକ ।
ଉତ୍ତାଳ ତରଙ୍ଗ ପୃଷ୍ଠେ କ୍ରୀଡ଼ା ତାର ଦେଖି
ବିକଳ ବିକଳେ ଲଖି ଯାଏ ଦରଶକ ଆଖି ।
ଲହରି ଦୋଳାରେ ଦୋଳେ ଅମିତ ଚଢ଼ାଉ,
କରୁଛନ୍ତି ସଜ ଉର୍ମି ରାଜିବେ ତଡ଼ାଉ ।
ପ୍ରତି ଗଳି ଯେଗା ଘରେ ପ୍ରଦୋଷେ ବାଳକେ,
କୁସ୍ତି କସରତ ଆଦି ଶିଖନ୍ତି ପୁଲକେ ।
ନାରିକେଳ ତରୁମାଳ ଚଉପାଶେ ଘେରି,
ବାଣ୍ଟୁଛନ୍ତି ନିରନ୍ତର ସୁଶୀତଳ ବାରି ।
ନଗର ପ୍ରାନ୍ତରେ ସୁଶୋଭିତ ଉପବନ,
ବଢାଇ ସୁଷମା ହରେ ସଦା ଜନମନ ।
ବର୍ଣ୍ଣଶ୍ରେଷ୍ଠ ବିପ୍ର ଏଣେ ଭୁଲି ଜାତିଭେଦ,
ଚଣ୍ଡାଳ ହାତରୁ ନେଇ ଖାଉଛି ପ୍ରସାଦ ।
ବିଶ୍ୱପିତା ସମ୍ମୁଖରେ ଏକଜାତି ବୃନ୍ଦ,
ନୋହେ କାହିଁ ଭାରତରେ ନିତି ଜାତି ଦ୍ୱନ୍ଦ ।
ପୁରୀ ବାସୀଙ୍କର ସଦା ପ୍ରଫୁଲ୍ଲ ବଦନ,
ଜଗତ ପିତାଙ୍କୁ ଲଭି ନିତି ଦରଶନ ।
ନିଅନ୍ତି ଆଶ୍ରୟ ଯେତେ ନିସ୍ୱଃ ପରିବାର,
ଉଦର ପୋଷଣେ ଚିନ୍ତା ନଥାଏ କାହାର ।
ମୂକ ସାକ୍ଷୀ ଏ ନଗର ଅବା ଓଡ଼ିଆର,
ଅତୀତ ଗୌରବ ସଦା କରୁଛି ପ୍ରଚାର ।

***

କ୍ରମେ କ୍ରମେ ଝାଞ୍ଜି ଦହିଲା ଜଗତ
ଶୁଖାଇ ନଦୀ ପୋଖରି,
ପୋଡ଼ୁ ଦେହକରେ ଦାରୁଣ ନିଦାଘ
ଅଗ୍ନି ଧରି ସୂର୍ଯ୍ୟ-ଶିଖା ।
ମାଖେ ଅଙ୍ଗେ କେହି କର୍ପୂର ଚନ୍ଦନ
କ୍ଷଣସ୍ଥାୟୀ ସୁଖ ପାଇଁ
ଜଠର ଦାହରେ ଦୀନ ଜନଙ୍କର
ଝାଳଗଲା ଧୀରେ ଲଇଁ ।
ଗଣିହୁଏ ହାଡ ତୃଣାହାରୀଙ୍କର
ଉଦୁ ଉଦିଆ ଖରାରେ
ଧକେଇ ଧକେଇ ବିହଗ ନିକର
ଆଶ୍ରିଲେ ଯେଝା ନିଡ଼ରେ ।
ଉଠଇ ହୁଇଁ କରି ଅମ୍ବ ତୋଟା ମାଳେ
ଡାଳେ ଡାଳେ ନାଚି କପି,
ଧ୍ୱଂସିଲା ରସାଳ ଯଥା ଲଙ୍କାପୁର
ଅଶୋକ ବନରେ ଛପି ।
ଆପଣା ପ୍ରତାପ ଦେଖାଏ ପାବକ
ଜାଳି ବନ ଜନ ପଦ,
ଦବାନଳ ଏଣେ ଦରିଦ୍ର କୁଟୀରେ
ଶୁଭଇ କରୁଣ ନାଦ ।
ସରିଯାଏ ଖେଳ କେତେ ପ୍ରାଣୀଙ୍କର
ପଡ଼ି ତା କବଳେ, ଜଳେ,
ନିଷ୍ଠୁର ଚଡ଼କ ପଡ଼େ କେତେ ବେଳେ
କେହି ନ ଜାଣଇ ଲବେ ।
ଆତୁରେ ସକଳେ ପାଣି ଅସରାକୁ
ଚାହିଁଥାନ୍ତି ଅନୁକ୍ଷଣ,
ସଞ୍ଜ ସୁଶୀତଳ ଜଳଦର ଝରି
ଟାଣେ ଧନବାନ ମନ ।

ଗରଜ ପବନ ଆସେ ବେଳେ ବେଳେ
ଦେଖାଇ ଆପଣା ବଳ,
ଦେଖାଇ ଦୃଷ୍ଟାନ୍ତ ଯଥା ଫୁଲପଣ
ଜଗତେ ସଦା ସଫଳ ।
ସବେ ବୁଡ଼ୁଛନ୍ତି ବାଳକେ ଆନନ୍ଦେ
କରି କୌତୁକ ଆଳାପ,
ଯଥା ଦେବଗଣ ବୃଷ୍ଟେ ଖେଳୁଥାନ୍ତି
ନସହି ନିଦାଘ ତାପ ।
ହେଉଅଛି ଲେଉଟା ବ୍ୟଞ୍ଜନ ସତତ
ପାଣି ଗାମୁଛାରେ ଶ୍ରଦ୍ଧା,
ରାତରେ ସକଳେ ଗଡ଼ୁଛନ୍ତି ଦାଣ୍ଡେ
ନ ସହି ଗରମ ବାଧା ।
ଥପ ଥପ ଝାଳ ନିଗିଡ଼ି ପଡ଼ୁଛି
ଜ୍ୟେଷ୍ଠ ପୂର୍ଣ୍ଣିମା-ଝାଞ୍ଜିରେ,
ସାରିଲେ ସ୍ନାହାନ ଜଗତର ନାଥ
ଭାଇ ଭଉଣୀ ସଙ୍ଗରେ ।
ଧୀରେ ଧୀରେ ତାତି ଉଠିଲା ଦେହରୁ
ଛାଡ଼ିଲେ ଅନ୍ନ ପ୍ରସାଦ,
ଦେଖି ଦୁରବସ୍ଥା ମହାଲକ୍ଷ୍ମୀ ଏଣେ
ଗଣିଲେ ମହା ପ୍ରମାଦ ।
ବାଞ୍ଛି ରଉଦଗେ ରଜତ ଜୋହ୍ନା
ସଙ୍ଖୋଳିଲେ ତାର ସାଇଁ,
ବୁଝାଇଲେ ଅବା ନେବାକୁ ବିଶ୍ରାମ
ରହିଲେ ଦୁଆର ଦେଇ ।
ଡାକିଲେ ଗୋଟିଏ ପୁରୁଖା ବଇଦ
ଅଣାଇଲେ ଠାକୁରାଣୀ,
ଟେଣ୍ଟେଲୁନଧାରୀ ଡାକତର ବାବୁ
ଡରନ୍ତି ଯା ନାମ ଶୁଣି ।
ପାଚନ ପାଣିକ ଡରି ଟଳାଇଲ
ପନ୍ଦର ଦିନରେ ଜ୍ୱର,
'ବୁଲାଯିବେ ରଥେ' ବୋଲି ଜଗନ୍ନାଥ
ହେଲ ଭାରତେ ପ୍ରଚାର ।
ଲାଗି ଦିନ ରାତ ଟେକିଦେଲେ ରଥ
ହରଷେ ବଡ଼େଇ କୁଳ,

ମଙ୍ଗଳର ଧାମେ ହଜାର ହଜାର
କ୍ରମେ ଯାତ୍ରୀ ଦଳ ଠୁଳ ।
ଲୋକାଳୟ ମଧ୍ୟେ ଶୋଭେ ଦେବାଳୟ
ତାରା ପୁଞ୍ଜେ ଯଥା ଇନ୍ଦୁ,
କଲ୍ଲୋଳ ସଙ୍ଗୀତ ଗାଇ ଅହରହ
ଖଟୁଅଛି ପଦ ସିନ୍ଧୁ ।
ଜନତାର ଭିଡ଼ ଦେଖି ସରକାର
ବେଳୁଁ ହୁସିଆର ସଦା,
ମାଟେନେଏ ଲଭ ଭଡ଼ାଦିଆ ଘର
ପଣ୍ଡା ପୁଅ ହାତ ଓଦା ।
ଭୁଲାଇବା ପାଇଁ ଗରୀବର ମନ
ବେପାରୀଏ ପୁଞ୍ଜି ପୁଞ୍ଜି,
ହୋଇ ମେଳାଦେଲେ ରାଜପଥ ପାର୍ଶ୍ୱେ
ନିଜ ପସରାକୁ ରଞ୍ଜି ।
ଧନ୍ୟରେ ସହର ସଜାଡ଼ିଛୁ କେତେ
ଅତିଥି ପୂଜାକୁ ରଜ,
ଅବା ଅସନ୍ତି ଏ ପୁଣ୍ୟ ତୀର୍ଥରେ
ଦେଖାଇ ଓଡ଼ିଆ ଓଜ ।
ଘର ବାହୁଁକୁ ତ ନଥାଏ ଠିକଏ
ନାକ ପୋଛିବାକୁ ରତି,
ବୋହି ବୋହି ଯାତ୍ରୀ ଏଣେ ତେଣେ ଝାଳେ
ହୋଇଛନ୍ତି ସର ସର ।
ଯାତ୍ରୀ ବୋହିବାରେ ଅସମୟ ରେଳ
ଚାଲିଅଛି ଦିନରାତି,
କ୍ରମେ କ୍ରମେ କାନ୍ଧି ନେହଲେ ଚୁଣ୍ଡ ବନ୍ଧୁ
ସ୍ୱେଚ୍ଛା ସେବଦଳ ମାତି ।
ସେବା ପାଇଁ ଜନ୍ମ ମାନବ ଜଗତେ
ସେବାତ ପରମ ଧର୍ମ,
ପରଦୁଃଖେ ତପ୍ତ ତରଳେ ଧାହାର
ବର୍ଷେ ତା ଶିରେ କୁସୁମ ।
କୁଆଁର ଫୁଟି- ଲାଣି ପ୍ରାଚୀ ପଟେ
କୁକୁଡ଼ା ଦେଲାଣି ଡାକ,
ମହୋଦଧି ଜଳେ ସାରିଲେ ସ୍ନାନ
ଦଳ ଦଳ ଦରଶକ ।

ଚାହାନ୍ତ ପହନ୍ତୁ    ଉଠିଲେ ନସବକେ
ପଡ଼େ ନାହିଁ ତଳେ ଗୋଡ଼,
ମଣ୍ଡି ଦେବ ଦେବୀ    ବିବିଧ ଭଉନେ
ପହଣ୍ଡି କି ଧଡ଼ପଡ଼ ।
ଡଙ୍କେର ହୋଇ    ଧଣ୍ଡାମାଳ ସଜ
କର ବୁଟ୍ଟୀ ମାଳଆଣୀ,
ପହଞ୍ଚାଇ ଦେଲ    ନ ବାହାରୁଁ ବେଳ
ସେବକ ସମୀପେ ଆଣି ।
ଆନନ୍ଦ ସଂଗୀତ    ଗାଇଲେ ପକ୍ଷୀଏ
ମିଶାଇ କାହାଳି ତାନ,
ଆରମ୍ଭିଲେ ବିପ୍ର    ମୁକତି ମଣ୍ଡପେ
ଉଚ୍ଚସ୍ୱରେ ବେଦ ଗାନ, ।
ସଂକୀର୍ତ୍ତନ ସଙ୍ଗେ    ବାଜିଲ ବାଜଣା
ଘଣ୍ଟ ଶଙ୍ଖ ଭେରୀ ତୁରୀ,
ପ୍ରତିଧ୍ୱନି ଛଳେ    କହୁଥାଏ ଅବା
"ବାହାରି ଦେଖି ଯାଅ ତରି" ।
ବୃର ଦୁଆରରେ    ଦେଉଳ ପାଇକେ
ଉହ୍ୱାଲେ ସକାଳୁ ଛକ,
ଅଣ୍ଟା ଖୋଷା କାଚ୍ଛ    ଧାଇବାକୁ ପର
ସଜ ଉତ୍ତ୍ରୁ ଥାନ୍ତି ଠାକ ।
ପିପୀଲିକା ଶ୍ରେଣୀ    ପରାଏ ଦର୍ଶକେ
ସ..ରି ଆସିଲେ ମାଡ଼ି,
ଛୁଟିବାକୁ ବାଟ    ଦେଉଳକୁ ଠିକେ
ଆଗୁରେ ଘୁଡନ୍ତି ଗଡ଼ି ।
ସଜେଜଣ୍ଡି ଥୋକେ    ପଶନ୍ତି ଦେଉଳେ
ଆପଣା ମହତ ରଖି,
ଯା ମନ ଧାଇଁଛି    ମୁକତିର ପଥେ
କିଏ ତା ପାରିବ ରୋକି ।
ବସୁଛି ପିଠିରେ    ଗୁଆପଟେ ମାଡ଼ି
ଦେଉଳ ପ୍ରବେଶ କାଳେ,
ନାହିଁ ଦୁଃଖମନେ    କାହାର କଣ୍ଠେ ତ
ଧାଉଁଛି ଭକତ-ବତ୍ସଳେ ।
କ୍ଷିପିଲେ ପ୍ରହାର    ଚଳାଏ ବା ଡର
ଖସରୁ କଲୁଷ ରଖି,
ପ୍ରବଳ ଦୁର୍ବଳ    ଦେଖାନ୍ତି ପିଠିକ
ଜନତା ଗହଳେ ପଶି ।
ଲଗାଏ ଭେକାକ    ଏଣେ ପଣ୍ଡା ଭାଇ
ପଇସା ନେବାକୁ ଛୁଟି,
ଦୂର ବିଦେଶର    ନବ ଆଗନ୍ତୁକ
ପଡ଼େ ତା କବଳେ ହଟି ।
ଘିଅ ଦୀପ ଧରି    ଗୁଞ୍ଜୁଅଛୁ କିଏ
ଟେକ ଗୁଞ୍ଜାଇ ପୁଷ୍ପ ହାର,
ନିଜ କଳ୍ପମତ    ଦେଖାଇ କିଏ ବା
ହେଉଅଛି ଫର ଫର ।
ତୈଲଙ୍ଗ୍ୟ ବଙ୍ଗାଳି    ପଶ୍ଚିମା ବିହାରୀ
ମାରୱାଡ଼ି ଆଦି ଜାତି,
ବେଢ଼ା ଗୃହପଟେ    ପ୍ରଦକ୍ଷିଣ କରି
ଦେଖନ୍ତି ମହା କୀରତି ।
ପଂଖା ପଂଖା ହୋଇ    ହରିଜନ ଭାଇ
ପଶିଥିବେ କେତେ ଏଥି,
ଜନତା ଗହଳେ    ନ ଚିହ୍ନିଲେ ପରା
ନଯାଏ କାହାର ଜାତି ।
ଧନ୍ୟ ବୃନ୍ଦାବଣା    ଧନ୍ୟ ଭେଦ ଭାବ
କିଏ ସେ ସମ୍ଭବ ଆଜି,
ଏକତାର ଆଗେ    ଲୁଇଁଛିବ ମଥା
ସାହା ହେବେ ମହାବାହୁ ।
ଦେଉଳ ଉପରେ    ପାରାବତ ମାନେ
ଦରଶନ ପାଇଁ ଅବା,
ଘୁଙ୍ଗୁରି ଘୁଙ୍ଗୁରି    ଅତି ମୋଦଭରେ
ଦେଉଛନ୍ତି ଟେକ ଗ୍ରୀବା ।
ଶିଖରେ କେତନ    ବାତାହତେ ଏଣେ
ଉଡ଼ୁଅଛି ଫର ଫର,
ଅନଭ୍ୟସ୍ତ ନର    ଚାହିଁଲେ ଟିକଏ
ଘୂର୍ଣ୍ଣି ଦେଉଥାଏ ଶିର ।
କିଏ ଏ ବର୍ଣ୍ଣିବ    ଗତି ଦେବାଳୟ
ଦେଉଛି ସୁଷମା ଢାଳି,
ଆଣି ଥୋଇଛନ୍ତି    ଇନ୍ଦ୍ର ଭୁବନକୁ
ଅବା ଦେବତାଏ ମିଳି ।

ଭୁଖିଲେ ପ୍ରସାଦ ବଳେ ବଳେ ଉଦେ
ହୁଏ ମାନସେ ଭକତି,
ନାସ୍ତିକ କି ବୁଝେ ମହିମା ଏହାର
ବାନେତ ଅଯଥା ଯୁକତି ।
ଭକ୍ତ ସିନା ଜାଣେ ଭକତି-ମହିମା
ଚଷାପୁଅ ଶୁଷ ଖଣ୍ଡି,
ରୋଗୀକି ବୁଝିବ ରୋଗ ପରାକ୍ରମ
ଲୋଡ଼ଇ ଅପଥ୍ୟ ଖତ ।
ଅପର ଭକତେ ଯେବେ ଶତ ଥୋକେ
ଆସୁଛନ୍ତି ଧାଇଁ ଧାଇଁ,
ବୃଥା ଆଶା ପୋଷି ଡାକନ୍ତି ଆରତେ
'ମୁକତି କର ଗୋସାଇଁ ।'
କେବା ଗାଏ ଗୁଣ ଓଡ଼ିଆ ପୁଅର
ଦେଉଳର ଶୋଭା ଦେଖି,
କେ କରଇ ସ୍ତୁତି ଭକତ ଅନ୍ତରେ
ଜଗନ୍ନାଥେ ଅକ୍ଷି ରଖି ।
ଚଡ଼ୁଅଛି ରଡ଼ ଚଉଦ ଭୁବନେ
ମରଷ ତକ୍ଷକ ଭ୍ରମେ,
ଡାକ ଡାକ ପ୍ରଭୋ ବସିଲଣି ଭଣ୍ଡି
ନଗୃହ୍ୟ ଦଳେ ଅଧମେ ।
ସତ୍ତୁ ନାହିଁ ହୋଆ ଟିକକ କଥାରେ
ଫିଟିଥିଲେ ଅକ୍ଷି ବେନି,
ପଡ଼ଲେ ପଲକେ ମାରଥାନ୍ତି ତାଳି
କାହିଁ ଯାଏ କଣ୍ଠଧ୍ୱନି ।
ପ୍ରାଣରୁ ଅଧିକ ଯେ କରେ ଆଦର
ଗୁଣିକ କର ପଥର,
ମୁଖେ ଦିଏ ନିଆଁ ଗଡ଼ାଇ ପାଉଁଶେ
ବୁଝେ କେ ଛିଣ ହୃଦର ।
କେବେ କାହା ହାତେ ଧରାଉଚ ଲଡ଼ୁ
ନଖାଉଁ ମଥ ଛଡ଼ାଇ,
କେତେ ପରକାରେ ଲଗାଇଚ ନାଟ
ନ ବୁଝି ମନୀଷ ବାଇ ।
ଜଗତେ ସରବେ ଆପଣା ବଡ଼ାଇ
ଦେଖାନ୍ତି ପଡ଼ଲେ ପଠ,

ଜୀବନ-ସଂଗ୍ରାମେ ମନ୍ଥି ସ୍ୱାର୍ଥ-ଜଳେ
ହୁଡନ୍ତି ଧରମ ବାଟ ।
ଭକତି ମାରଗ ଯାଉଛି କି ଲିଭି
ସ୍ୱାର୍ଥାନ୍ଧ ଜଗତ ସାରା,
ଧରମକୁ ତଡ଼ି କରଇ ରାଜତ୍ୱ
ପ୍ରବଞ୍ଚନା ଏବେ ପରା ।
କେତେ ଧକ୍କା ଖାଇ ରହୁଛି ଜୀବନ
ନାହିଁତାର ପ୍ରତିକାର,
ବସୁନ୍ଧରା ଗର୍ଭେ ଷଣେ ହୋଇ ଲୀନ
କାହିଁ ଆସେ ଏ ମୁଁକାର ।
ଏ ଜଗତେ କେହି କାହାର ନୁହନ୍ତି
ସକଳ ମାୟା ସୃଜନ,
ଅନେକ ଧନକୁ ଭେଟି ପରସ୍ପରେ
ବୃଥା ଏତେ ଅଭିମାନ ।
ତୋ ଭକତ ଯୋଗୀ ଲଭେ ତୋ ଚରଣ
ଅବଗାହି ଧର୍ମ ନୀରେ,
ସଂସାର ବାସନା ମାୟାର ଛଳନା
ବୁଝି ଚେତନ ଅନ୍ତରେ ।
ରାଜୁଅଛି କରେ ସାମ୍ୟ ଦଣ୍ଡ ଖଣ୍ଡି
ମନେଡ ସଭିଙ୍କ ନୟନେ,
କଡ ଲୋଭ ମୋହେ ଦଅନ୍ତି ପାସୋର
ଅଧମ ନରେ ଜୀବନେ ।
ନାହିଁ ପରିବାଣ ଭବ ପାରାବାରେ
ନ ଧଇଲେ ତୁମ ନାମ,
ଚଢ଼ିଲଣି ଜଣା ନାହିଁ ତ କରୁଣା
ଅଭାଗା କରମ ବାମ ।
କେ ଦେଖିଚି ଛକି କା ହାତେ ଆଳଟ
ଭ୍ରମଇ କାହାର ହାତେ,
ଅଲୋଡ଼ି କଏ ତଆର ନେବାକୁ
ଦିଅଙ୍କୁ ମନ୍ଦର ଭିତେ ।
ଜପୁ ନାଦ ମଧ୍ୟେ ଯୋହଲା ତିମନେ
ହୋଉଛେଲେ ପହଣ୍ଡି ବଜେ,
ସୁନା ପହଡ଼ାରେ ପାଡ଼ାଚି ଓଲାଇ
ଦେଖିଲ ଭୂପ ଏବେ ମଜେ ।

କେତକି-କୁସୁମ ଉଜ୍ଜ୍ୱଳ ରାଜନେ
ଥୋଇଛନ୍ତି ଯାହା ଗୁନ୍ଥି,
ସଉରଭ ସାର ଚହଟୁଛି ଭବେ
କଏ ସେ ପାରିବ ମନ୍ଥି ।
ନନ୍ଦିଘୋଷେ କେ ଭବେ ରସନା ବଞ୍ଚନା
ହୁଏ କେତେ ଅନୁଚର,
କୁଢ଼ୁଆ କୁଢ଼ୁଆ ଅଭଡ଼ା ଭୋଗରେ
ଦିଶେ ପେଟ ମନୋହର ।
ବଳଦେବ ପଛେ ଭଗିନୀ ସୁଭଦ୍ରା
ପରେ ଶେଷେ ଜଗନ୍ନାଥ ।
ଗୋଟି ଗୋଟି ହୋଇ ବସିଲେ ପୁଲକେ
ଆପଣାର ଯେ ଯାହା ରଥ ।
ଚନ୍ଦନ କର୍ପୂରେ ମଣ୍ଡିତ ଅଙ୍ଗ
ବାସୁଅଛି ଭଣ ଭଣ,
ଗନ୍ଧବହ ଗନ୍ଧ ଅପହରି ଅବା
କଲା ଚଉଦିଗେ ଦାନ ।
ଅଗ୍ରଜ ବଳିଆ ଧୋବ ଧାଉଳିଆ
ଅନୁଜ କଜଳ କଳା,
ବ୍ରହ୍ମାଣ୍ଡ କର୍ତ୍ତା ଭକତ ଶରଣ
ଭବ ପାରିବାର ଭେଳା ।
ଦିଶେ ଜକ ଜକ ଭଗିନୀର ଅଙ୍ଗ
ହାଟକ କାନ୍ତିକି ଜିଣି,
ପଡ଼ିଗଲେ ଦୃଷ୍ଟି ଲଳନା ମାନସ
ନିମିଷକେ ନଏ କିଣି ।
ଉଲ୍ଲାସରି ବାତ୍ୟା କମ୍ପାଏ ନଗର
ଜିଣି ସିନ୍ଧୁ ଗରଜନ,
ଉକାଡ଼ନ ହୋଇ ଟାଣିନେଲେ ରଥ
ଦାନ୍ତେ ତୃଣ ଥିବାଜନ ।
ତର ତର ହୋଇ ସାରି ଗୃହକାର୍ଯ୍ୟ
ପୁର କୁଳବଧୂ ଗଣ,
ଟେକାଳି ଚରଣ ଦରଶନ ଆଶେ
ଗବାକ୍ଷେ ନେଲେ ଶରଣ ।
ସଜ ହେଉ ହେଉ ରାଜ ଦେବୋଣ
ଚଳିଗଲ ରଥ ଏଣେ,
ନଜଗିଲେ ବେଳେ ହଟ ହଟା ଯୋଗ
ମଣିଷକୁ ଅନୁକ୍ଷଣେ ।
ବିବିଧ ଭୂଷଣ ଭରି କଣ୍ଠ ଦେଶେ
ମନେ ମନେ ହୋଇ ଠେକ,
ଦେଖାଇ ହେବାକୁ ଆସୁଛନ୍ତି ପର
ମେଳ ହୋଇ ପଂଚେ ଟୋକା ।
ପଲ୍ଲୀ ବାଳଗଣ ହୋଇଛନ୍ତି ଉଭା
ଶୃଙ୍ଗାଟକେ ମେଳ ବାନ୍ଧି,
ଘଣ୍ଟ ଗରଜନେ କମ୍ପୁଅଛି ପୁର
ଜନତାରେ ହୋଇ ରୁନ୍ଧ ।
କେ ବାନ୍ଧିଛି ଜୁଡ଼ା କେ ଗୁନ୍ଥିଛି ବେଣୀ
ମୁକୁଳା କାହାର ଚୂଳ,
ପରିହାସ ଛଳେ ଏକକୁ ଆରେକ
ବାହୁନଲେ ମାଡ଼େ ଚଳ ।
ପଡ଼ନାହିଁ ଶିରେ ଓଢଣୀ କାହାର
ଗୁଞ୍ଜିଚନ୍ତି ଗାଲେ ପାନ,
ଜିଣିବକି ସତେ ଜବା କୁସୁମକୁ
ଅଧର ପଂକ୍ତି ଦଶନ ।
ଧନ୍ୟରେ ସଭ୍ୟତା ପଶି ପୁରପଲ୍ଲୀ
ସାଜୁ ନବ ନବ ବେଶ,
ଧାଉଁଚନ୍ତି ଭୁଲି ପୂରୁବ ଗୌରବ
ସକଳେ ହୋଇ ତୋ ଦାସ ।
ଆପଣା ମହତ ଜଗି ନିତମ୍ବିନୀ
ସଉଧ ଉପରେ ବସି,
ଲଭି ଦରଶନ କଲା ଚକାଡ଼ୋଳା
ଯାଉଛି ହରଷେ ଭସି ।
ହୁଏ ଛଟ ପଟ ଶାଖାମୃଗ ପରା
କରିବାକୁ ଦରଶନ ।
ସଦା କ୍ରୀଡ଼ାସ୍ଥଳ ଥିଲା ଯାର ଗୃହ
ହୋଇଛି ପ୍ରମଦା ପୂର୍ଣ୍ଣ ।
ଆକୁଳ ନୟନେ ଧୁଞ୍ଜିବାକୁ ଠିକେ
ଦେଖାଏ ଦାନ୍ତକୁ ଖରେ,
ପୋଛେ ସିନା ଲୁହ ଦୁର୍ବଳ ଗୁହାର
ଶୁଣୁଛି କଏ ସଂସାରେ ।

ନାନାଆଡ଼ୁ ବାଳ- ବିଧବା ଆସିଣ
ହୋଇଛନ୍ତି କେତେ ଠୁଳ,
କାହ୍ନୁଦ ବିଦାର ନହେବ ପୁଣି ଏ
ଦଗଣି ବିଧବା କୁଳ ।
କପାଳକୁ ଠୁକି ଲାଜ ଓଢଣାଟି
ଟାଙ୍କିଅଛି ଅତି ଖେଦେ,
ବାସିଫୁଲ ପରି ଝାଉଁଳିଛ ପଣ
ଚନ୍ଦ୍ରା-ଭଗ୍ନି ବାଜ ହୃଦେ ।
ନାରୀ ସିନା ସହେ ସକଳ କଷଣ
ବୋହି ଗର୍ଭର ଭାର,
ଫାଟେ ହିଆ ଦେଖି ବୈଧବ୍ୟ ଯନ୍ତ୍ରଣା
ନକରେ କେ ପ୍ରତିକାର ।
ପ୍ରତିଧ୍ୱନି ଛଳେ ପାଇଲେ ବାରତା
ଅବା ନଭେ ଗ୍ରହପତି,
ଦର୍ଶକ ମାନଙ୍କ ବଢାଇଲେ ପ୍ରୀତି
ଲୁଚାଇ ଆପଣା ଜ୍ୟୋତି ।
ତଳେ ଟପିବାକୁ ନାହିଁ କା ଶକତି
ନ ଯୁଝିବା ଯାଏ ରଥ,
ନବଦୁର୍ଗ ଅବା ହୋଇଛି ଆବୃତ
ସୁବିସ୍ତୀର୍ଣ୍ଣ ରାଜପଥ ।
ଫୁଲଇ ଛାତିକି ଝୁଲାଉଛନ୍ତି ଥୋକେ
ମଲ ମୁକ୍ତି ଆକୁ ଦେଖି,
ମନେ ନାହିଁ ପରି ମିଶିବେ ମାଟିରେ
ଦିନେ ହୋଇ ଜକା ଜକ ।
ନୁହେ କଳ୍ପିତର ଏ ଜୀବନେ ଘାଇ
ଭବିଷ୍ୟତ ଅନ୍ଧକାର,
କେବେ ମିଳେ କୋଠା କେବେ ଗଛମୂଳ
ମଣିଷକୁ ଅଗୋଚର ।
ପଡ଼ିଛି ଓହଳ ଥୋଡ଼ିବା ଯାହାର
ଟାଣେ ଧରି ରଥ ଡୋରି,
ଅନୁସରେ ଅବା ମନେ ମନେ ମୋର
ହେଉ ଗନ୍ଧାଧର ଭରି ।
ରାଜା ମହାରାଜା ପୁଣି କୋଟିପତି
ଟାଣନ୍ତି ଧରି ଦଉଡି,

ଆଡମ୍ବରି ଅବା ମହିମା ପ୍ରଭାବେ
ଚଳାଇଛି କାହିଁ ଘୁଡ଼ି ।
ଜନତାକୁ ଚଢ଼ି କାଟୁ ଅଛି ବାଟ
ଧୀରେ ରଙ୍ଗ ପଗଡ଼ିଆ,
ରଖୁଛନ୍ତି ଶାନ୍ତି ହରିହମୁ ପରି
ଧନୁକରେ ହୋଇ ଠିଆ ।
ହିମାଳୟୁ ଠାରୁ କୁମାରିକା ଯାଏ
ଜଟାଧାରୀ କେତେ ଆସି,
ରଥ ଆଗେ ଆଗେ ସଂକୀର୍ତ୍ତନ କରି
ଯାଉଛନ୍ତି ପ୍ରେମେ ଭାସି ।
ବେଳେ ବେଳେ ବାଡ଼ି ଦିଏ ଢଗମାଳା
ସାରଥି ହଲଇ ବେତ,
ସକଳେ ମାରବେ ଡେରନ୍ତି ଶ୍ରବଣ
ମନ ଅତି ପୁଲକିତ ।
ମନେ ପଡେ ପରା ନିଦାଘ ବିହାର
ନୀରଦ୍‌ ସରସୀ ଗୃହେଁ,
ଦୋହଲା ଦୋହଲି ଯାଇ ଖଣ୍ଡେ ଦୂର
ମୁହଁ ମୋଡ଼ି ଦେଲେ ତହିଁ ।
ଯୌବନ ଗହଳ ଦରଶନ କରି
ଲୁଟିଅଛି କାହିଁ ଡରି,
ତନୁଖାନି ଅବା ପୋଛି ପକାଉଛି
ବାରିଦ ବର୍ଷି ବାରି ।
ରହିଲେ ଅଟକ ମାଉସୀ ଦୁଆରେ
ବାଟରେ ହୋଇ ହାଳିଆ,
ଶ୍ରମଖାଳ ମାରି ବଦା ହେଲେ ସେଠିଁ
ସାରି ପୋଡ଼ପିଠା ଖିଆ ।
ତୃଷାରେ ଆତୁର ହୋଇ ଦରଶକେ
ଲୋଡନ୍ତି ଶୀତଳ ପାଣି,
ପଇଡ଼ି ବରଫ ସରବତ ଚାଖି
କା'ର ମନ ନିଏ ଟାଣି ।
ଗଳିତ ବଧିର ଅଥର୍ବ ପଳିତ
ଖଞ୍ଜ କୁବ୍‌ଜା ଅନ୍ଧ ଛୋଟା,
ଅର୍ଥ ଆଶେ ଏଣେ କରକୁ ପ୍ରସାରି
କରୁଛନ୍ତି କେତେ ହଠା ।

ଆଡପ ମଣ୍ଡପ ସମୀପେ କ୍ରମଶଃ
ହେଲା ରଥ ଉପଗତ,
ଦେବ-କମଳର ଦ୍ରଷ୍ଟାଳକନେ ଅବା
ହେଲା ସିନ୍ଧୁ ଉଦ୍‌ବେଳିତ ।
ପ୍ରତୀଚୀ ଲଲାଟ ଦରେଶ ଜକ ଜକ
ପାଟେଣ୍ଟିବା ପାଇଁ ସଜ,
ମେଲି ଗମ୍ଭାଦର ଧୀରେ ଧୀରେ ଆଣି
ଠୁଳକଲା କେତେ ତେଜ ।
ଧୀରେ ଧୀରେ କାହୁଁ ବହୁ ଖଗେ ଆସି
ବନ୍ଦିଲେ କାକଳୀ-ରବେ,
ଜାଳିଲେ ମଶାଲ ଅବା ଇନ୍ଦୁ ନଭେ
ଦରଶନ ପାଇଁ ଦେବେ ।
ମାଳ ମାଳ ହୋଇ ମେଘମାଳ ଅବା
ନାଚୁଥିଲେ କୁତୂହଳେ,
ଥିଲା କାହିଁ ଲୁଚି ସମୀରଣେ ଆସି
ଦେଲା ଉଡ଼ାଇ ବଳେ ।
ପାଣ୍ଡୁର ବଳିଲା ନୀଳ ଅନ୍ତରୀକ୍ଷ
ନ ଦିଶନ୍ତି ତାରା ରାଶି,
ରଥର ଘର୍ଘର ଶବ୍ଦ ଶୁଣି ଅବା
ତଳକୁ ଆସିଲେ ଖସି ।
କରାଳ ମୂରତି ଧରି ସନ୍ଧ୍ୟା ଅବା
ମେଲି ଦେଇ ତାର ପାଟି,
ପ୍ରକୃତି ଦେବୀଙ୍କ ସୌନ୍ଦର୍ଯ୍ୟ ପସରା
କ୍ଷଣକରେ ଦେଲା ଲୁଟି ।
ହଟ ହଟ ବୋଲି କରୁଅଛୁ ଉଚ୍ଚେ
ହଟିବା କାହିଁ ବନ୍ଧୁ ଭିଡ଼,
ଲଭିଲା ଦର୍ଶନ ଏକାନ୍ତରେ ଅବା
ଜନତାକୁ ଦେଇ ଛାଡ଼ି ।
ବସାଧର ହେଲା ଆଡ଼ପ ମଣ୍ଡପ
ଭସିଲା ଆମ୍ବ, ପଣସ
ରହି ସାତ ଦିନ ପାଇ ତଠା ହେବେ
ପୂର୍ଣ୍ଣ ଭକତ ମାନସ ।
ପ୍ରସ୍ଥିତ ଆନନ୍ଦ ଯାଇ ଅଛୁ ଲଭି
ନିଶବଦ ଡଉଦାଗ,

ନିତି ଏହି ପରି ମାନବ ଜୀବନେ
ସମ୍ପଦ ବିପଦ ଯୋଗ ।
ଗୃହାଚ୍ଛନ୍ତି ସବେ ହସ୍ତେ ଧରି ଆମ୍ବ
କଦଳୀ ଶାକର ଫେଣା,
ବାରେ ଦରଶନ ଆଡପ ମଣ୍ଡପେ
ମୂଳେ ମୁକତ ଦକ୍ଷିଣା ।
ଏଭଳି ମାନବ ବଢ଼ାଇ ଉତ୍କୋଚ
କରନ୍ତି ସ୍ୱାର୍ଥ ସାଧନ,
ପାଞ୍ଚନ୍ତି ପର ଅଣ୍ଡା ଖୋଷା ଦେଲେ
ହୁଅନ୍ତି ଦେବେ ପ୍ରସନ୍ନ ।
ନପାଏ କେ ବର ଖଜା ଗଜା ଦେଇ
ଜାଣି ଜାଣି ବଣାକର,
ଚିତ୍ତ ଶୁଦ୍ଧି ବିନା ଭବେ ନାହିଁ କିଛି
ଗୂଢ଼ ଦେବ ଉପହାର ।
ଉଣ୍ଡି ବେଳ କାଳ ଖଚୁଆ ସତତ
ସାଧେ ନିଜ ଅଭିଳାଷ,
ଠାକୁରାଣୀ ପୁରେ ପଢାଇଲା ମନ୍ତ୍ର
ଭାଙ୍ଗିବାକୁ ନନ୍ଦଦୋଷ ।
ସହଜେ ଚପଳା ଅବଳା ପ୍ରକୃତି
ଶ୍ରବଣେ ଖଚୁଆ ବାଣୀ,
କ୍ରୋଧାନଳେ ଜଳି ହେବା ଦିନ ରଥ
ଭାଙ୍ଗିଦେଲେ ଠାକୁରାଣୀ ।
ମହାରାଜ ପଣ୍ଡା ବଢ଼େଇ ମାନଙ୍କୁ
ଦେଇ ଶାସ୍ତି ଠାକୁରାଣୀ,
ବୃହାଁ ଦେଇ ଟିକେ ମଣ୍ଡପେ ପ୍ରଭୁଙ୍କୁ
ମିଳାଇଲେ ଦେଉଳେ ପୁଣି ।
ମଉସ୍ଥରେ ପୁଷ୍ଟ ଭସୁଚି ଏକାଳେ
ଖାଇବାକୁ ନାହିଁ ପେଟ,
ଇନ୍ଦ୍ରଦ୍ୟୁମ୍ନ ସରେ ପାଇ ନିତି କାଆ
ବତାଏ ଗଣ୍ଡି କମଠ ।
ସହରିଆ ଭାଇ ଚଟାଇ ପାଟକ
ହୋଇଣ ନିଶାରେ ଭାଉ,
ବୁଲୁଚନ୍ତି ରଙ୍ଗେ ଏପଟେ ସେ ପଟେ
ନାନାଭାବେ ଗଳ୍ପକରି ।

ନାହାନ୍ତି ଗୁଣ୍ଡିଗୁ ଦେଖିବାକୁ ଜାତ
ରଖି ଯାଇଛନ୍ତି ସ୍ମୃତି,
ହିନ୍ଦୁ ଜାତିର ଏ ଅପୂର୍ବ ମିଳନେ
ଫୁଲଏ ଓଡ଼ିଆ ଛାତି ।

***

## ସନ୍ଧ୍ୟା ଦର୍ଶନ "ପ୍ରାର୍ଥନା"

ବିଶ୍ୱର ଶାସନ ଦଣ୍ଡ ଅଛି ଯାର ହାତେ,
ସୃଜୁଛି ଯେ ମେଘାବଳୀ ସଦା ଜୀବହିତେ ।
କେବେ ବା ଶ୍ୟାମଳ କେବେ ପାଟଳ ବରଣେ,
ବସନ ପିନ୍ଧାଇ ବୃକ୍ଷେ ହରେ ଜନ ମନ ।
ନିଦାଘ-ଆତପ-ସନ୍ତାପିତ ପ୍ରାଣୀ ଚୟେ,
ଦିଏ ଶାନ୍ତି ଧୀରେ ପ୍ରେରି ସୁଶୀତଳ ବାତେ ।
ସଂସାର ବନ୍ଧନୁ ଫିଟି ଶିଶୁ ଜନ ଯେନ,
ଯାଁ ପ୍ରସାଦେ ଲଭୁଅଛି ଅମର ଭୁବନ ।
ଯା ଚରଣେ ଲୋଟୁଛନ୍ତି ଅମର ପଟଳ,
ସବିତା, ଚନ୍ଦ୍ରମା, କୋଟି କୋଟି ତାରାବଳୀ ।
ନବ ନବ ବେଶ ସାଜି ଋତୁ ଆବର୍ତ୍ତନେ,
ବନ୍ଦୁଅଛି ବସୁନ୍ଧରା ପୁଲକିତ ମନେ ।
ଜଳେ ସ୍ଥଳେ ଅନ୍ତରୀକ୍ଷେ ମହିମା ଯାହାର,
ଦିବାକେ, ଶ୍ରୀପଦେ ତାର କୋଟି ନମସ୍କାର ।

***

ଅସ୍ତାଚଳ ଚୂଳେ ଉଠିଲେ
ଧୀରେ ଧୀରେ ଭାସ୍କର,
ସିନ୍ଦୂରିତ ହେଲା ଭୁବନ
ପଡ଼ି କନକ କର ।
ବଳାକା ନିକର ତୋରଣ
ନଭେ ଉଡ଼ିଲେ ଗଢ଼ି,
କାନନ ଆଡ଼ରୁ ଶୁଭୁଛି
ଗାଈ ଗୋରୁଙ୍କ ରଡ଼ି ।
ମଳିନ ଦିଶିଲା ବାସର
କ୍ରମେ ବିହଙ୍ଗ ଶ୍ରେଣୀ,
ଆପଣା ଆପଣା ସଙ୍ଗୀତେ
କମ୍ପାଇଲେ ଧରଣୀ ।
ଚକୋର ଦମ୍ପତ୍ତି ଚନ୍ଦ୍ରିକା
ପାନେ ବଳାଇ ମନ,
ନିଜ ନିଜ ବାସା ଖୋଜିଲେ
ଭୂମି ଆକାଶ ବନ ।
ସନ୍ଧ୍ୟା ଦରଶନ ବାରତା
ନଇ ନାଆରେ ଯାଇ,
ବାହାରିଲେ ପୁର ପଲ୍ଲୀରୁ
ଯେଝା ବେଶ ପକାଇ ।
ପେଣ୍ଟଲୁନ ଧୋତି କେବା
କାଛ ଉଡୁଛି ଫେର,
କଉପିନ ମାତ୍ର କଟିରେ
କେବା ଭସ୍ମ ଧୂସର ।
ଶିରେ ନାହିଁ କେଶ କା'ର ବା
ଅଣ୍ଟା ଯାଇଚି ଲଇଁ,
ବାଙ୍କି ବାଡ଼ି ଧରି କେବା
ଦୂରୁ ଆସୁଛି ଧାଇଁ ।
ତେଲ ଜର ଜର କା କେଶ
କା'ର ପାଚିଛି ଦାଢ଼ି,
ଉଦ୍ଦାମ ଯୌବନେ କେବା
ନିଶ ଦେଉଛି ମୋଡ଼ି ।
କାହାର କାହାର ଅବୁଝା
ଭାଷା ପଡ଼େ ଶ୍ରବଣେ,
ଦରଶନ ପାଇଁ ଭୁକ୍ଷାପେ
କେବା କଳ ଭିଆଣେ ।
କେ ନାରୀ ପିନ୍ଧିଛି ହରିତ
କେବା ବାସ ଧବଳ,
କେ ବାହାରିଚି ଫୁଲକି
ପିନ୍ଧି ରମ୍ୟ ଦୁକୂଳ ।
ଝଲସେ କାହାର ଲଲାଟେ
ପଟେ ଚୋପି ସିନ୍ଦୂର,
ମଥାମଣି ଶୋହେ ସୀମନ୍ତ
ପରେ କେଉଁ ଯୋଷାର ।
କେ ପିନ୍ଧିଛି କାଚ ହେମର
କେବା କାଚ କଙ୍କଣ,

କେବା ଖଞ୍ଜିଅଛି ପଦକେ
ବହୁମୂଲ୍ୟ ରତନ,
ସୁବର୍ଣ୍ଣ କନକ ଭୂଷଣେ
କା'ର ପୂରିଛି ବେକ ।
ପ୍ରତିବିମ୍ବି ଶୋଭା ସଳିଳେ
ଦିଶେ ତା ଜକ ଜକ ।
ମୁକୁଳ କୁନ୍ତଳ କାହାର
କେବା ଗୁନ୍ଥିଛି ବେଣୀ,
ଲକ୍ଷାରସ ବୋଳି ଚରଣେ
କେବା ଦେଖାଏ ଠାଣି ।
ବଦନେ ହଳଦୀ କୁଙ୍କୁମ
ଲୋଚନେ ବୋଳି କଜଳ,
ସଜୋ କୁଞ୍ଚକ ବାଳଏ
ହମେ ହୋଇଲେ ଠୁଳ ।
କା'ର ଦୋଳାୟିତ କଷଣୀ
କା'ର ନାସିକା ଦଣ୍ଡୀ,
ବିବିଧ କୁସୁମ କବରୀ
ଖୋଷା ଦେଇଛି ମଣ୍ଡି ।
ନାରିକେଳ ଆମ୍ର ନୈବେଦ୍ୟ
ଆଦି ପୂଜା ସମ୍ଭାର,
ସଦ୍ୟ କେତକୀ ପାଖୁଡ଼ା
ମଲ୍ଲୀ କୁସୁମ ହାର ।
ଘେରି ରୁଣ୍ଡ ହେଲେ ମଣ୍ଡପେ
କାମିନୀଏ ସରବେ,
ଆପଣା କାମନା ମନାସି
ଅବା ଫେରିବେ ଏବେ ।
ବାଜିଲା କାହାଳୀ ସଘନେ
ସନ୍ଧ୍ୟା ଆଳତି ପାଇଁ,
ନୟନ ପୁରାଇ ଦେଖିଲେ
କୋଟି ବ୍ରହ୍ମାଣ୍ଡ ସାଇଁ ।
ଆପଣା ଆପଣା ଭବନେ
ବାହୁଡ଼ିଲେ ସକଳେ,
ଲଭି ପ୍ରସାଦ ବୁଡ଼ାଇ
ପାପ ଧରମ ଜଳେ ।

***

## ବାହୁଡ଼ା

ପଶ୍ଚିମ ଲଲାଟେ ରାଜିଲା
ସୂର୍ଯ୍ୟ କୁଙ୍କୁମ ଟୋପି ।
ଶୋଭା ସଙ୍ଗେ ଉଭା ଆଲୋକ
ଅନ୍ଧକାର ବିଲେପି ॥
ପ୍ରେମଭରେ ଆସି ମିଶିଲେ
ଦ୍ୱିଜଚନ୍ଦ୍ର ଦମ୍ପତି ।
ସରୋବରରେ ହସି ଉଠିଲା
ଧୀରେ ପଦ୍ମିନୀ ସତୀ ॥
ଭେଟିଲେ ପାଦପେ କୁସୁମ
ଅତି ଭକତି ଭରେ ।
ବାଣ୍ଟିଲା ସୁଗନ୍ଧ ମରୁତ
ଧୀରେ ଚଉଦଘରେ ॥
ନିଦ୍ରାଦେବୀ ଅଙ୍କ ଭେଟିଲେ
ଧୀରେ ଧୀରେ ସକଳ ।
ନିଜ ନିଜ ଥାନେ ବସିଲେ
ମୋହେ ଖେଚର କୁଳ ॥
ଆଖି ମିଳା ମିଳି ଗୁଞ୍ଜନ
ସ୍ୱନେ ମିଳିନ୍ଦ ବ୍ରଜ ।
କୁସୁମ ସମୀପେ ପ୍ରବେଶ
ହେଲେ କୁମୁଦ ତେଜ ॥
ମକରନ୍ଦ ଆଶେ ଧାଇଁଲା
ମଧୁକର ବହନ ।
ବସୋର ବଳସ ତାକୁତ
ଘର ପାଇଁ ଜବନ ॥
ଶାନ୍ତ ଦେବୀ ଧୀରେ ଗମିଲେ
ନିଜ ପୀଠକୁ ଏବେ ।
କୋଳାହଳମୟ ନଗରୀ
ହେଲା ବିବିଧ ରବେ ॥
ବାହୁଡ଼ା ବାରତା ନାଗର
ଭେଦିଗଲା କାନନ ।
ଜଣାଇଲା ପୁରୀ କନ୍ଦରେ
ବାତ ସମ ବହନ ॥

ବାହୁଡ଼ା ଉତ୍ସବ ଦର୍ଶନେ
ମାତ୍ତି ଆସିଲେ ଜନେ ।
ଉଚ୍ଛୁଳିଲା ସବୁ ନଗରୀ
ଘଣ୍ଟ ଶଙ୍ଖ ନିଃସ୍ୱନେ ।।
ବସ୍ତ୍ରଇ ବତାସ ମରଦ
ଘୋଡ଼ାଇଲା ଅମ୍ବର ।
ଆସିଲା କି ସତେ ପବନ
ଧରି ଚପ ଚାମର ।।
ବର୍ଷା ଜଳଧାରେ ଅଙ୍ଗକୁ
ଧୋଇ କାମିନୀ କେତେ ।
ଓଦା ସର ସର ଅଙ୍ଗରେ
ଭଜି ଦେବ ଅଗ୍ରତେ ।।
ମୃଦଙ୍ଗ ଝାଞ୍ଜର ଶବଦେ
ଫାଟେ ଅଗଣା କାନ ।
କାହାଳୀ ଭେରୀ ଶୁଭିଲା
କରି ବଜ୍ର ନିଃସ୍ୱନ ।।
ଉତ୍ତର ଦିଗରେ ପଡ଼ିଲା
ଅବା କାହ୍ନ ବୋବାଳି ।
ସେ ଶବଦ ବାଜି ଦକ୍ଷିଣ
ଗଲା ହରଷେ ଉଚ୍ଛୁଳି ।।
ମହାସମାରୋହେ ଫେରିଲେ
ପ୍ରଭୁ ଜନ ଗହଳେ ।
ନୀଳାଚଳ ଆଜି କମ୍ପୁଛି
ଅତି ଆନନ୍ଦ ସ୍ରୋତେ ।।
ଘୋର ନିନାଦିତ ଦିବସ
ଧୀରେ ନେଲା ମେଲଣି ।
ହୁକା ଚଢ଼ ଗୁଡ଼ ଶୃଗାଳ
କମ୍ପାଇଲା ଧରଣୀ ।।
ଝୁମ୍ପି ଝୁମ୍ପି ଏଣେ ଚନ୍ଦ୍ରିକା
ମାଡ଼ି ଆସିଲା ଧୀର ।
ଗୋଟି ଗୋଟି ହୋଇ ଗଗନେ
ଏବେ ଫୁଟିଲେ ତାରା ।।
ଫୁଲିଇ ଗୁଡ଼ିକ ଶ୍ୱାପଦେ
ବାହୁ ହେଲେ ବାହାର ।
ବିରହ ବାଧାରେ ସନ୍ତୁରି
ବୃକ୍ଷ ଡାଳେ ଚକୋର ।
ବାହାରିଲା କାହିଁ ଖଦ୍ୟୋତ
ନିଜ ଜ୍ୟୋତି ଦେଖାଇ ।
ବାଦୁଡ଼ିଏ ଉଡ଼ି ବୁଲିଲେ
ବୃକ୍ଷୁଁ ଫଳ ଛିଣ୍ଡାଇ ।।
ବିରେସ ଶାପ୍ଟିତ ନଗରୀ
ନିଦ୍ରା ଦେବୀ ଚରଣେ ।
ଉଲ୍ଲୁ ଉଲ୍ଲୁ କରି ଉଲୁକ
ଭବ ପ୍ରସଙ୍ଗ ଘୋଷେ ।

***

## ମେଘ

ମେଘ ବରଷିଲା ଅସରେ ଅସରେ
ଏବେ ଏ ଆଷାଢ ମାସେ,
ଘଡ଼ ଘଡ ଶୁଣି ଦେବେନ୍ଦ୍ର ତାରା
ଲୁଚିଲେ ନଭେ ତରାସେ ।।
ନୂଆ ପାଣି ପାଇ ବେଙ୍ଗ ବେଙ୍ଗୁଲିଏ
ଚକାଇଲେ ହୁଳହୁଳି ।
ଚଷା ପୁଅ ଖୁସି ଦେଖି ଧାନ ଗଜା
କମଳ ଗଲାଣି ମିଳି ।।
ମୁହେଁ ନାହିଁ ପାଣି ନଇତକିଆଙ୍କ
ଅସିଚିବ କେବେ ବଢ଼ି ।
ପଡ଼ିଗଲେ ମୁହେଁ ଠାଣି ନଏ ଖଟରେ
ଶହ ଶହ ଦର ତାଡ଼ି ।।
କା' ମୁଣ୍ଡେ କଳଶ ତାଳ ହାଏ ନେଇ
କା'କୁ କରେ ତର ଘଣ୍ଡ ।
ଦାମ୍ଭିକର ଦମ୍ଭ ଲୁଚିଯାଏ କାହିଁ
ଏଡ଼ିବାକୁ ବର୍ଷି କାନ୍ତି ।।
ତିନି ରଥ ଧୀରେ ସିଂହ ଦୁଆରରେ
ଲାଗିଗଲା ସଞ୍ଜେ ଆସି ।
ପୁହାଇଲା ନିଶି ତହିଁ ତିନି ଦାଏଁ
ମନ୍ଦିରେ କେହି ନ ପଶି ।।

ମନ୍ଦିରେ ପଶିବାକୁ ହେଲେ ସଜବାଜ
ଶୁଭିଲା ଘଣ୍ଟ ନିଃସ୍ୱନ ।
ସିଂହ ଦୁଆରରେ ରୁଣ୍ଡ ହେଲେ ଜନେ
କରିବାକୁ ଦରଶନ ॥
ବେଶେ ଜର ଜର ହୋଇ ଠାକୁରାଣୀ
ରହିଥିଲେ ଗର୍ବୀ ଦିନ ।
କବାଟ ପକାଇ ଜଗି ରହିଥିଲେ
ନ କହି କିଛି ବଚନ ॥
ଶାସିବାକୁ ଯେବେ ମନୋ ରାଜ୍ୟ ଆସେ
କ୍ରୋଧ ପରମ ବଇରୀ ।
ସଦ୍‌ଗୁଣ ନିଚୟ କ୍ଷଣକ ମଧ୍ୟରେ
ପଳାନ୍ତରେ କାହିଁ ତର ॥

ଜଗତେ କାହାକୁ ଛାଡ଼ ନାହିଁ କ୍ରୋଧ
ସକଳେ ତା ଅନୁଚର ।
ବିସ୍ତାର ପ୍ରଭୁଙ୍କ ଘଟାଏ ବିପ୍ଳବ
ଚଉଦିଗେ ନିରନ୍ତର ॥
ଭଉଣୀ ସହିତ ବଡ଼ ଠାକୁରଙ୍କୁ
ଗୁଡ଼ିଦେଲେ ବାଟ ଜାଣି ।
ଓଗାଳିଲେ ପଥ ଜଗତ ନାଥଙ୍କୁ
ଭାଷିଣ ନିଷ୍ଠୁର ବାଣୀ ॥
ଅନ୍ତର ଦେବତା ଜାଣି ଅନ୍ତର୍ଯ୍ୟାମୀ
ପ୍ରବୋଧିଲେ ହରଷରେ ।
ଫିଟିଲା କବାଟ ପଶିଲେ ଦମ୍ପତି
ବଡ଼ ଦେଉଳ ଭିତରେ ॥

*—*



# ତ୍ୟାଗବୀର

## ପ୍ରଥମ ସର୍ଗ

କୋଶଳ ନରେଶ ପଦେ ଅଭିଷିକ୍ତ
ହୋଇ ଦଶରଥ ରାଜା,
ପରଜାମାନଙ୍କୁ ପାଳି ସୁଯତନେ
ଉଡ଼ାଇଲେ ଯଶଧ୍ୱଜା ।
ପଦାନତ ହେଲେ ଶତ ଶତ ନୃପ
ଦେଖି ତାଙ୍କ ବାହୁ ବଳ,
ଦୟା, ଦାନ, କ୍ଷମା ଆଚରି ସତତ
ମୋହିଲେ ଦେବ ସକଳ ।
ଦଣ୍ଡଧର ପରି ନ୍ୟାୟ ଦଣ୍ଡ ଧରି
ଶାସିବାରୁ ପ୍ରଜାକୁଳ,
ଶସ୍ୟଶାଳୀ ହେଲା ସବୃଦ୍ଧନେ ରାଜ୍ୟ
ଲକ୍ଷ୍ମୀ ହେଲେ ଅନୁକୂଳ ।
ତେଜେ ନିଶାପତି ବଢନ୍ତି ଯେସନ
ଶୁକ୍ଳପକ୍ଷେ ପ୍ରତିଦିନ,
ସତ୍ୟ, ଶମ, ଦମ, ତିତିକ୍ଷା ତେଜରେ
ବଢ଼ିଲେ ରାଜା ତେସନ ।
ଦୁର୍ବଳେ କରୁଣା ପ୍ରବଳେ ଦମନ
ଥିଲା ତାଙ୍କ ରାଜନୀତି,
ଦେବତାଏ ଯାଙ୍କ କର୍ତ୍ତବ୍ୟ ନିଷ୍ଠାରେ
ଲଭିଥିଲେ ଅତି ପ୍ରୀତି ।
ବିପ୍ରଗଣେ ଭକ୍ତି ଦୁଃଖୀ, ରଙ୍କୀ ସେବା
ଦେବ ଦେବୀ-ପୂଜା କରି,
ନ ବାନ୍ଧି ଗରବ ଚଳନ୍ତି ସତତ
ଧର୍ମ ପଥ ଅନୁସରି ।
ଧନ ଆଉ ବଳ ସଂଯୋଗେ ଜୀବନ
ହୋଇଥାଏ ସୁଖାବହ,
ଭାଗ୍ୟ ବଶେ ଲଭି ନରପତି କାଳ
କାଟୁଥିଲେ ଅହରହ ।
ଭାଗ୍ୟବାନ ବୋଲି ରାଜା ଦଶରଥ
ହୁଏ ଗାନ ଜନମୁଖେ,
କିନ୍ତୁ, ନରପତି ତନୟ-ବିହୁନେ
ଯାପନ୍ତି ଜୀବନ ଦୁଃଖେ ।
ଧନରେ ଭଣ୍ଡାର ହୋଇଥିଲେ ଭରି
ନଥିବଟି ଯେବେ ଯୋଗ,
ଦୁଃଖ-ବେଗ ଆସି କରେ କଲବଲ
ନପାରେ କେ କରି ଭୋଗ ।
କୁଳ ପୁରୋହିତ- ବଶିଷ୍ଠଙ୍କୁ ଦୁଃଖେ
ଡାକ ଆଣି ଭୂପ ବନେ,
ପୁତ୍ର ଲାଭ ଆଶେ କହିଲେ ବଚନ
ଅତି ବିଷଣ୍ଣ ବଦନେ ।

ଲଭି ପରାମର୍ଶ ଆନନ୍ଦେ ନୃମଣି
ଲୋମପାଦ ରାଜ୍ୟ ଯାଇ,
ଋଷ୍ୟଶୃଙ୍ଗ ମୁନି ସେନା ସଙ୍ଗେ ତାଙ୍କ-
ରାଜ୍ୟ ଆଣିଲେ ମଗାଇ ।
ଋତୁ ଶିରୋମଣି- ବସନ୍ତ ସନ୍ଧିରେ
ଶୋଭାର ପସରା ବାନ୍ଧି,
ଉପଗତ ହେଲ ଧରାଧାମେ ଏବେ
ଶିଶିରକୁ ଖେଦେ ତଡି ।
ଅଶ୍ୱବଳ ଲାଗି କୋଶଳ ନରେଶ,
ମନ ବଳାଇଲେ ଅତି,
ଛାଡ଼ିଥିଲେ ଏବେ ନିଷ୍କୁଣ ଘୋଟକ
ପାଇ ମୁନି ଅନୁମତି ।
ଆରମ୍ଭିଲେ ହୋମ ବଶିଷ୍ଠାଦି ମୁନି
ବେଦ ସୂକ୍ତ ଅନୁଯାୟୀ,
ବଢିଲା ବରଷେ ବୁଲି ଧରା ଅଶ୍ୱ
ବାହୁଡ଼ିଲା ହୋଇ ଜୟୀ ।
ଯାବତୀୟ ଦ୍ରବ୍ୟ ଜମା ହେଲା ଆସି
ଲୋଡ଼ା ହୁଏ ଯାହା ଯାଗେ,
ପନେ ହେଲା ପରା ସୁଶ୍ୟାମଳ ଧରା
ପଠାଇ ଥିଲା ସବାରେ ।
ନାନା ରାଜ୍ୟରୁ ନରପତି କେତେ
ହୋଇଥିଲେ ନିମନ୍ତ୍ରିତ,
ପହଞ୍ଚିଲେ ଆସି ଯଥା ସମୟରେ
ଭେଟି ଧନ ରାଜୋଚିତ ।
ସୁନା ରୂପା ଆଦି ବଣ୍ଟା ହେଲା କେତେ
କେ ତାହା ପାରିବ କଳି,
ଦୁଃଖୀ ରଙ୍କୀ ସବେ ପୁଲକିତ ହୋଇ
ନବ ବାସ ଭଳି ଭଳି ।
ଋଷ୍ୟ ଶୃଙ୍ଗାଦେଶେ ବାମଦେବ ଆଦି
ଆନନ୍ଦରେ ମୁନିଗଣ,
ବିଧି ଅନୁଯାୟୀ ଦେଲେ ଅଶ୍ୱବଳ
କରି ମନ୍ତ୍ର ଉଚ୍ଚାରଣ ।
କେତେ ନରନାରୀ ନାନା ସାମଗ୍ରୀ
ଖାଇଥାନ୍ତି ବାରମ୍ବାର,

ରହିଥିବା ଲୋକେ ନପାନ୍ତି କିଏ
ନାକ ପୋଛିବାକୁ ତର ।
ମୁନିଗଣେ ଭକ୍ତି- ହୃଦୟେ ପ୍ରଣମି
ଦଶରଥ ନରପତି,
"ପୁତ୍ର ଲାଭ ବର" ଋଷ୍ୟଶୃଙ୍ଗ ମୁଖେ
ଶୁଣି ଲଭିଲେ ଭୂପତି ।
ଋଷ୍ୟଶୃଙ୍ଗଙ୍କର "ଇଷ୍ଟି" ହୋମ କାର୍ଯ୍ୟ
ସରୁ ନ ସରୁଣୁ ଏଣେ,
ସ୍ୱର୍ଗୀୟ ପୁରୁଷ ଉଭାହେଲେ ଏକ
ପାୟସ ଧରି ସେ ସ୍ଥାନେ ।
ଲଭି ସେ ପାୟସ ଦଶରଥ ଭୂପ
ନେଇ ହରଷିତ ମନେ,
କୌଶଲ୍ୟା କୈକେୟୀ ଦୁଇ ରାଣୀ ମଧ୍ୟେ
ଦେଲେ ବାଣ୍ଟି ତତକ୍ଷଣେ ।
ବେନି ରାଣୀ ତହୁଁ ନିଜ ନିଜ ଭାଗୁଁ
ସୁମିତ୍ରାଙ୍କୁ ଚରୁ ଅଂଶ,
କଲେ ପ୍ରଦାନ ନିରମଳ ମନେ
ସେବକଲେ ବହୁ ହରଷ ।
ଏଣେ ଦେବରାଏ ଅଧୀର ହୋଇଣ
ରାବଣର ଉପଦ୍ରବେ,
ପଙ୍କଜଲୋଚନ ଶ୍ରୀହରିଙ୍କ ପଦେ
ଦୁଃଖ ଜଣାଇଲେ ସବେ ।
ଅଗ୍ନି ଦେବଙ୍କର ସାହା ଲାଗି ଯଥା
ଅଗ୍ରସର ପ୍ରଭଞ୍ଜନ,
ଶୁଣି ଦଇତାରି ପ୍ରସନ୍ନ ବଦନେ
ହସି କହିଲେ ଏସନ ।
"ଦୁଷ୍ଟ ନିଶାଚରେ ବଧିବା ନିମିତ୍ତ
ମର୍ତ୍ତ୍ୟେ ଅଯୋଧ୍ୟା ନଗରେ,
ମହାରାଜ ଦଶ- ରଥ ଅଉରସେ
ଜନମିବି ନିକଟରେ ।"
ଶ୍ରୀହରି ବଚନ ଶୁଣି ସୁରଗଣ
ବାହୁଡ଼ି ଯେ ଯାହା ପୁରେ,
କିଛି କାଳ ପରେ କପି ଋକ୍ଷ କୁଳେ
ଜନମିଲେ ମର୍ତ୍ତ୍ୟପୁରେ ।

ସମକାଳେ ତିନି- ରାଣୀ ଗର୍ଭବତୀ-
ହୋଇ ଶୋଭିଲେ ବିଶେଷେ,
ପୁଲକିତ ମନ ରକ୍ଷିବାକୁ ନୃପ
ରହୁଥିଲେ ତାଙ୍କ ପାଶେ ।

କୌଶଲ୍ୟା, କୈକେୟୀ ଗର୍ଭୁଁ ହେଲେ ଜାତ
ଏବେ ଏକ ଏକ ସୁତ,
ସୁମିତ୍ରା ଗର୍ଭୁଁ ଜନ୍ମି ବେନି ସୁତ
କଲେ ଧରାତଳ ପୂତ ।

ମେଘ ଦେଖି କେକୀ, ଚାତକ ଯେସନ
ହରଷରେ ଉଦ୍‌ବେଳିତ,
ତଥା ପିତା ମାତା ପୁତ୍ର ଦରଶନେ
ହେଲେ ଅତି ଆନନ୍ଦିତ ।

ଇନ୍ଦୁ ଦେଖି ଯଥା ଚକୋର-ଚକୋରୀ
ଯା'ନ୍ତି ପ୍ରେମଭରେ ଭାସି,
ଏ ବାରତା ଲଭି ତଥା ମୋଦଭରେ
ଦେବ ଲୋକ ଭବବାସୀ ।

ଶୁଭିଲା ଦୁନ୍ଦୁଭି ବରଷିଲା ପୁଷ୍ପ
ସର୍ଗୁଁ ସବେଗେ ଏଣେ,
ଶଙ୍ଖ ଭେରୀ ତୂରୀ ବାଦ୍ୟ ନାଦ ପୁଣି
ମନ୍ଦ୍ରିତ ଗଗନେ ।

ବଢଇ ଚନ୍ଦ୍ରମା ଯେସନେ ଦିନୁ ଦିନ
ତେଜେ, ତେସନେ ବୃଦ୍ଧି ପାଇ,
ବିଦ୍ୟା ଶିକ୍ଷା-ଅପେକ୍ଷେ ଲଭିଲେ ନୈପୁଣ୍ୟ
ବିନୟ ଗୁଣକୁ ବହି ।

ରାମଙ୍କୁ ଲକ୍ଷ୍ମଣ ଭକତି ଅନ୍ତରେ
ସେବୁଥାନ୍ତି ପ୍ରତିଦିନ,
ଭରତଙ୍କ ସଙ୍ଗ ଶତ୍ରୁଘ୍ନ ଏଣେ
ନ ଛାଡ଼ନ୍ତି କଦାଚନେ ।

ଲଭି ଦରଶନ ପ୍ରଶାନ୍ତ ବଦନ-
ରାମଙ୍କର ସର୍ବ ଜନେ,
"ବିଷ୍ଣୁ ଅବତାର ହୋଇଛନ୍ତି ବୋଲି
ଭାବୁଥିଲେ ମନେ ମନେ ।

ଦେଖାନ୍ତି ସେ ଭକ୍ତି ଗୁରୁଜନ ଗଣେ
ମନେ ଅନୁରାଗ ବହି,
ତୋଷୁଥିଲେ ମନ ସାନ ବଡଙ୍କର
ମଧୁର ବଚନ କହି ।

ଦୋଷ ଦେଖି କ୍ଷମା ଆଚରନ୍ତି ସଦା
ହୋଇଥାଏ କ୍ରୋଧ ଦୂର,
ଶୟନେ ସ୍ୱପନେ ନିରନ୍ତର ମନ
ପରହିତ ପାଇଁ ଝୁରେ ।

ପୁତ୍ର ମୁଖ ଦେଖି ବୃଦ୍ଧକାଳେ ରାଜା
ସୁଖେ କାଟୁଥିଲେ ଦିନ,
ସେ ସୌମ୍ୟ ବଦନ ଦଣ୍ଡେ ନ ଦେଖିଲେ
ମନ ହେଉଥାଏ ଛିନ୍ନ ।

ପଦାର୍ପଣ, ଦିନେ ଦଶରଥ ଆଗେ
(୧) ଗାଧିସୁତ ତପୋଧନ,
କହିଲେ,' ରାକ୍ଷସ ବିନାଶିବା ଲାଗି
ରାମ ଯିବେ ତପୋବନ ।

ଅଯୋଧ୍ୟା ନୃମଣି ଶୁଣି ମୁନି ବାଣୀ
ସମ୍ମତି କଲେ ପ୍ରଦାନ,
ମୁନିବର ସଙ୍ଗେ ତପୋବନ ଦିଗେ
ଗମିଲେ ରାମ, ଲକ୍ଷ୍ମଣ ।

ଚାଲିଥାନ୍ତି ମୁନି ଆଗେ ଆଗେ ତାଙ୍କ
ପଛେ ପଛେ ଦୁଇ ଭାଇ,
ହେରି ସେମାନଙ୍କ ମନଂ ଗଳେପ ବା
କାନନ ଶୋଭା ଦେଖାଇ ।

ରୁଚିର ପ୍ରାସାଦେ କାଟୁଥିଲେ ଦିନ
ରାଜ କୁମାରଙ୍କ ନିତ୍ୟ,
ସରଯୂ କୂଳରେ ଗଛ ତଳେ ଆଜି
କଟାଇଲେ ଦୁହେଁ ରାତି ।

ନାନା ଅସ୍ତ୍ର ଶସ୍ତ୍ର- କଉଶଳ ମାନ
ଦଇତ ବିନାଶ ପାଇଁ,
ଶିଖାଇଲେ ରାମେ ଗାଧିଙ୍କ ନନ୍ଦନ
ହୃଦେ ଅତି ତୋଷ ବହି ।

ପଥ ଶ୍ରମ ବାଧା ନ ଲାଗିବା ଲାଗି
ଜନନ୍ତ୍ରର ଋଷିବର,

---

୧—ବିଶ୍ୱାମିତ୍ର

ବଳା ଅତିବଳା ମନ୍ତ୍ର କହିଦେଲେ
କର୍ଣ୍ଣେ ବେନି ଭାଇଙ୍କର ।
ତାଡ଼କାକୁ ରାଣ୍ଡ ହତ୍ୟା କର୍ମ ସାରି
ରାଜ କୁମାରଙ୍କୁ ଧରି,
ବିଶ୍ୱାମିତ୍ର ଋଷି- ବର ବାହାରିଲେ
ନିଜ ଲକ୍ଷ୍ୟ ଅନୁସରି ।
ବାଟେ ଗଲାବେଳେ ନିରେଖି ପଡ଼ିଏ
ବେନି ଭାଇଙ୍କ ମୂରତି,
ଭୁଲି ଜଡ ଚେତ ଆହା ! କି ସୁଖରେ
ଲଭନ୍ତି ଅତି ପୀରତି ।
ଏ ସମୟେ ପୁଣି ତାଡ଼କା ରାକ୍ଷସୀ
ମରିଲା ରାମ ୧. ଇଷୁରେ,
ଜୟ ଧ୍ୱନି ସହ ବରଷି କୁସୁମ
ପ୍ରଶଂସିଲେ ତାଙ୍କୁ ସୁରି ।
ଦଶରଥଙ୍କର ବେନି ସୁତ ସହ
ବିଶ୍ୱାମିତ୍ର ନିଜ ମଠେ,
ପ୍ରବେଶି ଦେଖିଲେ ହୃଷ୍ଟମନେ ରତ
ଶିଷ୍ୟଗଣ ବେଦ ପାଠେ ।
କଲେ ଅଭ୍ୟର୍ଥନା ମୁନି ଶିଷ୍ୟମାନେ
ସେମାନଙ୍କୁ ପ୍ରେମ ଭରେ,
ଯଜ୍ଞର କରମ ଆରମ୍ଭିଲେ ଏବେ
ଯତିବର ଯଥା କାଳେ ।
ଚଳିଲା ଏ କାଳେ ଥପ ଥପ ହୋଇ
ରକ୍ତ ବିନ୍ଦୁ ବାରଂବାର,
ଦେଖି ଏ ଘଟଣା ବେନି ଭାଇ ଏଣେ
ରୋଷେ ହେଲେ ଜର ଜର ।
ଊର୍ଦ୍ଧ୍ୱେ ଚାହିଁ ରାମ ଦେଖନ୍ତି ଆକାଶେ
ମାୟାବଳେ ନିଶାଚରେ,
ଯାଗ, ହୋମ ବେଦ୍ ଭାଙ୍ଗନ୍ତି ନିରତେ
ହୋଇ କ୍ଷିପ୍ତ ଅନାଗ୍ରହେ ।
ତେଜି ମନ୍ତ୍ରେଣ ଶର କ୍ରୋଧେ ବେନି ଭାଇ
ଦେଲେ ନିଶାଚରେ ଜାଳି,

ପରାକ୍ରମ ଦେଖି ବହୁ ପରଶଂସା
କଲେ ତାପସ-ଆବଳି ।
ଯାଗ ସମାପନ- କରି ଯତିବର
ଆଶିଷିଲେ ବେନି ଭାଇ,
ତଦନ୍ତେ ଜନକ ନିମନ୍ତ୍ରଣ କଥା
କହିଲେ ସବୁ ବୁଝାଇ ।
ସେ ମହା-ଉତ୍ସବ ଦେଖିବାକୁ ବେନି-
ଭାଇ ବଳାଇଲେ ମନ,
ଗଲେ ବିଶ୍ୱାମିତ୍ର ଶ୍ରୀରାମ ଲକ୍ଷ୍ମଣ
ଦେଖି ଧନୁ ଟେକା ପଣ ।
ପତି ଅଭିଶାପେ ଗଉତମ ପତ୍ନୀ
ପ୍ରସ୍ତର ରୂପିଣୀ ହୋଇ,
ପଡ଼ିଥିଲେ ପଥେ ରାମ ପଦ ବାଜି
ଉଠିଲେ ସ୍ୱରୂପ ପାଇ ।
ଗୌତମ ପ୍ରେୟସୀ ଅହଲ୍ୟା ସୁନ୍ଦରୀ
ବନ୍ଦି ସେ ପଦ କମଳ,
ପତି ପଦତଳେ ଲୋଟି ଗଲେ ଖରେ
ବୁହାଇ ଲୋତକ ଜଳ ।
ଗାଧିଙ୍କ ନନ୍ଦନ ବିଶ୍ୱାମିତ୍ର ଋଷି
ଶ୍ରୀରାମ ଲକ୍ଷ୍ମଣ ଘେନି,
ପହଞ୍ଚିଲେ ଯାଇ ମିଥିଲା ନଗରେ
ଜନକଙ୍କ ରାଜଧାନୀ ।
ବେନି ଭାଇଙ୍କର ସେ ରୂପ ମାଧୁରୀ
ବିଦେହ କାମିନୀଚୟ,
ଚାହିଁଥାନ୍ତି ବୃନ୍ଦେ ପୁଲକିତ ମନେ
କରି ଦୃଷ୍ଟି ଏକଲୟ ।
ଶୁଣିଣ ଜନକ ଆଗମନ ବାର୍ତ୍ତା
ବିଶ୍ୱାମିତ୍ର ଋଷିଙ୍କର,
ଆସି ତତକ୍ଷଣେ ହରଷ ଅନ୍ତରେ
କଲେ ଅତି ସମାଦର ।
ପରିଚୟ ଲଭି, ରାଜକୁମାରଙ୍କ
ଜନକ ହରଷ ଭରି,
ଦେଇ ବସାଛଣା ବିଧି ଅନୁସାରେ
କଲେ ଅତିଥି ସତ୍କାର ।

୧—ଶରୀରେ

ତହୁଁ ଜନକଙ୍କୁ ପୁଲକିତ ମନେ
ନିବେଦିଲେ ଗାଧିସୁତ,
"ତବ ଶିବ ଧନୁ ଦେଖିବାକୁ ରାମ
ବଳାଉ ଅଛନ୍ତି ଚିତ୍ତ ।"
ଶୁଣି ନରମଣି ନିରାଶ ଅନ୍ତରେ
ଉତ୍ତରିଲେ ମୁନିବରେ,
"କେତେ ଧନୁର୍ଦ୍ଧର ବାହୁଡ଼ି ଗଲେଣି
ଲଜ୍ଜାଭରେ ନିଜ ପୁରେ ।"
ତହୁଁ ବିଶ୍ୱାମିତ୍ର କହିଲେ ସାନନ୍ଦେ
ରଘୁବର ପରାକ୍ରମ,
"ସମର୍ଥ କେବଳ ଟେକିବାକୁ ରାମ
ହରଧନୁ ଅନୁପମ ।"
ମିଥିଳା ଈଶ୍ୱର ଶୁଣି ମୁନିଙ୍କର
ବହୁ ଆଶ୍ୱାସ ବଚନ,
ମୋଦ ଭରେ ଆଦେ- ଶିଲେ 'ଧନୁ ଦେଖି-
ଯାନ୍ତୁ [illegible] ନନ୍ଦନ' ।
ଗିରିସମ ଗୁରୁ ସେ କୋଦଣ୍ଡ ଟେକି-
ଦେଲେ ଶ୍ରୀରାମ ସହଜେ,
ଯୋଖିଲେ ନୁଆଁଇଁ ତହିଁ ପରେ ଗୁଣ
ଚକିତ କରି ରାଜନେ ।
ଟାଣେ ଝିଙ୍କିବାରୁ ଦୁଇଖଣ୍ଡ ହୋଇ
ପଡ଼ିଲା ଭାଙ୍ଗି କାର୍ମୁକ,
ଅନଳ ପରା ଏ ଖେଳିଗଲା ପୁରେ
ହର୍ଷିତ ଅତି ଜନକ ।
ମୁନିବର ଆଗେ ବିନୟେ ରାଜନ
କହିଲେ, "ମୋର ତନୟା,
ଲକ୍ଷ୍ମୀ ସ୍ୱରୂପିଣୀ ଜାନକୀ ରାମଙ୍କ
ହେଲେ ଆଜଠାରୁ ଜାୟା ।"
ଏ ବାରତା ନେଇ ପୂଜ୍ୟ ସତାନନ୍ଦ
ଯାଇ ସାକେତ ନଗରେ,
ଅଯୋଧ୍ୟା ରାଜନ ଦଶରଥ ଆଗେ
ଜଣାଇଲେ ମୋଦଭରେ ।
ବିଜୁଳି ପରାଏ ଏ ଶୁଭ ବାରତା
ଭେଦିଗଲା ପୁରେ ପୁରେ,

ଦଶରଥ ଭୂପ ପରିଣୟ-ସଜ
ଯୋଗାଡ଼ିଲେ ସରାଗରେ ।
କେତେ ହାତୀ ଘୋଡ଼ା ହୋଇଥିଲା ଲୋଡ଼ା
କେ ପାରିବ ଗଣି ତାହା,
ଧରିଲେ ସଙ୍ଗରେ ଅଗଣିତ ସଜ
ମଣ୍ଡନ ପଡ଼ିଥିଲା ଯାହା ।
ଶୁଭ ଅନୁକୂଳେ କୋଶଳ ନରେଶ
ଅଭିମୁଖେ ମିଥିଳାର,
ବାହାରିଲେ ବହୁ ସାଧୁ ବିପ୍ର ସହ
ହୋଇ ଆନନ୍ଦେ ଅଧୀର ।
ଯଥା ସମୟରେ ବିଦେହ ନଗରେ
ଦଶରଥ ମହୀପାଳ,
ପହଞ୍ଚି, ଶ୍ରୀରାମ- ଲକ୍ଷ୍ମଣଙ୍କୁ ଦେଖି
ହେଲେ ଆନନ୍ଦରେ ଭୋଳ ।
ମହାସମାରୋହେ ରାଜକୁମାରଙ୍କ
ହେଲା ପରିଣୟ କଥା,
ବେନି ମହୀପାଳ ଯୋଗାଡ଼ିଲେ ସବୁ
ଧରି ଦେଶ କାଳ ପ୍ରଥା ।
ସୀତାଙ୍କ ସହିତ ରଘୁମଣିଙ୍କର
ଉର୍ମିଳା ସହ ଲକ୍ଷ୍ମଣ,
ଭରତ ଶତ୍ରୁଘ୍ନ କୁଶଧ୍ୱଜ ସୁତା
କରିଲେ ପାଣିଗ୍ରହଣ ।
କିଶୋର କିଶୋରୀ ମଧୁର ମିଳନ
ଦରଶ ରମଣୀୟ ଅତି,
ଯେ ଦେଖିଛି ଥରେ ନ ଭୁଲିବ କେବେ
ଆହା ! ସେ ରୁଚିର ଜ୍ୟୋତି ।
ସିନ୍ଧୁ ନାଦ ସମ ଗରଜେ ନଗର
ଜନତାର କୋଳାହଳେ,
ମେଲାଣି ଦେବାକୁ ବାଧ୍ୟ ରାଜ-ଋଷି
ବର ବଧୂ ଯଥାକାଳେ ।
ଜଗି ବେଳକାଳ ଦେଲେ ବେଉହାରା
ଯେବେ ଯାହା ପ୍ରୟୋଜନ,
ଯୋଗାଣି ଦଅନ୍ତି ମନ ଅନୁସାରେ
କରି ସବୁ ଆୟୋଜନ ।

ଏଣେ ସଖୀଗଣ କୁହାକୋହି ହେଲେ
"ସୀତା ମିଳିବେ ଶାଶୁଘର,"
ନ ଫିଟେ ବଚନ କାହାରି ମୁଖରୁ
ବହୁଇ ଲୋତକ ଝର ।
ଠାବରେ କହିବା ଲୋକ ଥାଇ କେତେ
ତଗ ମେଳି ବେଳେ ବେଳେ,
ହସ'ନ୍ତ ଥାଆନ୍ତି ରୁଣ୍ଡ ଥିବା ଜନେ
ଅବା ମନ ଦୁଃଖ କାନ୍ଦନ ।
ମେଲାଣି ଯୋଗାଡ଼ ସଜ ହେଉ ହେଉ
ଏଣେ ପାଇଗଲା ରାତି,
ଶୁଭ ଯୋଗ ଦେଖି ବରଯାତ୍ରୀ ଗଣ
ହୁଅନ୍ତି ତତ୍ପର ଅତି ।
ଭୁବନ ବିଦିତ ରାଜର୍ଷି ଜନକ
ମହା ଆଡମ୍ବର କରି,
ପଠାଇଲେ ଏବେ ବହିତ ବଧୂନେ
ଚିତନ ବୃତ୍ତି ସୁନ୍ଦରୀ ।
ଶ୍ରୀରାମ, ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ
ଲଭି ବନ୍ଧୁ ସନମାନ,
ବିଦା ହେଲେ ଯେବେ ପଡ଼ୁଥିଲା କେତେ
ହୁଳହୁଳି ଘନ ଘନ ।
ଆଗେ ଆଗେ ଚାଲି- ଥାନ୍ତି ଦଶରଥ
ପଛେ ବିଦାୟୀ ସମ୍ଭାର,
ଅମଙ୍ଗଳ ଚିହ୍ନ ଚାରିଦିଗେ ଦେଖି
ଭୂପତି ହେଲେ କାତର ।
କ୍ଷତ୍ରିୟ ଅରାତି ପରଶୁରାମ ଏବେ
କୁଠାର ଧରି ହାତର,
ଓଗାଳିଲେ ବାଟ ରଘୁମଣିଙ୍କର
ଅତି ରାଗ ଅହଙ୍କାରେ ।
ଝିଲିମିଲି ବହ୍ନି ଯଥା ଘୃତ ଯୋଗେ
ମହା ତେଜ ସଦା ଧରେ,
ତଥାମୁନି ରୋଷ ଅହଂତା ସଂଯୋଗେ
ବଢ଼େ କ୍ଷଣକ ଭିତରେ ।
ଅନିଷ୍ଟର ମୂଳ ହେତୁ ଅହଙ୍କାର
ଜାଣି ଜାଣି ଏହା ନରେ,

ନିଜ ଗାତ ମନେ ଖୋଳୁଥାନ୍ତି ସଦା
ଟାଣି ହୋଇ ମୋହ ଡୋରେ ।
ମହାବଳ ଯଥା ହୋଇଣ ଧାଉଁତ
କ୍ରୋଧାନଳେ ଯାଏ ଜଳି,
ସୁମିତ୍ରା ନନ୍ଦନ ତଥା କ୍ରୋଧ ବଶେ
ଭାର୍ଗବଙ୍କୁ ଦେଲେ ଗାଳି ।
ଯେସନ ସଲିଳ ଯୋଗେ ହୁତାଶନ
ଲଭଇ ନିର୍ବାଣ ଗତି,
ତେସନ ରାମଙ୍କ ବଚନ କରିଲା
ଲକ୍ଷ୍ମଣଙ୍କ କ୍ରୋଧ ଶାନ୍ତି ।
କହନ୍ତି ରାମଙ୍କୁ ଭାର୍ଗବ ଏସନ
"କ୍ଷତ୍ରିୟ ଲୋଡ଼େ ମୋ ପଣ",
"ମୋ ଧନୁକୁ ଯେବେ ନ ପାରିବ ଭାଙ୍ଗି
ଛଡ଼ାଇବି ବଳ ପଣ" ।
ଶିଶିର ବିନ୍ଦୁକ ଦିନକର ତେଜ
ଯେସନ ହୁଏ ନଷ୍ଟ,
ଶ୍ରୀରାମ ନୟନ ପଡ଼ି ସେ କାର୍ମୁକ
ହେଲା ଏବେ ପ୍ରଭଗ୍ନନ ।
ଭୃଗୁ ସୁତ-ବାଣୀ ଶୁଣି ରଘୁମଣି
ବିନୟ ବଚନ କହି,
ଟେକ ସେହି ଚାପ ଯୋଖିଲେ ସାୟକ
ଶାନ୍ତ ଭାବ ହୃଦେ ବହି ।
ପ୍ରଭଞ୍ଜନ ବେଗ ନପାରି ସମ୍ଭାଳି
ଉପୁଡ଼ଇ ତରୁ ଯଥା,
ରଘୁମଣି ହସ୍ତ ପଡ଼ିଣି ଭାଙ୍ଗିଲା
ଭାର୍ଗବଙ୍କ ଚାପ ତଥା ।
ମାନବ ଜୀବନ ଯାଉଅଛି ବିତ
କଳି ରୋଗେ ଜଡ଼ ନାନା,
ହେଜଲେ ତ ଜଣା ପଡ଼ନ୍ତା କିଏ ସେ
ଗର୍ବ ଦମ୍ଭ କରେ ଚୂନା ।
ଦେଖି ଏ ଘଟକୁ ପରଶୁରାମ ବୀର
ଲାଜେ ଲାଜକୁଳ ହେଁ,
ଝାଙ୍କିଲା ଅଧୀରେ ବିନୟ ବଚନେ
ସ୍ତୁତି କଲେ ପଦଧରି ।

"ନଜାଣି ମୁଁ ଥିଲି କରୁଥିଲି ମିନା
ତୁମେତ ଜଗତ ପିତା,
ଲାବଣ୍ୟ ପ୍ରତିମା ଜନକ ନନ୍ଦିନୀ
ଲକ୍ଷ୍ମୀ ଏ ବାମାଙ୍ଗୀ ସୀତା ।
କେ ବୁଝି ପାରିବ ଏ ମର୍ତ୍ତ୍ୟମଣ୍ଡଳେ
ତୁମ କୁହେଳିତ ଲବେ,
ଏ ତୁଚ୍ଛ ପାମର ଜାଣିବ ବା କାହୁଁ
ଯାହା ନ ଜାଣନ୍ତି ଦେବେ ।
କରୁ ଅଛି ଅଳି, ଦୟାବନ୍ତ ତେଣୁ
ଦିଅ ଏ ଅଧମେ କ୍ଷମା,
ଆଦେଶିଲେ ଯିବ ସ୍ୱସ୍ଥାନକୁ ଏବେ
ଘୋଡ଼ୁ ଭାର୍ଗବ ଗରିମା" ।
କ୍ଷଣକେ ଏସନ ପର୍ଶୁରାମ ବୀର
ଦୟାବନ୍ତ ରାମ ତେଣୁ,
ଆଦେଶିଲେ ତାଙ୍କୁ, ପରଶୁ ଧରିସେ
ସ୍ୱସ୍ଥାନେ ଗଲେ ତୁରନ୍ତେ ।
ଦୟା ପରିପୂର୍ଣ୍ଣ ଦଶରଥ ରାଣ
ଏ ସବୁ ଘଟଣା ଦେଖି,
ପ୍ରଶଂସି ରାମଙ୍କୁ ଗମିଲେ ସର୍ବେଏ
ହୋଇ ଏଣେ ଅତି ସୁଖୀ ।
ଯାତ୍ରେଭେଟିବା ପାଇଁ ସଚିବ ନିକର
ହୋଇଥିଲେ ଆଗୁଁ ସଜ,
ଗଗନ ମଣ୍ଡଳ ହେଲା ଧୂମାୟିତ
ଉଡ଼ିବା ଜଗ ଭୁରାଜ ।
ବାଜୁଛି ବାଜଣା ଫୁଟୁଅଛି ବାଣ
ପୁଅ ବୋହୂ ଧରି ଭୂପ,
ପୁର ଉପକଣ୍ଠେ ପହଞ୍ଚିଲେ ଆସି
ଫୁଟିଲା ଅସଂଖ୍ୟ ତୋପ ।
ହୁଳହୁଳି ଧ୍ୱନି ଗଜବାଜି ରବେ
ମିଶିଲା କାହାଳୀ ସ୍ୱର,
ନନ୍ଦନ କାନନୁ ପାରିଜାତ ଅବା
ପଡ଼ୁଥିଲା ବାରଂବାର ।
କେତେ ବାଡ଼ିଖେଳ ୧. ପରିକାର ଦଳ
ପଟୁଆର ଆଗେ ଆଗେ,
ନିଜ କଳାମନ୍ତ ଦେଖାଇ ମୋହନ୍ତି
ମାନସ ଅତି ସରାଗେ ।
ଗୃହକ ପରାଏ ରହିଥିଲେ ଗୃହିଁ
ରାଜ ନଅରର ଲୋକ,
ନଅର ଦାରୁଣେ ଦେଖି ବରକନ୍ୟା
ମଣ୍ଡିଲେ ଅତି ପୁଲକେ ।
ବଶିଷ୍ଠାଦି ଋଷି ସଙ୍ଗେ ସଙ୍ଗେ ଆସି
କଲେ ହୋମର ଯୋଗାଡ଼,
ଦହି ମାଛ ଧରି ମାଆମାନେ ପରା
ହେଲେ ଏବେ ଧଡ଼ପଡ଼ ।
ମାଆମାନେ ଆସି ପୁଅ ବୋହୂ ନେଇ
ଗଲେ ନଅର ଭିତରେ,
ଅଳତା କଜଳ ଲଗାଇ ସାରିଲେ
ବନ୍ଦାପନା ପୁଲକରେ ।
ସୁମିତ୍ରା ନନ୍ଦନ ବଖାଣିଲେ ସବୁ
ଘଟିଥିଲା ଯାହା ଯାହା,
ମାତୃଗଣ ସହ ନଗର ବାସୀଏ
ଆନନ୍ଦିତ ଶୁଣି ତାହା ।
ବହୁ ଧନ ଲଭି ଦରିଦ୍ର ଯେସନ
ହେଉଥାଏ ଆନନ୍ଦିତ,
ସେସନ ସୀତାଙ୍କୁ ବଧୂ ରୂପେ ପାଇ
ରାଜବଂଶ ପୁଲକିତ ।
କିଛି କାଳ ଅନ୍ତେ ଭରତ ଶତ୍ରୁଘ୍ନ
ଗଲେ ମାମୁଁଘର ଦେଖି,
ରଘୁମଣି ଏଣେ କଟାନ୍ତି ସମୟ
ରାଜନୀତି ନିତି ଶିଖି ।
ପ୍ରଜା ରଞ୍ଜନ ଶ୍ରୀରାମଙ୍କ ଗୁଣ
ଦେଖି ଏକାଠିଳ ସରବେ,
ଭାବୁଥାନ୍ତି ମନେ ସତେ ପରଂବ୍ରହ୍ମ
ଆସି ଜନ୍ମିଛନ୍ତି ଭବେ ।

---

୧. ରାଜାମାନଙ୍କ ପଟୁଆରରେ ଖଣ୍ଡା ଢ଼ାଲ ଧରି ଆଗରେ ଯିବା ଦଳ ।

ସୁଖେ ଅବା ଦୁଃଖେ ସମଭାବ ବାନ୍ଧି
ନିଃସ୍ୱାର୍ଥେ ସଦା ସାଧ୍ୱା,
ସାଧନେ ନିରତ ରହନ୍ତି ଅଟଳ
ବଢୁଛନ୍ତି ମନେ ଯାତ୍ରା ।

***

## ଦ୍ୱିତୀୟ ସର୍ଗ

ଦିନେ ମଧୁମାସେ ହରଷ ମାନସେ
କୋଶଳର ଅଧିପତି,
ରାଜ୍ୟ ସମର୍ପଣ କରିବାକୁ ରାମ
ଡାକିଲେ ସଚିବ ୧. ତତି ।
ରାଜ ଆଜ୍ଞା ପାଇ ଆସିଲେ ସେମାନେ
ସଭା ମଣ୍ଡପେ ସେକ୍ଷଣି,
ହୋଇ ମୋଦଭରେ କଲେ ସ୍ୱୀକାର
ରାମ ଅଭିଷେକ ଶୁଣି ।
ତହୁଁ ସୁମନ୍ତ୍ରଙ୍କୁ ରାମ ଆଣିବାକୁ
କହିଲେ ସେ ଖୁସି ମନେ,
ସେ ଆଦେଶ ପାଇ ଆନନ୍ଦ ମନେ ସେ
ଗଲେ ରାମଙ୍କ ଭବନେ ।
ପିତାଙ୍କ ଡାକରା ପାଇ ରଘୁମଣି
ଆସିଲେ ସୁମନ୍ତ୍ର ସଙ୍ଗେ,
ପ୍ରଣମି ପିତାଙ୍କୁ ବସି ନିକଟରେ
ଜାଣିଲେ କଥା ପ୍ରସଙ୍ଗେ ।
ଅଯୋଧ୍ୟା ମୁକୁଟ କରିବେ ଧାରଣ
ନିଶି ଅବସାନେ କାଲି,
ଆଦେଶ ନେଇଣ ଜନକଠୁଁ ଗଲେ
ନିଜ ଭବନକୁ ଚାଲି ।
ଏ ବାରତା ନେଇ ଜନନୀଙ୍କ ଆଗେ
ଗଲେ ଜାନକୀ ନିକଟେ,
ସୁମିତ୍ରା-ନନ୍ଦନ ଆସି ପହଞ୍ଚିଲେ
ନଚାଇ ହୃଦ କୁହାଟେ ।

୧. ସମୂହ

ଜଣାଇଲେ ମୋଦେ ଜନକ ନନ୍ଦିନୀ
ରାଜ୍ୟ-ଅଭିଷେକ ବାର୍ତ୍ତା,
ଚିନ୍ତା କଲେ ରାଜ୍ୟ ଶାସିବାର ମନ୍ତ୍ର
ଚିନ୍ତାଶୀଳ ସୀତା ଭର୍ତ୍ତା ।
ଯେସନ କାନନେ ଅତି ଉଲ୍ଲସିତ
ଘନଜାଳ ଦେଖି କେକୀ,
ତେସନ ସୁମିତ୍ରା ସୁମିତ୍ରା ନନ୍ଦନ
କୌଶଲ୍ୟା ସହ ଜାନକୀ ।
ଅପସରିଗଲା ଶିଶିର ଧୀରେ ଧୀରେ ଭୁବନୁ,
ବିମଳ ଦିଶଇ ଗଗନ- ଶୋଭା ଚନ୍ଦ୍ରମା ତନୁ ।
ଉପଗତ ଏବେ ବସନ୍ତ- ଧରି ତା ଶୋଭା ପେଡ଼ି,
ଯୁବକ ଭ୍ରମର ନଗଲ- ଖୋଜେଣ ପଙ୍କଜ ଗୃହ ।
ନ ରହିଲା ତଳେ ଭୁବନେ- ଶୀତ ଋତୁ ଗରିମା,
ବିସ୍ତାରିଲା ମଧୁ ସରାଗେ ଚଉଦିଗେ ମହିମା ।
କୁହୁକୁହୁ ରବେ କୋକିଳ ଚୂତ ଡାଳରେ ବସି,
ରସାଳ ମଞ୍ଜରୀ ଚୁମ୍ବଇ ବନ୍ଧୁ ମହିମା ଘୋଷି ।
ଦକ୍ଷିଣ ଦିଗରୁ ବହଇ ମୃଦୁ ମଳୟାନିଳ,
ନବ ପଲ୍ଲବରେ ମଣ୍ଡିତ ଲତାପାଦପକୁଳ ।
ସ୍ଥାବର ଜଙ୍ଗମ ସରବେ ଧରି ଲବଣ୍ୟ ଶିରୀ,
ଉପହାସ କରେ ଶିଶିରେ କାଳ ଗତି ବିସୋରି ।
କନକ ବରଣ ଚମ୍ପକ- ସଙ୍ଗେ ସଖା ବକୁଳ,
ଆସି ମୋହାଇଲ ମାନସ ଅବା, ରସିକାକୁଳ ।
ବେନିଭାଇ କିଆ କେତକୀ ନାଗେଶ୍ୱରକୁ ଧରି,
ସରାଗେ ପୂଜିଲେ ଶଙ୍କରେ ଏଣେ ରାଜୀବ ପରି ।
ସଖାହୀନ ହୋଇ ଗମ୍ଭୀର ଶିବେ ଭକତିଭରେ,
ପୂଜି ମହାନନ୍ଦ ଲଭଇ ରହି ତାଙ୍କ ଶିରରେ ।
ନାନା ବରଣର ଗୋଲାପ ମୃଦୁ ଗନ୍ଧ ବିତରି,
କାମିନୀଙ୍କ ମନ କିଣଇ ତାର ସ୍ୱଭାବ ଧରି ।
ନିଜ ରଙ୍ଗ ଧରି କିଂଶୁକ ଆଗେ ନୁଅଇ ଚୂଡ଼ା,
ନଥିବାରୁ ତାର ଆଦର ମନେ ଲଭଇ ବ୍ରୀଡ଼ା ।
ପେନ୍ଥାପେନ୍ଥା ହୋଇ ଅଶୋକେ ଝୁଲୁଥାଏ ତାକଢ଼ ।
ଠିଆ ହୋଇଛି କି ବନିତା ପିନ୍ଧି ପାଟଳ ଶାଢୀ !
ମାନସ ହରଣ କରଇ ବରକୋଳି, କଦଳୀ,
ସାପଟା, କମଳା, ନଡ଼ିଆ ଫଳ ଭଲ କି ଛଳି ।

ଦୂର କାନନରୁ ଭଲ୍ଲୁକ ଅଧରାତ୍ରେ ଆସି,
ଦୋହଲାଇ ଫଳ ଖାଆନ୍ତି ବଡ଼କୋଳି କଷି ।
ଗୁଣୁ ଗୁଣୁ ସ୍ୱନେ ୧. ସରଘା ବୁଲି ଚମ୍ପକଗଛରେ,
ସାରାଦିନ ଖଟି ଅଣଇ ଫୁଲ ରସ ଯତ୍ନରେ,
ନିଜେ ବଞ୍ଚି ବାଣ୍ଟି ଦିଅନ୍ତି ଯେତେ ରଖେ ବଳକା,
ପର ଉପକାର ନିରତ ବୋଲି ପଢ଼ଇ ଡଙ୍କା ।
କିନ୍ତୁ ମହାଜନ ବୋଲାଇ ଅହରହ ମଣିଷ,
ପରସ୍ୱ ହରଣେ ବଳାଏ ମନ ନ ମଣି ଦୋଷ ।
କେତେ କଉଶଳେ ସରଘା ବାନ୍ଧନ୍ତି ବସା ସତତ,
ଏ ଶିଳ୍ପ କିଏ ଦେଇଛି କେହି ନ ଜାଣନ୍ତି ତତ୍ତ୍ୱ ।
ଅଳସୁଆ ପଣ ନଥାଏ ଲବେ ତାର ମାନସେ,
ମାନବଜଗତକୁ ଶିଖାଏ 'ଚଳ ମୋ ଆଦର୍ଶେ' ।
ଏ ଶୋଭାମଧ୍ୟରେ ରାମଙ୍କ ଅଭିଷେକ ଖବର,
ବିଜୁଳି ପରାଏ ବ୍ୟାପିଲା ଏବେ ପୁରକୁ ପୁର ।
ପୂର୍ଣ୍ଣିମା ନିଶିରେ ଆନନ୍ଦେ ସିନ୍ଧୁ ଉଚ୍ଛୁଳେ ଯଥା,
ଅଯୋଧ୍ୟାର ନର ନାରୀଏ ମୋଦେ ଲୋଟିଲେ ତଥା
ଭଜନ୍ମ ପାଇଲେ ଶ୍ରୀରାମ "ପୁଷ୍ୟା ନକ୍ଷତ୍ର" ଯୋଗେ,
ଅଯୋଧ୍ୟାର ରାଜ ମୁକୁଟ ମଣ୍ଡି ହେବେ ସରାଗେ ।

ଶୋଭେ ଦ୍ୱାରେ ଦ୍ୱାରେ ପୂର୍ଣ୍ଣକୁମ୍ଭ ସହ
ମଙ୍ଗଳ ପତାକାଶ୍ରେଣୀ,
ରସାଳ-ପଲ୍ଲବ ତୋରଣ ସକଳ
ମୋହଇ ନୟନ କଷି ।
ବେଦ ମନ୍ତ୍ରଧ୍ୱନି ଲଳିତ ସଙ୍ଗୀତେ
କମ୍ପୁଥାଏ ଜଳସ୍ଥଳ,
ପଶୁପକ୍ଷୀ ଆଦି ନିଜ ନିଜ ତାନେ
କରନ୍ତି ଆନନ୍ଦେ ରୋଳ ।
ଏ କାଳେ ମନ୍ଥରା କୈକେୟୀଙ୍କ ଦାସୀ
ଦେଖି ସକଳ ବେଭାର,
ବୁଝିଲା ଶ୍ରୀରାମ ଅଭିଷିକ୍ତ ହେବେ
ରାଜ ପଦେ ଅଯୋଧ୍ୟାର ।
ଶୁଣି ସମାଚାର ଦାସୀ ମନ୍ଥରାର
ମୁହଁ ପଡ଼ିଗଲା ଫିକା,
କୈକେୟୀ ନିକଟେ ଗଲା ସେ ତୁରିତେ
ସ୍ୱାର୍ଥ ଯାହାର ଜୀବିକା ।
ଚେତାଇ ତାହାଙ୍କୁ ଅତି ରୋଷଭରେ
ଝାଡ଼ିଲା ଗିର ଏସନେ,
"ହେବେ ଅଭିଷିକ୍ତ ରାଜ ପଦେ ରାମ
ବସନ୍ତ ଅବସାନେ ।
ତବ ବଡ଼ପଣ ନ ରହିବ ଆଉ
ରାଜପଦ ନେଲେ ରାମ,
ଦାସୀ ପଣେ ଖଟି ଦିନ ଯିବ ଏବେ
ସର୍ବ ସୁଖର ବିରାମ ।
ଶୁଣିଲା ବେଳରୁ ଏ ସମ୍ବାଦ ମନେ
ସୁଖ ନ ଲାଗଇ ଲବେ,
ଅନୁଭବୀ ବିନା ହୃଦୟ ଆବେଗ
ନ ବୁଝିବ କେହି ଭବେ ।
ତୋଷି ଥିଲେ ତୋର ମନ ସଦା ନୃପ
କହି ମଧୁର ବଚନେ,
କିଏ ଜାଣେ ଦିନେ ମହାକାଳ ହୋଇ
କରିବେ ତୋତେ ବର୍ଜନ ।
ସର୍ବ ଗୁଣାକର ଭରତ ତୋହର
ରାଜପଦେ ହକଦାର,
କେଉଁ ଗୁଣେ ଅବା ଭରତଙ୍କ ଠାରୁ
ରଘୁନାଥ ଜାଣିବାର ?
ନଜାଣି ହୃଦୟେ ପୋଷିଛି ଭୁଜଙ୍ଗ
ବିଶ୍ୱାସ କରିଣ ମନେ,
ହାରିବ ପରାଣ ତା ବିଷ ଉଦ୍‌ଗାରେ
ବେଳୁଁ ରହ ସାବଧାନେ ।
ପ୍ରେମ ଫାନ୍ଦେ ପଡ଼ି ବୁଝି ନ ପାରିଲୁ
ନୃପ କଉଶଳ ଭଲେ,
ଠକି ଭରତଙ୍କୁ [illegible] ଇଲେ ସେହି
ରାଜପଦ ରାମ ଗଲେ ।
କହ ଯାଇ ଥରେ ଦଶରଥ ପାଶେ
ଦଅନ୍ତୁ ଗାଦି ଭରତେ,
ବେଳ ଅଛି ଏବେ କାହିଁ ନାହିଁ ହେଲା
ରଖ ସୁଯଶ ଜଗତେ ।

୧. ମହୁମାଛି

ରାଜା ହେବେ ରାମ ଶୁଣି କଇକେୟୀ
ହୋଇଣ ହରଷଭର,
ଦେଲେ ଉପହାର ମନ୍ଥରାକୁ ଏବେ
ମନ ଖୁସୀ ପାଇଁ ତାର ।
କୈକେୟୀର ମନ ଜାଣି ଦେବତାଏ
ଆଦେଶିଲେ ବୀଣାପାଣି,
"ମନ୍ଥରା କଣ୍ଠରେ ବସି କର ଶନ୍ତା
ବଚନ ଯାଉ ରଧୁମଣି" ।
ଦୁଃଶୀଳା ମନ୍ଥରା ତେଜ ଘୃଣାଭରେ
କୈକେୟୀଙ୍କ ଉପହାର,
କହେ ମାଡ଼ିଆସେ ବିପଦ ତରଙ୍ଗ
ନକରୁ ମନେ ବିଚାର ।
ସଉତୁଣୀ ପୁଅ ରାଜା ହେବା ଶୁଣି
ନ କରିବ କଏ ଦୁଃଖ,
ତୋ ଭଳି ଅବୁଝା ନାରୀ ନାହିଁ କାହିଁ
ଗ୍ରହୁଚୁ ପରମ ସୁଖ ।
ସୁଖ ଲଭି ଆଶେ ହୋନ୍ତି ଛଟପଟ
ସକଳ ଏ ଧରାତଳେ,
ରାଜପଦ ଦିଅ ଭରତ ପୁଅର
ହରାଉଚୁ ବଳେ ବଳେ ।
ଯେତେଣ ପ୍ରାଣୀଏ ଏ ମେଦିନୀ ତଳେ
କରି ସନ୍ଦେହ ମାନବେ,
ମାରନ୍ତି ପୂର୍ବରୁ ଆତ୍ମରକ୍ଷା ଲାଗି
ନକର ବିଳମ୍ବ ଲବେ ।
ମନ୍ଥରା ବଚନ ଶୁଣି କଇକେୟୀ
କହିଲେ ତାକୁ ବୁଝାଇ,
"ଭରତଙ୍କୁ କେଭେଁ ନ ଦେବେ କେବେ ସେ
ରାମ ରାଜ ପଦ ପାଇଁ ।
ଜଗତେ ଦୁର୍ଲ୍ଲଭ ତାଙ୍କ ଭଳି ସୁତ
ପୁଣି ଜ୍ୟେଷ୍ଠ ସହୋଦର,
ମୋହନ୍ତି ଜଗତ ନିର୍ମଳ ହୃଦୟେ
ସର୍ବଙ୍କୁ କରି ଆଦର" ।
କହଇ ମନ୍ଥରା ଦୁଃଖ ପୂର୍ଣ୍ଣ ହୃଦେ
"ଦଶରଥ ନରପତି,

ତୁମ ପ୍ରେମେ ପଡ଼ି କୌଶଲ୍ୟା ରାଣୀଙ୍କୁ
କଲେ ହତାଦର ଅତି ।
ମିଳିଲେ ସୁଯୋଗ ସାଧି ଥାନ୍ତି ଦାଉ
ମଣିଷ ଧରଣୀ-ତଳେ,
ରାମ ଅଭିଷେକ ହେଲେ କଉଶଲ୍ୟା
ପ୍ରତିଶୋଧ ନେବେ ବଳେ" ।
ଶୁଣି କଇକେୟୀ ମନ୍ଥରା ଯୁକତି
ଚିନ୍ତି ଏବେ ମନେ ମନେ,
ପୁଚ୍ଛିଲ "କହ ତ କପରି ଭରତ
ବସିବେ ରାଜ ଆସନେ ?"
ଉତ୍ତରିଲା ଚତୁରୀ "ଶମ୍ବର ଯୁଦ୍ଧରେ
ଦଶରଥ ନରତ୍ରାଣ,
ହେବାରୁ ଆହତ ତୁମେ କଉଶଳେ
ରଖିଲ ତାଙ୍କ ପରାଣ ।
ପରମ ସନ୍ତୋଷ ଲଭି ନରପତି
କରିଥିଲେ ଅଙ୍ଗୀକାର,
ଲୋଡ଼ିଲେ ତୁମକୁ ଦେବା ଲାଗି ତୁମ
ଇଚ୍ଛା ମତେ ଦୁଇବର ।
କହ ଏବେ ତାଙ୍କୁ, "ଭରତ ହୁଅନ୍ତୁ
କୋଶଳ ଦେଶ ରାଜନ,
ନିଶି-ଅବସାନେ ଦଣ୍ଡକାଅରଣ୍ୟେ
ହେଉ ରାମଙ୍କ ଗମନ ।
କୁଡ଼ିଆରେ ରହି ଫଳ ମୂଳ ଖାଇ
ଜଟା କରି ଶିର ବାଳ,
ଗୁଡ଼ି ବା ବକଳ ଆବୋରି ଯାପନ୍ତୁ
ଚଉଦ ବରଷ କାଳ ।
ହେଲଣି ସମୟ ଆସିବେ ସେ ଏବେ
ନଦେଖିଁ ତାଙ୍କ ବଦନ,
ଶୋଇ ଥାଅ ତଳେ ମୁହଁ ମାଡ଼ି ତଳେ
ନକହ କିଛି ବଚନ ।
ସ୍ପର୍ଶିଲେ ରାଜନ କରି ଆଲିଙ୍ଗନ
ପୁଚ୍ଛିବେ ତ ଏକାରଣ,
କରାଇ ଶପଥ ରାମ ଅଭିଷେକ
କରିବ ଏବେ ବାରଣ" ।

ନିଦାଘେ ଶରୀରେ ଚନ୍ଦନ ଲେପନେ
ଲାଗଇ ସୁଖ ଯେସନ,
ମନ୍ଥରା ବଚନେ କଇକେୟୀ ହୃଦେ
ଏକାଳେ ହେଲା ତେସନ ।
ଅଶ୍ୱପତି ସୁତା (୧) ଶୁଣି ଏକ ମନେ
ମନ୍ଥରାର ଉପଦେଶ,
ପଡ଼ିଲେ ଏବେ ଭୂମି ପରେ ଯାଇ
ଛଳନା କରି ବିଶେଷ ।
ଅଭିଷେକ ଲାଗି ଯଥାବିଧି ସଜ
କରିବା ପାଇଁ ରାଜନ,
ସଚିବମାନଙ୍କୁ ଆଦେଶି ଆସିଲେ
ଏବେ କୈକେୟୀ ଭବନ ।
ଦେଖିଲେ କୈକେୟୀ ମ୍ଳାନ ବସ୍ତ୍ର ପିନ୍ଧି
ଶୋଇ ଛନ୍ତି ଭୂମି ପରେ,
ଘୁନଅାଁ ହୋଇ ସେ ପଚାରିଲେ ତାଙ୍କୁ
କାରଣ ଅତି କାତରେ ।
"କିଏ କେ ଦେଇଛୁ ଅପମାନ ଅବା
ଲାଗଇ ଦେହ ଅସୁଖ,
ଫେଡ଼ ମୋ ଆରତି ସତ୍ୱରେ ଦେଖାଇ
ତୋର ଦରହାସ ମୁଖ ।
ଅପ୍ରାପ୍ୟ ଅବା କି ଅଛି ଜଗତେ
ଦଶରଥ ନରରାଣେ,
ଫିଟାଇ କହିଲେ ଯୋଗାଇବ ସବୁ
ଶକତି କିଏ ନଜାଣେ" ।
ଦଶରଥ ମତି ବୁଝି କଇକେୟୀ
ଲୋତକ ନେତ୍ରୁଁ ଗଡ଼ାଇ,
ପୁଚ୍ଛିଲେ ରାଜଣ୍ଣ କାହାକୁ ଦେଉଚ
ମୋତେ ଠିକେ ନ ଜଣାଇ ।
ତା ବଚନେ ଶୁଣି ରାମ ନାମ ଧରି
କଲେ ଶପଥ ନୃପତି,
"ତୋ କାର୍ଯ୍ୟ ସାଧନେ ହେବି ଆଗଭର
ଏ ମୋର ପୁତ୍ର ସମ୍ମତି" ।

(୧) କୈକେୟୀ

ଧିକ, କାମାତୁର ନ ଉଚୁର ଛଳେ
କରିବାକୁ ନୀଚ କର୍ମ,
କରି ଯାଇ ଗୁରୁ ଶଙ୍କରଙ୍କୁ ଥରେ
ବୁଝିବ କାମର ମର୍ମ ।
ହୃଦେ ହଳାହଳ ଧରି ସୁଧା ମୁଖେ
ବଢ଼ି ଦଶରଥ ମନ,
ଅଶ୍ୱପତି ସୁତା ସୁଦକ୍ଷ କୈକେୟୀ
ଭାଷିଲେ ତହୁଁ ଏସନ ।
"ପିନ୍ଧିଣ ବକଳ ଚଉଦ ବରଷ
ରାମ ଏବେ ଯିବେ ବନ,
କୁଡ଼ିଆରେ ରହି ଫଳ ମୂଳ ଖାଇ
ଯାପିବେ ଯତି ଜୀବନ ।
ଏକାଳେ ଭରତ କରନ୍ତୁ ଧାରଣ
ରାଜ ମୁକୁଟ ତୁମର,
ପଚାରିଥିଲ ଯା କହିଲି ଫିଟାଇ
ଦିଅ ଏହି ଦୁଇ ବର ।
ମୃଗୟୁ (୧) କବଳେ ପଡ଼େ ଯଥା ମୃଗ
ଶୁଣି ତା ଲଳିତ ଗାନ,
କୈକେୟୀ ବଚନେ ଛନ୍ଦି ହେଲେ ଏବେ
ତଥା ଦଶରଥ ରାଣ ।
"ରଣିବାରୁ ତୁମ ଜୀବନ ପୂର୍ବେ
କହିଥିଲ ଦୁଇ ବର,
ମୋର ଇଚ୍ଛା ମତେ ଦେବ ବୋଲି ଆହେ
ମହାମନା ନୃବର ।
ରଖ ଏବେ ସେହି ତୁମ ସତ୍ୟ ବାକ୍ୟ
ନହୁଅ ସତ୍ୟ ଘାତକ,
ଏ ଇକ୍ଷ୍ୱାକୁ ବଂଶ ତୁମର ଏ ଭବେ
ନରପତି ସତ୍ୟ ରକ୍ଷକ" ।
ନୃପଙ୍କ ଶ୍ରୁତିକ ବଜ୍ର ସମ ବୋଧ
ହେଲା କୈକେୟୀ ବଚନ,
ମାତୃହରା ଶିଶୁ ପରାଏ ନୃପତି
ହେଲେ ସନ୍ତାପ ମଗନ ।

(୧) ଶିକାରୀ

କ୍ଷଣେ ରହି ନୃପ   ଭାଷିଲେ ପାପିନୀ
"ରାମ ଜଗତ ନୟନ,
କେନା ଅପରାଧେ   କହିବ କଏ ବା
ତାଙ୍କ କାନନ ଗମନ ।
ଧର୍ମ ଅବତାର   ସ୍ନେହର ପ୍ରତିମା
ନୁହନ୍ତି କେବେ ନିନ୍ଦିତ,
ଆନନ୍ଦ ଦାୟକ   ଦଶରଥଙ୍କର
ରାମ ଜଗତ ବନ୍ଦିତ" ।
"ଆରେ ! ପ୍ରତାରକ   ମୋ ମାଗୁଣି ଯାହା
ଏକ୍ଷଣି କର ପୂରଣ,
ମୋର ମନୋରଥ   ନହେଲେ ସଫଳ
ବରିବ ନିଶ୍ଚେ ମରଣ" ।
ହରିଣ-ଶାବକ   ୧ ହରି-ମୁଖେ ପଡ଼ି
ହୁଏ ଜ୍ଞାନଭ୍ରଷ୍ଟ ଯଥା,
କୈକେୟୀ ବଚନେ   ଦଶରଥ ରାଣ
ହେଲେ ବିଚଳିତ ତଥା ।
ବଜ୍ରପରି ନୃପ-   ହୃଦେ ଭେଦିଗଲା
କୈକେୟୀ ବଚନ ବାଣ,
ହା ରାମ ! ହା ରାମ !   ବୋଲି ଭୂମି ପରେ
ପଡ଼ିଲେ ସେ ତତକ୍ଷଣ ।
କେବେ କେବେ ଚେତା   ହୋଇ ନରତ୍ରାଣ
ବିନୟେ କହନ୍ତି ଭାଷା,
ପଥର ହେଲେ ତ   ଯାଆନ୍ତା ତରଳି
ଦେଖାନ୍ତା କି ଲଭେ ଆଶା ।
ଯେତେ ପରକାରେ   କହିଲେ ହେଁ ନୃପ
ନକଲେ ସେ କର୍ଣ୍ଣପାତ,
କହୁଥାଏ ପିନା   ଡୁହାଇ ଡୁହାଇ
"ରାଜା ହେଉ ମୋ ଭରତ" ।
ନିଶା ଅବସାନ   ହେଲା କ୍ରମେ କ୍ରମେ
ଦେଲା ତାମ୍ରଚୂଡ଼ (୨) ଡାକ।
ନିଅନ୍ତି ମେଲାଣି   ଗଗନୁଁ ତାରକା
କାଆ କାଆ କରେ କାକ ।

ଅଳତା-ସିନ୍ଦୂର   ବୋଳି ହେଲାପରି
ଦିଶଇ ଏକାଳେ ଭାନୁ,
ସରୋଜିନୀ ପାଇଁ   ଆଣୁଥିଲେ କି ତା
ପଡ଼ି ବୋଲି ହେଲା ତନୁ ।
ରାଜ ପୁରୋହିତ   ବଶିଷ୍ଠ ଏକାଳେ
ସରଯୂରେ କରି ସ୍ନାନ,
ହେଲେ ଉପନୀତ   ଅଭିଷେକ ଲାଗି
କରି ବେଦ ମନ୍ତ୍ର ଗାନ ।
ରାମ ଅଭିଷେକ   ବେଳ ଜାଗିଥିଲେ
ପୁଲକ ପରି ସରବେ,
କମ୍ପିଲା ଅଯୋଧ୍ୟା   ନଗରୀ ଏକାଳେ
ବନ୍ଦୀଗଣଙ୍କର ରବେ ।
ଦଶରଥ ସଖା   ସୁମନ୍ତ୍ର ଆସିଣ
ଯାଇ ତାହାଙ୍କ ସମୀପେ,
ହୁଅନ୍ତୁ ତତ୍ପର   ବୋଲି ଜଣାଇଲେ
ମହାମନା ନରାଧିପେ ।
ସୁମନ୍ତ୍ରଙ୍କୁ ଡାକି   କହିଲେ କୈକେୟୀ
ଯାଇ ରାମପାଶେ ଖରେ,
ନକର ବିଳମ୍ବ   ଆଣ ତାଙ୍କୁ ଏଥି
ଦେଖନ୍ତୁ ରାଜନ ଥରେ ।
ଉତ୍ତରିଲେ ସଙ୍ଗେ   ସଙ୍ଗେ ସୁମନ୍ତ୍ରର
ନପାଇ ରାଜ ଆଦେଶ,
ଯାଇ ପାରିବ କି   ବିଶ୍ବେର କହନ୍ତି
ନରଖି ସନ୍ଦେହ ଲେଶ ?
ସୁମନ୍ତ୍ରର ବାଣୀ   ଶୁଣି ନରମଣି
ଦେଲେ ଆଜ୍ଞା ସୁମନ୍ତ୍ରଙ୍କୁ,
ମୋ ଜୀବନ ଧନ   ମୋ ସୁଖ ବର୍ଦ୍ଧନ
ଡାକି ଆଣ ଶ୍ରୀରାମଙ୍କୁ ।
ପାଖେଇ ଆସିଲା   ଅଭିଷେକ ବେଳ
ନବବାହ ନରନାଥ,
ପିଣ୍ଡି ସମବେତ   ଧନୀ ବା ଗରିବ
ନହୁଏ ସହଜେ ବାର ।
ଯେତେ ସାମଗ୍ରୀ   ହୁଏ ଲୋଡ଼ା ସବୁ
ସରିଲାଣି ଆୟୋଜନ,

୧. ସିଂହ   (୨) କୁକୁଡ଼ା

ଚାହିଁଥାନ୍ତି ସର୍ବେ ସତୃଷ୍ଣ ନୟନେ
ଶ୍ରୀରାମଙ୍କ ଆଗମନ ।
ନକରି ବିଳମ୍ବ ସୁମନ୍ତ୍ରର ପୁଣି
ଯାଇ ଭେଟିଲେ ଶ୍ରୀରାମ,
ଆନନ୍ଦିତ ଅତି ତାହାଙ୍କର ଦେଖି
ସେ ମୂରତି ଅଭିରାମ ।
ଚଇତ୍ର ପୂର୍ଣ୍ଣିମା ନିଶିରେ ଯେମନ
ଶୋଭିବନ୍ତ ନିଶାପତି,
ଶଶୀ ତାର ପାଶେ ତଥା ମନୋରମ
ସୀତା ପାଶେ ସୀତାପତି ।
ଭକ୍ତିଭରେ ବନ୍ଦି ସୁମନ୍ତ୍ର ରାମଙ୍କୁ
ଜଣାଇ ପିତୃ ଆଦେଶ,
ଧରି ତାଙ୍କୁ ସଙ୍ଗେ ଆଣିଲେ ରଥରେ
ନକରି ବିଳମ୍ବ ଲେଶ ,
ସତୃଷ୍ଣ ନୟନେ ରହିଥାନ୍ତି ଚାହିଁ
ଏବେ ଅଗଣିତ ଜନେ,
କଲେ ଜୟଧ୍ୱନି ପୁଲକିତ ମନେ
ଦାଶରଥି ଆଗମନେ ।
ଅଭିରାମ ମୂର୍ତ୍ତି ଦର୍ଶନେ ସକଳେ
ମାତିଲେ ଉଲ୍ଲାସେ ଅତି,
କେହି ଆଶୀର୍ବାଦେ କେ ବା ଜୟନାଦେ
କମ୍ପାଇଲେ ବସୁମତୀ ।
ସୀମନ୍ତିନୀଗଣ ହୋଇ ଦଳ ଦଳ
ସୁବାସ କୁସୁମ ନେଇ,
ପକାଉ ଥାଆନ୍ତି ରଘୁମଣି ଶିରେ
ମୋଦେ ହୁଳହୁଳି ଦେଇ ।
ବାଜଇ ବାଜଣା ବିବିଧ ରଙ୍ଗରେ
ଶୁଣି ଚିତ୍ତେ ବିମୋହିତ,
ନାଟ୍ୟ ଦଳେ ଦଳେ କରି ଅଭିନୟ
ହରୁଥାନ୍ତି ପୁଣି ଚିତ୍ତ ।
ନିଜ କରାମତି ଦେଖାଇ ଏକାଳେ
ହର୍ଷେ ମାତୁନ୍ତି ସବାର,
ଆସନ୍ତି ଚଲାଇ ଅତି କଉତୁକେ
ଦନ୍ତାବଳ ଅଶ୍ୱ ସାର ।

ପିତାଙ୍କ ସମୀପେ ଯାଇ ରଘୁମଣି
ଦେଖି ତାଙ୍କୁ ଅଚେତନ,
ଚକିତେ ପୁଚ୍ଛିଲେ କୈକେୟୀଙ୍କୁ ଏବେ
ଜାଣିବାକୁ ଏ କାରଣ ।
ତହୁଁ ଲାଜ ତ୍ୟଜି କହିଲେ କୈକେୟୀ
"କଲେ ନୃପ ଅଙ୍ଗୀକାର,
ମୋର ସେବା ଫଳେ ତୋଷ ଲଭି ମୋତେ
ଦେବା ପାଇଁ ଦୁଇବର ।
କଲେ ସ୍ୱୀକାର ପାଳିବାକୁ ତୁମେ
ଭଲ ମନ୍ଦ ନ ବିଚାରି,
କହିବ ଫିଟାଇ ଧର୍ମ ସାକ୍ଷୀ କରି
ଯେଣୁ ତୁମେ ସଦାଚାରୀ ।
ଶୁଣି ଏ କାହାଣୀ ଭାବନ୍ତି ଶ୍ରୀରାମ
ପିତାଦେଶ ରଘୁମଣି,
ଏଡ଼ିଦେବ ବୋଲି କରନ୍ତି ସନ୍ଦେହ
ସ୍ନେହମୟୀ ଏ ଜନନୀ !
ଏଣୁ କୈକେୟୀଙ୍କୁ ଚାହିଁ ସେ କହନ୍ତି
"ରାମ ସଦା ତତପରେ,
ପିତାଙ୍କ ଆଦେଶ ନୋହି ସଙ୍କୁଚିତ
ପାଳିବାକୁ ନିରନ୍ତରେ" ।
ତଦନ୍ତେ କୈକେୟୀ କହିଲେ ଶ୍ରୀରାମ
ଭରତ ହେଉ ରାଜନ,
ଯତି ବେଶେ ଏବେ ଚଉଦ ବରଷ
କରି କାନନେ ଗମନ ।
କଠୋର ବଚନ କଇକେୟୀଙ୍କର
ରାଜା ଦଶରଥ ଶୁଣି,
ଘୋର ସନ୍ତାପିତ ହେଲେ ମନେ ମନେ
ନିନ୍ଦି ନିୟତିକୁ ପୁଣି ।
ଏ ରାଜ ମୁକୁଟ ଜନ୍ମ-ଅଧିକାର
ରାମ ବିନା ନାହିଁ କା'ର,
ଅବନୀ ଆଗରେ ରାମେ ଦେବା ଲାଗି
କରିଅଛି ଅଙ୍ଗୀକାର ।
ବିମାତା ସନ୍ତାନ ଶେଷ ମୁହୂର୍ତ୍ତରେ
ନେବ ଏ ମୁକୁଟ ଆଜ,

ଯିବ ଘୋର ବନେ ତେଜ ଦାଶରଥି
ଅତୁଳ ସମ୍ପଦରାଜ ।

ସୁଖର ଭବିଷ୍ୟ ସୁଖମୟ ଆଶା
ଦେଇ ରାମ ଜଳାଞ୍ଜଳି,

କଲେ ସ୍ୱୀକାର ବନେ ଯାଇ ଦିନ
ଯାପିବେ ଯତିଙ୍କ ଭଳି ।

ରାମ ଅଙ୍ଗୀକାରେ କୈକେୟୀ ଆନନ୍ଦ
ବଚନେ ନହୁଏ କହି,

କହିଲେ ତାହାଙ୍କୁ ଯିବାକୁ କାନନେ
ସେ ସ୍ଥାନେ କ୍ଷଣେ ନରହି ।

ଅନନ୍ତର ରାମ କହିଲେ ହେ ମାତଃ !
ନ ହବୁର ଆନ ମନେ,

ଯାହା କହେ କାର୍ଯ୍ୟେ ଦେଖାଏ ଜଗତେ
ମତ ମୋ ଧର୍ମ ପାଳନେ ।

କାନନ ନିବାସୀ ଯତିଙ୍କ ପରାଏ
ବିରାଗୀ ସଦା ରାଘବ,

ଧର୍ମ ପଥ ହିତ ଯାଏ ପାପେ ବୁଡ଼ି
କ୍ଷଣିକ ସୁଖେ ମାନବ" ।

ଏ ବଚନ ଶୁଣି ରାଜା ଦଶରଥ
ସହସା ପଡ଼ିଲେ ତଳେ,

ସଙ୍ଗେ ସଙ୍ଗେ ଯାଇ ରାଘବ ତାହାଙ୍କୁ
ଉଠାଇଲେ ବାହୁ ବଳେ ।

ଶୋକେ ଅଚେତନ- ପିତା ଦଶରଥ
ଦେଖୁଣ ରଘୁମଣି,

ଜନନୀ ଭବନେ ହସ ହସ ମୁଖେ
ସେ ସ୍ଥାନୁ ଗଲେ ସେକ୍ଷଣି ।

ଏଣେ କଉଶଲ୍ୟା ଉଜାଗର ରହି
ସ୍ନେହମୟୀ ପୁତ୍ର ପାଇଁ,

ଉପବାସ କରି ସୁଦୀର୍ଘ ରଜନୀ
ପୂଜିଲେ ଜଗତ ସାଇଁ ।

ଦାଶରଥି ସଙ୍ଗେ ସୁମିତ୍ରା ନନ୍ଦନ
ପହଞ୍ଚିଲେ ତାଙ୍କ ପାଶେ,

ଦେଖି ସେମାନଙ୍କୁ ବସିବାକୁ ଦେଲେ
ଆସନ ସେ ସମୁଲ୍ଲାସେ ।

ନବସି ରାଘବ କରଯୋଡ଼ ନମ୍ରେ
କହିଲେ ଶୁଣ ଗୋ ମାତ !,

"ପିତାଙ୍କ ଆଦେଶ ହୋଇଛି ମୁକୁଟ
ପିନ୍ଧିବେ ଭରତ ଭ୍ରାତ ।

ରାମ ଯିବ ବନ ଚଉଦ ବରଷ
ହେବ ପୁଣି ଜଟାଧାରୀ,

ବଲ୍କଳ (୧) ଅଜିନ କରିବ ବସନ
ହେବ ଫଳମୂଳାହାରୀ ।

ତେଣୁ ଯିବ ବନେ ଏକ୍ଷଣି ଆନନ୍ଦେ
ପିତାଙ୍କ ବଚନ ପାଳି,

ନେଉଚି ମେଲାଣି ଦିଅ ଆଶୀର୍ବାଦ
ହୃଦୟୁ କଷ୍ଟ ନ ଭାଳି" ।

ଶୁଣୁ ଶୁଣୁ ଏହା ଜନନୀ କୌଶଲ୍ୟା
ଶୋକେ ପଡ଼ିଲେ ଭୂତଳେ,

ସଙ୍ଗେ ସଙ୍ଗେ ରାମ ଉଠାଇଲେ ତାଙ୍କୁ
ପୋଛି ଲୋତକ ଅଞ୍ଚଳେ ।

କହନ୍ତି ଜନନୀ ଅଧୀରେ ତାହାଙ୍କୁ
"ଗଲା ମୋ ଲାବଣ୍ୟ ଛାଡ଼ି,

ପ୍ରତି ଅଙ୍ଗେ ଏଣେ ଧୀରେ ଧୀରେ ଆସି
ଜରା ବସିଲାଣି ମାଡ଼ି ।

ଆଲୋକ-ବର୍ଦ୍ଧନ ସଙ୍ଗେ ଅବସାନ
ଘଟଇ ଦିନର ଯଥା,

ଶରୀର-ଶକତି ବୃଦ୍ଧି ସଙ୍ଗେ ହ୍ରାସ
ସଦା ମଣିଷର ତଥା ।

ଭାବୁଥିଲି ମନେ ଶେଷ ଜୀବନରେ
ନ ଭୋଗିବି ଦୁଃଖ ଆଉ,

ରାଜା ହେଲେ ରାମ ନ ରହିବ ପୁଣି
ସଉତୁଣୀଙ୍କର ଦାଉ ।

ରୋପିଅଛି ଯାହା କାଟିବି ତ ତାହା
ମୋ କରମ ବଡ଼ ମନ୍ଦ,

କିଏ କା ଜୀବନେ ଆପ୍ରାଣ ଯତନେ
ଫିଟାଏ ନିୟତି ଛନ୍ଦ ।

(୧) ଛାଲ

କ୍ଷଣେ ନ ଦେଖିଲେ ତୋ ସୌମ୍ୟ ବଦନ
ଅଥୟ ଅତି ହୃଦୟ,
ହେବି ଅନୁଗାମୀ ତୋ ସଙ୍ଗେ କାନନ
ଏତିକି ମୋ ଅନୁନୟ" ।
ମାତାଙ୍କୁ ବୁଝାଏ ରଘୁମଣି ଏବେ
ଦିଅନ୍ତି କେତେ ସାନ୍ତ୍ୱନା,
କୋମଳ ହୃଦୟା ବନିତା କେବେ କି
ସହିପାରିବ ଏ ବେଦନା ।
ସୁମିତ୍ରାନନ୍ଦନ ବେଳେ ବେଳେ ରୋଷେ
ଅନ୍ୟାୟର ପ୍ରତିରୋଧ,
କରିବା ନିମିତ୍ତ ରାଘବେ କରନ୍ତି
ସାନୁନୟ ଅନୁରୋଧ ।
ଧର୍ମପଥ ଦୃଢ଼ କୁକର୍ମରେ ବୃଢ଼
ସମ୍ଭୋଗ ଯେହ୍ନୁ ଇଛନ୍ତି,
ଧନ୍ୟ ସେ ଜଗତେ କହି ଦାଶରଥି
ଲକ୍ଷ୍ମଣଙ୍କୁ ପ୍ରବୋଧନ୍ତି ।
"କହନ୍ତି ଜନନୀ ପାଟରାଣୀ ବୋଲି
ବାଳେ ଜଗତେ ଉତ୍ତମ,
ହେଲା ନାହିଁ ଦିନେ ନୃପଙ୍କ ଆକୃଷ୍ଟ
ଭୋଗିଲା ଦୁଃଖ ଅସୀମ ।
ସତର ବରଷ ତଳେ ଏ ନୟନ
ଦେଖିଲା ତୋ ଚନ୍ଦ୍ରମୁଖ,
ଯାପୁଥିଲା ଦିନ ପୁଲକିତ ମନେ
ପାଶୋରି ଅତୀତ ଦୁଃଖ ।
କରୁଥିଲା କେତେ ଉପବାସେ ରହି
ଦେବ ଦେବୀ ଆରାଧନା,
କାଟୁଥିଲା କାଳ ଉଜାଗର ରହି
କରି ତୋ ଶୁଭ କାମନା ।
ସୁଖର ସପନ ଦେଖୁଥିଲା ନିତି
ପଡ଼ି ମମତା ଜଞ୍ଜାଳେ,
ତୁ ଗଲେ ବନକୁ କିଏ ମାଆ ସେବା
କରିବ ଅନ୍ତିମ କାଳେ ।
ଜନନୀ କୁମାର ହେଲା ବେଳେ କଥା
ରୋଷେ କହନ୍ତି ଲକ୍ଷ୍ମଣ,
"ଦେଲେ ଅନୁମତି ରୋଧିବ ଅନ୍ୟାୟ
ଲକ୍ଷ୍ମଣର ଏହି ପଣ ।
ରାଜନ ଇଙ୍ଗିତେ ରାଜ୍ୟ ନେବ ଜଣେ
ଏକା ଅଯଥା ଯୁକତି,
ସାଗର ପରାଏ ନ ଲଙ୍ଘିଲେ ସୀମା
ଆସଇ ଦିନା ଭକତି" ।
କ୍ରୋଧେ ଜର ଜର ଦିଶନ୍ତି ଲକ୍ଷ୍ମଣ
ଅଧୀର ହୁଅନ୍ତି ଅତି,
ସନ୍ତାପେ ଜନନୀ ଦେଖିଲେ ରାଘବ
ସୁଖେ ଦୁଃଖେ ସମମତି ।
"ପିତାଙ୍କ ବଚନ ପାଳନେ ତୁ କପାଁ
ହେଉ ଆଜ ଆଗଭର,
ଯେ ଦେଇ ଜନମ ବଢାଏ ଆଦରେ
ପୂଜିତ ସେ ନିରନ୍ତର ।
ମାଟି ପରେ ପଡ଼ି ମାଟି ପରେ ବଢ଼ି
ମାଟିରେ ମିଶିବା ଦିନେ,
କାନନ ନିବାସ ଅଧିକ ସରସ
ଜଞ୍ଜାଳେ ସତନ୍ତ୍ର ଇନେ (୧)
ଅଧିକାର-ଧନ- ବିଳାସ-ବ୍ୟସନ
କେତେ ଦିନ ପାଇଁ ଭାଇ,
ବିଶ୍ରାମେ ଶୟନେ ନିର୍ଭୀକ ହୃଦୟେ
ଦେଖ ଥରେ ନେତ୍ର ଫେରଇ ।
ଯେତେ ମନୋହର ଦିଶୁ ଭବିଷ୍ୟତ
ନକର ବିଶ୍ୱାସ ତିଳେ,
ବିସୋରି ଅତୀତ କରୁଥିଲେ କର୍ମ
ପରମ ସମ୍ପଦ ମିଳେ ।
ନୁହେ ସୁଖମୟ କାହାରି ଜୀବନ
ଜନମି ଏ ଧରାତଳେ,
ଆଲୋକ ଅନ୍ଧାର ପରି କରେ ଗତି
ଭଲ ମନ୍ଦ କାଳ ଛଳେ ।
ଯେତେବେଳେ ଯାହା ଘଟଇ ଜଗତେ
ନଜାଣେ କେ ପୂର୍ବୁଁ ଲବେ,

(୧) ରାଜାମାନେ

ଭ୍ରମବଶେ ସିନା    ଅନ୍ଧାର ଭିତରେ
ଦଉଡ଼ୁ ଥାନ୍ତି ସର୍ବେ ।
ଭାଗ୍ୟର ଇଙ୍ଗିତେ    କଇକେୟୀ ହୃଦ
ହୋଇଛି ପରିବର୍ତ୍ତନ ।
କହି ରଘୁମଣି    ପ୍ରବୋଧନା ବହୁ
ଦେଲେ ଜନନୀ-ଲକ୍ଷ୍ମଣ” ।
ଘେନି ଆଶୀର୍ବାଦ    ଜନନୀଙ୍କ ଠାରୁ
ଗଲେ ସେ ଜାନକୀ ପାଶେ,
ଦେଖି ସୀତା ତାଙ୍କ    ବିଷଣ୍ଣ ବଦନ
ପୁଚ୍ଛିଲେ ଅତି ହରଷେ ।
“ମୋ ପରାଣ ଧନ    ନକର ଗୋପନ
କହ କାହିଁକି ବିଷଣ୍ଣ,
ହସଇ ଆଜିଏ    ମଙ୍ଗଳ ଉଷାରେ
ତବ ଚନ୍ଦ୍ରମା ବଦନ” ।
“ଉତ୍ତରିଲେ ରାମ    ଅରଣ୍ୟ ନିବାସୀ
ହେବ ଚଉଦ ବରଷେ,
ଏ ରାଜ ମୁକୁଟ    ଧରିବ ଭରତ
ହୋଇଛି ରାଜ ଆଦେଶ ।
ବହୁ ଦିନ ତଳେ    କରିଥିଲେ ପିତା
କୈକେୟୀଙ୍କୁ ଅଙ୍ଗୀକାର,
ଲୋଡ଼ା ହେଲା ବେଳେ    ଦେବା ପାଇଁ ତାଙ୍କ
ଇଚ୍ଛାମତେ ଦୁଇବର ।
ଜଣାଇ ତୁମଙ୍କୁ    ଯିବି ଏବେ ବନ
ପାଳି ପିତାଙ୍କ ବଚନ,
କର୍ତ୍ତବ୍ୟ ପଥରେ    ଚାଲିଥାଏ ସଦା
ଜାଣିଛ ତ ରାମମନ ।
ଉଚ୍ଚ ପଦଧାରୀ    ଅବା ଧନବାନ
ଅନ୍ୟ ପରଶଂସା ଶୁଣି,
ନ ସହନ୍ତି କେବେ,    ସାବଧାନ ହେବ
ଆସିଲେ ଭରତ ଗୁଣୀ” ।
“ଶୁଣିଣ ଜାନକୀ    ଦଅନ୍ତି ଉତ୍ତର
ହେବ ସହଗାମୀ ସୀତା,
ଜାଣିଛ ତ ତୁମେ    ପତି ବିନା ଭବେ
ସହାୟ ହୀନା ବନିତା ।

ପତି ଭବେ ସିନା    ଆଶା ବା ଭରସା
ବନିତାର ଅହରହ,
ସୁଖେ ଅବା ଦୁଃଖେ    ସମ ଭାଗୀଦାର
ନ ଜାଣେ କିଏ ସେ କହ” ।
ଜାନକୀ ବଚନ    ଶୁଣି ରଘୁମଣି
କହିଲେ ତାଙ୍କୁ ଏସନ,
“ଶିରଧାରେ ସେବା    କରି ଗୁରୁଜନେ
କଟାଅ ସୁଖେ ଜୀବନ ।
ବିଳାସ କୋଳରେ    ବଢ଼ି ପିଲାଦିନୁ
ଯାପୁଅଛ କାଳ ସୁଖେ,
ଅଜ୍ଞାତ କାନନେ    ସାଥି ହେଲେ ମୋର
କିପରି ଚଳିବ ଦୁଃଖେ” ।
ଏହା ଶୁଣି ସୀତା    କାନ୍ଦି କାନ୍ଦି ଦୁଃଖେ
“କହନ୍ତି ଯିବି କାନନେ,
ଆପଦ ବିପଦ    ନ ଜାଣିବି କିଛି
ହୃଦେ ଥିଲେ ଚନ୍ଦ୍ରାନନେ ।
କାଟିବି ଆନନ୍ଦେ    କାଳ ଘୋର ବନେ
ଲଭି ତୁମ ଦରଶନ,
ହାରିବ ପରାଣ    କରି ବିଷ ପାନ
ନ ନେଲେ ମୋତେ କାନନ ।
ମହୀରୁହ ପାଶେ    ନିରତ ସହାୟ
ଲୋଡ଼ନ୍ତି ଯଥା ଲତାଏ,
ଯୁଗେ ଯୁଗେ ତଥା    ପତିର ଆଶ୍ରୟ
ଲୋଡ଼ିଥାନ୍ତି ବନିତାଏ ।
ପତି ଠାରୁ ପତ୍ନୀ    ରହିବା ଅଲଗା
ଶୁଣି ନାହିଁ ଜଗତରେ,
ପତିବ୍ରତା ଧର୍ମ    ଆଚରି ନାରୀଏ
ପା'ନ୍ତି ସୁଖ ଲୋକାନ୍ତରେ” ।
ସତ୍ୟର ସେବକ    ଜାନକୀରମଣ
ଜାଣି ବଇଦେହୀ ମନ,
ଅବଶେଷେ ତାଙ୍କୁ    କଲେ ସ୍ୱୀକାର
ନେବା ପାଇଁ ସଙ୍ଗେ ବନ ।
ସୁମିତ୍ରାନନ୍ଦନ    ରାମ ସୀତାଙ୍କର
ଶୁଣି କଥୋପକଥନ,

କଲେ ଅନୁନୟ ମୈଥିଳୀରମଣେ
ଯିବା ପାଇଁ ସଙ୍ଗେ ବନ ।
ରାଘବ ତାହାଙ୍କୁ ବୁଝାଇ କହିଲେ
'ଭାଇ ସଙ୍ଗେ ରହି ଘରେ,
ଜନକ ଜନନୀ ସେବା କରି ସଦା
କାଳ କାଟି ହରଷରେ' ।
ଏ ବଚନ ଶୁଣି, କହନ୍ତି ଲକ୍ଷ୍ମଣ
ରାମଙ୍କର ପଦ ଧରି,
"ଅଧିକ ଆନନ୍ଦ ଲଭିବି କାନନେ
ନିତି ତୁମ ସେବା କରି ।
ବାଲ୍ୟକାଳୁଁ ତୁମ ସେବା କରୁଅଛି
ସଙ୍ଗେ ରହି ଛାଇ ପରି,
କହ ତେବେ ଭାଇ ଆଜି ସେ ସେବାରୁ
ବଞ୍ଚିତ ହେବି କିପରି ?
ସଙ୍ଗରେ ନଥିଲେ ଲକ୍ଷ୍ମଣ ବନରେ
ଆଣିବ କେ ଫଳମୂଳ,
ରହିବେ କପରି ଏକୁଟିଆ ସୀତା
ଯହିଁ ହିଂସ୍ରଜନ୍ତୁ ଠୁଳ" ।
ଲକ୍ଷ୍ମଣ ବଚନ ଶୁଣି ତୋଷ ମନେ
କହନ୍ତି ଶ୍ରୀରାମ ପୁଣି,
'ଯିବ ବନେ ଯେବେ ଆସ ଖରେ ଏବେ
ଧରି ଧନୁଶର ତୂଣୀ' ।
ଆନନ୍ଦେ ବିଭୋର ଲକ୍ଷ୍ମଣ ଏକାଳେ
ପାଇ ରାମ ଅନୁମତି,
ଆସି ପହଞ୍ଚିଲେ ରାମଙ୍କ ସମୀପେ
ଧରି ଧନୁଶରତତି ।

****

## ତୃତୀୟ ସର୍ଗ

ଜାନକୀ, ଲକ୍ଷ୍ମଣ ସହ ଦାଶରଥି
ବାଣ୍ଟି ବହୁ ଧନ ରତ୍ନ,
ଯତିବେଶ ଧରି ହରଷେ କାନନ-
ଯିବା ପାଇଁ କଲେ ଯତ୍ନ ।
"ବ୍ରହ୍ମାଣ୍ଡର ଈଶ ଧରି ନର ବେଶ
ଜନମି ଏ ମେଦିନୀରେ",
ପୁଲକିତ ମନେ ବାହାରିଲେ ବନେ
ଧରି ପିତାଦେଶ ଶିରେ ।
ଅନୁକୂଳ କରି ଇଷ୍ଟଦେବ ସ୍ମରି
ଯେ କାଳେ ପିତା ନିକଟେ,
ଆସିଲେ ତିନିହେଁ ଚଉଦଗେ ଏଣେ
ବିଶେଷ ଦୁଃଖ ପ୍ରକଟେ ।
ରାଜଦ୍ୱାର ଦେଶେ ସୁମନ୍ତ୍ରେ ସହାସେ
କହିଲେ ଜାନକୀପତି,
ଜଣାଅ ଜନକେ କାନନ ଗମନେ
ଆସିଲେ ଶ୍ରୀରାମଯତି ।
ଦେଖି ସୁମନ୍ତ୍ରର ହୋଇ ଦୁଃଖଭର
ଜଣାଇଲେ ଧରାଧିପେ,
ଆସିଛନ୍ତି ରାମ ଯିବା ଲାଗି ବନ
ଉଭା ଦୁଆର ସମୀପେ ।
ସୁମନ୍ତ୍ରର ବାଣୀ ଶୁଣି ନରମଣି
ଡାକିବାକୁ ପତ୍ନୀଗଣ,
କହନ୍ତେ ଗଡ଼ିଲା ନୟନୁ ଲୋତକ
ଦିଶିଲା ମୁଖ ବିବର୍ଣ୍ଣ ।
ରାମଙ୍କ ଜନନୀ କଉଶଲ୍ୟା ରାଣୀ
ଧରି ତାଙ୍କ ସଉତୁଣୀ,
ପହଞ୍ଚିଲେ ଖରେ ସୁମନ୍ତ୍ର ସଙ୍ଗରେ
ରାଜାଙ୍କ ଆଦେଶ ଶୁଣି ।
ଅଶ୍ରୁମାରେ ଅନ୍ଧ ହୋଇ ଦଶରଥ
ନପାରିଲେ ଦେଖି ରାମ,
ମୂର୍ଚ୍ଛି କରି ମାତ ରୋଦନେ କହନ୍ତି
ବିଧାତା ମୋଠାରେ ବାମ ।
କାନ୍ଦିଲେ ସକଳ ନାରୀଏ ବିକଳେ
କି ହେଲା କି ହେଲ କହି,
ବାନ୍ଧିଲେ କି ହେବ ସେତୁବନ୍ଧ ଅବା
ପଳାଇଲେ ଜଳ ବହି ।
କହନ୍ତି ଶ୍ରୀରାମ ପ୍ରବୋଧି ଜନକ
"ଏଠାରୁ ଯିବ ଅରଣ୍ୟ,

'ଯାଉଛନ୍ତି ସୀତା ସୁମିତ୍ରା-ନନ୍ଦନ
କହିଲେ ହେଁ କେତେ ବାରଣ ।
ଦିଅ ଆଶୀର୍ବାଦ ପରିତେଜ ଖେଦ
ରାମ ଯାଉ ଘୋର ବନେ,
ପାଳଏ ରାଇଜ ଆଉ କେତେ କାଳ
ରଖି ଯଶ ଏ ଭୁବନେ" ।
କହନ୍ତି ଜନକ ଖେଦଭରେ ଅତି
ଶୁଣି ଶ୍ରୀରାମ ଭକତି,
"କର ରାଜନେ ଆନନ୍ଦେ ଧରାରେ
ନଜର ଆଉ ସୁକତି" ।
ଦଶରଥଙ୍କର ବଚନ ଶ୍ରବଣେ
କହନ୍ତି ଶ୍ରୀରାମ ଏବେ,
ଆମୋଦ ପ୍ରମୋଦ ବିଳାସ ଐଶ୍ୱର୍ଯ୍ୟ
ଲୋଡେ ନାହିଁ ରାମ କେବେ ।
ସତ୍ୟର ପଥିକ ରାମ ନିରନ୍ତର
ଲୋଡେ ନାହିଁ ଆଉ ସୁଖ,
ପିତାଙ୍କ ବଚନ ପାଳନେ କେବେ ବା
ହୋଇଅଛି କି ବିମୁଖ ?
ନଦୀ ଗିରି ହ୍ରଦ ହରିବେ ବିଷାଦ
ଆନନ୍ଦେ ଯାପିବି ଦିନ,
ସୁମଧୁର ଫଳେ ସୁମଧୁର ମୂଳେ
କରାଇବି କ୍ଷୁଧା ଲୀନ ।
କଲି ଅଙ୍ଗୀକାର କୈକେୟୀ ସନ୍ନିଧେ
ଧର୍ମ ସାକ୍ଷୀ କରି ଯାହା,
ଅକ୍ଷରେ ଅକ୍ଷରେ ପାଳିବାକୁ ରାମ
କରିଛି ଶପଥ ତାହା ।
ଲୋଡ଼ା ନାହିଁ ଧନ ଲୋଡା ନାହିଁ ସୈନ୍ୟ
ଲୋଡା ନାହିଁ ରାଜ ବସ୍ତ୍ର,
ପିନ୍ଧିବ ଶ୍ରୀରାମ ବକଳ ବସନ
ଦିଅ ଅନୁଗ୍ରହ କରି ।
ପଶୁ ଛାଲ ଅବା ଗଛର ବକଳ
ଏକାଳେ ହେବ ବସନ,
ପତର କୁଡିଆ ହେବ ବାସ ପୁଣି
କରିବି ଭୂତଳ ଶୟନ" ।

ତକ୍ଷଣେ କୈକେୟୀ ଲାଜ ଛାଡ଼ି ତାଙ୍କୁ
ବକଳ ଦେଲେ ବଢାଇ,
ନେଇ ତାଙ୍କ ହସ୍ତୁଁ ଶ୍ରୀରାମ ଲକ୍ଷ୍ମଣ
ଅଙ୍ଗରେ ହେଲେ ଗୁଡାଇ ।
ଭବ ଲୋକ ଆଜି ସଡ଼ୁଛନ୍ତି କୋହେ
କଇକେୟୀ ମୋଦଭର,
ହସ ଆଉ କାନ୍ଦ ଖେଳେ ଲୁଚକାଳି
ଏ ଜଗତେ ନିରନ୍ତର ।
ଧିକ ଧିକ କହି ମହର୍ଷି ବଶିଷ୍ଠ
କୈକେୟୀଙ୍କୁ ଦେଲେ ଗାଳି,
ଦାରୁଣା ପାପିନୀ ପୁଣ୍ୟ ରବି ବଂଶେ
ଲଗାଇଲା ଏବେ କାଳି ।
ବାହାର ସୁନ୍ଦର ଖଳ ପ୍ରକୃତିର
ମହାକାଳ ଫଳ ପରି,
ନ ପଡେ ପ୍ରମାଦ ରହିଥିଲେ ଦୂରେ
ସଙ୍ଗତାର ପରିହରି ।
ଧନ୍ୟ ଲୋ ମନ୍ଥରା କାଛୁ ବାଛୁ କଏ
ଦେଇଥିଲା ତୋର ନାଆଁ,
ମନ୍ଥି ବସୁନ୍ଧରା ନ ପଡ଼ିଲୁ ଧରା
ଧନ୍ୟ ତୋହର ଗୁଣିଆଁ ।
ଏ ଭବେ ମନିଷ ହରାଇ ବିବେକ
ସ୍ୱାର୍ଥକୁ କରଇ ଧ୍ୟାନ,
ଧିକ ତା ଜୀବନେ ପଡି ଅବିରଳ
ନ ବିଚାରେ ଲବେ ଆନ ।
ସ୍ୱାର୍ଥ ସିନା ହିଂସା ପ୍ରବଞ୍ଚନା ସଙ୍ଗ
ଲୋଡଥାଏ ସଦା ଭବେ,
ଅସାଧୁତା ବୀଜ ବୁଣିବାକୁ କେବେ
ଶଙ୍କା ନକରଇ ଲବେ ।
ଯୋକ ପରି ଲାଗି ରହିଥାଏ ମନ
ନିଜ ଶିଖ ବୃଦ୍ଧି ପାଇଁ,
ବିଷୟ ମୋହରେ ପଡ଼ି ପରଛିଦ୍ର
ନିତି ଖୋଜି ବୁଲୁଥାଇଁ ।
ଚତୁର ପଣରେ କୋକିଶିଆଳ ଠୁଁ
ବେଳେ ବେଳେ ଯାଏ ବଳି,

ନିଜ ନିନ୍ଦା ଯେବେ  କାନେ ଯାଏ ପଡ଼ି
    ହୃଦ ଯାଉଥାଏ ଜଳି ।
ନିନ୍ଦୁଏ ବିରତ  ଖଳ ତୋଷାମଦୁଁ
    ମିଛ ଦେଉଥାଏ ବଳି,
କୁଟିଳତା ପୂର୍ଣ୍ଣ  ଅବଶିତ ହୃଦ
    ପରହିତ ହଳାହଳ ।
କଳହ ସୃଷ୍ଟିର  ମୂଳର କାରଣ
    ଅନ୍ୟାୟର ଅଗ୍ରଦୂତ,
ଏସି ଖୁସାମତେ  ଦିଏ ଜଳାଞ୍ଜଳି
    କେବେ ବା ନିଜ ମହତ୍ତ ।
ନଥାଏ ତା ଖେଦ  ଜନ ଅପବାଦ
    କୃତଘ୍ନତା ସହଚର,
ଦେଖି ତା ଏଗତି  ଜନମଇ ଭୀତି
    କର ଶିରେ ଦେବା ସାର ।
ଉଣ୍ଡି ବେଳ କାଳ  ମାତ କଉଶଳେ
    ପଛରୁ ମାରଇ ଛୁରୀ,
ନିଜ ନଶ୍ୱରତା  ଭୁଲି ବା ଶ୍ରବଇ
    ସ୍ୱାର୍ଥର କାମନା ପୂରି ।
ଝରଇ ଲୋତକ  ହୋଇ ଧାର ଧାର
    ପାଶେ ଥିବା ଜନଙ୍କର,
କରିଲେ ଭର୍ତ୍ସନା  କୈକେୟୀଙ୍କୁ ପୁଣି
    ହୋଇ ଅତି ଦୁଃଖଭର ।
ଏ ଭବେ ମନୀଷ  ନକରି ବିଚାର
    ପଡ଼ିଲେ ପର ବୋଲରେ,
କୈକେୟୀ ପରାଏ  ସହି ନିରନ୍ତର
    ଜୀବନ ଯାଏ ଦୁଃଖରେ ।
ସୀତା ସହ ରାମ  ସୁମିତ୍ରାନନ୍ଦନ
    କରି ବକଳ ଧାରଣ,
ବାହାରିଲେ ଏବେ  ଯିବାଲାଗି ବନେ
    କଲେହେଁ ଯେତେ ବାରଣ ।
"ପତିର ସମ୍ପଦେ  ଦେଖାନ୍ତି ମାନବେ
    ଅତିଶୟ ଅନୁରାଗ,
ପଡ଼ିଲେ ବିପଦ  ଯଶୋର ଅଜାତ
    ବହନ୍ତି ମନେ ବିରାଗ ।

ସ୍ୱର୍ଣ୍ଣ ଅଳଙ୍କାରେ  ରହେ ମନ ଟାକି
    ସୁବର୍ଣ୍ଣ ତାଙ୍କ ଦେବତା,
ଅହରହ ହୃଦ  ଦେଉଥାଏ ଘାରି
    ଯଉବନ ଚପଳତା",
ଭୁବନ ମୋହିନୀ  ପତିବ୍ରତା ପତ୍ନୀ
    ପ୍ରାଣକାନ୍ତ ସଙ୍ଗେ ବନ ।
ତେଜି ବାହାରିଲେ  ସକଳ ସମ୍ଭୋଗ
    ପିନ୍ଧି ବକଳ ବସନ,
ଦାରୁଣ ବଚନେ  କୈକେୟୀଙ୍କୁ ରାଜା
    ଧିକ୍କାରିଲେ ବହୁବାର,
ଯା ମନ ଧାଇଁଛି  କଳ୍ପନା ପଛରେ
    ଶୁଣେ କି କଥା ସେ କା'ର ।
ଯେଉଁ କଇକେୟୀ  ପ୍ରିୟତମା ଥିଲି
    ଆଜଯାଏଁ ଯାହାଙ୍କର,
କିଏ ଜାଣିଥିଲା  ସେହି ପୁଣି ହାତେ
    ପିଆଇ ଦେବ ଜହର ।
"କହନ୍ତି ଶ୍ରୀରାମ  ବିନମ୍ରେ ଜନକ
    ଘେନ ରାମ ନିବେଦନ,
ଜନନୀ କୌଶଲ୍ୟା  ଅବିରତ ତବ
    ପଦେ ରଖିଥାଏ ମନ ।
ଏ ଅମିତ ଦୁଃଖେ  ଶୁଣି ନାହିଁ ତାଙ୍କ
    ମୁଖରୁ ତବ ଅପବାଦ,
ସେ ହେତୁ ଭଗିନୀ  କଉଶଲ୍ୟା ପ୍ରତି
    ଥାଉ ତୁମର ପ୍ରସାଦ ।
ପବିତ୍ର ହୃଦୟା  ଜନନୀଙ୍କ ପଦେ
    ନୁଆଁଇ ରାଘବ ଶିର,
କରିବାକୁ ତାଙ୍କୁ  ଜନକଙ୍କ ସେବା
    ଭାଷିଲେ ବିନୟୀ ଗିର" ।
ବନ୍ଦି ମାତୃପଦେ  ଲକ୍ଷ୍ମଣ କୁମାର
    ବାହାରନ୍ତେ ବନବାସ,
କହିଲେ ଜନନୀ  ଆଲିଙ୍ଗି ତାହାଙ୍କୁ
    "ଥିବୁ ସଦା ରାମପାଶ ।
ପିତା ତୁମ୍ଭ ମଣି  ରାଘବଙ୍କୁ ଏବେ
    ମଣିବୁ ସୀତାଙ୍କୁ ମାତା,

କରୁଥିବୁ ସେବା ଦିବା ନିଶି ପୁଣି
ହେବୁ ଜାନକୀଙ୍କ ସାଥୀ"।
ପ୍ରବୋଧନ ଦେଇ କହନ୍ତି ସୁମିତ୍ରା
କଉଶଲ୍ୟାଙ୍କୁ ଅନାଇଁ,
"ବନବାସ ଡର ନାହିଁ ରାମଙ୍କର
ସେ ଯେଣୁ ଜଗତ ସାଇଁ।
ମରୁତ ଝଟିକ ହରୁଥିବ କାନ୍ତି
ଚନ୍ଦ୍ରମା ଚନ୍ଦ୍ରିକା ଦାନେ,
ଚିତ୍ତ ବିନୋଦନ ହେବ ତାଙ୍କ ପୁଣି
କୋକିଳର କୁହୁତାନେ।
ଦେବ ଦେବୀ ଯେତେ ଅଛନ୍ତି ଜଗତେ
କରନ୍ତି ତାଙ୍କ ବନ୍ଦନା,
ମହାତ୍ୟାଗୀ ଯିଏ ଜାଣିବ କି ସେବେ
କାନନ ବାସ ଯାତନା"।
ଦୁଃଖୀ ବିନା କିଏ ଦୁଃଖର ବେଦନା
ନପାରଇ ଜାଣି ଭବେ,
ବାଂଝ କେଉଁକାଳେ ପ୍ରସବ ଯାତନା
ପାରଇ କି ଜାଣି ଲବେ।
କୁରଙ୍ଗ ପରିଏ ବିକଳେ ନାଶଏ
କାନ୍ଦିଲେ ମେଲାଣି କାଳେ,
ବିହଗେ ଆରଡ଼େ କଲେ ରବ ଖେଦେ
ବସିଣ ପାଦପ ଡାଳେ।
ଧନ୍ୟ ଧନ୍ୟ ରାମ ଉଦାର ହୃଦୟେ
ତେଜି ବିଭୂତି ସକଳ,
ଦେଖାଇ ଆଦର୍ଶ କଲ ବନବାସ
ଅବୋର ଗୁଲ ବଳ୍କଳ।
"ଏବେ ଦେଉ ଲୋକ ଅତି ପୁଲକିତ
ସନ୍ତାପିତ ଧରାତଳ,
ଏ ମରମ ଅବା ଜାଣିବାକୁ ତଳେ
ଅଛି କି କାହାର ବଳ ?
ଦଶା ବିପର୍ଯ୍ୟୟ ଘଟେ ଏ ଜୀବନେ
କୁଳାଳ ଚକ୍ର ପରିଏ
ଜାଣି ଜାଣି ଏହା ତୁଚ୍ଛ ଲୋଭ ଆଶେ
ଘାଣ୍ଟି ହୁଅନ୍ତି ପ୍ରାଣୀଏ।

ଆମୋଦ ପ୍ରମୋଦ ପଛକେ ପ୍ରମାଦ
ଛାଇପରି କରେ ଗତି,
ଜାଣି ଜାଣି ନରେ ପଡ଼ନ୍ତି ଖାଲରେ
ବିଷୟ ଲୋଭରେ ମାତି।
କେ ଭବେ ସମର୍ଥ ଲଲାଟ-ଲିଖନ
କରିବାକୁ ଅବା ଆନ,
ଦେଖିବାକୁ କ୍ଷମ ଉଲୁକ କି କେବେ
ଲଭି ତପନ-କିରଣ।
ସମୟର ଚକ୍ର ଘୂରେ ଅବିରାମ
ସମ୍ପଦ ବିପଦ ସହ,
ତରଙ୍ଗ ପରିଏ ମାନବ ଜୀବନ
ଉଠେ ପଡ଼େ ଅହରହ।
ଭୂପତି ଆଦେଶେ ଜାନକୀଙ୍କୁ ଏବେ
ଦିଆଗଲା ବହୁ ଧନ,
ସାରଥିଙ୍କୁ ଏଣେ ଆଦେଶିଲେ ରଥେ
ଯାଆନ୍ତୁ ତନହେଁ ବନ।
ସଜ କରି ରଥ ଆଣିଲେ ସାରଥି
ଜାନକୀ ହରଷଭରେ,
ଚଢ଼ିବାରୁ ରାମ ସୁମିତ୍ରାନନ୍ଦନ
ଆରୋହିଲେ ତହିଁ ପରେ।
ପବନ ବେଗରେ ନେଲେ ରଥ ବାହି
ସୁମନ୍ତ ଦକ୍ଷିଣବନ,
ପଛେ ପଛେ ତାର ଧାଇଁଲେ ସରବେ
ବିକଳେ କରି ରୋଦନ।
ବାହୁନି ବାହୁନି କାନ୍ଦି କାନ୍ଦି ଦୁଃଖେ
ପାଶୋରିଲେ ଭୋକ ଶୋଷ,
ପାପିନୀ କୈକେୟୀ ଶ୍ରୀରାମ ଗମନେ
ବଢ଼ିଲେ ହୃଦୟେ ତୋଷ।
ଦେଖନ୍ତେ ଶ୍ରୀରାମ ପିତା ମାତା ରଥ
ପଛେ ପଛେ ଧାବମାନ,
ଧୈର୍ଯ୍ୟ ଧରି ଅତି କହିଲେ ସୁମନ୍ତେ
"ଚଳାଅ ସତ୍ୱରେ ଯାନ।
ରଖ ରଖ ରଥ" କହି ଦଶରଥ
ଡାକୁଥାନ୍ତି ବିକଳରେ,

ଦୁଇ କଥା ଶୁଣି ଏକାଳେ ସାରଥି
ଉଷ୍ମ ହେଲେ ବିଭ୍ରମରେ ।
ମଲା ପରି ପିତା ପଡ଼ିଲେ ଭୂତଳେ
ହା ରାମ ! ହା ରାମ ! କହି,
ହା ରାମ ! ହା ରାମ ! ହା ସୀତା ଲକ୍ଷ୍ମଣ
ବୋଲନ୍ତି କୌଶଲ୍ୟାଦେଈ ।
ରାମଙ୍କ ଆଦେଶେ ପୁଣି ସୁମନ୍ତର
ଚଳାଇଲା ରଥ ଖରେ,
ଅଦୃଶ୍ୟ ହୁଅନ୍ତେ କାନ୍ଦି କାନ୍ଦି ଦୁହେଁ
ବାହୁଡ଼ିଲେ ନୈରାଶ୍ୟରେ ।
ଚନ୍ଦ୍ରକାନ୍ତ ସ୍ମର କଟାଏ ଦୁଃଖରେ
ଚକୋର କାଳ ଯେସନ,
ପୁତ୍ର ଗୁଣ ଗୁଣି ସଦା ଶୋକାତୁର
ଦମ୍ପତି ଏବେ ତେସନ ।
କରୁଣ ରୋଦନେ ରଥ ପଛେ ପଛେ
ଗୋଡ଼ାଉଥାନ୍ତି ସରବେ,
'ଫେରିଯାଅ ବୋଲି କହନ୍ତି ଶ୍ରୀରାମ
ବେଳେ ବେଳେ ଶୁଣିହିଁ ନବେ ।
ଛଞ୍ଚାଣ କପୋତ କରି ହରି ସଙ୍ଗେ
କରନ୍ତି ବା ଏବେ ଶୋକ,
ଲୋଟନ୍ତି ଶ୍ରୀପଦେ ଯାଅ ନାହିଁ କହି
ଅବା ଦଳ ଦଳ ଶୁକ ।
ପୁଚ୍ଛକୁ ନୁଆଁଇ ମୟୂର ସୁନ୍ଦର
ଆସୁଥାଏ ହଳି ହଳି,
ମନ୍ତ୍ର ମୁଗ୍ଧ ଭଳି ଅବା ଭୁଜଙ୍ଗମ
ଆସେ ଆଗେ ଆଗେ ଚଳି ।
ପେଣ୍ଡା ପେଣ୍ଡା ହୋଇ ଆମ୍ବ ଡାଳେ କାହିଁ
ଝୁଲୁଥାଏ ଆମ୍ବ କଷି,
ପିକ ତହିଁ ପରେ ଘନ ଗହଳରେ
କୁହୁ ରବ କରେ ବସି ।
ଧୀରେ ଧୀରେ ଏବେ ପଶ୍ଚିମ ଗଗନେ
ସବିତା ଗଲେ ମଉଳି,
ରଖନ୍ତେ ସ୍ୟନ୍ଦନ ତମସା କୂଳରେ
ନ ଉଡ଼ିଲା ଆଉ ଧୂଳି ।

"ବନ ତରୁ ଲତା ଧନ୍ୟ ବିବର୍ଣ୍ଣତା
ଦୁଃଖେ ହେଲା ପରି ଘାରି,
ଦଶନ୍ତ ବୋଲିଣ କହନ୍ତି ଲକ୍ଷ୍ମଣେ
ରାମ ନରେଖି ଏ (୧) ହାରି ।
ପଶୁ ପକ୍ଷୀଗଣ ବନର ନନ୍ଦନ
ଘରି ଏବେ ଯାଏ ଜଣା,
ବନ ନିବାସନ ପ୍ରଥମ ଏ ଦିନ
ହୋଇବ କୁଶ ବିଛଣା ।
ରହି ଉପବାସ କଟାଇବା ନିଶି
ଆଜଳ ପିଇ ଜୀବନ, (୨)
ନିବାରିବା କ୍ଷୁଧା ଲାଗିଲାଣି ବାଧା
କର ଏଠାରେ ଶୟନ" ।
ପଥକ୍ଲାନ୍ତ ହେତୁ ଅଯୋଧ୍ୟା ବାସୀଏ
ଶୋଇଲେ ଘୋର ନିଦରେ,
ଡାକି ସୁମନ୍ତ୍ରକୁ କହନ୍ତି ଶ୍ରୀରାମ
ଉଠି ଅଧରାତି ପରେ ।
"ନିଅ ରଥ ବାହି ଚାତୁର୍ଯ୍ୟ ଦେଖାଇ
ଏଠାରୁ ଏବେ ଗୋପନେ,
ମୋ ଲାଗି ଆକୁଳ ମୋର ପ୍ରଜାକୁଳ
ଥାଆନ୍ତୁ ଏଠି ଶୟନେ ।
ଆଜ୍ଞା ଅନୁଯାୟୀ ନେଲେ ରଥବାହି
ଧୀରେ ଧୀରେ ସୁମନ୍ତର,
ପାଇବାରୁ ଗନ୍ତ ପ୍ରଜାକୁଳ ଅନ୍ତ
ଗହନେ (୨) ହେଲେ କାତର ।
ରାମଙ୍କୁ ସନ୍ଧାନେ ନପାଇ ଏମାନେ
ବାହୁଡ଼ିଲେ ଯେଝା ଘର,
ହରାଇଲେ ଧନ ମନସ୍ତାପେ ଅନ୍ତ
ଦେବାକୁ ଯଥା ଉତ୍ତର ।
ରାମ ନ ଫେରିବା ଦେଖି ପୁରେ ପୁରେ
ପଡ଼ିଲା କାନ୍ଦ ବୋବାଳି,
ସଦାନନ୍ଦ ମଧ୍ୟ ଅଯୋଧ୍ୟାକୁ ଏବେ
ଶୋକାନଳ ଦେଲା ଜାଳି ।

(୧) ବାଟୋଇମାନେ (୨) ପାଣି (୩) ଦୁଃଖରେ

ଛଥାଙ୍ଗ ଯେସନ ରଥାଙ୍ଗୀ ବିରହେ
ନଶିରେ ହୁଏ ଅଧୀର,
ସବୁ ଗୁଣ ନିଧି ଶ୍ରୀରାମ ବିହୁନେ
ତେସନ ଅଯୋଧ୍ୟାପୁର ।
ହେଲା ରାତ୍ର ଶେଷ ଏଣେ ଅବମାଣ
ଅତିକ୍ରମି ନଦୀ ଝର,
ଗଙ୍ଗା କୂଳେ କୂଳେ ଯାଇ ପହଞ୍ଚିଲେ
ସନ୍ଧ୍ୟା ଶୃଙ୍ଗବେର ପୁର ।
ନିଷାଦ ବଂଶୀୟ ଅଧିପତି ଗୁହ
ଶୁଣି ରାମ ଆଗମନ,
ଆସିଲେ ପାଖକୁ ଫଳ ମୂଳ ଭେଟି
ଧରି ତାଙ୍କ ସନ୍ନିଧାନ ।
କରି ସମର୍ପଣ ଫଳ ମୂଳ ମାନ
କହିଲେ "ମୁଁ ତୁମ ଦାସ,
ହେ ନର ବରେଣ୍ୟ ! ଜଗତ ଶରଣ୍ୟ
କର ସୁଖେ ଏଥିବାସ ।
ଲଭି ଅତି ପ୍ରୀତି ଶ୍ରୀରାମ କହନ୍ତି,
ଅନ୍ୟହାତୁଁ ଫଳମୂଳ,
କରିଅଛୁ ପଣ ନ ନେବୁ ଦାନ
ତେଣୁ ନହୁଅ ଆକୁଳ ।
ତୁମ ଏ ସତ୍କାର ହୃଦେ ହେଲାଗାର
ନ ଭୁଲିବ ଏ ଜୀବନେ,
କୈକେୟୀ ଆଦେଶ "ଦଣ୍ଡକା ନିବାସ
ତେଣୁ ଯିବି ଘୋର ବନେ" ।
ପୁହାଇ ରଜନୀ ସୁଖେ ରଘୁମଣି
ଡାକି କହନ୍ତି ଲକ୍ଷ୍ମଣ,
"ଅଣିଲେ ତରଣୀ ଗଙ୍ଗା ତରଙ୍ଗିଣୀ
ପାରହେବା ଏହିକ୍ଷଣ" ।
ଏ ବଚନେ ଶୁଣି ଗୁହ ସେହିକ୍ଷଣି
କଲେ ସଜ ଭେଳା ଗୋଟି,
ଦେଖୁ ଦେଖୁ ଏହା ସୁମନ୍ତ୍ର ମନରେ
ଅସିଲା ବିଷାଦ ଘୋଟି ।
ଦୁଃଖେ ନିବେଦିଲେ "ସଙ୍ଗେ ବନେ ଗଲେ
ସେବିବି ତୁମ ପୟର",
ଏକୁଟିଆ ଫେରି ନପାରିବି ଧରି
ଜୀବନ କ୍ଷଣେ ମାତର ।
ବହୁଦିନୁ ଜାଣି ରଘୁକୁଳେ ହେବି
ବୋଲି ତୁମର ଜନକ,
ସକଳ କରମ ଏଡିଦେଇ ଏଣେ
ଶିଖିଲି ରଥ ଚାଳନ ।
ପଙ୍କଜନୟନ ଚାଳିବ ଏମନ
ନକର ନିରାଶ ଲବେ,
ଦେଲେ ଅନୁମତି ଉଦ୍ଧବ ଜାରତି
ବାନା ଯୁଗେ ଯୁଗେ ଭବେ ।
ବହିଚିବ ଦିନ ବରଷ ଚଉଦ
ପ୍ରବାହିନୀ ସ୍ରୋତ ପରି,
ସେବି ଶ୍ରୀଚରଣେ ଫେରିବି ସ୍ୟନ୍ଦନେ
ପତିତପାବନ ଧରି" ।
ଉତ୍ତରିଲେ ରାମ ଶୁଣି ତାଙ୍କ କଥା
ବାହୁଡ଼ ଯାଅ ବହନ,
ଭରତଙ୍କୁ ରାଜ ଗାଦିରେ ବସାଇ
ଦିଅ ସର୍ବେ ଆଶ୍ୱାସନ ।
ଗୁହଙ୍କୁ ଅନାଇ କହନ୍ତି ଶ୍ରୀରାମ
"ବଟକ୍ଷୀର ପ୍ରୟୋଜନ,
କେଶ ଜଟା ପାଇଁ ଅନୁଗ୍ରହ କରି
କର ଏବେ ଆୟୋଜନ" ।
ଶୁଣି ଏ ବଚନ ଗୁହ ତତକ୍ଷଣ
ବଟକ୍ଷୀର ଅଣାଇଲେ,
ତାହା ବେନିଭାଇ ମଥାରେ ଲଗାଇ
ନଦୀମୁଖ ବାହାରିଲେ ।
ନଉକାରେ ବସି ପାରି ହେଲେ ଗଙ୍ଗା
ମେଲାଣି ମାଗି ଗୁହଙ୍କୁ,
ମତ୍ସ୍ୟ ଦେଶେ ଯାଇ କରିଲେ ଭୋଜନ
ମାରି ମୃଗ ବରାହଙ୍କୁ !
ଧନ୍ୟା ଧନ୍ୟା ଧନ୍ୟା ହେ ଜନକ କନ୍ୟା
ସ୍ୱହସ୍ତେ କରି ରନ୍ଧନ,
ଖାଇ ଖୁଆଇଲ ଭଗିନୀ ଦେବର
ଭଖି ଜାରତି କେତନ ।

କେତେ ଦାସ ଦାସୀ ଖଟି ଦିବା ନିଶି
କରୁଥିଲେ ସେବା ଯାର,
ଚକ୍ଷୁ ତଳେ ପଡ଼ି ଭିଖାରୁଣୀ ପରି
ଏବେ ଯାପିଲେ ବାସର ।

ସଞ୍ଜେ ବେଦିଘର ପତରେ ଗୋଟାଇ
ବସାଇଲେ ମାଟି 'ପରେ,
ତହିଁ ପରେ ରାମ ଆଉଜି କହନ୍ତି
ଲକ୍ଷ୍ମଣଙ୍କୁ ଖେଦଭରେ ।

"ବିଷାଦେ ବିବଶ ହୋଇଣ ନରେଶ
ଲେଉଟନ୍ତି ନିଦ ଏକାଳେ,
ନ ଆସିବ ନିଦ ଆଉ କଦାଚନେ
ସହନ୍ତି ମମତା ଜାଳେ ।

ସନ୍ତାନ ନିମିତ୍ତ ଲଭନ୍ତି ଜନନୀ
ନାନା କଷଣ ଜୀବନେ,
ବଢ଼ାନ୍ତି ଆଦରେ ସେବା ଲାଗି ସିନା
ବାର୍ଦ୍ଧକ୍ୟେ ତା ପ୍ରତିଦାନେ ।

ଧିକ ମୋ ଜୀବନ ମୋ ଭଳି ସନ୍ତାନ
ନ କରୁ କଏ ଜନମ,
ବଢ଼ାଇଲି ଖେଦ ଜନନୀ ହୃଦୟେ
ତେଜି ଅପତ୍ୟ ଧରମ ।

ଯାଉଁନି ହୁଏ ପ୍ରାଣ ଭାବି ଏ କଷଣ
ନ ଦିଶଇ କିଛି ବାଟ,
ଧରମ ନାଶରେ ପଡ଼ି ବନ୍ଧନରେ
ହୋଉ ଅଛି ଛଟପଟ ।

କଇକେୟୀ ମୋହ ନୃପେ ଅହରହ
କରଇ ଅଥୟ ଅତି,
ନ ରଖିଲା ପାଶେ ଏ ବୁଢା ବୟସେ
ଏବେ ସ୍ନେହର ସନ୍ତତି ।

କଇକେୟୀ ସୃଷ୍ଟି ଦେଖି ଲାଗେ ଭ୍ରାନ୍ତି
ଗଲାଣି ସେ ପାପେ ବୁଡ଼ି,
ରଜନୀ-ଶେଷରେ ଅତି ମୋଦଭରେ
ଯାଅ ଅଯୋଧ୍ୟା ବାହୁଡ଼ି" ।

ଲକ୍ଷ୍ମଣ ଏକାଳେ ଉତ୍ତରିଲେ ତାଙ୍କୁ
"ନ କହ କଥା ଏସନ";
ଲୋଡ଼େ ନାହିଁ ପିତା ଲୋଡ଼େ ନାହିଁ ମାତା,
ଲୋଡ଼େ ମୁଁ ରାମ ଶରଣ ।

ଲକ୍ଷ୍ମଣ ବଚନ ଶୁଣି ରାମ ମନ
ହୋଇଲା ଖୁସୀ ଅତିଶୟ,
କଲେ ସେ ଶୟନ ଅଝାଡ଼ କାନନ
ନ ହେଲା ହୃଦୟେ ଭୟ ।

ନିଶି-ଅବସାନେ ଦଣ୍ଡକା ଅରଣ୍ୟେ
ବାହାରିଲେ ରଘୁମଣି,
ପ୍ରକୃତିର ହାଟ ଦେଖି ବାଟେ ବାଟେ
ଯାଆନ୍ତି ରାମରମଣୀ ।

ଦଳ ଦଳ ଶୁକ ଆସନ୍ତି ଆଗକୁ
ବନ୍ଦେଇବା ପାଇଁ ଶ୍ୟାମ,
ନାଲିଆ ଚଞ୍ଚୁରେ ଜଭ ଜପି ଜପି
ଘୋଷିଲେ କି ରାମନାମ !

ଶଙ୍ଖଚୂଡ଼-ଡାଳେ ବସିଥିଲ ପିକ
ଚୁମ୍ବି ରସାଳ-ମଞ୍ଜରୀ,
କୁହୁ କୁହୁ ତାନେ ବଜାଇଲା ବୀଣା
ଦେଖି ଜାନକୀ ସୁନ୍ଦରୀ ।

ଥିଲା କାହିଁ ଶାରୀ ଘନ ବନ ଗିରି
ନାଚେଁ ଆଲୋକମୟ,
ଏ କଏ ଏ କଏ କହି ମଧୁ ସ୍ୱନେ
ହେଲାକି ଏବେ ତନ୍ମୟ ।

ପଲ ପଲ ହୋଇ, ଅବା କୁରଙ୍ଗିଣୀ
ସଙ୍ଗରେ ଶାବକ ଧରି,
ଆସନ୍ତି ଦଉଡ଼ି ରାମ ଦରଶନେ
ନ ଡରି ଡଳେ କେଶରୀ ।

ବେଣୁ କୁଞ୍ଜ ପାଶେ ନଇଁ ନଇଁ ଖାଦ୍ୟ
ଖୁଣ୍ଟି ଖାଉଥିଲେ କେକୀ,
ହୋଇଣ ବିରତ ଆସନ୍ତି ହରଷେ
ଠୀକରେ ଅବା ପୁଚ୍ଛ ଟେକି ! ।

ବେଳେ ବେଳେ କାହିଁ ପବ ଉଡ଼ାଳକୁ
ଶୁଭେ ଠିକ ଶାଖା ଝଙ୍କାର,
ବରନ୍ତି ଦେଖାଇ ଭରତ ମାଆଙ୍କୁ
କରୁଥିଲ କି ଧିକ୍କାର ! ।

ଦିବା-ଅବସାନେ ଭରଦ୍ୱାଜାଶ୍ରମେ
ସୁଖେ ଜାନକୀ-ରମଣ,
ରାତ୍ରି, ବନ୍ଧୁପଥ ଯାଇ ପହଞ୍ଚିଲେ
ଘେନି ଜାନକୀ-ଲକ୍ଷ୍ମଣ ।
ଏମାନଙ୍କୁ ଦେଖି ହୋଇଲେ ଅତି ସୁଖୀ
ଭରଦ୍ୱାଜ ମୁନିବର,
ଶ୍ରୀରାମଙ୍କ ମନ ଜାଣି ସନମାନ
କଲେ ଦେଇ ନାନା ଫଳ ।
ସାଇଁଠି ଅନ୍ଧାର ଦେଲେ ଦିବାକର
ଉଠିଲେ ରଘୁନନ୍ଦନ,
ପୂଜା ବିଧି ସାରି ସେଠାରୁ ମେଲାଣି
ମାଗି ଗଲେ ଘୋର ବନ ।
ମୃଗ ମୁଖରିତ ପକ୍ଷୀଙ୍କ ଲଳିତ
କୂଜନେ ଏ ବନ ରାଜି,
ପ୍ରୀତ ହୁଏ ଅବା ଏ ବନ ଭୂମିରେ
ସୁର-କର ନାହିଁ ବାଜ ।
ଚିତ୍ରକୂଟ ବନେ ମନ୍ଦାକିନୀ କୂଳେ
ନିର୍ମାଣି, କୁଡ଼ିଆ ଘର,
ରହିଲେ ତିନିହେଁ ସେଠି କେତେ କାଳ
ଭୁଲି ଅଯୋଧ୍ୟା ନଗର ।

***

## ଚତୁର୍ଥ ସର୍ଗ

ଦୁଃଖ ଜଳେ ବୁଡ଼ି, ସୁମନ୍ତ୍ର ବାହୁଡ଼ି-
ଆସିଲେ ଅଯୋଧ୍ୟା ପୁର,
ବନ୍ଧୁପୁର ବାସୀ କାନ୍ଦି, କାନ୍ଦି, ଆସି
ପଚାରନ୍ତି ବାରମ୍ବାର ।
କାହାନ୍ତି ଶ୍ରୀରାମ କାହାନ୍ତି ଶ୍ରୀରାମ
ରହିଲେ କେଉଁ ବନରେ,
ଶୁଭ ସମାଚାର ଦେଇ ତାହାଙ୍କର
ଯାଅ ଦଶରଥ ପୁର ।
ନକହି ବଚନ ବହାଇ ଲୋତକ
ତୁରିତ ସାରଥି ଚଳାଇ ରଥ,
ପହଞ୍ଚିଲେ ଶେଷେ ଭୂପାଳଙ୍କ ପାଶେ
ଅତିକ୍ରମି ଖରେ ସେ ରାଜପଥ ।
ମୃତକ ପରିଏ ଦଶରଥ ରାଏ
ତାହାଙ୍କ ସରଣୀ (୧) ଥିଲେ ଜଗାଇ,
କରଯୋଡ଼ି ଧୀରେ ସୁମନ୍ତ୍ର ଅଧୀରେ
ଶ୍ରୀରାମ ବାରତା ଦେଲେ ଶୁଣାଇ ।
(୨) ମୃଗୟୁ-ଶରରେ ଆଘାତେ ଭୂଇଁରେ
କୁରଙ୍ଗ ପରିଏ ସେ ନରମଣି,
ରାମଙ୍କ ବାରତା ଶ୍ରବଣେ ଅଚେତା
ହୋଇ ପଡ଼ିଗଲେ ଅଧୈର୍ଯ୍ୟ ପୁଣି ।
ଶେଷ ପାଶେ ନେଇ, କଉଶଲ୍ୟା ଦେଇ,
କହନ୍ତି ନୃପଙ୍କୁ କରି ବିଳାପ,
'ବିଷାଦ ଛଳନା ନକର ଲଳନା
ମାନସେ ନଦିଅ ଆଉ ସନ୍ତାପ ।
କଉଶଲ୍ୟା ବାଣୀ ଶୁଣି ନରମଣି
ଉତ୍ତରିଲେ ତହୁଁ ବିଷାଦେ ଅତି,
"ହେଉ ଅବା ସୁର ଅଥବା ଅସୁର
ଜାୟାର ଦେବତା କେବଳ ପତି ।
କନ୍ଦୁକ ଜୀବନ ପରାଏ ଜବନ
ଉଠୁଛି ପଡ଼ୁଛି ଅନବରତ,
ଜୀଏ ଆଜୀବନ ସୁଖେ କାଟେ ଦିନ
ବିଷୟ ମୋହରେ ହୋଇ ଜଡ଼ିତ ।
ଶୋକ-ହୁତାଶନ ଦହେ ହୃଦବନ
ଶ୍ରୀରାମ ବିରହେ ଦଶରଥର,
ଯାଉଛି ପରାଣ ନିଭାଅ ଦହନ
କହି ଏ ସମୟେ କୋମଳ ଗିର" ।
ଏ ବଚନ ଶୁଣି କଉଶଲ୍ୟା ରାଣୀ
ଭକ୍ତିଭରେ ତାଙ୍କ ପଦଯୁଗଳ,
ଧରି ନିବେଦିଲେ, "କର କ୍ଷମା ନାଥ"
ବହାଇ ସନ୍ତାପେ ଲୋତକଜଳ" ।
ଦୁଃଖ କାତର ଚିନ୍ତିତ ମାନବର ମତି
ପ୍ରବଳ ଅରାତି ଦୁଃଖ ଜନକ,

---

(୧) ବାଟ (୨) ଶିକାରୀ

ଶତ୍ରୁ ଆକ୍ରମଣ ନିର୍ଜନ କଷଣ
ଅତି ଅସହନ ଯାତ ଦୁଃଖର ।
କୌଶଲ୍ୟା ଉକତି ଶୁଣି ନରପତି
ଏମନ ଜଗତେ କେହି କାହାର,
ନୁହଇ ବୋଲି ସେ କହୁଁ କହୁଁ ଧୀରେ
ପ୍ରାଣ ବାୟୁ ଉଡ଼ିଗଲା ତାଙ୍କର ।
ପ୍ରିୟତମା ନାରୀ କୈକେୟୀ ସୁନ୍ଦରୀ
ହେଲେ ଧିକ୍କୃତା ଆଜି,
ନିମିଷକ ମଧ୍ୟେ କାହିଁ ଗଲା ଗୁଡ଼ି
ପୂର୍ବ ସୌନ୍ଦର୍ଯ୍ୟ ରାଜି ।
ସୌଦାମିନୀ ପରି ଏ ବାରତା ଧରି
ଗଲା ପ୍ରଭଞ୍ଜନ ଚଉଦିଗରେ,
ସ୍ପନ୍ଦନ ଚିତ୍କାର ଶୁଭେ ବାରଂବାର
କୌଶଲ୍ୟା ପଡ଼ିଲେ ବିଷାଦଭରେ ।
ସନ୍ତାନ ବିଚ୍ଛେଦ ଦିଏ ଅତି ଖେଦ
ପତିଙ୍କ ମରଣ ହେଲା ଦୁଃସହ,
"ବିଧି ହେଲେ ବାମ କେ କରିବ ଆନ
ଯୋଡ଼ିଆସେ ଜବେ ଦୁଃଖନିବହ" ।
ଅନାଇଁ କୈକେୟୀ ଶୋକାତୁର ହୋଇ
ଭାଷନ୍ତି କୌଶଲ୍ୟା ନିଷ୍ଠୁର ବଚନେ,
"ପାପିନୀ ଲାଗିକି ହେଲୁ ଦୁଃଖରାଶି
ଖୋଇ ଶ୍ରୀରାମ ଅଯୋଧ୍ୟାରତନ ।
କେତେ ନର ନାରୀ କହିଲେ ଧିକ୍କାରି
ନ ଦେଖିଲୁ ତଳେ ମାନସ ବ୍ରୀଡ଼ା,
ଚକାଇ ଆଲଟ ଲଗାଇଲୁ ନାଟ
ଅହର୍ନିଶ କରି ବିଦ୍ୱେଷ ହୀଡ଼ା ।
ଲଲାଟ ସିନ୍ଦୂର ଜାଣି ଜାଣି ନିଜ
ହାତେ ଲିଭାଇଲୁ ଲଜ୍ଜା ବରଜି,
ମଙ୍ଗଳର ଶିରୀ ହେଲୁ ଲୋପ କରି
ଯୁଗେ ଯୁଗେ ଅପଯଶ ଅରଜି" ।
ଭୁବନ ବିଦିତ ଅତି ସତ୍ୟ ବ୍ରତ
ଦଶରଥ ନୃପବର,
ଶତ ଶତ ପାରଣ ଥାଇ ଜଗୁଆଳ
ବୁଲିଗଲେ ଲୋକାନ୍ତର ।

ଝାମ୍ପି ଯଥା ମେଷ ନିଅଇ ଗଧିଆ
ଥାଉ ଥାଉ ଜଗୁଆଳ,
ତେସନ ଶମନ ମାରି ଦିଏ ଝାମ୍ପ
ଥାଉ କେତେ କଟୁଆଳ ।
ଶୂନ୍ୟହସ୍ତେ ଆହା ! ଗଲେ ଚଳି କାହିଁ
ଏକି ବିଧାତା ବିଧାନ,
କାହା ଭେଟ ଆଉ ନ ମିଳିବ ବାରେ
କଲେହେଁ କେତେ ଯତନ ।
ଜନମ ପଛରେ ଗୋଡ଼ାଇ ମରଣ
ଅବିଳମ୍ବେ ବସେ ମାଡ଼ି ।
ବିକଳ ଚିତ୍କାର କଲେ ବାରଂବାର
ଦିଏ କି କାହାକୁ ଛାଡ଼ି ।
କାଳ ଦଣ୍ଡ ଦିନ ନଦୀଜଳ ପରି
ଯାଉଅଛି ଏଣେ ବହି,
ଆଗପଛ ହୋଇ ପଳାଇବା ଦିନେ
ନ ରହିବେ ଜଣେ କେହି ।
କେ ଚିହ୍ନଇ ଲୋକେ କିଏ ଆସେ ପୁଣି
ଆସିଲେ କାହିଁକି ଏଥି,
ଉଲଗନେ ଆସି ଉଲଗନେ ଯାଉ
ସଙ୍ଗରେ ନଥାନ୍ତି ସାଥୀ ।
ଦିନପରେ ଦିନ ରାତିପରେ ରାତି
ଘୂରି ଘୂରି ଏ ସଂସାରେ,
ଜୀବନର ଅଂଶ କରଇ ବିନାଶ
ତା ପୁଣି କିଏ ବିଚାରେ ! ।
ପଦ୍ମପତ୍ର ନୀର ପରି ଟଳ ଟଳ
ପ୍ରତିକ୍ଷଣେ ଏ ପରାଣ,
ଜାଣି ଜାଣି ଜନେ କେଉଁ ବଡ଼ ପଣେ
ଦେଖାନ୍ତି ସଂସାରେ ଠାଣ ।
କେତେ ତପସ୍ୟାରେ ପାଇ ପୁତ୍ରଯୁଗ
ମଣୁଥିଲେ କେତେ ସୁଖ,
ଗଲାବେଳେ କେହି ନ ଥିବାରୁ ପାଶେ
ନ ଦେଖିଲେ ପୁତ୍ର ମୁଖ ।
ମାତୁଳ ନିବାସେ ଭରତ ଶତ୍ରୁଘ୍ନ
ଥିଲେ ବହୁଦିନ ଧରି,

ଦୁଃଖ୍ରେ ଅଧୀର . ଦୁଃଖେ ବେଳେ ବେଳେ
ରଘୁମଣି ସେନ୍ହ ସ୍ମର ।
କେକୟ-ଦେଶକୁ ଭରତ-ସମୀପେ
ଗଲେ ସଙ୍ଗେ ସଙ୍ଗେ ଚର,
ମରଣ ବାରତା ନଦେଇ ଆଣିଲେ
ଭରତ-ଶତ୍ରୁଘ୍ନ ବୀର ।
ଅଯୋଧ୍ୟାର ଦଶା ଦର୍ଶନେ ସହସା
ଭରତଙ୍କ ମନେ ସନ୍ଦେହ ଅତି,
ଉପୁଜିଲା, ଖରେ ପୁଚ୍ଛିଲେ ସେ ଚରେ
ଜାଣିବାକୁ ସାର ହେତୁ ଝଟିତି ।
ନ ଦେଇ ଉତ୍ତର କୈକେୟୀଙ୍କ ପୁର
ନେଲେ ସେ ତାହାଙ୍କୁ ଅତି ସତ୍ୱରେ,
ପ୍ରଣମି ଜନନୀ କାହାନ୍ତି ନୃମଣି
ବୋଲି ପୁଚ୍ଛିଲେ ସେ ଆବେଗଭରେ ।
ଜନକ-ମରଣ ବାରତା-ମୋଚନ
କଲେ କଇକେୟୀ ବିଷାଦହୀନ,
ଶୁଣି ତା ଭରତ ଶୋକେ ଅଭିଭୂତ
ହୋଇ ପଡ଼ିଗଲେ ଧରଣୀତଳେ ।
କହନ୍ତି କାରୁଣ୍ୟେ ରାମଙ୍କ ଦର୍ଶନେ
ପାଶୋରିବ ବିଷାଦ, ସେ ମୋ ଆଶ୍ରୟ,
କାହାନ୍ତି ଶ୍ରୀରାମ ଜଗତଲୋଚନ
ନ ଦେଖି ତାହାଙ୍କୁ ପ୍ରାଣ ଅଥୟ ?
ଭରତଙ୍କ ବାଣୀ କଇକେୟୀ ଶୁଣି
ବଖାଣି ତାହାଙ୍କୁ ପୂର୍ବ ଚରିତ,
କହିଲେ ଭରତ ଧରିବୁ ମୁକୁଟ
ନାହିଁନ ସନ୍ତାପ ହୋଇ ଦୁଃଖିତ ।
ଚଉଦ ବରଷ ରାମ ବନବାସ
ସାରି ବାହୁଡ଼ିବେ ଦେଶ କୋଶଳ,
ପ୍ରଥା ଅନୁସରି ହୁଅ ଅଧିକାରୀ
ଏ ରାଜ୍ୟ ନହୋଇ ଆଉ ବିକଳ ।
ନ ବାଧିଲା ଚିତେ ଜନକ ମରଣ
ଭାଇଙ୍କ ବନ ଗମନ,
ଧାଇଁଗଲା ପରାଏ ଶୋକାନଳ ଜଳା
ତାଙ୍କ ହୃଦୟ ଦହନ ।

ରୋଷେ ଜରଜର ଭରତ କୁମାର
ଶୁଣି ଜନନୀଙ୍କ ଏ ପାପଗୀତ,
କହିଲେ "ମାତଙ୍କ ମାନସେ କଳଙ୍କ
ଲଗାଇଲୁ ବଂଶ ସ୍ୱାର୍ଥରେ ମାତ ।
ରାମଙ୍କ ବିଚ୍ଛେଦ ଦେଲା ଅତି ଖେଦ
ଜନକ-ହୃଦୟେ ହବା-ରଜନୀ,
ଛାଡ଼ିଲେ ପରାଣ ଦଶରଥ ରାଣ
ହେଲୁ ଆଜ ଭବେ ହତ୍ୟାକାରିଣୀ ।
ଧନର ପିପାସା କ୍ଷମତା ଲାଳସା
ନେଇଛି ନେଇନେ ତୁମର ଆଜ,
ନକରି ବିଚାର କଲ ଏବେ ଚୂର
କୋଶଳ ଅତୁଳ ସମ୍ପଦରାଜ ।
ତୁଚ୍ଛ ଉଦ୍ଦେଶେ ବଳାଇ ମାନସେ
କରିଲ ବିନାଶ ଆପଣା ଦିଶା ।
ଅନ୍ୟର ସମ୍ପତ୍ତି ବଳାଇଲ ମତି
ଯୁଗେ ଯୁଗେ ହୋଇ ଧର୍ମ ବିଦ୍ୱେଷୀ ।
ରାମ ସର୍ବଦ୍ରଷ୍ଟା ସେ ଜଗତସ୍ରଷ୍ଟା
ଦଶରଥଙ୍କର ଜ୍ୟେଷ୍ଠ ସନ୍ତତି,
ରାଜ୍ୟ ଅଧିକାର କେବଳ ତାଙ୍କର
କିଙ୍କର ଭରତ ବାଳକ ମତି ।
ହୃଦୟ ସ୍ପନ୍ଦନ ହୁଏ ପୁନଃ ପୁନଃ
ଶୁଣିଏ ତୁମର କୁତ୍ସିତ ଗୀତ,
ରୁଧିର ପିପାସୁ ପିଶାଚୀ ପରାୟ
ଅଇଲ ଭବେ ଅପକାରିତ ।
ରାମ ବନବାସ ଜନକ-ବିନାଶ
ତୁମ ଲାଗି ଏବେ ହେଲା ଘଟନ,
ଏ ଦୁଷ୍ଟଭିସନ୍ଧି ହେଲା କୋଳି ସିଦ୍ଧି
ରାବ ରାବ ଆଜ ପୁଲକମନ ।
ସତ୍ୟର ପାଳକ କର୍ତ୍ତବ୍ୟ ସାଧକ
ରାମ ନିର୍ବାସିତ ଅଯୋଧ୍ୟାବଶେ,
ଦଣ୍ଡକା ଅରଣ୍ୟେ ଅବା ହୁତାଶନେ
ପଶିଯାଅ ଖରେ ନରହି କ୍ଷଣେ ।
ଚଦନ୍ତେ ପ୍ରବେଶ କଉଶଲ୍ୟା ପାଶ
ସଚିବ ସମେତ କୈକେୟୀସୁତ,

ହୃଦୟ ଫିଟାଇ    କହିଲେ ବୁଝାଇ
କପଟେ ଶ୍ରୀରାମ ହେବେ ଆହୂତ ।
"ଶ୍ରୀରାମ ଭକତ    ଭରତ ସତତ
ଆସକତ ସଦା ରାମ ପ୍ରେମରେ,
ଅଘଟ ଘଟନ    କରିଇ ଦହନ
ଭରତ ପରାଣ ଝୁରି ଭବରେ ।
ଇନ୍ଦ୍ରିୟ ନିକର    ଭରତ କିଙ୍କର
ଶ୍ରମ ନ୍ୟାଯ୍ୟ ମୂଲ୍ୟ ଦିଏ ସତତ,
ଅନ୍ୟାୟ ପଥରେ    କେବେ ଅବିଘ୍ନରେ
ଯାଇନାହିଁ ଦିନେ ପୁଣି ଭରତ ।
ତାହାଙ୍କ ଭକତ    କଉଶଲ୍ୟା ମତ
ଦେଲେ ପ୍ରବୋଧନା ଏକାଳେ ଲବେ,
ଅନୁସରି ଧର୍ମ    ଅନ୍ୱେଷିରି କର୍ମ
ଯାଇ ବାହାରିଲେ କାନନଜବେ ।
ଲଭି ସମ୍ବର୍ଦ୍ଧନା    ଋଷି ମହାମନା
ଭରଦ୍ୱାଜଠାରୁ ପଥକ୍ଲାନ୍ତ (୧),
ଅତି ବ୍ୟଗ୍ରମନେ    ଶ୍ରୀରାମ ସନ୍ଧାନେ
ପୁଚ୍ଛିଲେ ତାହାଙ୍କୁ ହୋଇ ଆରତ ।
ରାମ ଠାବ ପାଇ    ପହଞ୍ଚିଲେ ଯାଇ
ଅନନ୍ତ ବଳମ୍ବେ ଚିତ୍ରକୂଟରେ,
ଖୋଜି ବାରମ୍ବାର    ଶ୍ରୀରାମ କୁଟୀର
ପଡ଼ିଲା ଶେଷରେ ନେତ୍ର-ପଥରେ ।
ରଥର ଘର୍ଘର    ଗଜ-ବାଜି-ସ୍ୱର
କର୍ଣ୍ଣେ ପଡ଼ିବାରୁ ଲକ୍ଷ୍ମଣ ବୀର,
ଚଢ଼ି ତରୁ'ପରେ    କହନ୍ତି ଏକାଳେ
ଅନାଇଁ ଶ୍ରୀରାମ ହୋଇ ଅଧୀର ।
ଆସୁଛି ଭରତ    ସଇନ ସହିତ
ଯୁଝିବାକୁ ଏବେ ରାମ ନାୟକ,
ନ ମଣି ଅବଜ୍ଞା    ହେଲେ ପ୍ରଭୁ ଆଜ୍ଞା
ମାରିବି ଭରତ ବିନ୍ଧି ସାୟକ ।
ଲକ୍ଷ୍ମଣର ବାଣୀ    ଶୁଣି ରଘୁମଣି
ପ୍ରବୋଧିଲେ ତାଙ୍କୁ ଦେଇ ସାନ୍ତ୍ୱନା,
ବିଷାଦେ ଆଗତ    କଇକେୟୀ-ସୁତ
ରାମ ପ୍ରତି ତାର ନାହିଁ ଛଳନା ।
ଶତ୍ରୁଘ୍ନ-ଭରତ    ସୁମନ୍ତ୍ର ସହିତ
ଶ୍ରୀରାମ-ସମୀପେ ଗଲେ ତୁରିତ,
ତାହାଙ୍କ ଦର୍ଶନେ    ବିକଳ ନୟନେ
କୈକେୟୀଙ୍କ ସୁତ ହେଲେ ମୂର୍ଚ୍ଛିତ ।
ଚୈତନ୍ୟ ଲଭିଣ    ଜନକ ମରଣ
ବାରତା ଶ୍ରୀରାମେ କଲେ ମୋଚନ,
ଶୁଣୁ ଶୁଣୁ ରାମ    ଜାନକୀ-ଲକ୍ଷ୍ମଣ
ଅଶ୍ରୁଜଳେ ପୂର୍ଣ୍ଣ କଲେ ଲୋଚନ ।
ବଶିଷ୍ଠ ମହର୍ଷି    ତଥା ପୁରବାସୀ
ମାତୃଗଣ ସହ ଦେଖି ଆବାସ,
ପହଞ୍ଚିଲେ ଯାଇ    ଶୋକାତୁର ହୋଇ
ଏକାନ୍ତ ଶୋକାର୍ତ୍ତ ଶ୍ରୀରାମ ପାଶ ।
ବନ୍ଦି ଗୁରୁଜନ    ସାରି ପିତୃକର୍ମ
ପୁଚ୍ଛିଲେ ଶ୍ରୀରାମ ଭରତାଗମ,
କୈକେୟୀ ନନ୍ଦନ    କରିଣ ରୋଦନ
ଉତ୍ତରିଲେ ରାମେ ନିନ୍ଦି କରମ ।
କୈକେୟୀ ମନ୍ତ୍ରଣା    ଆଣିଲା କାଳିମା
ଯୁଗେ ଯୁଗେ ଆମ ରବିକୁଳରେ,
ହୋଇ ତା ସନ୍ତାନ    ଲଭିଲି ଜନନ
ଯାପୁଛି ଜୀବନ ବିଷାଦ ଭରେ ।
ନାହିଁ ପରିତ୍ରାଣ    ତୁମ୍ଭ ବିନା ଆନ
ଘେନ ନିବେଦନ କହେ ବିନୟେ,
ଅଚିରେ ବିଚାରି    ଅଯୋଧ୍ୟାକୁ ଫେରି
ହୁଅ ରାଜା ରଖି ଦୟା ହୃଦୟେ ।
ପାଳିବ ଭରତ    ବନବାସ ବ୍ରତ
ତୁମେ ବିନା ପ୍ରଭୁଚରଣ ଭଜନ ।
କୋଟି କୋଟି ଲୋକ    କରି ଅତି ଶୋକ
ସହୁଛନ୍ତି ଆଜି ଛାଡ଼ି ଅଶନ ।

***

(୧) ସମୂହ

## ପଞ୍ଚମ ସର୍ଗ

ଭରତଙ୍କୁ ବୁଝାଇଁ କହନ୍ତି ଶ୍ରୀରାମ
କ୍ଷୟଶୀଳ ଚରାଚର,
ଦେଖୁଛ ତ ଭବେ ସଂଯୋଗ-ବିୟୋଗ
ଲାଗିଅଛି ନିରନ୍ତର ।
ପୁତ୍ରର ମରଣେ ଝୁରୁଥାଏ ପିତା
ପିତାଲାଗି ଝୁରେ ପୁଅ,
ଜନମାଏ ପ୍ରୀତି ଜନମାଏ ଭୀତି
ଜନମ-ମରଣ ଦୁଅ ।
ଋତୁ ପରେ ଋତୁ ଆସଇ ଜଗତେ
ଧରି ତା ସୁଷମା ଭାର,
କରି ଆୟୁକ୍ଷୀଣ ଚାଲେ ତା ବାଟେ
ନ ବୁଝେ କେ ଛନ୍ଦା ତାର ।
ଅଦୃଶ୍ୟ ଭାବରେ ଯଥା ଜଳ ଝରି
ଅଜଣାରେ ଯାଏ ସରି,
ତଥା କ୍ଷଣୁଁ କ୍ଷଣ ହୁଏ ଆୟୁକ୍ଷୀଣ
ନ ପଡ଼େ ଦୃଷ୍ଟି କାହାରି ।
ପାଚିଯିବା କ୍ଷଣି ତରୁ ଡାଳୁଁ ଫଳ
ପଡେ ଭୂମିପରେ ଯଥା,
ଲଭନ୍ତି ମରଣ ଅବଶ୍ୟ ପ୍ରାଣୀଏ
ଜନମି ଧରାରେ ତଥା ।
ଭାଗ୍ୟ-ବଶେ ସିନା ହୁଏ ଆତଯାତ
ଜୀବ ଏ ସଂସାର ତଳେ,
କେ କରି ପାରିବ ବଶ ତାକୁ ଅବା
ଧନେ-ବଳେ-କଉଶଳେ ?
କେବେ ବା କାହାକୁ ଉପହାସ ଛଳେ
ପିନ୍ଧାଏ ରାଜ ମୁକୁଟ,
ପୁଣି ପେଲି ତାକୁ ଦିଏ ହାଟେ ବାଟେ
କରୁଥାଏ ଛଟ ପଟ ।
ଆହା ! କି ବିଚିତ୍ର କରେ ଯଉବନ
ଜଗା ଦେଖି ନାନା ଧନ୍ଦା,
ବାହ୍ୟ ଏ ଶରୀର ନ ସହି କିଏ ବା
କାଳର କୁହୁକ ଛନ୍ଦା ।

ପଛ ଚକ ଯଥା ହୋଇ ଅନୁଗାମୀ
ଘୂରେ ଆଗଚକ ଗାରେ,
ଯଉବନ ପଛେ ପଛେ ତଥା ଜରା
ଜୀବନ ପରାଣ ଧାରେ ।
ଯଉବନ-ମଦେ ମାତନ୍ତି କଳନ୍ଦେ
ଧନ-ପ୍ରାଣ ନରେ ସାରି,
ନାହିଁ ଅବା ମନେ ପଳାଇବେ ଦିନେ
ନିଜ ରାହା ଅନୁସରି ।
ଯଉବନ-ଶିରୀ ନିଏ କାଳ ହରି
ନ ଚକାଇ ଲବେ ଯଥା,
ଧନ-ଗଉରବ ଛଡାଇ ନିଏ ତ
ସମୟ ନ ଜଗି ତଥା ।
ସଲିଳ-ଆଶାରେ ମରୀଚିକା-ପଛେ
ଗୋଡ଼ାଏ ପଥିକ ଯଥା,
ଅଜ୍ଞାନେ ମଣିଷେ ଧାଆଁନ୍ତି ବିଶ୍ୱାସେ
କଳ୍ପନା ପଛରେ ତଥା ।
ଆତ୍ମ ସୁଖ ଲୋଡ଼ି ନିର୍ଦ୍ଦୋଷକୁ ତାଡ଼ି
ହୁଅଇ ଯେ ପୁଲକିତ,
ନ ଚିନ୍ତଇ ମନେ ହେବଟିବୋଲି ଦିନେ
କାଳବାଣେ ସେ ତାଡିତ ।
କାହାରି ଶକତି ନିୟତିର ଗତି
ରୋଧିବାକୁ ଏ ଭୁବନେ,
ସମ୍ପତ୍ତି ଆଗମେ ଲଭେ ସୁଖ ଯେତେ
ସେତିକ ଦୁଃଖ ଗମନେ ।
କେ ଗଢ଼ି ପାରିବ ପାରିବ ବା କିଏ
ସୁଖର ସଉଧ ଭବେ ? ,
ତରଙ୍ଗ ପରାଏ ଉତ୍‌ଥାନ ପତନ
ଭୋଗନ୍ତି ସଦା ସରବେ ।
ବେଢି ଯଥା ଜନ୍ଦା ଗୁଡ ମାଠିଆକୁ
ଖାଆନ୍ତି ଗୁଡ଼ ପୁଲକେ,
ତଥା ଆଶାରସୁ ଶୋଷନ୍ତି ରକତ
ଅହରହ ବେଢ଼ି ଲୋକେ ।
ସଲଖ କପାଳ ଥିବ ଯେତେ କାଳ
ଲକ୍ଷ୍ମୀ ଥିବେ ଅନୁସରି,

ତା ବହୁନେ ଆହା ! ସକଳ ଲକ୍ଷଣ
ଥାଅନ୍ତୁ ଭରତେ ଘେରି ।
ନାରିକେଳ ଫଳ ପରାଏ ସଜ୍ଜନ,
ବଦରିକା ସମଖଳ,
ଭିତରେ ପାଷାଣ ଉହ୍ନଥାଏ ଲୁଚି
ବାହାର ସିନା କୋମଳ ।
କରେ ଯେ ପ୍ରୟାସ ଚଣ୍ଡିବାକୁ ନିଃସ୍ୱ
ଧିକ ଧିକ ତା ଜନମ,
ଦୁରାଶାରେ ବଶ ହେଲେ ସର୍ବନାଶ
ମିଳଇ ଫଳ ବିଷମ ।
ନୋହି ଅଳସୁଆ ହୋଇବ ଆଗୁଆ
ସଂସାର-ରଣ-ଭୂଇଁରେ,
ତେଜ ଭୋଗ-ଦୁଃଖ ମିଳେ ଯହିଁ ସୁଖ
ଯାପିବ କାଳ ତହିଁରେ ।
ଏହା କହି ରାମ ଆଦେଶିଲେ ତାଙ୍କୁ
ଫେରି ଅଯୋଧ୍ୟା ନଗରେ,
କୁଳ-ରାଜକାର୍ଯ୍ୟ ମାନି ପିତାଦେଶ
ଧର୍ମପଥ ଅନୁସରି ।
କୈକେୟୀ-ନନ୍ଦନ ରାମଙ୍କ ବଚନେ
ଉତ୍ତର ଦେଲେ ଏସନ,
ସର୍ବଗୁଣେ ପୂର୍ଣ୍ଣ ଯେ ଭବ ଲୋକେ
ପ୍ରଭୁ ପଣେ ସେ ଭଜନ ।
ସୁଖ ଅବା ଦୁଃଖ ନକରେ ବିମୁଖ
ଯାହାକୁ କେଉଁ ସମୟେ,
ତାହାର ଲଲାଟ ଅଯୋଧ୍ୟା ମୁକୁଟ
ଧରୁ, କହୁଛି ବିନୟେ ।
ଭରତ ବଚନେ ଉତ୍ତରିଲେ ରାମ
ଆସିଲି ଏବେ କାନନେ,
ପିତୃ ସତ୍ୟ ଲାଗି ଫେରିବ ଯେବେ ବା
କି ବୋଲିବେ ଏବେ ଜନେ ।
ମାନନ୍ତି ସରବେ ସର୍ବକାଳେ ଭବେ
'ସତ୍ୟ ହିଁ ପରମ ଧର୍ମ',
ଲଭନ୍ତି ଦୁର୍ଗତି ଆଚରି ଅସତ୍ୟ
ନବୁଝି ଜନେ ଏ ମର୍ମ ।

କାନନ ରାଜ୍ୟର ଏବେ ରଘୁବୀର
ହୋଇଅଛୁ ଅଧିକାରୀ,
ମନୁଷ୍ୟ ମାନଙ୍କ ହୁଅ ତୁମେ ରାଜା
ଫେରି ଅଯୋଧ୍ୟା ନଗରୀ ।
ଛାଡ଼ିଥିବା କାନ୍ତ ଯେସନ ଭୁଜଙ୍ଗ
କେବେଁ ନକରେ ଗ୍ରହଣ,
ତେସନ ରାଘବ ଦେଇବାକୁ ରାଜ୍ୟ
ନ ମଙ୍ଗିଲେ କଦାଚନ ।
ମନୋରଥ ତାଙ୍କ ସଫଳ ହେବାର
ଜାଣି କୈକେୟୀ-ନନ୍ଦନ,
ପାଦୁକା ଦେବାକୁ କଲେ ଅନୁନୟ
ଧରି ତାହାଙ୍କ ଚରଣ ।
ପାଦୁକା ବଢ଼ାଇ ଦେଲେ ରଘୁମଣି
ଜାଣି ତାହାଙ୍କର ମନ,
ମସ୍ତକ ଭୂଷଣ କରି ବାହୁଡ଼ିଲେ
କରି ବିଷଣ୍ଣ ବଦନ ।
ପୁର ଅଭିମୁଖେ ବାହୁଡ଼ିଲେ ଏବେ
ମେଲିଣି ସେନା ସକଳ,
କରୁଛି ପ୍ରଶଂସା କୈକେୟୀ ନନ୍ଦନ
ଯୁଗେ ଯୁଗେ ମହି ତଳ ।
ସୁଖ ଭୋଗ ଆଶେ ନର ନାରୀ ପାପଲିପ୍ତ,
ଜାଣି ଜାଣୁ ଧରାତଳେ ସର୍ବ ଅନର୍ଥିତ ।
କେହି ବା ଯୌବନ ମଦେ ହୁଏ ଉଚ୍ଛୃଙ୍ଖଳ,
କେହି ବା ଧନ ପ୍ରାଚୁର୍ଯ୍ୟେ ସଦା ମତୁଆଳ ।
କେହି କରି କ୍ଷମତାକୁ ଅପବ୍ୟବହାର,
ଦୁର୍ବଳ ଦଳନେ ଏଣେ ଭୁରତେ ତଥାର ।
ସ୍ୱାର୍ଥେ ମଜ୍ଜି ଜୀବନ କେ କରେ କଳୁଷିତ,
ପର ଘର ବୁଡ଼ାଇ କେ ହୁଏ ପୁଲକିତ ।
ଅସତ୍ୟର କାରବାର ବଢ଼ି ଧରି ଚଳେ,
ବିପାଏ ପ୍ରହାର କେବେ କେବଳ ଦୁର୍ବଳେ ।
କୁମ୍ଭୀର କୁହୁଳ ହିଂସା କେବେ ଉଠେ ଜଳି,
କିଏ ପୋଡ଼ି କାହାକୁ ବା ହୋଇ ମହାବଳୀ ।
ଗାତ ଅନୁରାଗ ତେଜି ବିଷୟ ଭୋଗରେ,
ମତେ ଭୁଲନ୍ତି କେହି ଅନ୍ୟାୟ ମାର୍ଗରେ ।

ପ୍ରବଳ ପ୍ରବଳ ହୋଇ ବୋଲନ୍ତି ସଂସାରେ,
ନାହାନ୍ତି କେ ତାଙ୍କଠାରୁ ବଳି ଐଶ୍ୱର୍ଯ୍ୟରେ ।
କେହିବା ମଣନ୍ତି ପରଦ୍ରବ୍ୟ ଲୋଷ୍ଟ୍ରବତ,
ଆପ୍ରାଣ ଚେଷ୍ଟିତ ନେକ ତା ହରଣେ ସତତ ।
ଶଠତାରେ ବଶହୋଇ କେତେ ଅଭିନୟ,
କରି, ମନେ କେହି କେହି ଜନ୍ମାନ୍ତି ବିସ୍ମୟ ।
କର୍ତ୍ତବ୍ୟ କରମେ କେହି ଅବହେଳା କରି,
ଲଭନ୍ତି ଆହା !- ସନ୍ତୋଷ 'ଅଧର୍ମ' ଆଚରି
ଶାସନରେ ଥାଇ କେତେ ଉଚ୍ଚ ପଦଧାରୀ,
କରନ୍ତି ପ୍ରୟାସ ନେବା ଲାଗି ବାହାଦୁରି ।
ସୁପୁରୁଷ ଜନମି କେତେ ଧର୍ମମାର୍ଗ ଧରି,
କାଟନ୍ତି ସନ୍ତୋଷେ କାଳ ଭାବନା ନ କରି ।
ଭବେ ରଖି ଚିରକାଳ ଅକ୍ଷୟ କୀରତି,
ପ୍ରାତଃ ସ୍ମରଣୀୟ ହୋଇ ଲଭନ୍ତି ସଦ୍‌ଗତି ।
ପ୍ରସବନ୍ତି ଏ ଭାରତ ସୁପୁରୁଷ ଏ ଭଳି,
ବିରାଜେ ଅଦ୍ୟାପି ସେମାନଙ୍କ ଗୁଣାବଳି ।
ଲାଗିଅଛି କେତେ ଖେଳ ନିତି ଏ ସଂସାରେ,
ପ୍ରତିକ୍ଷଣେ ନ ପଡ଼େ ବା କାହାର ନେତ୍ରରେ ।
ଦୁଷ୍ଟମତି କଇକେୟୀ କରି କଉଶଳ,
ଆପଣା ତନୟ ହେବବୋଲି ମହୀପାଳ ।
ରାମ ନ୍ୟାଯ୍ୟ ଅଧିକାର ଆଣିଲେ ଛଡ଼ାଇ,
ଅକାରଣେ ତାଙ୍କୁ ଶୀଘ୍ର ବନେ ଘଉଡ଼ାଇ,
ଭୋଗଲାଗି ପୋଷିଥିଲେ ହୃଦେ ମିଛ ଆଶା,
ଲାଜ ଛାଡ଼ି ବରିଲେ ସେ କେତେ କଟୁଭାଷା ।
ପରିଣାମେ ବିଷମୟ ହେଲା ସେ କଳ୍ପନା,
ଅନ୍ତରେ ଭୋଗିଲେ ନିଜେ ବୈଧବ୍ୟ-ଯାତନା ।
କେବେ ଜାଣିଥିଲା ସତେ କୈକେୟୀ ନନ୍ଦନ,
ଆପଣା ଆହୁତି କରି ନବ ଯଉବନ ।
ଗଲେ ଥରେ ନ ଫେରେ ଯା ଆଉ କଦାଚନ,
ନନ୍ଦଗ୍ରାମେ କାଳ ଏବେ କରିବ [illegible]ନେ ।
ଅତୁଳ ସମ୍ପଦରାଜି ତେଜି ଅଯୋଧ୍ୟାରେ,
ଛାଲି ପିନ୍ଧି କଟାଇବେ ବନ ଫଳାହାରେ ।
ବ୍ରତପୂତ ହୋଇ ପୁଣି ବିଷୟ ଭୋଗରେ,
ନହେଲେ ମନ ଅବିରତ ଦରିଦ୍ର ସେବାରେ ।

ରାମ ପ୍ରତିନିଧି ରୂପେ ପାଦୁକା ତାଙ୍କର,
ଥୋଇ ଶାସୁଥିଲେ ରାଜ୍ୟ ପୂଜି ନିରନ୍ତର ।
ଭେଦାଭେଦ ନ ରହିଲା ଶାସିତ-ଶାସକେ,
ନ ରହିଲେ ରାଜ୍ୟେ କେହି ଶୋଷିତ-ଶୋଷକେ ।
ଉଡୁଅଛି ତ୍ୟାଗଧ୍ୱଜା ହୋଇ ଫର ଫର,
ହେଲେ ହେଁ ପୁରୁଣା ଅଛି ଥିବ ନିରନ୍ତର ।
ଅହରହ ଗଣୁଥାନ୍ତି ରାମ ଆଗମନ,
ଧନ୍ୟ ଧନ୍ୟ ଭରତ ହେ କୈକେୟୀ ନନ୍ଦନ !।

ପ୍ରଜାକୁଳ ହିତେ ଭରତ ନିରତ
ରହୁଥିଲେ ତତପର,
ତୋଷୁଥିଲେ ତାଙ୍କ ମନ ଅହରହ
କହି ବଚନ ମଧୁର ।
ଯଥା ଯୋଗ୍ୟ ମାନ୍ୟ ଗୁରୁଜନେ ରଖି
ପରଦୁଃଖେ ଅନୁରାଗ,
ଶାସୁଥିଲେ ରାଜ୍ୟ ନୀତି ଅନୁସରି
ତେଜି ଅହଂକାର ରାଗ ।
କ୍ରୀଡ଼ା କଉତୁକ- ଦୂରେ ରହି ସଦା
ଆଚରି ଯତି ଜୀବନ,
ଗଣୁଥିଲେ ଦିନ ପ୍ରଜାକୁଳ ସଙ୍ଗେ
ଶ୍ରୀରାମଙ୍କ ଆଗମନ ।
ନନ୍ଦଗ୍ରାମେ ରହି କେଶକରି ଜଟ
ପିନ୍ଧିଲେ ଛାଲି ବକଳ,
ଶାସିଲେ ରାଇଜ ଫଳ ମୂଳ ଖାଇ
ଚଉଦ ବରଷ କାଳ ।
ତ୍ୟାଗ ଭକ୍ତି ସେବା ସଦ୍‌ଗୁଣନିଚୟ
ହୋଇଥାନ୍ତି ଯହିଁ ଠୁଳ,
ପଳାନ୍ତି ରେ ଡ଼ରି ଲୋଭ କ୍ରୋଧ ଦ୍ୱେଷ
ଆଦି ଦୁଷ୍ଟ ରିପୁକୁଳ ।

## ପଞ୍ଚବଟୀ ବନେ ରାମ

ଏଣେ ରଘୁମଣି ପଞ୍ଚବଟୀ ବନ
ସୁମିତ୍ରା ନନ୍ଦନ ସୀତା ସହିତ,
ଯାଇ ଅବସ୍ଥାନ କଲେ ବହୁଦିନ
ରହି ଜନାଗମ ସଦା ରହିତ ।

କୁଡ଼ିଆ ଆଗରେ ଦିନେ ମୋଦଭରେ
ଆସି କ୍ରୀଡ଼ାକଲା କୁରଙ୍ଗ ଗୋଟି,
ତା ହେମ ବରଣ କଉତୁକ ଖେଳ
ଦେଖି ସୀତାଗଲେ ଆନନ୍ଦେ ଭୋଳି ।
ସୀତା ମନ ଜାଣି ହୋଇ ଧନୁଷ୍ପାଣି
ଜଗାଇ ଲକ୍ଷ୍ମଣ ଧାଇଁଲେ ରାମ,
ମୃଗ ଖେଳି ଖେଳି ଦୂରେ ଗଲା ଚଳି
ହେଲା ଶେଷେ ତାର ପ୍ରାଣ ବିରାମ ।
ଗଲା ବେଳେ ପ୍ରାଣ ଡାକିଲା ଲକ୍ଷ୍ମଣ
ରକ୍ଷାକର' ବୋଲି ଅତି ତୁରିତ,
ଏ ଶବଦ ଶୁଣି ଶ୍ରୀରାମ ରମଣୀ
ପଠାଇ ଲକ୍ଷ୍ମଣ ହେଲେ ଦୁଃଖିତ ।
ଲଙ୍କାର ରାଜନ ବିଶ୍ରବା ନନ୍ଦନ
ପହଞ୍ଚି ଏକାଳେ ଯତି ବେଶରେ,
ମାଗିଲା ସୀତାଙ୍କୁ 'ଦିଅ ଭିକ' ବୋଲି
ଦେଉ ଦେଉ ଭିକ ନେଲା ରଥରେ ।
ଅଶୋକ ବନରେ ଅସୁରୀଙ୍କ ମେଳେ
ରଖିଲା ଯତନେ କରି ଗୋପନେ,
ଏଣେ ବେନିଭାଇ ସୀତାଙ୍କୁ ନପାଇ
ଖୋଜି ବୁଲୁଥାନ୍ତି କରି କ୍ରନ୍ଦନ ।
ଭାଗ୍ୟବଶେ ଭେଟି ହନୁମାନେ
ସୁଗ୍ରୀବ ସହିତ ବାନ୍ଧିଲେ ବନ୍ଧୁ,
ପୁଣି ବାଳୀ ମାରି ସୀତା ଠାବ କରି
ଲଙ୍କାଗଡ଼େ ଗଲେ ଆକ୍ରମି ସିନ୍ଧୁ ।
ଅତି ଧର୍ମପରାୟଣ ସହୋଦର ବିଭୀଷଣ
ଗଲା ବୁଝାଇ ରାବଣ ଦେଖି ଘଟଣ,
ପାପେ ନିମଗ୍ନ ଯା ମନ ଶୁଣେ ସେ କି କା ବଚନ
ଫେରିଏବେ ବିଭୀଷଣ ନେଲା ଶରଣ ।
ଆସି ସୁଖେ ରାମ ଚରଣେ
ସବଂଶ ହେଲେ ନିହତ ଏବେ ଏ ରଣେ ।
କୁକର୍ମ ହେଲେ ଜଡ଼ିତ ପତନହିଁ ସୁନିଶ୍ଚିତ
ଏଭଳି ଘଟନ ଶତ ଶତ ନେହରେ,

କଉତୁଆଏ ନିରନ୍ତର ତଥାପି ନବୁଝି ନର
ହୁଏ ବୃଥା ଆଗଭର କୁକରମରେ ।
ବହୁ ମନେ ମନେ ଅନନ୍ଦ
ନ ବିଚାରି ତିଳେ ହୃଦେ ଭଲ ବା ମନ୍ଦ ।
ଜୟଧ୍ୱନି ଘନ ଘନ କରନ୍ତି ବାନର ଗଣ
ରାବଣର ନିପାତନ ଲାଗି ଗରବେ,
କଲେ କୁସୁମ ବରଷା ସରଗୁଁ ସୁରେ ସହସା
ହନୁ ସୀତାଙ୍କ ନିକଷା (୧) ଗମିଲେ ଜବେ ।
ଭକ୍ତିଭରେ ବନ୍ଦି ପୟର
ଜଣାଇଲେ ତାଙ୍କୁ ଏ ମଙ୍ଗଳ ଖବର,
ସୀତା ମନ ଛନ୍ନ ଛନ୍ନ ଶ୍ରୀରାମ ଦରଶନ
ଲାଗି, ତେଣୁ ହନୁମାନ କହନ୍ତି ମୋଦେ ।
ବିଶ୍ରାନ୍ତ ନକରି ମନ ଧରି ପୁଷ୍ପକ ବିମାନ
ଆସୁଛନ୍ତି ରଘୁବୀର ବିଜୟନାଦେ
ଟିକି ଫେରି ସାକେତପୁର,
ତବ ଶୋକାନଳ କଲା ଏ ଲଙ୍କାଜୁର ।
ଅଙ୍ଗଦ ରାମ ଲକ୍ଷ୍ମଣ ସଙ୍ଗେ ସୁଗ୍ରୀ ବିଭୀଷଣ
ଏବେ ଅଶୋକ କାନନ ଗଲେ ସତ୍ୱର,
ସୀତାଦେଖି ସୀତାନାଥ କହିଲେ ହୋଇ ଉଷତ
ଅନାଇଁଥିବେ ଭରତ ଅଯୋଧ୍ୟାପୁର ।
ବାହୁଡ଼ିବା ମଠ ନକରି
ବିଭୀଷଣେ ରାଜ୍ୟଦେଇ ଅଗୋ ! ସୁନ୍ଦରି
ରାମ ଲଙ୍କା ସମର୍ପଣ କରିମୋଦେ ବିଭୀଷଣ
ଚଢ଼ି ପୁଷ୍ପକ ବିମାନ ସୀତା ଲକ୍ଷ୍ମଣ
ଆଜି ରାଜ୍ୟ ଅଭିମୁଖେ ବାହୁଡ଼ିଲେ ଅତିସୁଖେ
ଦୃଶ୍ୟଦେଖି ଅଧୋମୁଖେ ମନ ହରଣ,
କରି ପହଞ୍ଚିଲେ ଯେ କାଳେ
ଭରତ ଦେଲେ ସମର୍ପି ରାଜ୍ୟ ସେକାଳେ ।
ତାହାଙ୍କର ଜଟକେଶ ନନ୍ଦିଗ୍ରାମେ ଅଧିବାସ
ଦେଖି ବଇଦେହୀ-ଇଶ ହେଲେ ବିବଶ,
ବଶିଷ୍ଠଙ୍କ ଠାରୁ କଥା ଶୁଣି ହୃଦେ ବହୁ ବ୍ୟଥା
ପ୍ରଶଂସିଲେ ଭ୍ରାତୃସଂସ୍ଥା,(୨) ମନ ସନ୍ତୋଷ

୧) ନିକଟ ୨) ସଚ୍ଚରିତ୍ର

କରି ଗୁରୁଜନେ ନମିଲେ
ସମାବେଶେ ସର୍ବେ ତାଙ୍କୁ ପାଛୋଟି ନେଲେ,
ଏଣେ ବାନର ସଇନେ   ଶ୍ରୀରାମ ପ୍ରଶଂସା ଗାନେ
ବଖାଣି ପଉରଜାଗଣେ ଲଭନ୍ତି ପ୍ରୀତି ।

ରହି ସେଠି କେତେ ଦିନ   ମେଲାଣି ମାଗି ବହନ
ଗଲେ ଆପଣା ଭବନ ବିଷଣ୍ଣ ମତି,
ଧନ୍ୟ ଧନ୍ୟ ରାମ ମହିମା
ଭଜିଲେ ନରହେ ତଳେ ମନେ ବଡିମା



# ଆନ୍ଦୋଳନ

## ପ୍ରଥମ ସର୍ଗ

ଧୀରେ ଧୀରେ ହ୍ରାସ ପାଇଲା ଭାରତର ଏକତା,
ଉଭେଇ ଗଲାଣି ମାନସୁଁ ଦେଶବାସୀ-ଦୃଢ଼ତା ।
ଲୋଲୁପ ନୟନ ପଡ଼ିଲା କଠମଠେ ସହସା,
ବ୍ରିଟେନ ଶ୍ୱେତାଙ୍ଗେ ହୋଇଲେ ଏ ଦେଶର ଭରସା
ହିନ୍ଦୁଁ ହନ କରି ଭାରତରେ ଅଧିବାସୀଏ ସଢ଼ା,
ନ କହନ୍ତି ପଦେ କାହାକୁ ଅନ୍ଧକାରରେ ପଡ଼ି ।
ବିବିଧ ଆଇନ କରିଲେ ଚିରି ଭୂଇଁ ରଚନା,
କ୍ରମେ ଉଡ଼ିଗଲା କର୍ପୂର ଖାଲି ପଡ଼ିଛି କନା ।
ଅନାବୃଷ୍ଟି ଅତିବୃଷ୍ଟିରେ ଶସ୍ୟ ଯାଉଛି ଉଡ଼ି,
ଜଠର ଦାଉରେ ପରଜା ଯାଏ ଧରମ ଛୁଡ଼ି ।
ନ ମିଳେ ସହଜେ ବସନ ଲାଗି ରହେ କାନ୍ଥାର,
ଅସହାୟ ଆଜ ଭାରତ ଲଭିବାକୁ ନିସ୍ତାର ।
ଘର ଛାଉଁଣିବାକୁ କେହିଏ ନଡ଼ା ନପାନ୍ତି ଲୋକେ,
କେମନେ ଆଦର କାଟନ୍ତି ଦିନ ଉପାସ-ଶୋକେ ।
ନ ମିଳଇ ପାଣି ମୁନ୍ଦାଏ ଜଳାଧାର ଅଭାବେ,
ଜୀବନ ବିନା କା ଜୀବନ ଯାଏ ଗ୍ରୀଷ୍ମ କି ଦିବେ ।
କବଳିତ ନର ନାଶଏ ମହାମାରୀ ବସନ୍ତ,
ନ ପାଆନ୍ତି ବଣରୁ ଖଣ୍ଡିଏ କାଠ ଜାଳ ହିମନ୍ତେ ।

ଠାବେ ଠାବେ କେତେ ନଗରେ ବନ୍ଦ ପାଣ୍ଠଶାଳା,
ଦୋହଲାଇ ଦେଲା ଦେଶର ଯଶ-ସଂସ୍କୃତି-ଶୀଳ ।
ଦେଖାଇ ଶୋଣିତ କୃପାଣ ଗୋରା ଶାସକ ଦଳ,
କୁହାଇ ନଦେଇ ଶାସନ୍ତି ଲୁଟି ଧନ ସମ୍ପତ୍ତି ।
ଗୃହଭୁକ୍ତି ଦେଖାଇ କୁଟୀର-ଶିଳ୍ପ କରି ବିନାଶ,
କାରିଗରଙ୍କର କ୍ରମଶଃ ବଢ଼ାଇଲେ ପରାସ ।
ଖୁନ୍ଦା ପଣ୍ୟ ଦ୍ରବ୍ୟ ବଜାରେ ପର ଦେଶରୁ ଆସି,
ଠକୁଛି ବଣିକ ଗ୍ରାହକେ ମଧୁ ବଚନେ ଭାଷି ।
ଯେ ଦେଶକୁ ଘେରି ରହିଛି ପାରାବାର ସୁନୀଳ,
ତା ସନ୍ତାନ ମନା ଆଜକ ଆଣିବା ତା ସଲିଳ ।
ଏ ଶୋଷଣ ଚିତ୍ର ଦର୍ଶନ ହେଲା ନିମ ଦୁଃସହ,
କଂଗ୍ରେସର ମଞ୍ଜି ପୋତିଲେ ଦେଶ ପ୍ରେମୀ ନିବହ ।

ଦେଖିଣ ବଂଶ ଇଂରେଜ ଶାସନ
କାଳକ୍ରମେ ଗଲା ବଢ଼ି,
ନ ସହିଲା ଧରା ବଢ଼ିଲାଣି ଭରା
ଦେଖି ଏ ଘୋର ଅନୀତି ।
ଦସ୍ୟୁଙ୍କର ପିଣ୍ଡ କେତେ ଟେକ ମୁଣ୍ଡ
ମୂର୍ଚ୍ଛିଲେ ଧନ ସମ୍ପତ୍ତି,
ହେଲେ ଆଗଭର ଜନମ ଭୂଇଁର
ମୁକତି ଲାଗି ସମ୍ମତ ।

ମାରୁତ ବେଗରେ ଗ୍ରାମ ଗ୍ରାମାନ୍ତରେ
ଦେଉଥିଲା ଏ ବାରତା,
'ସହିଲେ କଷଣ ଉଦ୍ଧବ କ ପଣ?
ନଥିଲେ ଦେଶେ ଏକତା ।
ଉମେଶ-ଗୋଖେଲ- ବାଳ ଗଙ୍ଗାଧର-
ହଂସରାଜ-ଦାଦାଭାଇ,
ଭ୍ରମି ସ୍ଥାନୁଁ ସ୍ଥାନ କଲେ ସଙ୍ଗଠନ
ବିଦେଶୀ ତଡ଼ିବା ପାଇଁ ।
ଧଳାକଳା ଭେଦ କରିବାକୁ ଛେଦ
ଏଣେ ଗାନ୍ଧି ଆଫ୍ରିକାରେ,
ବିସର୍ଜି ସମ୍ପଦ, ସହି ନାନା କ୍ଲେଶ
ଲଢୁଥିଲେ ଅହିଂସାରେ ।
କୋଡ଼ିଏ ବରଷ ଲଢ଼ି ପଉରୁଷ
ଲଭି ଫେରିଲେ ସ୍ୱଦେଶେ,
କରି ଅନୁଧ୍ୟାନ ଭାରତ ବିଧାନ
ନେତୃତ୍ୱ ଦେଲେ କଂଗ୍ରେସେ ।
ମୋଟା ଖଦି ପିନ୍ଧି ଆସେ ଆମ ଗାନ୍ଧି
ବାଡ଼ି ଖଣ୍ଡେ ହାତେ ଧରି,
ବିଳାତରେ ପଢ଼ି ସବୁ ଢଙ୍ଗ ଛାଡ଼ି
ଦରିଦ୍ର ବାବାଜୀ ପରି ।
ପାଦେ ବୁଲି ବୁଲି ପ୍ରତି ପୁରପଲ୍ଲୀ
କଲେ ସେ ଏବେ ଦର୍ଶନ,
ପରଜା ବନ୍ଧରେ ରଜା ମୋଦଭରେ
କରଇ ସଦା ପୀଡ଼ନ ।
ଚିଛତ-ଶ୍ରମିକ- ଖ୍ୟାଲରେ ମାଲିକ
ବନ୍ଧରଇ ଅବିରତ,
ଏଣେ ସାଉକାର ଭାରେ ଗନ୍ଧାଧର
ଶୋଷି ଖାତକ ରକତ ।
ଲଭିଛି ପ୍ରସାର ଲାଞ୍ଛନା-ଲାଞ୍ଛର
ହାକିମର ନାଲି ଆଖି,
ଦଳନେ ଦୁର୍ବଳ, ମରତ ପ୍ରବଳ
ଯୋଡ଼ଇ ଅସତ୍ୟ ସାକ୍ଷୀ ।
ବିଦେଶୀ ଶାସନେ ଘର୍ଷିଲେ ଶୋଷଣେ
ସଚେତ କରିବ ଦୁନିଆଁ,

କଲେ ଆଲିଙ୍ଗନ ଅନ୍ୟାୟ ବିଧାନ
ଯାଏ ମଣିଷ ପଣିଆ ।
ଦିଏ କେ ଫୋପାଡ଼ ଅଣ୍ଟା ଲୁଗା କାଢ଼
ଆଦେଶିଲେ ସରକାର,
ବିବେକର ମନା ଶୁଣୁଥିଲେ ସିନା
ନ ହୁଏ କେ ହତବର ।
ଜନ ପ୍ରଣୟନ ଅନ୍ୟାୟ ବିଧାନ
ନକରି ଗ୍ରହଣ ଲବେ,
ଦମ୍ଭ ଧରି ହୃଦେ ଭକ୍ତ ବନ୍ଧୁ ପଦେ
ରହି ଚଳିବା ଏ ଭବେ ।
କେତେ ବା ହାକିମ କରନ୍ତୁ ଜୁଲମ
ପୁଣି ଚଳାନ୍ତୁ ଦମନେ,
ସହନଶୀଳତା ଅବା ସୁଜନତା
ଅଛି କି ଆଜ ଶାସନେ ।
ଧରି ରାଜଦଣ୍ଡ ବିନା ଭୁଜାଦଣ୍ଡ
ହୁଏ କି ନ୍ୟାୟ ବିଚାର,
ହୁଡ଼ିଗଲେ ଥରେ ବାଜଇ ଅଚିରେ
ପଛୁ ଅଲକ୍ଷ୍ୟ ପ୍ରହାର ।
ସୃଷ୍ଟିର ବିଧାନ ବିନାଶ ସାଧନ
ଜାଣି ଜାଣି ଏହା ଜନେ,
ହୋଇ ଲୋଭପର ପର ଉପକାର
ନ ଭାବନ୍ତି ଭୁଲେ ମନେ ।
ବର୍ଜି ବାହୁବଳ ଅର୍ଜି ଆତ୍ମବଳ
ମାନସ କଲେ ଦମନ,
ନଶ୍ୱରେ ଜୀବନ ଅବା ମାନ ଧନ
ଜଣିବାକୁ ଏ ଭୁବନ ।
ହୋଇ ପ୍ରେମେ ବଶ ସହୁଥିଲେ କ୍ଲେଶ
ସହଜ ଅରାତି-ଜୟ,
ସାଧୁତା ଆଗର ସ୍ୱାର୍ଥ ପରିହାର
ରଖେ କୀରତି ଅକ୍ଷୟ ।
ସମାଜ କଲ୍ୟାଣେ ନିଶା ନିବାରଣେ
ମନ ପ୍ରାଣ ଦେବା ତାଙ୍କ,
ପଣିବା ସମରେ ନିର୍ଭୀକ ମନରେ
ଅହିଂସା-ଆଲୋକ ଜାଳ ।

ସତ୍ୟର ସନ୍ଧାନେ କେତେ ମହାଜନେ
ତେଜିଣ ଆପଣା ଘର,
ହୋଇ ବନବାସୀ ସମାଧିରେ ବସି
ଜଗତେ ହେଲେ ଅମର ।
ଗରିବର ସେବା ଯାହା ଅବା ଦବା
କରି ଲଭେ ଯେ ତୃପତି,
ସେହି ଆଶୀର୍ବାଦ ପରମେଶ ପଦ
ହୁଅଇ ଶେଷେ ପ୍ରାପତି ।
ପରଧନ ପ୍ରତି ନ ବଳାଇ ମତି
ସୁଖେ କଟାଇବା ଦିନ,
ଲୋଡ଼ା ନାହିଁ ଯାହା ନ ରଖିବା ତାହା
ନ ହେବା ସଂଯମ ହୀନ ।
ପିନ୍ଧିବା ସ୍ୱଦେଶୀ କରି ମନ ଖୁସି
ତେଜିବା ବିଦେଶୀ ଛିଟା,
ଅନ୍ୟାୟ କଥାରେ ନ ନୋଇବା ଶିରେ
ଯେତେ ହେଲେ ହଟହଟା ।
ଏଦେଶ ସମ୍ବଳ ବ୍ୟୟିତ କେବଳ
ଗୋରା ଉପକାର ଲାଗି,
ବଢ଼ଇ ମରଡ଼ା ପୁଣି, ଦରିଦ୍ରତା
ଖାଉଛି ଭାରତ ମାଗି ।
କେତେ ହିନ୍ଦୁ ଭାଇ ଗ୍ରାମ କୋଣେ ଥାଇ
ନ ବସନ୍ତି ଆମପାଶେ,
କରିବାକୁ ଦୂର ବନ୍ଧ ପରିକର
ହେଉ ଏ ଦେଶ ଉଲ୍ଲାସେ ।
ନିଜେ ସୂତା କାଟି ଯୋଡ଼ାଇବା କଟି
ନଚ୍ହିଁ ପରଙ୍କୁ କହା,
ବିଦେଶୀ ବସନ କରିଣ ବର୍ଜନ
ସ୍ୱାବଲମ୍ବୀ ହେବା ସଦା ।
ଆମ ସହଯୋଗ ଲଭି କରେ ଭୋଗ
ଗୋରା ଜାତି ଏ ଦେଶରେ,
କରିଣ ଶପଥ ଧରି ଶାନ୍ତ ପଥ
ଠିଆ ହେବା ତା ଆଗରେ ।
ବରଜ ଅନ୍ଧାର ହୁଅ ତତପର
ଯୁବ ପଲ୍ଲୀବାସୀ ଜନେ,
ତଡ଼ିବା ଅରାତି ଲଭିବା ଝଙ୍କୃତି
ରହୁ ଯଶ ତ୍ରିଭୁବନେ ।"
ରାଜାର୍ଷି-ରାଜେନ୍ଦ୍ର ସୁଭାଷ-ନରେନ୍ଦ୍ର
ଜବାହାର ବଲ୍ଲଭଇ,
ଉତ୍କଳର ମଣି ଗୋପବନ୍ଧୁ ଗୁଣୀ,
ସୀତାରାମୈୟା ଦେଶାଇ-
ହରିହର-ମହା- ତାବ-ବିଶ୍ୱନାଥ
ନୀଳକଣ୍ଠ-ଗୋଦାବରୀଶ,
ଶୁଣି ଏ ଭାଷଣ ଦେହିଲେ ପ୍ରମାଣ
ହଟାଇବାକୁ ଏ ଅରି ।
ଅହିଂସା ତ୍ରାଣ ତେଜି ସାରାଦେଶ
ଆଲୋକିଲି ପ୍ରତିପୁର,
କସ୍ତୁରବା-ବଚନେ ବହୁ ନାରୀଗଣ
ହେଲେ ଏବେ ଆଗଭର ।
ଯେତେ ନିର୍ଯ୍ୟାତନ ଆସେ ଦିନୁ ଦିନ
ନ କଲେ କେହି ପରୁଆ,
ମଣନ୍ତି ପୌରୁଷ କାରାଗାର-ବାସ
ନ ବହି କଏ ଅସୂୟା ।
କରନ୍ତି ଅମାନ୍ୟ କେବେ ବା ଆଇନ
ଅନ୍ୟାୟ ରୋଧିବା ଲାଗି,
କେବେ ବା ଶରୀରେ ପଡ଼ିଲେ ପଥର
ସରବେ ଉଠନ୍ତି ଜାଗି ।
ଏକ ପକ୍ଷେ ଜାତି ଅନ୍ୟ ପକ୍ଷେ ମାତି
ରଣି ଯୁଝିଲେ ଏ ରଣେ,
ଶେଷେ ଗୋରା ଜାତି ଗଲା ଦେଶୁଁ ହଟି
ନ ରହିଲା ତା'ର ପଣେ ।
ଊନବିଂଶ ଶତ ଚତ୍ୱାରିଂଶ ସାତ
ଅଗଷ୍ଟ ପନର ଦିନ,
ଦାସତ୍ୱର ବେଡ଼ି ଗଲା ଜବେ ଛିଡ଼ି
ହେଲା ଭାରତ ସ୍ୱାଧୀନ ।
କରି ଷଡ଼ଯନ୍ତ୍ର ପଢ଼ାଇଲା ମନ୍ତ୍ର
ଏ କାଳେ ଗୋରା ଯବନେ,
ଦେଶ ହେଲା ଭାଗ ଆଣିଲା ବିରାଗ
ମହାତ୍ମାନଙ୍କ ମନେ ।

ମୋଣ୍ଟବାଟେନ ନେତାଙ୍କୁ ରାଜ୍ୟ କରନ୍ତେ ପ୍ରଦାନ,
ହିନ୍ଦୁସ୍ଥାନ-ପାକିସ୍ଥାନ କରିଲେ ବିଧାନ ।
ନଥିଲା ବଳକା ପାଣ୍ଠି କିଛି ରାଜକୋଷେ,
"ମହାତ୍ମାଙ୍କ ଜୟ" ବୋଲି ଦେଶସାରା ଘୋଷେ ।
ଯବନ ହିନ୍ଦୁଙ୍କ ମଧ୍ୟେ ଉପୁଜିଲା କଳି,
ହଣାହଣି ହେଲେ କେତେ କେ ପାରେ ତା କଳି ।
ବହିଲା ରକତ ସୁଅ ଏ ପ୍ରାନ୍ତୁ ସେ ପ୍ରାନ୍ତ,
ବୁଝାଇ ବୁଝାଇ ନେତାଗଣ ହେଲେ କ୍ଳାନ୍ତ ।
ପଦବ୍ରଜେ ମହାତ୍ମାଜି ଏଣେ ତେଣେ ବୁଲି,
ନିଭାଇଲେ ହିଂସା-ବହ୍ନି କେ ଦିବ ତା ଭୁଲି,
ନିୟତିର ଲେଖା କାହିଁ କେ କରେ ଖଣ୍ଡନ,
ବିନାୟକ ହାତେ ଶେଷେ ଲଭିଲେ ମରଣ ।
ଚିରଦୁଃଖୀ ଅସହାୟ ଭବେ ଆଜବନ,
ଘଣ୍ଟାନ୍ତି ବସ୍ତ୍ରର ରସୁକୁଳ ଦିନ ଦିନ ।
ହିଂସାଲୋଭ-କ୍ରୋଧ ଆଦି ଦେଖାଇ ବିକ୍ରମ,
କ୍ଷଣ ଲାଗି ଚିତ୍ତ ଲଭେ ଆନନ୍ଦ ପରମ ।
ଯେସନ ମଣ୍ଡୂକ ଯାଏ ତୃଣ ଲାଜକୁଳି,
ପରଶିବା ସଙ୍ଗେ ସଙ୍ଗେ ମାନବ ଅଙ୍ଗୁଳି ।
ପରଶି, ହୃଦୟୁ ଲୋଭ-ହିଂସା ଆଦି ତଥା,
ବୁଦ୍ଧି ବୃତ୍ତି ଝାଉଁଳଇ, ନୁହେ ଏ ଅନ୍ୟଥା ।
ମାତୃଆସେ ବ୍ୟାଧିକୁଳ ସଂଯମ ବନ୍ଧନେ,
ଲଭେ ସୁଖ ଆମରଣ ସଂଯମୀ ଜୀବନେ ।
ଶୋକ ଢେଉ ଖେଳିଗଲା ଧରଣୀ ବକ୍ଷରେ,
ହେବ କି ସେ ଭେଟ ଆଉ ଯେ ଯାଇଛି ଥରେ ।
ଶିଖାଇଲେ ମନ୍ତ୍ର ଯାହା ପାଳୁଥିବା ନିତି,
ଠଉରେଇ, ସୁମରିବା ଦୁନିଆଁର ଗୀତ ।
ନବ ସମ୍ବିଧାନ ଗଢ଼ାହେଲା ଭାରତର,
ସୁବିଧା ହେଲା ବହୁ ଯହିଁ ଦଳିତର ।
ଉଠାଗଲା ପୂର୍ବରୁ ଥିବା ଯେତେ କଟକଣା,
ପ୍ରାଥମିକ ଶିକ୍ଷା ପିଲେ ଲଭିଲେ ମାଗଣା ।
ଛୁଆଁ ବା ଅଛୁଆଁ କିଛି ନ ରହିବ ଆଉ,
ଉଭେଇ ଗଲାଣି ଏଣେ ହାକିମଙ୍କ ଦାଉ ।
ସାବାଳକ ଭୋଟ ପ୍ରଥା ଚଳିଲାଣି ଦେଶେ,
ନରନାରୀ ମଧ୍ୟେ ଭିନ୍ନ ନ ରହିଲା ଲେଶେ ।
ଧର୍ମ ଜାତି ନିର୍ବିଶେଷେ ସୁଯୋଗ ସମାନ,
ସଂଖ୍ୟାଧିକ ଦଳେ ଦେଶ ଶାସିବା ବିଧାନ ।
କଂଗ୍ରେସର ପୂଜ୍ୟମାନ୍ୟ ନେତା ଜବାହାର,
କୋଟି କୋଟି ଜନତାର ଆଜି କର୍ଣ୍ଣଧାର ।

* * *

## ଜବାହାର

ଭାରତ-ଗଗନେ ଉଇଁ ଶୁଭକ୍ଷଣେ
କର୍ମବୀର ଜବାହାର ।
ଛାଡ଼ି ଲୋଭ-ମୋହେ ପଶିଲେ ବିଗ୍ରହେ
ନାହିଁ ଡର କାରାଗାର ।
ଯୁବକ ରକତ ଦେଶଲାଗି ବ୍ୟସ୍ତ
ହେଲେ କି କାହାବଚନେ ?
ସମ୍ପଦ ଅତୁଳ ତେଜିଣ ସକଳ
ପିନ୍ଧିଲେ ଦେଶୀ ବସନ ।
ବାଗ୍‌ବାଣ ଫୁଟାଇ ମେକାନ୍ତ ମନ୍ତ୍ରୀ
ଦେଖି ଅନ୍ୟାୟ ବିଗ୍ରହ,
ସୁପ୍ତ ଦେଶବାସୀ ଉଠିଥିଲେ ହସି
ପିନ୍ଧି ଶୃଙ୍ଖଳାର ହାର
ପିତା ମାତା ପତ୍ନୀ ତାଙ୍କ କଥା ଶୁଣି
ଦେଶ ପ୍ରେମେ ଗଲେ ଭାସି
ନ ବିଚାରି ଆନ କଲେ ପୁଣି ଦାନ
ଅତୁଳ ସମ୍ପଦ ରାଶି ।
ବାର କାରାଗାର ପୁଣି ବାର ବାର
ମନେ ଲଭନ୍ତି ପୁଲକ,
ବଚନେ ବଚନେ କି ଅବା ଭାଷଣେ
ସଚ୍ଚା ଗାନ୍ଧି-ସ୍ତାବକ ।
ଭ୍ରମି ଜନ ପଦ ଗାନ୍ଧିଙ୍କ ଦାୟାଦ
ହୋଇ ଆଣିଲେ ଏକତା ,
ଭୁଲିବ କି କ୍ଷଣେ ତାଙ୍କ ଅବଦାନେ
ଆ[illegible]ଭାରତ ଜନତା

***

## ପଞ୍ଚବାର୍ଷିକ ଯୋଜନା

ଆରମ୍ଭ ହୋଇଚି ଭାରତରେ କଂଗ୍ରେସର ଶାସନ,
ଦେଶର ଉନ୍ନତି ବିଧାନେ ଲାଗେ ଯୋଗଚିନ୍ତନ ।
କାଶ୍ମୀର ସମସ୍ୟା ନତୁଟି ହୁଏ ଜଟିଳତର,
ସାନ ସାନ ଉପନିବେଶେ ମାଡ଼ି ବସିଚି ଡର ।
ଯବନର ଆଳ ଶ୍ରବଣେ ଲାଗେ ଅତି ବିସ୍ମୟ,
ଭାରତ ବିରୁଦ୍ଧ ପ୍ରବୃତ୍ତିଙ୍କ ଅହରହ ଅଥୟ ।
ଦଳ ଦଳ ହୋଇ ହିନ୍ଦୁଏ ଏବେ ପ୍ରାଣ ବିକଳେ,
ପଳାଇ ଆସନ୍ତି ଭାରତେ ପାକିସ୍ଥାନୁଁ ଚଞ୍ଚଳେ ।
ଏ ପଟେ ବରମା ଦେଲାଣି ରଡ଼ି ଆମ ଭାଇଙ୍କି,
'ବୋଝ ପରେ ବିଡ଼ା ନଳିତା' ଚଳ ଖରଚ ଝିଙ୍କି
ପଞ୍ଚବାର୍ଷିକ ଯୋଜନା ଆସେ ଏକାବନରୁ,
ଉପାଡ଼ିବା ଲାଗି ଦେଶରୁ ଚିର ଦରିଦ୍ରତାରୁ ।
ବଣ ଜଙ୍ଗଲରେ ସଢ଼ନ୍ତି କେତେ ଆଦିମବାସୀ,
ସେମାନଙ୍କ ହିତ ସକାଶେ ଜବାହାର ପ୍ରୟାସୀ ।
ବାଣିଜ୍ୟ ସୁବିଧା ନିମିତ୍ତ ରାସ୍ତାଘାଟ ନିର୍ମାଣ,
ଲାଗିଅଛି ଅନ୍ଧ କନ୍ଦରେ ସବୁ ନୂଆ ଭିଆଣ ।
ସମବାୟ ସୂତ୍ରେ ଦେଶକୁ ଆଗେଇବା ସକାଶେ,
କଳ୍ପନା ଜଳ୍ପନା ଚାଲିଛି ଦରିଦ୍ରତା-ବିନାଶେ,
ମୂଳଲକ୍ଷ୍ୟ ବ୍ୟୟସଙ୍କୋଚ କେବେ ନଟିବା ଭୁଲି,
ସାଧୁତା ପ୍ରଚାର କରିବା ଗ୍ରାମ ଗହଳେ ବୁଲି,
କାଗଜକୁ ଗଡ଼ ଥୋଇଲେ ହୁଏ ସବୁ ବିଫଳ,
ସହଯୋଗ ବିନା ନିରତେ ସମବାୟ ଅଚଳ ।
ସେବା ମନୋଭାବ ହୃଦୟେ ପୋଷି ଅନବରତ,
ଲୋଡ଼ା ହେଲେ ପରପାଇଁକି ଦେବା ନିଜ ରକତ ।
ଲାଭ ଉଠାଇବା ଆଶାରେ ଧନୀ ଅନୁଷ୍ଠାନରେ,
ନ ବୁଡ଼ାଅ ମୂଳଧନଟି ଖର୍ଚ୍ଚ କରି ଭୁଚ୍ଛାରେ ।
ଯେଣେ ଅନାଇଲେ ଦିଶଇ କର୍ତ୍ତବ୍ୟର ଅଭାବ,
ସବୁଠି ରହିଚି କେବଳ ଧନୀଙ୍କର ପ୍ରଭାବ ।
ହାକିମି ଦେଖାଇ ଅନ୍ୟାୟେ ରତ ନ ହୁଅ ଭାଇ,
ଏ ଜାତିର ପିତା ଗଲେ କି ଶେଷେ ଏହା ଶିଖାଇ ?
ପଞ୍ଚାୟତ ଗଢ଼ା ସରିଚି ପୁଣି ଭାରତ ସାରା,
କ୍ଷମତା ବିକେନ୍ଦ୍ରୀକରଣେ ସୃଷ୍ଟି ନୂତନ ଧାରା ।
ଶିକ୍ଷାର ପ୍ରସାର ଉଦ୍ଦେଶ୍ୟ ବ୍ୟୟ ବିପୁଳ ଅର୍ଥ,
ଅପାଠୁଆ ସିନା କେବଳ କହେ, 'ଏ ସବୁ ବ୍ୟର୍ଥ'
କୃଷିର ଉନ୍ନତି ବିଧାନେ ଗାଆଁ ଗାଆଁ ବିହାନ,
ଦିଅନ୍ତି ଯୋଗାଇ ସର୍କାର କରି ବହୁ ଯତନ ।
ସ୍ୱାସ୍ଥ୍ୟ ବାଣିଜ୍ୟ ଶିଳ୍ପ ପ୍ରସାର ଲଭି ପଞ୍ଚାୟତରେ,
ସାଧିଲେ ଅଶେଷ କଲ୍ୟାଣ ପଡ଼େ ନେବ ପଥରେ ।
କେତେ ବନ୍ଧା ବାନ୍ଧ ବିଶାଳ ଜଳ ସେଚନ ଲାଗି,
ବଢ଼ାଏ ଆଦାୟ କେଦାର ଯଥା ସମୟେ ପାଗି ।
ଭିଲାଇ ରାଉରକେଲାର କାରଖାନା ବୃହତ,
ଲୁହା ଆମଦାନି ହୋଇଣ ଉଠେ ଆଜି ଭାରତ ।
ଅବଲମ୍ବି ଶାନ୍ତି ମାରଗ ଜବାହାର ଆମର,
ଧରଣୀ ବକ୍ଷରେ ପ୍ରଶସ୍ତି ଲଭୁଛନ୍ତି ଅପାର ।
ପଡ଼ୋଶୀ ଚୀନା ନସହି ଏ ଦେଶର ଉନ୍ନତି,
ଲୁଟିବାକୁ ଯତ୍ନ କରଇ ଆମ ଧନ ସମ୍ପତ୍ତି ।

## ଦ୍ୱିତୀୟ ସର୍ଗ

ଶୁଭିଲାଣି ରଣ-ଦୁନ୍ଦୁଭି ଉତ୍ତରୁ,
ଉଠ ଉଠ ଭାଇ ବିଳାସ କୋଳରୁ ।
ଭାରତର ସୀମା ଲଙ୍ଘି ପଶୁବଳେ,
ଆସେ ଚୀନା ମାଡ଼ି ନୀଚ କଉଶଳେ ।
ବଣ ପର୍ବତ ମକାଇଣ ଖୋଜ,
କେତେ ଭେଣ୍ଡିଆଙ୍କୁ ଧରି କଲା ଭୋଜ ।
ବହି ଆସିଲାଣି ରକତର ସୁଅ,
ଦରଶନେ ଏହା ସହିବ କା ଦେହ ।
ବନ୍ଧୁ କହି ନେତ୍ରେ ପକାଇଲା ଧୂଳି,
ଜନ ଗରବରେ ହେଲାନ ବାଉଳି ?
ବିଶ୍ୱାସର କ'ଣ ଏହି ପରିଣାମ,
କ୍ଷମତା ମୋହରେ ଅବା ବୁଦ୍ଧିବାମ ।
ନିରତ କଲ୍ୟାଣ ଯେ କରେ ଧିଆନ,
କୃତଘ୍ନତା କ'ଣ ତା'ର ପ୍ରତିଦାନ ।
ଉଠେ ଚୀନା ଆଜି ଧରଣୀ ବକ୍ଷରେ,
ଭାରତ ସାହାଯ୍ୟ ପାଇ ଅଜ୍ଞାତରେ ।
ଆନନେ ଅମୃତ ହୃଦେ ହଳାହଳ,

ରଖି ଚଳାଇଲୁ ପଞ୍ଚଶୀଳ ଛଳ ।
ଥିଲେହେଁ ଭେ ତର୍କିକଥା ଭେଦରଦଳେ,
ନ ଠକନ୍ତି କେହି କାହାରିକ ଛଳେ ।
ସିନ୍ଧୁ ସମ ଯେଝା ସୀମା ମଧ୍ୟେ ରହି,
ମିଳେଇରେ ଆନନ୍ଦ ଗଲେ କାଳ ବହି ।
ନୁହେ କାପୁରୁଷ ଭାରତ ସନ୍ତାନ,
ଆତ୍ମବଳେ ଆଜ ଭବେ ବଳୀୟାନ ।
ତ୍ୟାଗର ଆଦର୍ଶ ଧରଣୀରେ ରଖି,
କରିଯାଏ କର୍ମ ଇତିହାସ ସାକ୍ଷି ।
ଏକଥାର ବାଆ ଚଉଦିଗେ ବହି,
ଦେଲଣି ସଧୀରେ କାନେ କାନେ କହି ।
ନେହୁରୁ ଆମର ଶାନ୍ତିର ନାୟକ,
ପେଶିବେ କି ଅବା ଅହିଂସାସାୟକ ?
ମହାପରାକ୍ରମୀ ଇଂରେଜ ଜାତିକି,
ଗୋଳା ବାରୁଦକୁ ନକରି ଖାତିର ।
ଉଡ଼ାଇ ଭାରତ ଦେଖାଇ ଭାରତି,
ଯୁଗେ ଯୁଗେ ଭବେ ରହିବ ମହତ୍ତ୍ୱ ।
ପାଞ୍ଚିଛ ହରି ଏ ଆମ ସ୍ୱାଧୀନତା,
ଭାରତ ଭୂଇଁରେ ଟେକିବ ତା ଛତା ।
ଉଡ଼ାଇଛି ଆଜ କଳ୍ପନାର ନେତ,
ଶୋଷୀ ବାଟୋଇର ମତଲବ ଏତ ।
ଦେଖାଇ ହେଲକି ନିଜ ବାହୁବଳ,
ବସୁମତୀ ସାରା ପକାଇ ଟଳଳ ।
ଶକୁନି ସମ କେ ଦେଲା ଏ ମନ୍ତ୍ରଣ,
ଆଣିଲା କି ଲୋଭ ଆପଣାମରଣ ?
ରାଜ ମୁକୁଟର କପଟତା ଏହି,
ଅବା ହେଉଥିଲା ସତ ଲୁଚିରହି ।
ଯେବେ ଆସେ ନଦୀ-ବଢ଼ି ବନମାନ୍ତ,
ନ ନିଏ କି ସଙ୍ଗେ ଦୁଇକୂଳ ଛାଡ଼ି ?
ଭାବୁଥିବ ତରୀ ହେବ ବୋଲି ଜତା,
କିନ୍ତୁ ଏ ଭୂଇଁରେ ହେବ ତାର ଜତା ।
ଦ୍ୱୀପବୋଲି ଭାବ ତମିର ଉପରେ,
ଉହଲେ ସମାଧି ଅଗାଧ ସାଗରେ ।
ଗ୍ରାସେ ଯା'କୁ ଥରେ କ୍ଷମତାର ମୋହ,
କରିଥାଏ ସିନା ମିତ୍ର ସଙ୍ଗେ ଦ୍ରୋହ ।
କହେ ବେଳେ ବେଳେ କେତେ କଥା ଭୂକ,
ହୋଇ ହୁସିଆର ଦିଏ କେବେ ଫାଙ୍କି ।
ପରଧନ ଦେଖି ବସିଥିଲା ଝାକି,
ଭଣ୍ଡୁଥିଲା ସତ ନେବାକୁ ତା ଠକି ।
ରହିଲେ ପଡ଼ିଆ ଜମି ବହୁଦିନ,
ଜନମଇ ଯଥା ବୁଦା ଲଭଘନ ।
ନିଯୁକ୍ତି ନ ପାଇ ତଥା ଜନମନ,
ନାନା ଅମତରେ ପଶେ ଘନଘନ ।
ଲୋଭ ମିଥ୍ୟା ଘୃଣା କରି କାରସାଦି,
ସତ୍ୟତା ସଙ୍ଗରେ ହେଉଅଛି ବାଧା ।
ଜଗତେ ମନିଷ ଯେ ଇନ୍ଦ୍ରିୟ ଗ୍ରସ୍ତ,
ହୁଅଇ ଭେ ଅହରହ ଅପଦସ୍ତ ।
ଅବିବେକୀ ସିନା ଭାବଇ ନିରତ,
ତା କରିବା କର୍ମ ସବୁ ସୁବାସିତ ।
ନ ଭାବିବ କିନ୍ତୁ ଏ ସବୁ ଫିକର,
ଶିକାରୀ ହୁଅଇ ଦିନେ ତ ଶିକାର ।
ଆହାର ଲୋଭରେ କାଣ୍ଡିଆରେ ପଡ଼ି,
ଦେଖ, ବିହଙ୍ଗମ ମରେ ତହିଁ ଜଡ଼ି ।
ପିଇବାକୁ ପାଣି ଗଲେ ଜଳାଧାରେ,
ବକଧର ବଶ ରଖେ ତା ବଦରେ ।
କାହାରିକ ବଳେ ନ କରେ ଅନିଷ୍ଟ,
ନଛାଡ଼େ କାହାକୁ ପଡ଼ିଲେ ଅରିଷ୍ଟ ।
କିନ୍ତୁ ଆହା, ଆଜ ମାନବ ସମାଜ,
ପଡ଼ିଲୋଭ ମୋହେ ନ ବହଇ ଲାଜ ।
ପଡ଼ିଶି ଦେଖି ଯାଏ ଫାଟି ହିଆ,
ନିଜ ନିଜ ମଧ୍ୟେ ଲାଗିଛି କଜିଆ ।
ଝୁଲୁଛିରେ ଭାଗ୍ୟ ମସ୍ତକ ଉପରେ,
ମାରୁଛିରେ ଉଙ୍କି ପ୍ରତି ମୁହୂର୍ତ୍ତରେ ।
ନଥିଲେ କା' ଠାରେ ତାର ଅନୁଗ୍ରହ,
ଅସମ୍ଭବ ସିନା ତାର ପରିଗ୍ରହ ।
କିଏ କେତେଦିନ ରହିବ ଏ ଭବେ,
ପଡ଼ିଲା କି ଜଣା ଏ ରହସ୍ୟ ଲବେ ?

କି ଘଟିବ କାଲି କିମ୍ବା ନଜାଣି,
ହୁଅନ୍ତି ମଣିଷେ ବୃଥା ଟଣାଟଣି ।
କେହି ଅତନେମି ସୀମିତ ସମୟ,
ତେହ୍ଲେ କି ଭବେ ନ ଲଭେ ବଳୟ ?
ଭବ ଶିକ୍ଷାଗାରୁଁ ଗଲେ ଯେବେ ଛୁଟି,
ନିଜ ରୂପ ଧରି ଆସେ କେ ଲେଉଟି ?
ଦ୍ଲାନପର ମୃତ୍ୟୁ ଜହ୍ନି ପାରୁଶରେ,
ପଡ଼ିଗଲେ ସଜ ମାଡ଼ିବସେ ଖରେ ।
ନ ଚାହିଁ ନିଜକୁ ଚାହିଁବାକୁ ପର,
କାହିଁକରି ଦବା ନିଶି ତଗିବର ?
କରିଲେ ଅକର୍ମ ନ ପଡ଼ିବୁ ଧରା,
ଦମ୍ଭେ ମନେ ମନେ ପାଞ୍ଚୁଥିବୁ ପରା ।
ବୁଲାରେ ପବନ ଏ ପାଶ ସେ ପାଶ,
ଦେଖୁଛିରେ ନିତି ତୋ କରମପାକ ।
ଖୋଜିବାକୁ ତୋର ବାହାର ଭିତର
ପାଇଛିରେ ଅଧିକାର ନିରନ୍ତର ।
ଠିକ ନିଶି କରି ଦେଖେ ତୋର ମତ,
କହିବାକୁ ମନା ନାହିଁ କା ଶକତ ।
ଏ ଦେହର କେଉଁ ଅନ୍ଧାର କଣରେ.
ରହି ନ ପଡ଼େ ସେ କା ଆଖି ଆଗରେ ।
ତା ଆଗିକ ଉଚଳ ମାଡେ ନାହିଁ ନିଦ,
ଚିହ୍ନିଥାଏ ଅବା ସବୁ ତୋ ଫିସାଦ ।
ଖଟି ତୋହ ଲଗି ହେଉଥାଏ ବଳ,
ତା ବିନା ନାହିଁ କେ ଅନ୍ୟତୋ ସମ୍ବଳ ।
ହୋଇ କେତେ ଦିନ ତୋ ଘରେ କୁଣିଆ,
ପରଖୁଥାଏ ତୋ ମଣିଷ ପଣିଆ ।
ତା କଥା ପଥର ଦୁନିଆଁ ବାହାର,
ନଡ଼େ ଧରା ଯେତେ ତୋର କାରବାର ।
ସଜ ହେଉ ହେଉ ଦିବାକୁ ବାହାର,
ଗଡ଼େ ଲୁହ ଧାର ନୟନୁ କାହାର ।
ହେଉଥିଲେ କେତେ କାକୁତି ମିନତି,
କିଞ୍ଚିତ କରୁଣା ନ ଥାଏ ତୋ ପ୍ରତି ।
ତୋ ଘରୁ ଯେବେରେ ଚାଲେ ସେ ଛାଡ଼ି,
ରହନ୍ତି ଦୂରେ କେ ତୋ ପାଖ ନ ମାଡ଼ି ।

ଅକ୍ଷି ଯୋଡ଼ି ସଙ୍ଗେ ସଙ୍ଗେ ଜ୍ୟୋତିହୀନ,
ପୁଣି କଣ୍ଠ ସ୍ଵର ତା ସଙ୍ଗେ ବିଲୀନ ।
ସେ ରୂପ ଦର୍ଶନେ ଜନମେ ବିସ୍ମୟ,
ମତ ବୋଲି କହି ସରବେ ଅଥୟ ।
ରହେ ନାହିଁ କିଛୁ ଦେଖାଇଲେ ଟେକି,
ନିଷ୍ଫଳ ହିନାରେ ଯେତେ ଟେକାଟେକି ।
ନ କରିବେ ଆଉ କେହି ତୋ ଚେଷ୍ଟ,
ରଖିବେ ଛଡ଼ାଇ ତୋ ବାଟ ଖରଷ୍ଟ ।
କୁଟୁମ୍ବ ଭିତରେ ଯା'କୁ ବୋଲୁ ମୋର,
କେଣେ ହେଲେ ପୁଣି ନୁହନ୍ତି କେ ତୋର ।
କିଏ କାହୁଁ ଅସି ଲଭନ୍ତି ମିଳନ,
ମମତା ଡୋରରେ ସରବେ ବନ୍ଧନ ।
ଅନିତ୍ୟ ପଦାର୍ଥେ ଡାଳି ସଦାମନ,
ନ ଭାବନ୍ତି ଦିନେ ଆପଣା ସ୍ଵଜନ ।
କେହି ନୁହେ ଭାଗୀ କାହା ସୁଖ ଦୁଃଖେ,
କିଏ କେତେବେଳେ ପଡ଼େ କାଳମୁଖେ ।
ଏଥୁଁ ଯେ ଯାଉଛି ଧରି ନିଜବାହା,
ନ ମିଳଇ ତାକୁ କେଣେ ହେଲେ ସାହା ।
କାହା ସଙ୍ଗେ କେବେ ହେବନାହିଁ ମେଳ,
ତନକଇ ତକେଇ ଟିବସିନା ବେଳ ।

ଅସିତ ନଥିଲୁ ଦାମୁଡ଼ିଏ ଧରି,
ଦେବ କେ କଢ଼ାଏ ସିବୁ ଯେବେ ମରି ।
କେଳୁ ପାପପୁଣ୍ୟ ନ ଛାଡ଼େ ତା ସଙ୍ଗ,
ଅତଳ ଦୁନିଆ ଆଉ ଯେତେ ଢଙ୍ଗ ।
ବୋଝ ନେବା ମୀତା ଅବାଟେଆକ ଦାଉ,
ନିଜନୋ କାହିଁ ବାହୁଟେ କିଏ ଆଉ ।
କ୍ଷୁଦ୍ର ସ୍ଵାର୍ଥ ଲଗି ସନ୍ତାନକୁ ବିକ,
ମଣିଷ ବୃଥାରେ ହେଉଅଛି ଟେକ ।
ସ୍ଵାର୍ଥ ପଡ଼ିକଲେ କୁକର୍ମ ବରଣ,
କରିବଟେ ଦିନେ ତାହିତ ପୁରଣ ।
ଆଶା-ବହ୍ନି ଆଜି ମେଲା ତାର ପାଟି,
ଯାହା ପଡ଼େ ଆଗେ ଦେଉଛି ତା ଚାଟି ।
ଯେତେ ମିଳେ ଯେତେ ଗୋଡ଼ାଉଛି ଲୋଭ,
ପାପ କରିବାକୁ ନ ଥାଏ କା କ୍ଷୋଭ ।

ସକଳ ପାପର ଦୁର୍ଜନତା ମୂଳ,
ସାଧୁତା ମାର୍ଗରେ ଲୋଭ ପ୍ରତିକୂଳ ।
ଗୋଟାଇ କରୁଣା ବର୍ଷାରେ ଛନ୍ତି,
ଲୋଭୀ ଚ ସାଇତି ଟିକିଏ ନଚାନ୍ତି ।
ଧରମ ପ୍ରଦୀପ ସଦା ଦାଉ ଦାଉ,
ଜୀବନେ ସନ୍ତୋଷ ଅଭାବର ବାହୁ ।
ଭୁଲିଏ ଯେ ନର କହି ମିଥ୍ୟା କଥା,
ଅବିରତ ତାର ଅବନତ ମଥା ।
ନେଇଯାଏ ଯେହୁ ଜଟି ପର ଧନ,
ଚିର ଦୁଃଖମୟ ତାହାର ଜୀବନ ।
ଇନ୍ଦ୍ରିୟ-ଘୋଟକ ନ ପାରିଲେ ରୂଳି,
ଜଗତେ ସଭିଏ ମାରିଥାନ୍ତି ତାଳି ।
ପଶିଲେ ଅବାଟେ ବାଜିବରେ କଣ୍ଟା,
ଧରମ ବାଧାରେ ଯାଏ ଲଗି ଅଣ୍ଟା ।
ପାପର ମଞ୍ଜୁଷ ଅଟଇ ମରଣ,
ଅମରତ୍ତ୍ୱ ସିନା ପୁଣ୍ୟର ଭୂଷଣ ।
ଯହିଁ ସତ୍ୟ-ନ୍ୟାୟ ଲଭନ୍ତି ମିଳନ,
ତହିଁ ଧର୍ମ-ଶାନ୍ତି ଦିଅନ୍ତି ଚୁମ୍ବନ ।
କରେ ଜରା ଯଥା ସୌନ୍ଦର୍ଯ୍ୟ ବିନାଶ,
ଅହଙ୍କାର ତଥା ଗଉରବେ ହ୍ରାସ ।
ଠିକଣା ବାଟରେ ଗଲୁଥିଲେ ନର,
ଯାହାଠି ସୁଗମ ତାର ନିରନ୍ତର ।
ମସ୍ତକ ପଛରେ ନାହିଁରେ ନୟନ,
ପଛ ଭ୍ରୂକୁଟିକି ହୁଅ ସାବଧାନ ।
ବାଛି ବାଛି ଗୋଡ଼ ରଖିବରେ ମାଟି,
ଗଡ଼ିବାରେ ଘଟ ନ ହିବ ତା ଫାଟି ।
ଆପଣା କାନକୁ ନକର ବିଶ୍ୱାସ,
କରୁଥିଲେ କର୍ମ ମିଳଇ ଆଶ୍ୱାସ ।
ଭଲ କଥା ଯେତେ ଲାଗୁଛି ଅଡ଼ୁଆ,
ଖସିଲେରେ ଜିଭ ହେଉଛି ଫଗୁଆ ।
ସ୍ୱାର୍ଥ ମୋହେ ପଡ଼ି ଆପଣାକୁ ଭୁଲି,
ମଣ ସିନା ସୁଖ କରିରେ ଚୁଗୁଲି ।
ଲାଗିଛିରେ ହେତୁ କେତେ ମନଧରା,
ହେଲେଣିରେ ପୁଣି କେତେ ଦରମରା ।

ଇନ୍ଦ୍ରିୟକୁ ପୂଜ ମଣିଲେରେ ସୁଖ,
ପରିଣାମେ ଆହା ଜନମାଏ ଦୁଃଖ ।
"ବର୍ତ୍ତମାନ" ମଣେ ସୁଖ ବୋଲି ଯାହା,
ହସୁଅଛି ଦେଖି, "ଭବିଷ୍ୟତ" ତାହା ।
ଆସିଲେ ତୋଫାନ ଘେନିଯିବ ନାବ,
ନ ପାଇବ କୂଳ କଲେ କେତେ ଗାବ ।
କାନ୍ଦିବରେ ଦିନେ କନ୍ଦାଇଲେ ପର,
ଚିରନ୍ତନ ମାତ୍ର ଏ ତ ଜଗତର ।
ଶୁଣିବାକୁ ଅଭିଯୋଗ ଗରିବର,
ଭାଗ୍ୟବାନ କାନ ନ କରେ ଖାତର ।
ମେଳା ମଉଜରେ ଦିନ ଯାଏ ବିତି,
ନ ଖୋଜେ କିଏ ସେ ଏ ସଂସାର ସ୍ଥିତି ।
ସବୁ ଦେଖି ଯେବେ ବୁଜୁଥିବା ଆଖି,
ଆଳବନ୍ଦି ପଙ୍କେ ରହିଥିବା ଲାଗି ।
ପ୍ରାଚୁର୍ଯ୍ୟରେ ଏଣେ କେହି ଉନମତ୍ତ,
କେଣନ୍ତି ଆମୋଦ ନ ହୋଇ ସଂଯତ ।
କେତେ ଦିନ କରିଥିବ ଗଳା କଣ୍ଠି,
ନ ଫିଟାଇ ଏଣେ ସ୍ୱାର୍ଥ ମୋହ ଗଣ୍ଠି ।
ଜାଗରେ ଜାଗରେ ଭାରତ ସନ୍ତାନ,
ରଖ ଇତିହାସେ ଜାତିର ସମ୍ମାନ ।
ସମର ଭୂଇଁରେ ଶକତି ଖଟାଇ,
ବାହୁବଳ ମୋଦେ ଅରାତି ହଟାଇ ।
ମରଣକୁ ଡରେ ନଥାଏ ଯା ଭୟ,
ସେହି ସିନା ଭବେ ସୈନିକ ଦୁର୍ଜୟ ।
ମରଣକୁ ମାଗି କରିଲେ ମନ୍ତ୍ରରେ,
ମହତ ପଣିଆ ବିକଶେ ଅନ୍ତରେ ।
ଅସ୍ଥିରତା ସଦା ଦେଖାଏ ପଲ୍ଲବ,
ଜୀବନ ଯୌବନ ସକଳ ବିଭବ ।
ନିରପେକ୍ଷ ମାତ୍ର ହୋଇଛି ବୟାନ,
ସହ ଅବସ୍ଥାନ ଲାଗି ଏ ମହାନ୍ ।
ଉଦାର ଭାବର ଦିଏ ପରିଚୟ,
ପଶୁ ପ୍ରବୃତ୍ତିର ସାଧଇ ବିଲୟ ।
ମହାଲକ୍ଷ୍ୟ ଦିଗେ ଟାଣୁଥାଏ ଧୀରେ,
ଶାନ୍ତିର ମାରଗ ଦେଖାଏ ମନ୍ଥିରେ ।

ହୁଏ ଅସହାୟ ଯେତେବେଳେ ନର,
ହୋଇ ଅନୁନୟ ଯୋଡ଼େ ବେନକର ।
ମୃଗସ୍ମୁ ଉରରେ ଗଡ଼ାଇ ଲୋତକ,
ମାଗେ ଦୟାଭିକ ସିନା କୁଟେଙ୍କ ।
ନୁହେରେ ଅକ୍ଷମ ଭାରତ ସନ୍ତାନ,
ମାତୃଭୂମି ଲାଗି ଦେବାକୁ ପରାଣ ।
ବାଲୁକା ଉଡ଼ାଇ ଶୃଙ୍ଗ ଘଷି ଘଷି,
ବୃଷଭ ପରାଏ ରଣେ ହସି ହସି ।
ନେତା ଡାକ ଶୁଣି ଭାରତର ବୀରେ,
ପଶିଲେଣି ଦେଖ, ଅତୋଡ ଶିବରେ ।
ପରର ଉପରେ ନକର ନିର୍ଭର,
ନିଜ ଶ୍ରମଫଳେ ପୋଷିବ ଉଦର ।
ଅଛନ୍ତିରେ ଲୋକ କେତେ ଏ ଉସାରେ,
ବ୍ୟସ୍ତ ସଦା ପରଗୋଡ଼ ଚୃଟିବାରେ ।
ଜନମ ହେଲେ ତ ମରଣ ନିଶ୍ଚୟ,
ଏଥି ଲାଗି କିଆଁ ଲାଗେ ଏତେ ଭୟ ।
ମରଣ ପଛରେ ଆସଇ ଜନମ,
ବରଷର ଛଅ ଋତୁ ଚକ୍ର ସମ ।
ଅସ୍ଥି ଚର୍ମ ଲଗ୍ନ ଏ ଦେହ ମାଉଁସ,
କାଳ ବଶେ ଦିନେ ହେବ ଏ ପାଉଁଶ ।
କେତେ ଦିନ ଅବା ରହିବ ଏ ବସା,
ଦେଖାଇ ପଦ୍ମଜ ସିନା ଲୋକହସା ।
ଯେତେ ଖାଖେଇଲେ ମଶାଣି ନିକଟ,
ବଢ଼ୁଅଛି ତୃଷା ନ ହୋଇ ଆକଣ୍ଠ ।
ମଣିଷ ଭିତରେ କି ପ୍ରଭେଦ ଭବେ,
ଜରା ରୋଗ ମୃତ୍ୟୁ କବଳିତ ସର୍ବେ ।
ପାଉଁଶିଆ କେଶ ଉପାଡ଼ିଲେ ଶିରୁଁ,
ଭାବୁଛ କି କଳା ଉଠିବ ତହିଁରୁ ?
କଟାଇଲେ ଦିନ ଯୁଗ୍ମବେଶ ପଡ଼ି,
ହସିବେ ତ ଲୋକେ ନିରେଖି ଏ ଛଡ଼ ।
ନ ଜାଣି ସମ୍ବନ୍ଧ ଶରୀର ଆତ୍ମାର,
କରୁଛ କାହିଁକି ଅଯଥା ବଗୃର ?
ଆପଣା ଶରୀରୁଁ ସୂତା ଖିଅ କାଢ଼ି,
ହେଉଛ ଆବଦ୍ଧ ଖୋସାମାନ ଗଢ଼ି ।

ଲଭି ଏ ଜନମ ହେଲରେ ଭିକାରୀ,
ପତାଇଲ ହାତ କଟ୍ଟୁ ନ ବିଚାରି ।
କଣା ଅବା ଖକା ଦିଆ ଅବା ନିଆ,
ଲାଗିଛି ନିରତ ଦେଖୁଛି ଦୁନିଆଁ ।
ଯାହା ପାଇଁ ତୋତେ ଲାଗିଛିରେ ଧନ୍ଦା,
କେବେ ହେଲେ ସିଏ ହେବ କି ତୋ ଫନ୍ଦା ?
ଜ୍ଞାନ-ନିକେତନେ ନାଇଲେ ଓଜନ,
ନ ପଡ଼ିବ ଜଣା ତୋ କାର୍ଯ୍ୟ ସାଧନ ।
ଅନ୍ଧାର କଣରେ ବୁଢ଼ିଆଣୀ ପରି,
ବସିବ ମଉଜେ ପୁଣି ଜାଲ ଧରି ।
ଜେଜେମ ମତ ଅବା ସଉକୁଣୀ,
ଲାଗିଛିରେ ନିତି ତାଙ୍କ ଝୁଣାଝୁଣି ।
କେ ବୁଝିବ ଭାଇ ସୃଷ୍ଟିର ଅକଲ,
ହେଉଥିବ ସିନା ଭୁଷ୍ଟ କଲବଲ ।
ଜାଗରେ ଜାଗରେ ଭାରତ ସନ୍ତାନ,
ରଖ ଇତିହାସେ ଜାତିର ସମ୍ମାନ ।
ଦେଖାଏ ଯେବେ କେ ତରବାର କାତି,
ନ ଆସିବ ଡର ଯୁଦ୍ଧ ଭୂଇଁ ଗୁଡ଼ ।
ଶୋଇ ଆରାମରେ ତୁଳି ତଳ ପରେ,
ନ ଯାପିବ କାଳ ମୋଦେ ଗଳପରେ ।
ଜମାଜଳ ପରି ଅଳସୁଆ ମନ ।
ଝର ନୀର ସଙ୍ଗେ କର୍ମଠ ସମାନ,
ବାହାରିଲେ ନିଆଁ ଫୋକାଇବ ଦାଳ,
ଚକେଇଲେ ଦଣ୍ଡେ ଉଠିବାର ଜଳ ।
ଧରଣୀ ବକ୍ଷରେ ବ୍ୟାପିଲେ କୁହୁଡ଼ି,
ବ୍ୟଜନରେ କିଏ ପାରେ କି ଘଉଡ଼ି ?
ଏକମନେ ସର୍ବେ ହେଲେ ସିନା ଠୁଳ,
ଶତ୍ରୁ ବିପରୀତ ଉପୁଡ଼ିବ ମୂଳ ।
ଯେତେ ଲଣ୍ଡଭଣ୍ଡ ଲାଗେ ଦୁନିଆଁରେ,
ପୁରୁଷର ହାତ ଥାଏ ସବୁଠାରେ ।
ଧ୍ୱଂସ ଲାଗି କ'ଣ ପୁରୁଷ ଭିଆଣ,
ଅବା ତା ହୃଦୟ ପିହିତ ପାଷାଣ ।
ଶୁଦ୍ଧି ସରଳତା ସେବା ଅଳଙ୍କାର,
ହୋଇଥାଏ ଅହରହ ଅବଳାର ।

ମନ୍ଦ ସଦା ମନ୍ଦଚିନ୍ତା ପରାୟଣ,
ମିଠା କଥା କହି ତାକୁ କରେ ସନ୍ତୋଷ ।
ଆଡ଼ମ୍ବର ଶୂନ୍ୟ କୋମଳ ବଚନ,
କରୁ ତୋଷ ଥାଏ ମଣିଷର ମନ ।
ପରଦୁଃଖ ଦେଖି ହୁଅଇ କାତର,
ବିମଳ ତାହାର ହୃଦ ନିରନ୍ତର ।
ନ ଥାଏ ହୃଦୟେ ଲେଶ ମାତ୍ର ଘୃଣା,
ଲଭନ୍ତି ସରବେ ତା ଠାରୁ କରୁଣା ।
କେତେ ଉପବାସ କେତେ ଉପାସନା,
ସନ୍ତାନ ସକାଶେ କରେ କେ ଜନନା ?
ପର ଦୁଃଖ ଦେଖି ଗଳେ ଲୁହଧାର,
ସାରା ଜୀବନ ତା ଦୁଃଖର ଭଣ୍ଡାର ।
ନ ଥାଏ ମାନସେ ତା ଜୀବନେ ଆଶା,
ପ୍ରସବ ସମୟେ ନିଶ୍ଚିତ ଭରସା ।
ନ ଜାଣେ ସେ କିଛି ଦାମ୍ଭିକ ତନ୍ତ୍ର,
ସଦା ବିଭୂଷିତା ସେବା ଗୁଣେ ସତ୍ୟ ।
ସାଧେ ଜଗତର କେତେ ଉପକାର,
କୃତଘ୍ନତା କରୁ ତାର ଉପହାର ।
ନଥାଏ ଦିବସ ସାରା ଅବସର,
ମନୁମାତ୍ରେ ଏ ତ ଜୀବ ଜଗତର ।
ନଥିଲେ ଲଳନା ଘର ଅସୁନ୍ଦର,
ଗୃହଲକ୍ଷ୍ମୀ ପୁଣି ଏ ତ ପୁରୁଷର ।
କେତେ ବୀରାଙ୍ଗନା ଭାରତ ଭୂଇଁର,
ମାତୃଭୂମି ଲାଗି ଦେଇଥିଲେ ଶରୀର ।
"ଜାଗରେ ଜାଗରେ ଭାରତ ସନ୍ତାନ,
ଦେଖ ଇତିହାସେ ଜାତିର ସମ୍ମାନ" ।
ପଲ୍ଲୀ ସ୍ୱେଚ୍ଛାସେବୀ ଗ୍ରାମେ ଗ୍ରାମେ ଗଢ଼,
ସ୍ନେହ ସେବାଙ୍କୁ ଦେଉଥିବା ତଡ଼ ।
ଗାଆଁ କଳିଗୋଳ ତୁଟାଇ ଗାଆଁରେ,
ନ ମାଡ଼ିବା ପାଦ କଚେରୀ ଦୁଆରେ ।
ପଞ୍ଚରେ ଚୁଗୁଲି କରୁଥାନ୍ତି କେତେ,
ଫାଇଦା ଉଠାନ୍ତି ଟାଉଟର ଯେତେ ।
ଲଗାଯୋଡ଼ା ଶୁଣି ନ ଛୁଟେ ଆହାର,
ଲୋକହସା ସିନା ହୋଇଥାଏ ସାର ।

ନପାରେ କେ ଉଠି ଗଲେ ଗୋଡ଼ ଖସି,
ନିଜ ଧନ ଶେଷ ପରେ ଗୋଡ଼ ଘସି ।
ପୁଣ୍ୟପୂତ ହୃଦେ ଗୃହରକ୍ଷୀ ଦଳ,
ବଢ଼ାଇବେ ଏବେ ପୋଲିସର ବଳ ।
ଗ୍ରାମବାସୀଙ୍କର ସୁଷ୍ଠୁ ସଂଗଠନ,
କରିବ ଦେଶର ଉନ୍ନତି ସାଧନ ।
ଥିବେ ଗ୍ରାମାଞ୍ଚଳେ ଯେତେ ଧୁରନ୍ଧର,
ମାତୃଭୂମି ଲାଗି ହୁଅନ୍ତୁ ଆଗଭର ।
ଦେଶର ସମ୍ବଳ ବଢ଼ାଇବା ଲାଗି,
କରିବା ଖରଚ ଅପବ୍ୟୟ ଜଗି ।
ଯେତେ ଆଡ଼ମ୍ବର ଅଛଇ ଦିଅଆ,
ମିଛାବୃଥା ଆଜି ଲୋଡ଼ଇ ଦୁନିଆଁ ।
ସଡ଼କ ଦେଖାଇ ଅପଥାରେ ବସ୍ତୁ,
ବତାଇଲେ ହେବ ନଷ୍ଟମୂ ଅଥୟ ।
ଭାରତ ପବିତ୍ର ଜାହ୍ନବୀ ସଲିଳ,
ଯୁଗ ଯୁଗ ଧରି ଯାହା ଅନାବିଳ ।
ରକତ ରଞ୍ଜିତ ତାର କଳେବର,
ଦରଶନେ ଆଜ ହୃଦ ଥରହର ।
ଜାଗରେ ଜାଗରେ ଭାରତ ସନ୍ତାନ,
ଦେଖ ଇତିହାସେ ଜାତିର ସମ୍ମାନ ।
ମୁକ୍ତିର ସଂଗ୍ରାମେ ଦିଏ ଯେ ଜୀବନ,
ଜୀବନ୍ତ ବୋଲି ସେ ଘୋଷଇ ଭୁବନ ।

ଜାଗରେ ଜାଗରେ ଭାରତ ସନ୍ତାନ
ଡାକୁଛି ଜନନୀ ବାରମ୍ବାର,
ତେଜ ମନୁଷ୍ୟତ୍ୱ ଦେଖାଇ ସାହସ
ସଙ୍ଗେ ସାଜ ହୁଅ ବାହାର ।
ଆସୁ ଅଛି ମାଡ଼ି ବନ ଭୂଇଁ ଚାଡ଼ି
ଉଦ୍ଧାରି ଦିଗରୁ ଗରବେ ମାତି,
ଯୁଦ୍ଧମଦେ ମତ୍ତ ଦେଖିବ ଜଗତ
ଶତ୍ରୁ ମନେ ଭାଳ ତୁମ୍ଭ ଅରାତି ।
ଜନବଳେ ବଳୀ ମାରି କରତାଳି
କଲାଣି ଅନେକ ସୋଦର ଧ୍ୱଂସ,
ତୁମ୍ଭ ସ୍ୱାଧୀନତା ନ ରହିବ ସତ୍ତା
ଗଣତନ୍ତ୍ର ବାଦ କରିବ ଲୟ ।

ବୀରତ୍ୱ ଦେଖାଇ   ଦିନେ ଭୂମଣ୍ଡଳ
ଲଢ଼ୁଥିଲେ ମୋଦେ ଯୁଦ୍ଧ ଅଙ୍ଗନେ,
ତା ଦାୟାଦ ହୋଇ   ରହିଅଛ ଶୋଇ
ବେଳନାହିଁ ଆଉ ଜାଗ ସଘନେ ।
ଅକୁଣ୍ଠିତ ଚିତ୍ତେ   ଯୁଦ୍ଧ ଦେଇ ହିତେ
ଜନନୀର ସେବା କର ଭକତେ,
ନୁହେ ଧନ ବଡ଼   ନୁହେ ପ୍ରାଣ ବଡ଼
ଧନ ପ୍ରାଣ ଲୋଡ଼ା ନିଜ ମହତେ ।

## ଆହ୍ୱାନ

ଜାଗ ଜାଗ ଭାଇ   ନକର ଡେରି
ଗଲେତ ସମୟ ନଆସେ ଫେରି,
ବାହାରି ପଡ଼ିବା ପାଇକ ସାଜି
ଯାଇ ହରାଇବା ଶତ୍ରୁଙ୍କୁ ଆଜି ।
ଶତ୍ରୁଗଣ ଲୋପ କରି
ବାହୁଡ଼ିବା ଘରେ   ଆନନ୍ଦ-ମନରେ
ବିଜୟ ପତାକା ଧରି ।
ରଣର ହୁଙ୍କାର ଶୁଭେ ଉଚ୍ଚରେ,
ଶତ୍ରୁଙ୍କ ସଇନ ଅତି ସ[illegible]ରେ ।

ମାଡ଼ି ଆସୁଛନ୍ତି ଦେଶ ଭିତରେ,
କଲେ ହେଳା ଭାଇ ଏ ବିପଦରେ ।
ହରି ଆମ ସ୍ୱାଧୀନତା,
ଶୋଷିବେ ରକତ   ନାଶିବେ ଧରମ
ନ ରହିବ ଆମ ସତ୍ତା ।
ନୁହଇ ଏ ଜାତି କାହାଁରେ ହୀନ,
କରିବା ସମରେ ଶତ୍ରୁଙ୍କୁ ଲୀନ ।
ଓଡ଼ିଶା ପାଇକେ ଲଢ଼ି ସମରେ,
ଟେକ ରଖିଥିଲେ ରଣ ଭୂଇଁରେ ।
ସେ ଉତ୍ସାହ ଜାଗୁ ମନେ
କଲେ ଏବେ ହେଳା   ବୁଡ଼ିଯିବ ଭେଳା
ଏକତା ବିସର୍ଜି ଘନେ ।
ବିଦେଶୀ ଶାସନ କରି ନିଶ୍ଚିହ୍ନ,
ସହି ନାନା ଦୁଃଖ ହେଲେ ସ୍ୱାଧୀନ ।
ଲୋକ ଶାସନରେ ଦେଶ ଚଳାଇ-
ବାକୁ ଦରିଦ୍ରତା ଗଲା ପଳାଇ
ଡାକେ ମାତୃଭୂମି ଆଜି,
ସମର ଭୂଇଁରେ   ଟେକ ରଖ, ଦେଇ
ରକ୍ତ-ଧନ-ଜନ ରାଜି ।

****



# ସୀତା ଉଦ୍ଧାର

( ବଙ୍ଗସ୍ବୁ ବାହୁଡ଼ା )

## ପ୍ରଥମ ସର୍ଗ

"ସ୍ତବ"

କି ବୋଲି ନମିବି ପ୍ରଭୁ, ରଘୁନାଥ ନାଥ ।
ଅନନ୍ତ ମହିମା କେଳେ ପାଇବ କି ଜାତ ?
ତବ ବାଣୀ ଶୁଣିଆ ଦେବି ଅଗୋଚର ।
ବୁଝିବ କିପରି ଅବା ମଣିଷ ନଶ୍ୱର ॥
ସରଜିଲ ମଣିଷକୁ ମହାଜବ କରି ।
ନାନା ରୋଗେ କଷ୍ଟ ପାଇ ଯାଉଅଛି ସରି ॥
ଅଗଣିତ ଅଉଷଧି ସରଜିଛ ସତ ।
ମୃତ୍ୟୁର ସମୀପେ ସବୁ ସଦା ପରାହତ ॥
ଶ୍ରାବଣର ନାଗଙ୍କ ନିରେଖିଲେ ଥରେ ।
ମଣିଷର ବୁଦ୍ଧି ବଣା ହୁଏ ବସୁନ୍ଧରେ ॥
ନନ୍ଦନର ତୋଳା ଚମ୍ପା ଗୋଲାପ ଅଧରେ ।
ମନ୍ଦ ମନ୍ଦ ବାସନାରେ ଶୋଭା ଉମା ଶିରେ ॥
ତବରୂପ ମୁଖ ଲଭିଅଛୁ କରି ଆଳ ।
ତେଣୁ ତୁଁ ହନୁମାନ ଏ ଡାକେଁ ସେ ଡାଳ ॥
ମନ୍ଦକର ତରୁଦାରୁ ସୁଗନ୍ଧେ ଚନ୍ଦନ ।
ଦେହେ ବୋଳି ତାପ ବାଧା ଭୁଲେ ଧନୀ ଜନ ॥
କର୍କଶ ଦୋଡ଼ଶୀ ତଳେ ସୁସ୍ୱାଦୁର ରସ ।
ସାଇତି ରଖିଛ ଦେଖ କିପରି ପଣସ ॥
ତେଙ୍ଗିମା ଛବିରେ ମୋହେ ଫଳ ମହାକାଳ ।
ଭାଙ୍ଗି ଦେଲେ ଭିତରଟା ଦିଶେ ବିକଟାଳ ॥
କାକ ଡାକ କର୍ଣ୍ଣେ ରୁକ୍ଷ ମଧୁର ପିକର ।
କଦାକାର ଶେଳ ରୂପ କେକୀ ମନୋହର ॥
ଜଳତଳେ ବୋଙ୍ଗପରି ଦଣ୍ଡ ପଲଙ୍ଗ ।
ନ ଚୁଚ୍ଚେ ତାକୁ କିଏ ଯେଣୁ ଗନ୍ଧ ବାସ ॥
ତବ ଭାବଧାରା ସବୁ କେ ବୁଝିବ ଭବେ ।
ତଥାପି ଏ ଅଧମ ପ୍ରତି କୃପା ଦୃଷ୍ଟି ଲଭେ ॥

—ଃ*୦*ଃ—

ପାଦୁକାକୁ ଧରି ଅଯୋଧ୍ୟାକୁ ଫେରି
ଆସିଲେ ଭରତ ଯେବେ ।
ଚିତ୍ରକୂଟ ରାମ ନେବାକୁ ବିଶ୍ରାମ
ହୋଇଲେ ଅମଙ୍ଗ ସେବେ ॥
ରାବଣ ବଇରି ଜନକ କୁମାରୀ
ଲକ୍ଷ୍ମଣଙ୍କୁ ସଙ୍ଗେ ଧରି ।
ଯାଇ ପ୍ରବେଶିଲେ ଅତ୍ରିଙ୍କ କୁଟୀରେ
କାନନେ ସୁଖେ ବିହରି ॥
ପରମ ସନ୍ତୋଷ ହେଲେ ଜାନକୀଶ
ମୁନିଙ୍କ ଆତିଥ୍ୟ ପାଇ ।

ତହିଁ ଆରଦିନ ପ୍ରାତୁଁ କରି ସ୍ନାନ
ସୀତା ସଙ୍ଗେ ବେନି ଭାଇ ।
କରିଲେ ଗମନ ଦଣ୍ଡକା ଅରଣ୍ୟ
ଯହିଁ ରହନ୍ତି ମୁନିଏ,
ଭେଟିଲେ ବାଟରେ ବିରାଧ ନାମରେ
ଦୁଷ୍ଟ ଦଇତ ଗୋଟିଏ ।

ଘୋର ଗରଜନେ କମ୍ପାଇ କାନନେ
ପହଞ୍ଚି ଜାନକୀ ଅଗ୍ରେ,
ତାଙ୍କୁ ଟେକି ନେଇ କୋଳେ ଜାକିଦେଇ
ଧାଇଁଲା ଆଗକୁ ବ୍ୟଗ୍ରେ ।
କିଛି ଦୂର ଯାଇ ରାଘବଙ୍କୁ ଚାହିଁ
ଏସନ କହେ ବଚନ,
"ରମଣୀ ରତନ ଛାଡ଼ି ଏ କାନନ
କର ଖରେ ପଳାୟନ"

ଏ ବାଣୀ ଶ୍ରବଣେ ଆରକ୍ତ ଲୋଚନେ
ସୀତାନାଥ ଶରବଳେ,
ବିନ୍ଧିବାରୁ ଦୈତ୍ୟ ହୋଇ ଅତି ଆର୍ତ୍ତ
ଛାଡ଼ିଲା ଘୋର ବୋବାଳି ।
ଛାଡ଼ି ସେ ଜାନକୀ ନେଇଗଲା ଜାକି
ରାମ ସୁମିତ୍ରା ନନ୍ଦନ,
ଏହା ଦେଖି ସୀତା ହୋଇ ଅତି ତ୍ରସ୍ତ
ବିକଳେ କଲେ ରୋଦନ ।

ଶୁଣି ଦୀନ ବଚନ ବିକଳ କନ୍ଦନ
ସୀତାଙ୍କର ସୀତାପତି,
ନ କରି ଉତ୍ତର ଦଇତର କର
ଛିଣ୍ଡି ଧିକ୍‌କାରିଲେ ଅତି ।
ପାଇ ଅତି କ୍ଲେଶ ବିରାଧ ରାକ୍ଷସ
କହିଲା ନିଜ ବୃତ୍ତାନ୍ତ,
ପୋତିଲେ ତା ତନୁ ଦଶରଥ ସୂନୁ
ଭେଟିଲା ଯାଇ କୃତାନ୍ତ ।

ଶରଣ ବତ୍ସଳ ଦଶରଥ ବାଳ
ସେଠାରୁ ଗଲେ ବାହାରି,
ପଥଶ୍ରାନ୍ତ ବାଧା ଅବା ପାନକ୍ଷୁଧା
ନ ପଡ଼େ ମନେ କାହାରି ।
ଜାନକୀ ରମଣ ଜାନକୀ ଲକ୍ଷ୍ମଣ
ଘନ କାନନ ଭିତରେ
ଯାଉ ଯାଉ ବାଟେ ଫଲ୍‌ଗୁ ନଦୀ ତଟେ
ପହଞ୍ଚି ଥିଲେ ସୁଖରେ ।

ସେ ସ୍ଥାନୁଁ ବାହାରି ଗଲେ ଚୃପଧାରୀ
ଭାରିଯା ଭାଇ ସହିତ,
ଭେଟିଲେ ବାଟରେ ଜଟାୟୁ ନାମରେ
ଶକୁନ ପକ୍ଷୀ ଅଦ୍ଭୁତ ।
ସେ ଜଟାୟୁ ପକ୍ଷୀ ଏମାନଙ୍କୁ ଦେଖି
ଦେଲା ନିଜ ପରିଚୟ,
ହେଲା ଅନୁଚର ଦାଶରଥିଙ୍କର
ହୃଦୟେ ନ ରଖି ଭୟ ।

ତହୁଁ ଚୃରଜଣ ପଞ୍ଚବଟୀ ବନ
ଯାଇ ନିର୍ମିଲେ କୁଟୀର ,
କରି ଅବସ୍ଥାନ ଦେଖି ଦୃଶ୍ୟମାନ
ହୁଅନ୍ତି ମୋଦେ ଅଧୀର ।

—:୦:—

## ଲକ୍ଷ୍ମଣଙ୍କ ହେମନ୍ତ କାଳ ବର୍ଣ୍ଣନା

ପ୍ରବେଶିଲା ଆସି ହେମନ୍ତ କାଳ,
ଧାନ ଶସ୍ୟ ଶୋଭା କେଦାର ମାଳ ।
ଝୁଲୁ ଝୁଲୁ ବାତେ ନୁଆଇଁ ଶିର
କହଇ ଚଷାକୁ ବିନୟେ ଗିର ।
"ମୋ ଲାଗି ପାଇଛୁ କଷଣ ଯେତେ,
ବଢ଼ାଇ ଦେଇଛି ଫଳ ମୁଁ ସେତେ ।"
କ୍ଷେତ ଦେଖି ଚଷା ଆନନ୍ଦ ଅତି
ବିଭୁଙ୍କ ଚରଣେ ରଖିଲା ମତି ।
ଦିନ ହୋଇ ଶ୍ରେଷ୍ଠ ବଢ଼ିଲା ରାତି,
କମିଲା ଧରାରୁ ଦିନେଶ ତାତି ।
ଶୁଭେ ଚଉଦିଗେ ହଳିଆ ଗୀତ,
ସୁଫସଲ ଦେଖି କେଡ଼େ ସେ ପ୍ରୀତ ।
ପାଣ୍ଡୁର ଦିଶେ ଆକାଶ,
ମାଳ କଇଁ ଫୁଟି ସରୋବର ଜଳେ
କରଇ ଶୋଭା ପ୍ରକାଶ ।

କେହୁ ହଳ ଯୋଚ ଫେଡ଼ୁଚ ଗୁଡ଼,
ଅନାଇଚଲ ଏଣେ କୁଡକୁ କୁଡ଼ ।
ବଲମାଳ ହଟେ ଆଖୁର ରେଫା
ଟଡଲ ଶିଶିର ଟୋପାକୁ ଟୋପା ।
ଉତ୍ତରୁଁ ବହୁ ପବନ,
କମଳ ବନକୁ ପକାଇଲା ପୋଡ଼
ମଧୁପ ଅତ ବଷଣ୍ଣ ।
ହେଲାଣି ସଞ୍ଜ କାକର ଅତ,
ଶ୍ରବା ନାହିଁ କାଉ ଆଉ ତା ପ୍ରତ ।
ଆସୁଅଛି ମାଡ ଦ୍ରଖର ଶୀତ,
ପ୍ରାଣୀଏ ଏକାଳେ ପାବକ ପ୍ରୀତ ।
ଗ୍ରାମେ ଗ୍ରାମେ ଶିଖ ପଶି
ଗଣ୍ଟିବ ନିବାସ କରଦେଲ ଗ୍ରାସ
ସମ୍ପତ୍ତିକ ଦେଲ ଧ୍ୱଂସି ।
ନର ଚନ୍ତୁ ଶୁଖି ଖାରୁଆ ହଟେ
ଢୋଉାଇ ଦେଲାଣି କୁହୁଡ଼ି ହଟେ ।
ଛୁଟିଲାଣି ଜମେ ପାଦପ ଶିଷ,
ଧବଳ ତୁଷାରେ ମଣ୍ଡିତ ଶିର ।
ପୁଷ୍ପହୀନ ଉପବନ,
ଶିଶିରେ ରଞ୍ଜିତ ଫତର ଗୁଡ଼କ
ହଟେ ଅତ ଶୋଭବନ ।
ଏକାଳେ ଲକ୍ଷ୍ମଣ ରାମଙ୍କୁ ଚହିଁ,
ପୁଚ୍ଛିଲେ "ଏ କଏ ଆସୁଚ ଧାଇଁ" ?
ବୁଲଉ ନୟନ ଜାନକୀ ପତ,
କଲେ ନିରୀକ୍ଷଣ ତାହାର ଗତ ।
ରୂପ ବଦଳାଇ ରାମଙ୍କ ପାଶେ,
ଆସି ସେ ତାହାଙ୍କୁ ଏମନ୍ତ ଭାଷେ ।
କଏ ସେ ଆପଣ କଏ ଏ ନାରୀ,
କାହିଁକ ହୋଇଚ ବକଳ ଧାରୀ ?
ଏ ଘନ କାନନେ ରହ
ରୁଧୀର ପିପାସୁ ମାୟାରେ ଧୂଷଣ
ରାକ୍ଷସଙ୍କ ହାଉ ସହ ।
ଉତ୍ତରିଲେ ରାମ ତା କଥା ଶୁଣି
ତାର ପରିଚୟ ପୁଚ୍ଛନ୍ତ ପୁଣି ।

ବଖାଣିଲା ସବୁ ପାଖରେ ବସି,
ପଞ୍ଚରୂପେ ବର କହିଲା ହସି ।

"ମଙ୍ଗଳ ବେଳାରେ ଘଟିଚ ଯୋଗ
ଏ ନାରୀ ରତନ କରନ୍ତୁ ଭୋଗ ।"
ଏ ବାଣୀ ଶ୍ରବଣେ କହିଲେ ତାକୁ,
"ଯାଅ ଅବଳମ୍ବେ ଲକ୍ଷ୍ମଣ ଠାକୁ" ।
ଲକ୍ଷ୍ମଣ ସମୀପେ ଯାଇ ସେ ଖରେ,
କହିଲା ତାହାଙ୍କୁ ହରଷଭରେ ।
"ମଙ୍ଗଳ ବେଳାରେ ଘଟିଚ ଯୋଗ,
ଏ ନାରୀ ରତନ କରନ୍ତୁ ଭୋଗ" ।
ଏ ବଚନ ଶୁଣି ସୁମିତ୍ରାସୁତ,
"ରାମଙ୍କ ଦାସ ମୁଁ ଏକଥା ସତ ।
ଅଛୁକ ତୋ ଇଚ୍ଛା ହେବାକୁ ଦାସୀ ?
ରହୁଚୁ କାହିଁକ ଅରଣ୍ୟବାସୀ" ।
ବଦଳାଇ ମାୟା ବେଶ ସେ ନାରୀ,
ବସିଲା ଲକ୍ଷ୍ମଣ ଦେବାକୁ ମାରି ।
ତା ସ୍ୱଭାବ ଦେଖି ଲକ୍ଷ୍ମଣ ବୀର,
ତକ୍ଷଣେ କାଢ଼ିଲେ ତୁଣୀରୁ ତୀର ।
କାଟିଲେ ତାହାର ଶ୍ରବଣନାସା,
କହିଲେ ତାହାକୁ କର୍କଶ ଭାଷା ।
ଗଲା ତା ଶରୀର ରୁଧୀରେ ବୁଡ଼ି,
ଆକାଶ ମାର୍ଗରେ ଗଲା ସେ ଉଡ଼ି ।
ଯହିଁ ଥିଲେ ଖରଦୂଷଣ ଭାଇ,
ମିଛ ସତ ଯୋଡ଼ି କହିଲା ଯାଇ ।

***

## ଦ୍ୱିତୀୟ ସର୍ଗ

ସୂର୍ପଣା ବଚନ କରଣ ଶ୍ରବଣ
ରୋଷ ବହି ଖର ମନେ,
ଚଉଦ ଅସୁରେ ଆଦେଶିଲା ଖରେ
ଯିବାକୁ ଦଣ୍ଡକାବନେ ।

ଆଦେଶେ ଦଇତେ   ଆସିଲେ ତ୍ୱରିତେ
ରଣବେଶେ ହୋଇ ସଜ,
ଜବେ ଗଲେ ଚଳି   ସରୂପାକୁ ଧରି
ଉଡ଼ାଇ ମାର୍ଗେଣ ରଜ ।
ଅତି ମାୟାବିନୀ   ରାବଣ ଭଗିନୀ
ଦଇତଙ୍କ ଆଗେ ଆଗେ,
ଦେଖାଇଲା ଯାଇ   କିଛି ଦୂରେ ଥାଇ
ଜର ଜର ହୋଇ ରାଗେ ।
ମହା ବଳୀୟାର   ରାମ ବୀରବର
ଦେଖି ଦାନବ ନିକର,
ଦଇତ ଉଦ୍ଦେଶ୍ୟେ   ହରଷ ମାନସେ
କାଢ଼ିଲେ ତୂଣୀରୁ ଶର ।
ଗୁଣରେ ତଡ଼ାଇ   ଗୁଡ଼ିଇ ଛୁଡ଼େଇ
ପେଷିଲେ ମୁନିଆଁ ବାଣ,
ରଣଭୂଇଁ ପରେ   ପଡ଼ିଲେ ଅସୁରେ
ନ ରହିଲା ତାଙ୍କ ଠାଣ ।
ହେଲା ରଣଭୂଇଁ   ଶୋଣିତର ନଈ
ନଟାର ସର୍ପା ସମ୍ଭାଳି,
ଲୋତକ ଗଡ଼ାଇ   ଚଇଁ ଚଇଁ ହୋଇ
କାନ୍ଦିଲା ଖରକୁ ଯାଳା ।
ଖର ତା କଥାରେ   ଅନାଇଁ ରାଗରେ
ରଥୀମାନଙ୍କୁ ଡକାଇ,
ଆଣି ପାଶେ ତୋର   ରଣର ବେଭାର
କହିଲା ସବୁ ବୁଝାଇ ।
ରଥକୁ ସଜାଇ   ସୁବେଗ ପକାଇ
ଦଇତ ମାନଙ୍କୁ ଧରି,
ରଣଭୂଇଁ ପାଶ   ହୋଇଣି ହରଷ
ଗଲା ବିନାଶନେ ଅରି ।



ଅଗାତ ବିଜୟ ଆଶେ ଆସିଚ ସେ ଧାଇଁ,
ରାମଙ୍କର ବଳକଳ ଲବେ ଜାଣି ନାହିଁ ।
ଅମଙ୍ଗଳ ଦରଶନ କଲା ସେ ବାଟରେ,
ଶ୍ୟେନ ପକ୍ଷୀଟିଏ ଆସି ବସିଲା ରଥରେ ।
ପାଦପ ଡାଳରୁ ଫଳ ପଡ଼ୁଅଛି ଝଡ଼ି,
ଶୁଭୁଅଛି ଶୃଗାଳର ବିକଟାଳ ରଡ଼ି ।
ଆଣ୍ଟୋଇ ପଡ଼ିଲେ ତାର ରଥେ ଯୋଗ୍ୟ ବାଜି,
ପାଉଁଶିଆ ଦିଶିଲଣି ନଭେ ମେଘ ରାଜି ।
ବଢ଼ିଲା ଦେହର ପରି କମ୍ପେ ତା ଶରୀର,
ଧୀରେ ଧୀରେ ହତୋତ୍ସାହ ହେଲା ଖରବୀର ।
ପରବେଶ ହେଲା ଆସି ସମର ପ୍ରାଙ୍ଗଣେ,
ସାହସ ବାନ୍ଧି ମାନସେ ହେଲା ଠିଆ ରଣେ ।
ଏଣେ ଜାନକୀ କୁଟୀରେ ରଣର ହୁଙ୍କାର,
ଶୁଣି ପୁଚ୍ଛିଲେ ରାମଙ୍କୁ ଘୋର ସମାଚାର ।
ଦାଶରଥି ଜାଣି ଜାନକୀ ହୃଦୟ,
କହିଲେ, "ଗୋ ସୀତେ ନହୁଅ ଅଥୟ ।
ମନେ ବହ ତ୍ରାଣ ଆସନ୍ତି ଅସୁରେ,
ମୋ ବାଣ ଆଘାତେ ଯିବେ ଯମପୁରେ ।
ନ ଜାଣନ୍ତି କେହି ରାମ ପରାକ୍ରମ,
ଦାନବ ମାନସେ ଉପୁଜନ୍ତି ଭ୍ରମ ।
ନିରତ ସେମାନେ ହିଂସା ମନେ ବହି,
ନିଜ ଇଚ୍ଛାମତେ ଦହୁଛନ୍ତି ମହୀ ।
କରିଛି ଶପଥ ଏ କାନନେ ଥାଇ,
ରାକ୍ଷସଙ୍କ ଦାଉ ଦେବାନି ଲାଗିଇ ।
ଦକ୍ଷିଣ ବାହୁ ମୋ ଦେଖ କମ୍ପମାନ,
ସୂଚଇ ଦଏ ଏ ବିଜୟ ନିଶାଣ" ।
ଲକ୍ଷ୍ମଣଙ୍କୁ ଡାକି କହନ୍ତି ରାଘବ,
"ଆସୁଛନ୍ତି ଦେଖ ଅସଂଖ୍ୟ ଦାନବ ।
ରହ ଗୁମ୍ଫା ମଧ୍ୟେ ଜାନକୀଙ୍କ ପାଶେ,
ଯାଏ ମୁଁ ଆଗକୁ ଦଇତ ବିନାଶେ" ।
ଏହା କହି ରାମ ହେଲେ ଆଗଭର,
ଚାଉଅଛି ଶୋଭା କରେ ଧନୁଶର ।
ବନ ପ୍ରଜ୍ୱଳିତ ରାମଙ୍କ ତେଜରେ,
ଅସୁରେ ଏ ପଟେ ରହିଲେ ଲାଜରେ ।
ନେଲା ରଥ ବାହି ସାହସରେ ଖର,
ରାମଙ୍କ ଉପରେ ବରଷିଲା ଶର ।
କଏ ଧରିଛନ୍ତି ଶାଣଦିଆ ଅସି,
ବାର ବାର ପୁଣି ଦେଉଛନ୍ତି ଘଷି ।

କିଏ ବା ଧରିବ ମୁଦ୍‌ଗର ବିଶାଳ,
ଭ୍ରକୁଟି ମାନସେ ରାମଙ୍କ ଏ କାଳ।
ବିକଟ ଚିତ୍କାର ଶୁଭେ ବାରମ୍ବାର,
କରାଉଛି ମନେ ଭୟର ସଞ୍ଚାର।
ମହାବାହୁ ରାମ ଏସନ ସମୟେ,
ବରଷିଲେ ବାଣମାନ ଏକଲୟେ।
ପାବକ ନିକଟ ଆସି ପତଙ୍ଗ ଯେସନ,
ଉଡି ଉଡି ସେହିଠାବେ ହରାନ୍ତି ଜୀବନ।
ରାମଙ୍କ ସମୀପ ଆସି ଅସୁରେ ତେସନ,
କିଛୁକ୍ଷଣ ପରେ ଯାଇ ଭେଟିଲେ ଶମନ।

— ** —

ରଣଭୂମି ଆଜି ଶୋଣିତେ ରଞ୍ଜିତ,
କ୍ଷଣକ ମଧ୍ୟରେ ନିନାଦ ରହିତ।
ସର୍ଜିଯୁଦ୍ଧ ନାଆଁ ଗର୍ଜୁଥିଲେ କାଲି,
ବର୍ଜି ପ୍ରାଣ ଏବେ ଲୁଣ୍ଠୁଛନ୍ତି ବାଲି।
କାଢିବାକୁ ନାହିଁ ତାଙ୍କ ପାଇଁ କିଏ,
ଦେଖି ଏ ଘଟଣା ଆନନ୍ଦ ବୃଷିଏ।
ସ୍ୱଭାବେ ଦଇତ ହିଂସାପରାୟଣ,
ଶାହି ଶାହି ଡାକ ଦେଲେ ଜୀବଗଣ।
ଆକାଶରେ ଥାଇ ଦେବତା ନିକର,
ଦେଲେ ରାଘବଙ୍କୁ ପୁଷ୍ପ ଉପହାର।
ଥିଲା ଏହି ଭୂଇଁ ବିଷାଦହାରିଣୀ,
ସମ୍ପ୍ରତି ହୋଇଛି ବିକଟକାରିଣୀ।
ମଡ଼ ଶରପଟେ ବୁଲିଲେ ବିଲୁଆ,
ତାଙ୍କୁ ତଡ଼ିବାକୁ ଉଡ଼ୁଅଛି କୁଆ।
ଲଗିଛି କଳହ ଗଧିଆ ଶ୍ୟେନର,
ଏ ସମୟେ କୋକଶିଆଳି ହାକର।
ଦେଖିଲେ ଏ ଦୃଶ୍ୟ ଉପୁଜଇ ତ୍ରାସ,
କାଳ ଉପହାସେ କରଇ କି ଗ୍ରାସ।
ଜାନକୀ ଲକ୍ଷ୍ମଣ ଗୁହାରୁ ବାହାରି,
ଭେଟିଲେ ଏ କାଳେ ରାମ ବୃପଧାଶ।
ତାହାଙ୍କର ଦେଖି ଅକ୍ଷତ ଶରୀର,
ଉଭୟେ ହୋଇଲେ ଆନନ୍ଦେ ଅଧୀର।

***

ହୋଇଣ ଚକିତ ଭୟେ ବିକମ୍ପିତ
ଲଙ୍କାପାଇ ଅକମ୍ପନ,
ସଂଗ୍ରାମ ସଙ୍ଗତ କହିଲା ଜଣତ
ଲଙ୍କାଧୀପ ଦଶାନନ।
ସରପା ଏକାଳେ ପବନ ବେଗରେ
ଲଙ୍କାପୁରେ ଗଲା ଚଳି,
ସତେକଇ ସତେକଇ କହିଲା ବୁଝାଇ
ଦଶାନନ ମହାବଳୀ।
ମଶକ ଯେସନ ଖୋଜୁଥାଏ ରନ୍ଧ୍ର
ସଦା ରକତ ସନ୍ଧାନେ,
ଅହରହ ଛିଦ୍ର ଖୋଜଇ ତେସନ
ଖଳ ସ୍ୱକାର୍ଯ୍ୟ ସାଧନେ।
ସରୂପା ବଚନ ଶୁଣି ଦଶାନନ
ଜାନକୀ ହରଣେ ବଳାଇ ମନ,
ସାରଥୀ ଡ଼କାଇ ସ୍ୟନ୍ଦନ ଅଣାଇ
ମାରୀଚ ସମୀପେ ଗଲା ବହନ।
ଶତାଙ୍ଗୁ ଓହ୍ଲାଇ ଧୀରେ ଧୀରେ ଯାଇ
ନିକଟେ ତାହାର ହେଲା ହାଜର,
ଲଭି ତା ଦର୍ଶନ ମାୟାରେ ନିପୁଣ
ସେ ମାରୀଚ ତାକୁ ଯୋଡ଼ିଲା କର।
କୁଶଳ ବାରତା ପୁଚ୍ଛି ଦଶମଥା
ଗମନ କାରଣ ଦେଲା ବଖାଣି,
ମାରୀଚ ତା ଶୁଣି ଯାହାଥିଲା ଜାଣି
କରିଲେ ବର୍ଣ୍ଣନା ରାମ କାହାଣୀ।
ମରଣ ଯାହାର ହୁଅଇ ହାଜର
ନ ଶୁଣେ ସେ କାର ଭଲ ବଚନ,
ତାକୁ କଉଶଳେ ଅବା ବଳେ ଛଳେ
କରଇ ଆୟତ୍ତ ଅନ୍ତ ବହନ।
ସ୍ୟନ୍ଦନେ ଆରୋହି ଖରେ ଗଲେ ଦୁଇ
ରାମଥିଲେ ଯହିଁ ଦଣ୍ଡକା ବନେ,
ଖଣ୍ଡେ ଦୂରେ ପଥୁଁ ଅବରୋହି ରଥୁଁ
ମାରୀଚ ଏକାଳେ ବିଷଣ୍ଣ ମନେ।
ହେମକାନ୍ତି ପରି ମୃଗରୂପ ଧରି
ରାମଙ୍କ କୁଡ଼ିଆ ପାଶେ ଗମିଲା,

ତା ରୂପ ଦର୍ଶନ ସୀତା ଛନ୍ନଛନ୍ନ
ଧରିବାକୁ ତାଙ୍କ ମନ ବଳିଲା ।
ଜାନକୀ ବଲ୍ଲଭ ସୀତା ମନୋଭାବ
ଜାଣି ମୃଗ ପଛେ ଗଲେ ପ୍ରଖରେ,
ଗୋଡ଼ାଇ ଗୋଡ଼ାଇ ଅବଶେଷ ଯାଇ
ନେଲେ ପ୍ରାଣ ତାର ତୀକ୍ଷ୍ଣ କାଣ୍ଡରେ ।
ଜନମିଛ କେବେ କେଉଁ ଯୁଗେ ଭବେ
ମୃଗ ହାଟକ ବରଣ,
ତଥାପି ଲୋଭରେ ମିରଗ ପଛରେ
ଧାଇଁଲେ ସୀତା ରମଣ ।
ଗଲାବେଳେ ପ୍ରାଣ ଡାକିଲା ଲକ୍ଷ୍ମଣ
"ରକ୍ଷାକର ଆସି ଅତି ଚଞ୍ଚଳ" ।
ରାମ କଣ୍ଠସ୍ୱର ପରି ଆର୍ତ୍ତସ୍ୱର
ଶୁଣି ବଇଦେହୀ ଅତି ବିକଳ ।
କହିଲେ ଲକ୍ଷ୍ମଣ ! ତୁରିତ ଗମନ
କରି ରାମ ପାଶେ ପୁଚ୍ଛ କୁଶଳ,
କାହିଁକି କେଜାଣି ହୃଦ ହୁଏ ହାଣି
ଶୁଣିଲା ବେଳୁଁ ସେ ଧ୍ୱନି ବିକଳ" ।
ସୁମିତ୍ରା ନନ୍ଦନ ନକହି ବଚନ
ରାମ କଥା ସ୍ମରି ଚର୍କି ନଥିଲେ,
ଜନକନନ୍ଦିନୀ ଦେଖି ତାଙ୍କୁ ତୁନି
ଯିବାପାଇଁ ଆଉଥରେ କହିଲେ ।
ଲକ୍ଷ୍ମଣ ଉତ୍ତରେ କହିଲେ "ସମରେ
ଦେବତା ଦାନବ ଗନ୍ଧର୍ବ ଚଳି,
ରାମ ସଙ୍ଗେ ଯୁଦ୍ଧ କଲେ ହେବ ବଧ
ତାଙ୍କ ସରି ଭବେ ଅଛି କେ ବଳୀ" ।
ତାଙ୍କ ରୁକ୍ଷ ଭାଷା ଶ୍ରବଣେ ସହସା
କହନ୍ତି ଏସନ ସୁମିତ୍ରାସୁତ,
"ନାଗିଏ ଅନ୍ତ ରଟନ୍ତି ସତତ
ଚତ୍ତ ସେମାନଙ୍କ ନୁହଇ ପୂତ ।
ପୁଣି ଘୋର ବନେ କପଟ ନର୍ତ୍ତନେ
ଛାଡ଼ି ଏକୁଟିଆ ଯିବି ପଳାଇ" ?
ବାଅର କଥାରେ ଭାଉଜ ରାଗରେ
ନାନା କଥା କହି ଦେଲେ ଚଳାଇ ।

"ଦେଲ ମୋତେ ଗାଳି ତୁମ ଆଜ୍ଞା ପାଳି
ଯାଉଛି ବନକୁ ଲବେ ନ ଡ଼ର."
ଏହା କହି ସାକ୍ଷି ଦେବତାଙ୍କୁ ରଖି
ଭାଉଜଙ୍କ ପାଶୁଁ ହେଲେ ଅନ୍ତର ।



## ସୀତା ଚୋରୀ

ଲକ୍ଷ୍ମଣ ଗମନ ଲଙ୍କେଶ ଦେଖି ହରଷଭରେ,
କୁଡ଼ିଆ ଆଗରେ ପ୍ରବେଶ ହେଲା ତପି ବେଶରେ ।
ଜାନକୀ ବନ୍ଧୁର ବ୍ରାହ୍ମଣ ଦେଲେ କୁଶ ଆସନ,
ଜଳ ଧୋଇବାକୁ ଚରଣ ଆଣି ଦେଲେ ବହନ ।
ମଇଥିଳୀ ରୂପ ଦର୍ଶନେ ହୋଇ ମୁଗ୍ଧ ବିଶେଷ,
ବୈରିଲ ଅଙ୍ଗ ବଦନେ ନାହିଁ କଳଙ୍କ ଲେଶ ।
ନାନା କଥା କହି ଭଣ୍ଡଇ ଭଣ୍ଡ ତପସ୍ୱୀ ବସି,
ତା ବଚନ ଶୁଣି ବୈଦେହୀ ଉତ୍ତରିଲେ ଭରସି ।
କ୍ଷୁଧାତୁର ସିଂହ ମୁଖରେ କିଆଁ ଦେଉଚୁ କର,
ଖୁରକୁ ଗୃଧ୍ରୁ ଚୁଞ୍ଚଭରେ ତୋର ନାହିଁକି ଡ଼ର ?
ସାପଗାତେ ହାତ ଭରଣ୍ଡ କିଆଁ କରୁଛୁ ନେଇ,
ଝଡ଼ର କରିବୁ ନିର୍ମଳ ଚକ୍ଷୁ ନୟନେ ଦେଇ ।
କାଳକୂଟବିଷ ପିଇବୁ ରଖି ହଜମ ଆଶା,
ଶ୍ରୀରାମବନିତା ଛୁଇଁବୁ ତୋର କେତେ ଭରସା ।
ଗଳେ ଶିଳା ବାନ୍ଧି ହେବୁକି କେବେ ସାଗର ପାର ?
ଫଣୀ ଦନ୍ତେ ହାତ ବଜାଇ କିଏ ପାରିବ ମାର ?



ପାପିଷ୍ଠ ଲଙ୍କେଶ ବଦଳାଇ ବେଶ
ଦେଖାଇ ସ୍ୱରୂପ ଜାନକୀ ଧରି,
ବସି ରଥପରେ ଆକାଶ ମାର୍ଗରେ
ଚଳିଲା ଅାହ୍ଲାଦେ ଲଙ୍କା ନଗରୀ ।
ଜନକ ଦୁହିତା ଶ୍ରୀରାମ ବନିତା
ଗଲାବେଳେ ରଥେ ଅତି ବିକଳେ,
ଅନାଉ ପଛକୁ ଲକ୍ଷ୍ମଣ ରାମଙ୍କୁ
ନୟନ ପୂରାଇ ଲୋତକ ଜଳେ ।

କାହିଁ ଅଛ ରାମ ସୁମିତ୍ରାନନ୍ଦନ
ଦଶାନନ ମୋତେ ନେଉଛି ହରି,
ଅନ୍ୟାୟକୁ ଶିକ୍ଷା ଦେଇ ଧର୍ମରକ୍ଷା
କର ରଘୁନାଥ ପଣ ତୁମରି ।
ହେ ବନ ଦେବତା ତୃଣ ତରୁଲତା !
କହୁଛି ବନେୟୁ ପଶି ଶରଣେ,
କହିବ ରାମଙ୍କୁ ଅବା ଲକ୍ଷ୍ମଣଙ୍କୁ
ସୀତାଙ୍କୁ ହରାଇ ନେଲା ରାବଣ ।"
ଜାନକୀ ଏକାଳେ ଦେଖି ବୃକ୍ଷଡ଼ାଳେ
ଖଗେଶକୁମାରେ କହିଲେ ରାଜ,
"ଜଣାଇବ ରାମ ଅଥବା ଲକ୍ଷ୍ମଣ
ନେଲା ଦଶାନନ ସୀତା ହରାଇ" ।
ଖଗେଶ ନନ୍ଦନ ଜାନକୀ ରୋଦନ
ଶୁଣି ଉପରକୁ ଉଠି ଗୃହିଁଲ,
ସତୀଙ୍କୁ ନେବାର ଦେଖି ଦଶଶିର
ପକ୍ଷ ଝାଡ଼ି ବସି କ୍ରୋଧେ କହିଲ ।
"ଶୁଣ ବିଂଶପାଣି ଏ ରାମ ରମଣୀ
କେଉଁ ଦୋଷେ ତାଙ୍କୁ ନେଉ ହରିଛ ?
ଏ ପାପ କରମ କର ଦୁଷ୍ଟ ଧର୍ମ
ରଖ ରଖ ରଥ ନ ଯା ଚଳାଇ ।
ଜନ୍ମ ଉଚ୍ଚ କୁଳେ ପୌଲସ୍ତ୍ୟ ବଂଶରେ
କଲୁ ନୀଚ କର୍ମ ସାରା ଜୀବନ,
କେତେ ପରନାରୀ ନେଲୁ ଅପହରି
ହେଲଣି ନିକଟ ତୋର ନିଧନ ।
ମଣିହରା ଫଣୀ ପ୍ରମାଦ ନ ମଣି
ନେଉଅଛୁ ବାନ୍ଧି କାଳ ପଣେନ୍ତ,
ରଖି ତୋ ଶରୀରେ ଲଢ଼େଇ ମୋ ସଙ୍ଗେ
କରେ ଦେଖିବା ତୁ ନେବୁ କେମନ୍ତେ" ।
ହୋଇ କ୍ରୋଧଭର ବିଶ୍ରବାକୁମାର
ଜଟାୟୁ ବଚନ ଶୁଣି ଫେରିଲା,
ହୋଇ ହେଠାହେଠି ନୟନ ତରାଟି
ଯୁଝିବା ନିମିତ୍ତ ଧନୁ ଧଇଲା ।
ଦୁହିଁଙ୍କ ମଧ୍ୟରେ ଲାଗିଗଲା ଘୋରେ
ଝୁଡ଼ଣ ସମର ବହୁ ସମୟ,
ବୃଦ୍ଧ ପକ୍ଷୀରାଜ ଖଗେଶ ଆତ୍ମଜ
ନଥାଇ ଆୟୁଧ କଲା ଅଥୟ ।
ଦେବତା ବଇରି ଶେଷେ ଅସି ଧରି
ଜଟାୟୁର ପକ୍ଷ ଛିଣ୍ଡାଇ ଦେଇ,
ଚଢ଼ି ବିମାନରେ ହରଷ ମନରେ
ଲଙ୍କାଦିଗେ ଗଲା ସୀତାଙ୍କୁ ନେଇ ।
ପ୍ରାଣଠାରୁ ବଳ କିଛି ନାହିଁ ଏ ଜଗତେ,
ଜଟାୟୁ ଛାଡ଼ିଲା ପ୍ରାଣ ଅନ୍ୟାୟ ନିମନ୍ତେ ।

—**—

## ତୃତୀୟ ସର୍ଗ

## ରାବଣପ୍ରତି ସୀତାଙ୍କ ତିରସ୍କାର

ଦୂଷଣ ଜନିତ ବିଶ୍ରବାନନ୍ଦନ,
କରଇ ବିମାନେ ଲଙ୍କାକୁ ଗମନ ।
ଏକାଳେ ଜାନକୀ ତାହାଙ୍କୁ ଅନାଇଁ
କହନ୍ତି ରାଗରେ ଲୋତକ ଗଡ଼ାଇ ।
"ରେ ଅଧର୍ମାଗ୍ରସ୍ତ ଥିଲ ଯେବେ ବଳ,
କାହିଁକି ମୋ ଆଗେ ଦେଖାଇଲୁ ଛଳ ।
ପଠାଇ ବନସ୍ତେ ମୋ ପତି ଦିଅର,
କରୁ ଆଜ ମୋତେ କେଉଡ଼େ ହରିବାର ।
ଦେଖି ଏକୁଟିଆ କୁଡ଼ିଆ ଭିତରେ,
ବସିଲୁ ଦୁଆରେ ବାବାଜୀ ବେଶରେ ।
ବଳେ ପରନାରୀ ଆଣିଲୁ ଉଠାଇ,
କି ବୋଲିବେ ଲୋକେ କହିତ ବିଚାରି ?
ତୋ ମନ କାମନା ହୋଇବ ବିଫଳ,
ନ ପାରିବୁ ବଞ୍ଚି ପିଇ ହଳାହଳ ।
ଧର୍ମରକ୍ଷା ପାଇଁ ରାଜାର ଜନମ,
କରୁଛୁ କିଆଁ ତୁ ଏ ପାପ କରମ ?
ବ୍ରହ୍ମାଣ୍ଡେ କିଏ ସେ ଅଛିରେ ଏପରି ?
ରାମ ସଙ୍ଗେ ଯିଏ ହେବାକୁଟି ସରି ।
ଅନ୍ତିମ କାଳ ତୋ ଆସିଲା ପାଖେଇ,
ଯମପାଶେ ରାମ ଦେବେ ତ ପଠେଇ" ।

ଏପରି ସମୟେ ପାଞ୍ଚୋଟି ବାନର,
ଦେଖିଲେ ଜାନକୀ ଗିରିର ଉପର ।
ଆପଣା ଦେହରୁ ଅଳଙ୍କାର କାଢ଼ି,
ଖଗରେ ତଳେ ଦେଲେ ହିକଳେ ଫୋପାଡ଼ି ।

***

## ଜାନକୀଙ୍କର ଲଙ୍କା ପ୍ରବେଶ

ଲଙ୍କାପୁରେ ଯାଇ ଦଶାନନ ରଥ,
ଅତିକ୍ରମି ବହୁ ନଦୀଗିରି ପଥ ।
ଓହ୍ଲାଇ ତହିଁରୁ ସତୀ ଜାନକୀଙ୍କି,
ରଖିଲା ଦେଖାଇ ସକଳ ନାରୀଙ୍କି ।
ପାହିଲା ଦୁଃଖର ରଜନୀ ଉଦେ ହେଲେ ଭାସ୍କର,
ସାରିଲା ସକାଳୁ ଗାଧୁଆ ଏଣେ ଲଙ୍କା ଈଶ୍ୱର ।
ଜାନକୀ ସମୀପେ ପ୍ରବେଶି ଭାଷେ ବିନୟ ବାଣୀ,
"ଅଭେଦ୍ୟ ଏ ଲଙ୍କା ରାଇଜେ ହୁଅ ମୋ ପାଟରାଣୀ
ଦେଖ ଚଉଦିଗେ ସାଗର ବେଢ଼ିଅଛି ଏ ଲଙ୍କା,
ନ ପାରନ୍ତି ପଶି କେବେ ସେ ଅମରେ ନିଶଙ୍କା ।
ମଣି ମାଣିକ୍ୟରେ ପୂରିତ ଦେଖ ଏହି ନଗରୀ,
ଶଚୀପତି ଆଦି ଦେବତାମାନେ ଅଛନ୍ତି ଡରି ।
ଅଧମ ରାମ କି ପଶିବ ଏହି ସାଗର ମଧ୍ୟରେ ?
ଯାର ଚଉପାଖେ ଅଛନ୍ତି ବହୁ ରାକ୍ଷସବୀରେ ।
ରାମ ଆଶା ଛାଡ଼ି ମନରୁ ଭଜ ମୋତେ ଏଥର,
ବିଭବ କୋଳରେ ବିହରି ପୋଛ ଲୋତକ ଝର" ।

—୧୦୪—

ଶ୍ରୀରାମ ରମଣୀ ଦଶାନନ ବାଣୀ
ଶୁଣି ଉତ୍ତରିଲେ ତାହାଙ୍କୁ ଚଳ,
"ପୂରିଲା ତୋ କାଳ ରେ ବର୍ବରା ବାଳ
ରାମଙ୍କ ତେଜରେ ଯିବୁ ତୁ ଜଳି ।
ରାମ ପରାକ୍ରମ ନ ଜାଣି ଅଧମ
କଥା ବଡ଼ ବଡ଼ କହୁ ମୋ ଆଗେ,
ଧରାରୁ ଅସୁରେ ଯିବେ ଯମପୁରେ
ରଘୁନାଥ ଶର ପେଷିଲେ ରାଗେ ।"

ଜାନକୀ ବଚନ ଶୁଣି ଦଶାନନ
ରଖିଲା ତାହାଙ୍କୁ ଅଶୋକ ବନେ,
ବର୍ଷେ କଣ୍ଟକରି ସେଠାରୁ ବାହାରି
ଆସିଲା ଦଇତ ବିଷଣ୍ଣ ମନେ ।
ଶୋକ ଶୋଷ ବାଧା ନିବାରଣେ ସୁଧା
ଆଣି ପୁରନ୍ଦର ଦେଲେ ସୀତାଙ୍କୁ,
ପରିଚୟ ଦେଇ ସେତକ ସେ ପିଇ
କଟାଇଲେ ଦିନ ସ୍ମରି ରାମଙ୍କୁ ।

—୧୦୪—

## ରାମ ମୃଗମାରି ଫେରିବା

ରାମ ମୃଗମାରି ବନମଧ୍ୟୁ ଫେରି
ଲକ୍ଷ୍ମଣଙ୍କୁ ବାଟେ ଭେଟି ତଟସ୍ଥ,
"ଜାନକୀଙ୍କି ଛାଡ଼ି ଆସିଲ କପରି ?
ବୋଲି ପୁଚ୍ଛି ତାଙ୍କୁ ହେଲେ ବ୍ୟଗ୍ର ।
ଜାନକୀ ନ ଦେଖି ହୋଇ ଅତି ଦୁଃଖୀ
କହନ୍ତି ଏସନ ରଘୁ ଲକ୍ଷ୍ମଣ,
"ଜନକନନ୍ଦିନୀ ହୋଇ ଅନାଥିନୀ
କାହିଁ ଗଲା ମୋର ପ୍ରାଣଚନ୍ଦନ ।
କି ଅବା ଅସୁରେ ଖାଇବା ଆଶାରେ
ଧରି ତାକୁ ବନେ ଗଲେ ପଳାଇ,
ଅବା ତୋ ପଛରେ ଗଲେ ଅବାଟରେ
ବୁଲୁଥିବେ ବନେ ବାଟ ନ ପାଇ ।
ମୋ ଆଜ୍ଞା ନ ପାଳି ଗଲୁ ବନେ ଛାଡ଼ି
ହଂସ ଜନ୍ତୁ ଯହିଁ କରନ୍ତି କ୍ରୀଡ଼ା,
ଅବା ବାଘ ଆସି ଦେଲା ତାଙ୍କୁ ଗ୍ରାସି
କହିବାକୁ ଦାଣ୍ଡେ ଲାଗୁଛି ବ୍ରୀଡ଼ା ।
ଅବା ଲତା ତଳେ ପତ୍ରର ଗହଳେ
ଲୁଚିଅଛି କାହିଁ ଅଭିମାନରେ,
କ୍ଷେପି ଅଗ୍ନି ବାଣ ଜାଳି ଲତାତୃଣ
ପଡ଼ିବ ସତୀ ସେ ନେତ୍ର ପଥରେ ।"
ସୁମିତ୍ରା କୁମର ରାମଙ୍କ ଏ ଗିର
ଶୁଣି ଉତ୍ତରିଲେ ଅତି କାତରେ,

"ସୀତାଙ୍କ ଆଦେଶେ ଗଲା ବନ ଦେଶେ
ଶୁଣି ଆର୍ତ୍ତସ୍ୱର ବନ ଭିତରେ" ।
ଶୋକରେ ଅଧୀର କୌଶଲ୍ୟା କୁମର
ଖୋଜି ଖୋଜି ସୀତା ହତାଶ ଅତି,
ତାଙ୍କର ସନ୍ଦେଶ ନ ପାଇ ବିଶେଷ
ରାଗରେ ଧଇଲେ ଉଗ୍ରମୂରତି ।
ଦେଖି ସେ ମୂରତି ଲକ୍ଷ୍ମଣ ସମ୍ଭ୍ରାନ୍ତ
ବୋଧିଲେ ଏପରି ଅତି ବିନୟେ,
"ବିପଦେ ଧଇର୍ଯ୍ୟ ଧରି କଲେ କାର୍ଯ୍ୟ
ଶେଷରେ ମଙ୍ଗଳ ହେବ ନିଶ୍ଚୟେ" ।
ସଉମିତ୍ରି ବାଣୀ ଶୁଣି ରଘୁମଣି
ଶାନ୍ତ କରି କୋପ ହେଲେ ଆଶ୍ୱସ୍ତ,
ଦୁଇ ଭାଇ ମିଳି ଗଲେ ବନେ ଚଳି
ବାଟରେ ଭେଟିଲେ ଖଗେଶସୁତ ।
ଲୋଟି ବସୁନ୍ଧରା ହୋଇ ଦରମରା
ପଡିଥିଲା ସେହି ଜଟାୟୁ ପକ୍ଷୀ,
ସୀତାଙ୍କ ବାରତା ଜାନକୀ ଭରତା
ଦେଇ ସେ ସହସା ମୁଦିଲା ଆକ୍ଷି ।
ଦେଖି ତା ମରଣ ଶ୍ରୀରାମ ଲକ୍ଷ୍ମଣ
ତା ପିଠି ଆଉଁଷି ଦେଲେ ଅଧୀରେ,
ବନ୍ଧୁ ହଣାହଣି କରି କାଠ ଆଣି
ତା ପିଣ୍ଡ ଦହନ କଲେ ବିଧିରେ ।
ନଖାଇ ନପିଇ ଭୂମି ଶେଜ ଭଇ
କ୍ଷୁଧାରେ ବସିଲେ ଗଛ ଛାଇରେ,
ଗୋରୁ ଘଳ ଦେଖି ଲକ୍ଷ୍ମଣ ଉପେକ୍ଷି
ଅନ୍ତରେ ମାଗିଲେ କ୍ଷୀର ଆଗ୍ରହରେ ।
ରୋଷେ ଜଳିଜର ସୁମିତ୍ରା କୁମାର
ନ ଦେବାରୁ କ୍ଷୀର ଏମନ୍ତ ଗିର,
କହିଲେ "ତୁମର ଯାହା ଅଛି ଭଣ୍ଡେ
ତା ହେବ କ୍ଷଣି ହେଉ ରୁଧିର" ।
ସବୁ ଦୁଧ ରକ୍ତ ହେବାରୁ ଚକିତ
କାନ୍ଦି କାନ୍ଦି ଧାଇ ଆହିରଗଣ,
ଧରି ରାମ ପାଦ କରି ଆର୍ତ୍ତନାଦ
କହିଲେ, 'ଏଥିରୁ କର-ତାରଣ' ।
ରାମ ଦୟା ବହି ଦୁଧ ଦେବେ ଗାଈ
କହିବାରୁ ଗଲେ ଗୋପାଳ ଘରେ,
ଦୁଧ ଦୁହିଁ ଆଣି ଥୋଇଲା ସେଠାକୁ
ଜଣେ ମୋଦଭରେ ରାମ ଆଗରେ ।
ଦୁଇ ଭାଇ ଯାକ ପିଇ ଦୁଧ ଟିକ
ବୋଇଲେ 'କି ବର ମାଗ ଗୋପାଳେ,
"ଅପୂର୍ବିକ ଦୋଷ କରି ମୋର ନାଶ"
ବୋଲି ମାଗିଲା ସେ ବର ବିକଳେ ।
ଏ ବଚନ ଶୁଣି ପୁଣି ରଘୁମଣି
ଉତ୍ତରିଲେ ତାକୁ ପ୍ରସନ୍ନ ମନେ,
ଜନମି ଦ୍ୱାପରେ ବଢ଼ିବୁ ତୋ ଘରେ
ପାଳିବ ଆନନ୍ଦେ ଅତି ଯତନେ ।
ଏହା କହି ରାମ ଛାଡି ସେହି ସ୍ଥାନ
ଖୋଜି ଖୋଜି ସୀତା ଗିରି କନ୍ଦରେ,
ନ ପାଇ ସନ୍ଦେଶ ସହି ନାନା କ୍ଲେଶ
କଲେ ପରବେଶ ଋଷ୍ୟମୂକରେ ।
ବ୍ୟଥିତ ଚିତ୍ତରେ ଗନ୍ତବ୍ୟ ମାର୍ଗରେ
ଗଲେ ବେନି ଭାଇ ସୀତା ସନ୍ଧାନେ,
ଯାଉଁ ଯାଉଁ ବାଟେ ପମ୍ପାସର ତଟେ
ପହଞ୍ଚିଲେ ଦୁହେଁ ଦୁଃଖ ବଦନେ ।
ଗୋଟିଏ ଶବରୀ ମହୋଲ୍ଲାସେ ଆସି
ପୂଜିଲା ଚରଣ ଦୁହିଙ୍କ,
ନାନା ଫଳ ତୋଷି ଆଶ୍ରମକୁ ନେଇ
ଦେଲା ନିଜ ପରିଚୟ ।
ତପନ ନନ୍ଦନ ଏକାଳେ ଦର୍ଶନ
କରି ଶ୍ରୀରାମ ଲକ୍ଷ୍ମଣ,
କମ୍ପି କମ୍ପି ଭୟେ ଭାସ୍କର ତନୟେ
କହିଲା ଯାଇ ତତ୍‌କ୍ଷଣ ।
"ଅପୂର୍ବ ମୂରତି ଯୁବକ ଦୁଇଟି
ହାତେ ଧରି ଧନୁଶର,
ଆସୁଛନ୍ତି ଏଣେ ଭୟ ଲାଗେ ମନେ
ଏଥିକୁ ଉପାୟ କର" ।
ଏକଥା ଶ୍ରବଣେ ସୁଗ୍ରୀ ମନେ ମନେ
ବିଚାରିଲା ବାଳୀ ପଠାଇଥିବ,

ଯାଇ ଅନ୍ୟସ୍ଥାନ କହେ ହନୁମାନ
"ଯାଇ ବୁଝ ଖରେ ପ୍ରାଣ ନେବ" ।
ଗଲା ହନୁ ଚାଲି ଯତି ବେଶ ଧରି
ରାଇ ଦୁହିଁଙ୍କି ଭେଟିଲେ,
ପରିଚୟ ପାଇ ପରିଚୟ ଦେଇ
ଆପଣା ରୂପ ଧଇଲେ ।
କାନ୍ଧରେ ବସାଇ ନେଲେ ଦୁଇଭାଇ
ତପନ ନନ୍ଦନ ପାଖେ,
ଭେଟାଭେଟି ହୋଇ ପଡ଼ଉ ପକାଇ
ବସିଲେ ସର୍ବେ ଉଲ୍ଲାସେ ।
ତରଣି ତନୁଜ ତରଣି ବଂଶଜ
ଚାମ ଶିଖି ସାକ୍ଷି କରି,
ମିତ୍ରତା ଡୋରିରେ ବନ୍ଧା ପରସ୍ପରେ
ହେଲେ କର ଧରାଧରି ।
ଏକାଳେ ରାମଙ୍କୁ ସୀଇତା ଭୂଷଣ
ଦେଖାଇଲେ ବାୟୁବାଳ,
ଦେଖି ତା ଶ୍ରୀରାମ ଜାନକୀଙ୍କ କଥା
ଗଡ଼ାନ୍ତି ଲୋତକ ଜଳ ।
ସୁଗ୍ରୀବ ଏଅନ୍ତେ କହନ୍ତି ଦୁଃଖିତେ
ମିତଙ୍କ ଆଗକୁ ଯାହିଁ,
କାପରି ଅଗ୍ରଜ ତଡ଼ିଲେ ଅନୁଜ
ଅଧର୍ମେ ମତି ବଳାଇ ।
ଶ୍ରବଣେ ଏକଥା ମନେ ବହି ବ୍ୟଥା
କହଅନ୍ତି ରାମ ଉତ୍ତର,
"ମୋର ଶର ସହି ନପାରିବେ କେହି
ସଂଶୟ ମନେ ନ କର ।
ଶୁଣି ସେ ବଚନ ତପନ ନନ୍ଦନ
ହୋଇ ଅତି ପୁଲକିତ,
ଜାନକୀଙ୍କ ଅଙ୍ଗ ଆଭରଣ ଯାକ
ଆଣିଲେ ଯାଇ ତୁରିତ ।
ଦେଖି ସେ ଭୂଷଣ ରାମ ହତଜ୍ଞାନ
ହୋଇ ପଡ଼ିଲେ ଭୂତଳେ,
ହେବାରୁ ସେ ଚେତା ତକ୍ଷଣେ ପୂରିଲା
ନୟନ ଲୋତକ ଜଳେ ।

ରାମଙ୍କ ଏ ଦଶା ଦର୍ଶନେ ସହସା
ସୁଗ୍ରୀ କହନ୍ତି ବୁଝାଇ,
"କାହାକୁ ଏ ଭବେ ସୁଖ ଦୁଃଖ ଲଭେ
ଛାଡ଼ି କ ଜନମ ପାଇ ?
ଏ ଭବ ସାଗର କହିବାକୁ ଥାର
ଧୃତିହିଁ ନଉକାବାନ୍ଧ,
ମସ୍ତକ ଚଞ୍ଚଳ କଲେ ଅବଉଳ
ମଣିଷର ନାହିଁ ସାଧ୍ୟ ।
ଆମୋଦ ପ୍ରମୋଦ ଅଥବା ବିପଦ
ଆତପାତ ବର୍ଷବଶେ,
ହୋଇ କ୍ଷୁବନ୍ତ କମ୍ପା ହନ୍ତସନ୍ତ
ବସିବ ମନ ହରଷେ ? ।
ସମରେ ସାହସ କଲେ ପରକାଶ
ବିପଦ ହୁଏ ଖଣ୍ଡିତ,
ଭୀରୁତା ଆଚରି ଯେତୁ ଡ଼ରି ଡ଼ରି
ତଳେ ତା ମୃତ୍ୟୁ ନିଶ୍ଚିତ ।
ବିପଦ ମୁହଁରେ ଅବଲମ୍ବି ଧୈର୍ଯ୍ୟ
କର୍ମ କରଇ ଯେ ଜନ,
ଭାଗ୍ୟ ଲକ୍ଷ୍ମୀତାର ହୋନ୍ତି ଅବଲମ୍ବେ
ସହାୟିକା ଆଜୀବନ ।
ଉପଦେଶ ବାଣୀ ଶୁଣି ରଘୁମଣି
ସରସ କଲେ ବଦନ,
ଅନ୍ୟାୟୀରେ ବାଧା ଦେବାକୁ ଶଉଧା
ବଳିଲା ତାହାଙ୍କ ମନ ।

***

## ଚତୁର୍ଥ ସର୍ଗ

ତପନତନୟ ଏ ଅନ୍ତେ ଧରି ରାମଙ୍କ କର,
ନେଇ ବସାଇଲା ପଥରେ ଯହିଁ ନ ଥିଲା ଜର ।
ବାଳି ସୁଗ୍ରୀବଙ୍କୁ ଯେତେକ ଦେଇଥିଲା ଯନ୍ତ୍ରଣା,
ପ୍ରତିଶୋଧ ତାର ନେବାକୁ କଲା ଏବେ ମନ୍ତ୍ରଣା ।
ବାଳୀର ପୁରୁଷ ଚରିତ ସୁଗ୍ରୀ କରି ପ୍ରକାଶ,
ପୁଚ୍ଛିଲା ରାମଙ୍କୁ କପରି ହେବ ତାର ବିନାଶ ।

ଉତ୍ତରିଲେ ରାମ ତାହାଙ୍କୁ ବାଳି ସଙ୍ଗେ କନ୍ଦଳ,
ଆରମ୍ଭିଲେ ଯାଇ କରିବ ଚୂର୍ଣ୍ଣ ତା ବକ୍ଷସ୍ଥଳ ।
ଏ ବଚନ ଶୁଣି ସୁଗ୍ରୀବ ଦେଲା ରଣ ହୁଙ୍କାର,
ତା ଗର୍ଜନ ଶୁଣି କମ୍ପିଲ ବାଳୀ ସିଂହ ଦୁଆର ।
ଯେବେ ସେ ଶବଦ ବାଜିଲା ବାଳୀ କର୍ଣ୍ଣ କୁହରେ,
ଦୁଆର ଫିଟାଇ ଧାଇଁଲା ଖରେ ଅତି ରାଗରେ ।
ଦୁହିଁଙ୍କ ମଧ୍ୟରେ ଲାଗିଲା ଏବେ ଘୋର ସମର,
ଗଛ ପଛେ ରାମ ଦେଖନ୍ତି ରୂପେ ଉଭୟେ ସମ ।
କିଏ ବାଳୀ କିଏ ସୁଗ୍ରୀବ ରାମ ଚିହ୍ନି ନପାରି,
ହୋଇ ସେ ହତାଶ ଫେରିଲେ ରଣୁଁ ଶର ନମାରି ।
ବାଳୀର ଆଘାତେ ସୁଗ୍ରୀବ ମୁଖୁଁ ରୁଧୀର ଧାର,
ବହି ବୁଡ଼ାଇଲା ଶରୀର ଦିଶେ କି ନାଟଖାର ।
ଆସିଲା ବାହୁଡ଼ି ସେଠାରୁ ହୋଇ ଅତି ଦୁଃଖିତ,
ଦାଶରଥି ଦେଖି ଶୋଣିତ ହେଲେ ଅତି ଲଜ୍ଜିତ ।
କେତେ ଦୁଃଖ କରି ରାମଙ୍କୁ ପୁଚ୍ଛେ ରବିନନ୍ଦନ,
ବଇରି ହାତରେ କାହିଁକି ମୋତେ କଲ ଅର୍ପଣ ?
ବୁଝାଇ ତାହାଙ୍କୁ ଗଳାରେ ଦେଇ କୁସୁମମାଳ,
ପଠାଇଣ ଗଲେ ପଛରେ ପୁଣି କୌଶଲ୍ୟାବାଳ ।
ସବିତାକୁମାର ନୟନ କରି ଆରକ୍ତ ବର୍ଣ୍ଣ,
ପୁନରପି ଧାଏଁ ଯୁଦ୍ଧକୁ କରି ସିଂହ ଗର୍ଜ୍ଜନ ।
ସେ ଶବଦ ଶୁଣି ସ୍ତବଧ ହେଲେ ପ୍ରାଣୀ ସକଳ,
ଭୟେ ପଳାଇଲା ଦୁଆର ଛାଡ଼ି ଦୁଆରପାଳ ।
କୁହାକୁହି ହେଲେ ବାନରେ ଥିଲେ ଯେତେ ସେଠାରେ
ମାଡ଼ଖାଇ ପୁଣି ଆସିଛି ଆଜ କାହା ସାହାରେ ?
ସୁଗ୍ରୀବ କେଶରୀ ଦୁଆରେ କରେ କେଶରୀ ନାଦ,
କିଷ୍କିନ୍ଧ୍ୟାବାସୀଏ ମଣିଲେ ଘଟିଲା କି ପ୍ରମାଦ ?
ନସହି ସୁଗ୍ରୀବ ଗର୍ଜ୍ଜନ ଉଠେ ଇନ୍ଦ୍ରନନ୍ଦନ,
ଏସମୟେ ତାରା କରନ୍ତି ଘନଘନ ବାରଣ ।
ତାରାକୁ ପ୍ରବୋଧି ବଳୁଆ ବାଳୀ ହେଲା ବାହାର,
ଦୁର୍ଭାଗ୍ୟ ଘୋଟିଲେ ନ ଶୁଣେ କିଏ କଥା କାହାର ।

*★*

ଫିଟାଇ ଦୁଆର        ଦେଖେ ବାଳୀବୀର
ଜଗିଅଛି ଉଗ୍ର ରବିତନୟ,
ଦେଇଥିଲୁ ଗାଳି        କୋପାନଳେ ଜଳି
ଶୁଣି ମନ ତାର ହେଲା ଅଥୟ ।
କରି ବଡ଼ ପାଣି        ଟକାଇଲା ମୁଷ୍ଟି ।
ବକ୍ଷେ ସୁଗ୍ରୀବର ବୁଡ଼ିଲା ଜ୍ଞାନ,
ଚେତା ପାଇ ଶାଳ        ଉପାଡ଼ି ପ୍ରହାର
କଲା ବାଳୀ ମୁଣ୍ଡେ ହେଲା ଅଜ୍ଞାନ ।
ହୋଇ ଧରାଧରି        ହେଲେ ମରାମରି
ବୋହିଲା ଶରୀରୁଁ ରକତ ଧାର,
କିଏସେ ଅଧିକ        କିଏ ଅନଧିକ
ହୁଏ ନାହିଁ ବଳ ବଳ କାହାର ।
ଜାଗି ଣ ସମୟ        କୌଶଲ୍ୟାତନୟ
କ୍ଷେପିଲେ ବାଳୀକି ଅମୋଘ ଶର,
ସେ ଶର ବିଜୁଳି        ପରି ଗଲା ଚଳି
ଭେଦି ବକ୍ଷସ୍ଥଳେ ବହେ ରୁଧୀର ।
ପକାଇ ବୋବାଳି        ବାଳୀ ଗଲା ଢଳି
ହୁଏ ଛଟପଟ ପଡ଼ି ଭୂତଳେ,
ସୁଗ୍ରୀବ ଦର୍ଶନେ        ବିରସ ବଦନେ
ପୂରାଇଲେ ନେତ୍ରେ ଲୋତକ ଜଳେ ।
ବାଳୀର ଏ ଦଶା        ଦର୍ଶନେ ସହସା
ଶ୍ରୀରାମ ଲକ୍ଷ୍ମଣ ଗଲେ ତା ପାଶ,
ରହିଁ ଏ ଦୁହିଁଙ୍କି        ଚେତେ କାହିଁକି
ବୁଲ ଏକୁଟିଆ କେଉଁଠି ବାସ ?
ସକଳ ବିଷୟ        କୌଶଲ୍ୟା ତନୟ
ବଖାଣିଲେ ତାଙ୍କୁ ଏଥନ୍ତେ ବାଳୀ,
ଶୁଣି ସବୁ କଥା        ପାଇ ହୃଦେ ବ୍ୟଥା
କଟୁଭାଷା କହି ଦିଅନ୍ତି ଗାଳି ।
"ପାଉଁଶ ଭିତରେ        ପାବକ ପରାଏ
ତୁମ ହୃଦମଧ୍ୟେ ଛପିଛି ହିଂସା,
ଲୁବ୍ଧକ ପରାଏ        କ୍ଷେପିଲ ଆଶୁଗେ
ବିନା ଅପରାଧେ ବଧିଣ ମୋଷା ।
ଜନ୍ମି ରାଜକୁଳେ        ବୁଡ଼ି ପାପଜଳେ
ନେଲ ପ୍ରାଣ ରହି ଗଛ ପଛରେ,
ଅସାଧୁ କରମ        କରି ଅଧରମ
ଅରଜିଲ ଭବେ ସାଧୁ ବେଶରେ ।

ଏପରି ଅନୀତି କରେ କି ଭୂପତି
ଶୁଣିଛ କି କେବେ କେଉଁ ଯୁଗରେ ?
ଦେଖାଇ ବଡ଼ିମା ବୋଲିଲି କାଳିମା
ଧରଣୀ ପ୍ରଖ୍ୟାତ ରବି ବଂଶରେ ।
ମୋ ଆଗକୁ ଆସି ବଳ କସାକସି
ହୋଇଥିଲେ ଦୁଃଖ ନଥାନ୍ତା ମୋର,
ପଡ଼ ପରବୋଲେ ଛପି ଆଡ଼ୁଆଳେ
ଅଦୋଷୀ ମାରିବା ଅନ୍ୟାୟ ଘୋର" ।
ତାରାପତି କଥା ଜାନକୀ ଭରତା
ପୁଣି ଉତ୍ତରିଲେ ମୃଦୁ ବଚନେ,
"ବାନରଙ୍କ ମେଳେ ବସି ସବୁକାଳେ
ବାନର ସ୍ୱଭାବ ପଡିଲା ମନେ ।
ମୁଁ ନୁହେଁ ଅଜ୍ଞାନ ଅବା ଧର୍ମହୀନ
ଦୋଷ ବାଛି ଦଣ୍ଡ ଦିଏ ନିରତ,
କାମେ ହୋଇ ବଶ ଭାଇ ବୋହୂ ନାଶ
କରି ଅର୍ଜିଛ ପାପ ବହୁତ ।
ଜୀବନ ମରଣେ ଚକ ଘୂରୁଥାଏ
ଦିବସ ରଜନୀ ପରି,
ତଳେ ଏ ମରମ ବୁଝିବାକୁ ଭବେ
ଶକତି ନାହିଁ କାହାରି ।
ଯେଉଁ କଥା ଯେବେ ଘଟିବାକୁ ଥାଏ
କରିବ କେ ତା ବାରଣ ?
ସଂସାର ଶତକ ନ ବୁଝି ଅଧମେ
ଭୁଛାକୁ ଦେଖାନ୍ତି ଟାଣ ।
ଇନ୍ଦ୍ରିୟ ସୁଖରେ ହୋଇ ଆସକତ
ଯେତୁ ନିରନ୍ତର ଅନ୍ୟାୟେ ରତ,
ପରିଣାମ ତାର ବିଷମୟ ବୋଲି
କରେ ଉପହାସ କାଳ ସତତ ।
ରାମଙ୍କ ବଚନେ ବାଳୀ ଲୁବ୍ଧମନେ
କ୍ଷମା ମାଗି କହେ ରାମଙ୍କ ହାତ,
ଅଞ୍ଜନା କୁମାର ଅତି ପାରିବାର
ନକରେ ଖାତର ଦୈତ୍ୟେ କଥିତ,
ଜାଣନ୍ତି ସୁଷେଣ ଅଉଷଧମାନ
ଅସମୟ କାଳେ ହେବେ ସହାୟ,
ସନ୍ଦେହ ନକର ଆହେ ରଘୁବର
ଅତି ସମରଥ ରବିତନୟ" ।
କହି ବ୍ୟଗ୍ର ବଚନ ଏହା କହି ମୌନ
ହେଲା କିଛିକ୍ଷଣ ସୀତାରମଣ,
କହନ୍ତି "ପ୍ରାଣୀଏ ଜନମ ଲଭିଲେ
କରିବେ ଅବଶ୍ୟ ମୃତ୍ୟୁ ବରଣ" ।
ନପାରି ସମ୍ଭାଳି ବାଳୀର ଘରଣୀ
ଧାଇଁଲେ ସକଳେ ପତିଙ୍କ ପାଶ,
କରି କରି ରଡ ତଳେ ଯାଏ ଗଡ଼
ଘନ ଘନ ଉଠେ ଶ୍ୱାସ ପ୍ରଶ୍ୱାସ ।
କେତେ କଲେ ଭୁନ ବାହୁନି ବାହୁନି
କାନ୍ଦନ୍ତି ସକଳେ କୁଣ୍ଢାଇ ପତି,
ଶୁଣି ତା ବୋବାଳି ଚେତା ପାଇ ବାଳୀ
ଦିଏ ଆଶ୍ୱାସନା ଉଠି ଝଟତି ।
ସୁଗ୍ରୀବକୁ ଚାହିଁ କହେ ତାରା ସାଇଁ
ସୁଷେଣ "ଦୁହିତା ଏ ତାରା ସତୀ,
ଅତି ଜାଣିବାର ନହେବ ଅନ୍ତର
ତା କଥାରୁ ତଳେ କପଦସାଥୀ ।
ପରମ ସନ୍ତୋଷ ରାମଙ୍କୁ ସନ୍ତୋଷ
କରୁଥିବୁ ସଦା କୁଣ୍ଢା ନ ବାନ୍ଧ,
କଲେ କାର୍ଯ୍ୟ ହେଲା ବୁଢ଼ିବ ତୋ ଭେଳା
ଚଳଲେ ଶ୍ରୀରାମ ଯିବୁ ତୁ ସନ୍ଧ ।
ଅଙ୍ଗଦକୁ ଡାକି ପକାଇଣ ଜାକି
କହଇ ରାମଙ୍କୁ କରିବୁ ଭକ୍ତି",
ଏହା କହୁଁ କହୁଁ ତାର ପ୍ରାଣବାୟୁ
ଉଡିଗଲା କାହିଁ କେ ନ ଜାଣନ୍ତି ।

***

ପର୍ବତ ସମାନ ପଡିଛି ବାଳୀ,
ହାତଗୋଡ଼ ଆଉ ନପାରେ ହଲେ'
ମୁଖେ ନାହିଁ ତଳେ ପୁରୁବ ଶିରୀ,
ଶବଦ ନ ଘେନେ ଆଉ ତା ଗିରି,
ମୃତ୍ୟୁର ବିଭତ୍ସ କାଣ୍ଡ
ଛଡାଇ ତଳପ ଗଡାଇ ଭୂଇଁରେ
ତାରାକୁ କରିଲା ଖଣ୍ଡ ।

ଶୁଣିଲେ ଚଉପାଶେ କରୁଣ ସ୍ୱର,
ନୟନୁଁ ଗଡ଼ୁଛି ଲୋତକ ଝର ।
ପକ୍ଷୀଏ ପାଦପ ଡାଳରେ ବସି,
ଥିଲେ ଆସିଗଲେ ତଳକୁ ଖସି ।
ଶୁଣି ସେ କ୍ରନ୍ଦନ ରବ
ମିଶାଇ ତାନରେ       ଘୁଡ଼ିଲେ ବୋବାଳ
ଦେଖି ବା ପ୍ରକାଣ୍ଡ ଶବ ।

ଯାଇଛି ସେ ଭୂଇଁ ରକତେ ବୁଡ଼ି,
ପଞ୍ଚାଏ ଶକୁନ ଆସନ୍ତେ ଉଡ଼ି,
ବୁଲି ଘୁରିପଟେ ଭଲ୍ଲୁକ ରାଜ,
ଓଡ଼ାନ୍ତ ବହଗେ ପାଇକ ସାଜ.
ବେଳେ ବେଳେ କର ଚେଡ଼
ଚମକାଇ ପକ୍ଷୀ       ଘୁରୁ ଘୁରୁ ନାଦେ
ଆକାଶକୁ ଦେଲେ ଛଡ଼ ।

ଏକାଳେ ଶ୍ରୀରାମ ସାନ୍ତ୍ୱନା ଦେଇ,
ଆଦେଶିଲେ ଶବ ଶ୍ମଶାନେ ନେଇ,
କରିବାକୁ ତାର ବିଧାନ ଯଥା ।
ଚନ୍ଦନ ତିଳକେ ବୋଳି ତା ମଥା,
ସେ ଆଦେଶ ପାଇ ହନୁ
ଯୋଗାଡ଼ ଯତନେ       ସକଳ ଦହନେ
କର୍ପୂରେ ବୋଳିଲେ ତନୁ ।
ଶିବଲିଙ୍ଗ କ୍ଷେତ୍ର ଶ୍ମଶାନ ଭୂଇଁ,
ଦୁଃଖୀ ଅଛୁଆଁ ସକଳେ ଛୁଇଁ ।
କାହାର ଏଠାରେ ନଥାଏ ଠେକ,
ଧନୀ ବା ଗରିବ ସରବେ ଏକ ।
ଶବ ନେଇଗଲେ ବୋହି
ଲୋତକ ଗଡ଼ାଇ       ଲଗାଇଲେ ଜୁଇ
ଯତନେ ତାହାକୁ ଥୋଇ ।

ଆଦିତ୍ୟନନ୍ଦନ କିଷ୍କିନ୍ଧ୍ୟା ରଜା,
ହୋଇ ମହାସୁଖେ ପାଳନ୍ତି ପ୍ରଜା,
ମହୀରେ ପ୍ରବେଶ ବରଷାକାଳ,
ଲକ୍ଷ୍ମଣ ସହିତ କୌଶଲ୍ୟାବାଳ,
ଆଶ୍ରିଲେ ଶଇଳେ ଯାଇ
ଶରତ ଋତୁରେ       ଜାନକୀ ସନ୍ଧାନ
କରିବେ କିଷ୍କିନ୍ଧ୍ୟା ସାଇଁ ।

***

## ରାମଙ୍କ ବର୍ଷାକାଳ ବର୍ଣ୍ଣନା

ମହୀରେ ପ୍ରବେଶ ବରଷାକାଳ,
ଅମ୍ବରେ ବୁଲିଲେ ଜଳଦମାଳ,
ପଡ଼ିଲା ଅଶନି ଥରକୁ ଥର,
ବହିଲା କେ ଅବା ପ୍ରଳୟଶର,
ଭାସ୍କର ଗଲେ ପଳାଇ
ବଢ଼ିଲା ଅନ୍ଧାର       ମହୀ କଳେବର
କେକୀଙ୍କୁ ଦେଲେ ନଚାଇ ।
ଅସରେ ଅସରେ ଆଷାଢ଼ ମାସେ,
ବରଷି ଧାରରୁ ଗ୍ରୀଷମ ନାଶେ,
ଶ୍ରାବଣ ମାସର ବରଷା ଝଡ଼,
ଦେଖି ଚଷା ଯାଏ ଆନନ୍ଦେ ଗଡ଼,
ରୁଆ ବେଉଷଣ ସାରି
ଉପାଡ଼ି କେଦାରୁ       ଅନାବନା ଘାସ
ଯତନେ ସଞ୍ଚଇ ବାରି ।
ବିଲମାନଙ୍କରେ ପଶିଲା ଜଳ,
ପାଆନ୍ତି କଷଣ ଭୁଜଙ୍ଗଦଳ,
ଏପଟେ ସେପଟେ ବୁଲନ୍ତି ଦୁଃଖେ,
କିଏ ବା ପଡ଼ନ୍ତି ମୟୂର ମୁଖେ,
ବଧିର ବଚନ ମାନି
କେ ଲଭେ ପ୍ରମୋଦ       କେ ଭୋଗେ ବିପଦ
ଅବୁଝା ସଂସାର ରୀତି ।
ବାଉଁଶ ବୁଦାରେ ଡାହୁକ ବସି,
ଅନାଇଁ ଜଳଦେ ରବଇ ହସି,
କାନନ ସୌନ୍ଦର୍ଯ୍ୟ ପସରା ବାଢ଼ି,
ବେଢ଼ାଇଛି ଦେହେ ଶାଗୁଆ ଶାଢ଼ୀ,
ଚମ୍ପା ଫୁଟେ ଉପବନେ
ତା ରୂପ ମାଧୁରୀ       ଦର୍ଶନେ ଆନନ୍ଦ
ହୁଅଇ ରମଣୀ ମନେ ।

ଠକ ଠକ ନାଦ କଅଁାରମାନେ,
ଶୁଭଇ ଭେକର ରଜନୀ କାଳେ,
ତାରପନ୍ତି ସହ ତାରକା ଚନ୍ଦ୍ର,
ଯାଏ ନାହିଁ ଜଣା କେଉଁଠି ଛନ୍ତି,
ଗୃହକ ଗଛ ଡାଳରେ
ବରଷା ଧାରାର ଠୋପା ଗୃହି ଗୃହି
ଉଦର ଭରଣ କରେ

ମହିଷ ଆନନ୍ଦ ନୁହଇ କହି,
ନଈର ଜଳରେ ବୁଡ଼ଇ ରହି,
ବାସବ କୋଦଣ୍ଡ ଗଗନେ ପଡ଼ି-
ବାରୁ ଶିଶୁଗଣ ପକାନ୍ତି ରଡ଼ି,
ଝନ୍ତ ବରଷା ପାଣିରେ
ବୁହିଁ ଅନ୍ତରୀକ୍ଷେ ନାଚନ୍ତି ହରଷେ
ମୁଗ୍‌ଧ ହୋଇ ତା ଛବିରେ ।

ହେଲ ଚଉଦିଗ ସଳିଳମୟ,
ଜଳଚର ମନୁଁ ତୁଟିଲ ଭୟ,
କହିଲେ ନସରେ ଅଜାବିପତି,
ଚହଟାଏ ଦିଗ ଫୁଟି ମାଳତି,
ଅଗି୍ନରଜ ସଲବଲ
ଖଟିଖିଆ ସବୁ ନ ପାଇ ମଜୁରି
ପେଟ ପାଇଁ କଲବଲ ।

ନଈନାଳେ ପାଣି ଆସଇମାଡ଼ି,
କେତେ ତରୁଲତା ନିଅଇ ତାଡ଼ି,
କେତେ ପ୍ରାଣୀଙ୍କର ଜୀବନ ନାଶ,
କରି ଜନମାଏ ମାନସେ ତ୍ରାସ,
କେତେ ଜନପଦେ ପଶି
ବହୁ ଘରଦ୍ୱାର କରି ଛାରଖାର
ରତ୍ନାକରେ ଯାଏ ଦ୍ରସି ।

ଅବ୍ରଜ ହେଲ ଅତି ସଳୀଳ କାଳ,
ନ ରହିଲା ଆଉ ରବିଙ୍କ ଆଳ,
ଲାଗିଛି ଏପରି ସଂସାରେ ଲୀଳା,
କା ଗଲେ ଯୋହଲା କା ଗଲେ ମଲା,
ବିଚିତ୍ର ବିଧି ବିଧାନ
ପଡ଼ୁଛି ଲୋଚନେ ଭବେ ପ୍ରତିକ୍ଷଣେ
କେ କରେ ତା ଅନୁଧ୍ୟାନ ।

ମାଲ୍ୟବନ୍ତ ଶିଖେ ବସି ଶ୍ରୀରାମ,
ଗୁଣନ୍ତି ସତତ ଜାନକୀ ନାମ,
ଅନ୍ତର ଧରନ୍ତୁ ବରଷାକାଳ,
କହନ୍ତି ବିରସେ ଲକ୍ଷ୍ମଣବାଳ,
"କହ ସୁଗ୍ରୀ ପାଶେ ଯାଇ
ପଠାନ୍ତୁ ଚୌଦିଗେ ବାନ୍ଧିବହଗଣ
ସୀତାଙ୍କ ସନ୍ଧାନ ପାଇଁ" ।

***

ରାମଙ୍କ ଆଜ୍ଞାରେ ଗଲେ ସଉମିତ୍ରି,
କିଷ୍କିନ୍ଧ୍ୟା ନଗରେ କମ୍ପାଇ ଧରିତ୍ରୀ ।
କୃତାନ୍ତ ପରାଏ ଭୀମରୂପ ଧରି,
ଯାଆନ୍ତି ଏକାକୀ ରୋଷେ ଥରି ଥରି ।
ପହଞ୍ଚିଲେ ଖରେ କିଷ୍କିନ୍ଧ୍ୟା ପୁରରେ,
ସିଂହ ଦୁଆରକୁ ଗଲେ ଖରତରେ ।
ସୁଗ୍ରୀବ ନିକଟେ ବାରତା ପଠାଇ,
ସିଂହ ଦୁଆରରେ ରହିଲେ ଚକାଇ ।
ସୁଗ୍ରୀବଙ୍କଠାରୁ ବାନ୍ଧିବହ ଆସି,
କହିଥିଲେ ଯାହା ଦେଲା ତା ପ୍ରକାଶି ।
ଶୁଣି ତା ବଚନ ସୁମିତ୍ରା ନନ୍ଦନ,
ପଠାଇଲେ ପୁଣି ଖବର ବହନ ।
ଗଲା ଜବେ ଦୂତ ପାଇ ସେ ଆଦେଶ,
ନ ଆସିଲା ସୁଗ୍ରୀଠାରୁ କି ସନ୍ଦେଶ ।
ଏକଥା ଜାଣିଲା ବାଳୀଙ୍କ କୁମାର,
ଯାଇ ସିଂହଦ୍ୱାରେ ହେଲା ସେ ହାଜର ।
ଉଣ୍ଡ ହେବା ଦେଖି ରାମଙ୍କ ଅନୁଜ,
ଭୟରେ ଆକୁଳ ବାଳୀଙ୍କ ତନୁଜ ।
ଲକ୍ଷ୍ମଣ ତାହାଙ୍କୁ ଅଭୟ ବଚନ,
କହିବାରୁ ହେଲା ତାଇ ତୁଷ୍ଟମନ ।
ଅଙ୍ଗଦ ସେଠାରୁ ଯାଇ ସୁଗ୍ରୀ ପାଶେ,
ଲକ୍ଷ୍ମଣ ବାରତା କହିଲା ସତ୍ରାସେ ।
ଦେଖି ସଉମିତ୍ରି ହେବାର ବିଳମ୍ବ,
ପଶିଲେ ଭିତରେ ମନେ ବହି ଦମ୍ଭ ।

ଅଡଟମି ଛଅ ଦୁଆର ଶେଷରେ
ମିଳଲେ ସପ୍ତମ ଦୁଆର ଆଗରେ ।
ଦେଖିଲେ ସୁଗ୍ରୀବ ରମଣୀଙ୍କ ସହ,
କରଇ ବହାର ମୋଦେ ଅହରହ ।
ରବିନନ୍ଦନଙ୍କୁ ଦେଖି ସଉମିତ୍ର,
ଟାଣିଲେ କୋଦଣ୍ଡ କମ୍ପାଇ ଧରଣୀ ।
ତାଦେଖି ସେ ଭୟେ ଅତି ଥରହର,
ହୋଇ ଲକ୍ଷ୍ମଣଙ୍କୁ ଯୋଡ଼ ବେନିକର ।
କହନ୍ତି, ଦେଖନ୍ତୁ ଶାଖାମୃଗଚୟ,
ହେଲେଣି ହାଜର ଯିବେ ରାମକତ" ।
କ୍ରୋଧ କରି ଶାନ୍ତ ସୁମିତ୍ରାନନ୍ଦନ,
ରାମଙ୍କ ନିକଟେ ଫେରିଲେ ବହନ ।
ତାଙ୍କ ପଛେ ପଛେ କର୍ପିକ୍ଷ୍ୟାର ରାଟ,
ଚଳିଲେ ଚଞ୍ଚଳ ଧରି କପି ଆଟ ।
ଯଥାବିଧି ପୂଜି ଶ୍ରୀରାମ ଚରଣେ,
ଆଜ୍ଞାପାଇ ବସିଥିଲେ ସେହି ସ୍ଥାନେ ।
ସୁଗ୍ରୀବଙ୍କୁ ଚାହିଁ କହନ୍ତି ଶ୍ରୀରାମ,
"ମୋ ନିକଟେ ତୁମେ କରିଚ ଅଧର୍ମ ।
କହିଚ ବଳମ୍ବ ମୋ କାର୍ଯ୍ୟ ସାଧନେ,
ମୋ କଥା ଟିକିଏ ନ ରଖିଲ ମନେ ।
ଚାରିଆଡ଼େ ଚର ପଠାଅ ଚଞ୍ଚଳ,
ସୀତା ଠାବ କରି ଫେରନ୍ତୁ ସକଳ" ।
ରାମ ଆଜ୍ଞା ପାଇ ରବିତା ନନ୍ଦନ,
ପଠାଇଲେ ଚଉଦିଗେ ଦୂତଗଣ ।
ମାରୁତିକ ଡାକି କହନ୍ତି ଶ୍ରୀରାମ,
ସୀତାଙ୍କ ସନ୍ଧାନେ ତୁମେ ହେବ କ୍ଷମ ।
ମୋ ହସ୍ତ ମୁଦ୍ରିକା ନିଅ ସଯତନେ,
ଜାନକୀ ବିଶ୍ୱାସ ଯିବେ ଯା ଦର୍ଶନେ ।
ସେ ମୁଦ୍ରିକା ହନୁ ରାମଠାରୁ ପାଇ,
ଦକ୍ଷିଣେ ଚଳିଲା ତା ଶିରେ ଲଗାଇ ।
ହନୁ ସଙ୍ଗେ ଥିଲେ ଯେତେକ କପିଏ,
ତା ପଛେ ଗମିଲେ ଗୋଟିଏ ଗୋଟିଏ ।
ଖୋଜି ବନଗିରି ପର୍ବତ କନ୍ଦର,
କଣ୍ୱ ତପୋବନେ ମିଳଲେ ସତ୍ୱର ।
ଦେଖିଲେ ଗୋଟିଏ ଦଇତ ସେଠାରେ,
ଗଲା ପ୍ରାଣ ତାର ହନୁ ମୁଷ୍ଟିଘାତରେ ।
ହୋଇଲେ ହାଲିଆ ଖୋଜି ଗିରିବନ ।
ନପାଇଲେ କାହିଁ ସୀତାଙ୍କ ସନ୍ଧାନ,
ସରିବାରୁ କଣ୍ଠ ସରବେ ଚିନ୍ତିତ ।
ସେମାନଙ୍କ ମୃତ୍ୟୁ ଭାବିଲେ ନିଶ୍ଚିତ,
ସମ୍ପାତି ନାମକ ବିହଗ ଗୋଟିଏ,
ଦୈବାତ୍ ଭେଟିଲେ ଏ ବନେ କପିଏ ।
ଆଗ ଚହ୍ଲାଚହ୍ଲି ହେଲେ ପରସ୍ପର,
ତଦନ୍ତେ ପୁଚ୍ଛିଲେ ସୀତାଙ୍କ ଖବର ।
ଲଙ୍କାର ନୃପତି ବିଶ୍ରବାନନ୍ଦନ,
ନେବାର ସୀତାଙ୍କୁ ଖଗେଶନନ୍ଦନ ।
କହି ସେମାନଙ୍କୁ ପିଠିରେ ବସାଇ,
ଦେଖାଇଲା ଲଙ୍କାଗଡ଼ ଉର୍ଦ୍ଧ୍ୱ ଥାଇ ।
ପାରିବାର କ୍ଟୂନ ଏ ଅନ୍ତେ ବାନରେ,
ଉଆଁଡ଼େଇଁ ହୋଇଗଲେ ହରଷରେ ।



ଲଙ୍ଘି ପାରିବାରୁ ଯିବ କେ ଚଞ୍ଚଳ
ବୋଲି ତର୍କନ୍ତେ ବାଳୀନନ୍ଦନ,
ହରିଏ ତା ଶୁଣି ହନୁ ଯିବ ବୋଲି
କହି ମହେନ୍ଦ୍ରକୁ କଲେ ଗମନ ।
ସୁରି ପୂଜି ବୀର ପବନକୁମର
ନିଜ ଅପଘନ ବଢାଇ ଧୀରେ,
ରାମ ନାମ ସ୍ମରି ଚିହ୍ନମୁଦ ଧରି
ଗଗନ ମାର୍ଗରେ ଚଳେ ଅଚିରେ ।
ଗଲାବେଳେ ହନୁ ବଢାଇଲା ତନୁ
ଅସୁରୀ ସିଂହିକା ଥାଇ ସାଗରେ,
ଖାଇବାକୁ ତାକୁ ପାଟି ଟାଳୁଟାଳୁ
କରି ଗରଜିଲା ସିଂହ ନାଦରେ ।
ହନୁ ଜାଣିପାରି ସୂକ୍ଷ୍ମ ରୂପଧରି
ପଶିଲା ତାହାରି ପେଟ ଭିତରେ,
ବିଦାରି ବିଦାରି ତାରି ମର୍ମଅଳୀ
ବାହାରି ଚଳିଲେ ଶୂନ୍ୟ ମାର୍ଗରେ ।

ଯାନ୍ତେ କିଛି ଦୂର     ସୁବେଳ ଭୂଧର
ନୟନ ଗୋଚର ହେଲା ତାଙ୍କର,
ଆକାଶୁଁ ଓହ୍ଲାଇ     ରୂପ ବଦଳାଇ
କଲେ ଦରଶନ ଲଙ୍କା ନଗର ।
ଏ ଅନ୍ତେ ପାବନି     ହେବାରୁ ରଜନୀ
ବିଡ଼ାଳ ରୂପରେ ଛଦ୍ମ ବେଶରେ,
ମନେ କି ବିଚାରି     ଲଙ୍କାର ପାଚେରି
ଉପରକୁ ଗଲେ ସାବଧାନରେ ।
ସେ ନଗର ଦେଖି     ହୋଇ ମହାସୁଖୀ
କଲେ ରାବଣଙ୍କୁ ବହୁ ପ୍ରଶଂସା,
ଗଡ଼ର ଭିତରେ     ପଶି ଯାଉଥିଲେ
ପାଚେରି ଉପରୁଁ ଖସି ସହସା ।
ଲଙ୍କଦେବୀ ଜାଣି     କରି ଘୋର ଧ୍ୱନି
ଓଗାଳି ସରଣୀ ପୁଚ୍ଛନ୍ତି ତାହାଙ୍କୁ,
କିଏ ସେ ତୁ କହ     କେଉଁ ନାମ ବହି
ଆସିଲୁ କପରି ଖୋଜୁ କାହାକୁ ?
ଏ ବଚନ ଶୁଣି     ପୁଚ୍ଛନ୍ତି ପାବନି
କିଏ ତୁ ରମଣୀ ନିଶା ସମୟେ,
କହ ଆଗ ମୋତେ     ତୋ ନାମ ତୁରିତେ
ଏଠିଁ ବୁଲୁ କାହିଁ ଏତେ ନିର୍ଭୟେ ?
ତାଠାରୁ ଉତ୍ତର     ଶୁଣି ହନୁବୀର
ଉତ୍ତରିଲେ ତାକୁ ସରାଗେ ରାଇ,
"କେତେ କଷ୍ଟ ପାଇ     ଆସିଅଛି ଧାଇଁ
ଲଙ୍କପୁର ଶୋଭା ଦର୍ଶନ ପାଇଁ" ।
'ହନୁଠାରୁ ଶୁଣି     କରାଳ ଲଙ୍କିନୀ
ପଦାଘାତ କଲା ତାହାଙ୍କ ଦେହେ,
ରାଗିଯାଇ ହନୁ     ବଢ଼ାଇ ସ୍ୱତନୁ
ମୂଠ ଦେଲା ଶିରେ ବିକଟ କୋହେ ।
ବ୍ରହ୍ମାଙ୍କ ବଚନ     ହେଲା ତା ସ୍ମରଣ
କହେ ମାରୁତିକି, "ନୋହ ନିରାଶ,
ପୂରୁ ଅଭିଳାଷ     ଜାନକୀ ସନ୍ଦେଶ
ନେଇ ଚାଲିଯାଅ ଶ୍ରୀରାମ ପାଶ" ।
ଏ ଅନ୍ତେ ପାବନି     କ୍ଷୁଦ୍ର ରୂପ ଘେନି
ପଶନ୍ତି ଲଙ୍କାରେ ମନ ଫୁଲାଇ,
ଖୋଜି ଘର ଘର     ନପାଇ ଖବର
ରାଜ ଅନ୍ତଃପୁରେ ମିଳିଲେ ଯାଇ ।
ପୁଅ ନାତିଙ୍କର     ସହ ସହୋଦର
ଘରମାନ ଖୋଜି ରାବଣପୁରେ,
ମିଳି ହନୁମାନ     କରି ବହୁକ୍ଷଣ
ଆସିଲେ ବାହୁଡ଼ି ଅତି ଚତୁରେ ।
ଏ ରୂପେ ମାରୁତି     ଖୋଜି ଅନ୍ଧସନ୍ଧି
ନଦେଖି ସୀତାଙ୍କୁ ମନ ଦୁଃଖରେ,
ପାଗଳ ପରାଏ     ବୁଲି ଇତସ୍ତତ
ଉଠେ ମେଘନାଦ ପ୍ରାଚୀର ପରେ ।

***

ଖୋଜି ଖୋଜି ହନୁମାନ     ନପାଇ ସୀତା ସନ୍ଧାନ
ହୋଇ ଅତି ଛନ୍ନଛନ୍ନ କରେ ବିଚାର,
ମନେ କରି ଆଶା ବଡ଼     ଆସିଲି ଏ ଲଙ୍କାଗଡ଼
ହୋଇ ଅତି ଧଡ଼ପଡ଼ ହେଲି ନାଚାର,
ଅପବାଦେ ଫିରିବି ସରି,
ସୁଗ୍ରୀ ଆଗେ ଦେଖାଇବି ମୁଖ କପରି ?
କଥା ପାଳି ସମ୍ପାତିର     ଲଙ୍ଘି ଅପାର ସାଗର
ଭ୍ରମି ଭ୍ରମି ଘର ଘର ନହେଲେ ଚିହ୍ନ,
ଅବା ସୀତା ଶୁଖି ଶୁଖି     ରାମଙ୍କୁ ନପାରି ଦେଖି
ପ୍ରାଣ ନ ପାରିଲେ ରଖି ହେବାରୁ ଭିନ୍ନ,
ରାବଣ ବା ପକାଇ ରୁଷ
ରଖିଛି ନେଇ ଗୁପତେ ଅଧିକ ଭାବି
ନକରି ଜାନକୀ ଠାବ     ଗଲେ ହେବ ପରାଭବ
ପ୍ରତିଜ୍ଞା ମୋ ବ୍ୟର୍ଥ ହେବ, ସୁଗ୍ରୀବ ହାତରେ
ଯିବ ଏ ପରାଣ ମୋର     ରାଘବ ହେବେ କାତର
ଦୁଃଖେ ସକଳ ବାନର ବିଷ ଆହାରେ
ତେଜିବେ ଜୀବନ ନିଶ୍ଚୟ
ଲକ୍ଷ୍ମଣ କ୍ରୋଧରେ ହେବେ ସକଳେ କ୍ଷୟ ।
ଯଦ୍ୟପି ଯାଏ ଲେଉଟି     ରାବଣର ଚପି ଚୋଟି
ରାଘବଙ୍କୁ ଦେବି ଭେଟି ନେଇ ଓଟାରି,
ଅଥବା ଲଙ୍କା ଉପାଡ଼ି     ସାଗରେ ଦେବି ଫୋପାଡ଼ି
ଛାଡ଼ିବି ପରାଣ ବୁଡ଼ି ସବଂ ସଂହାରି,

କି ଅବା ପଶିବ ଅନଳେ
ଝଙ୍କାଇ ବା ଯତ ବେଶ ବଞ୍ଚିବ ଫଳେ ।

—✳✳—

ନୟନ ଗୋଚର   ପବନ ସୁତର
ଅଶୋକ କାନନ ହେଲା ଏକାଳେ,
ପବନ ବେଗରେ   ଯାଇ ତରତରେ
ବସିଲା ଗୋଟିଏ ପାଦପ ଡାଳେ ।
ଲଙ୍କାରେ ଲଙ୍କାରେ   ବୁଲି ନିଶଙ୍କାରେ
ଖୋଜନ୍ତି ସୀତାଙ୍କୁ ଅତି ଆକୁଳେ,
କରନ୍ତି ଦର୍ଶନ   ସୁଶୋଭିତ ବନ
ଅଶୋକ ଚନ୍ଦନ ଚମ୍ପା ବକୁଳେ ।
ତଦନ୍ତେ ଅଶୋକ   ଉଚ୍ଚ ତରୁ ଏକ
ପଡ଼ିଲା ତାଙ୍କର ନେତ୍ର ପଥରେ,
ହୋଇ କ୍ଷୁଦ୍ର ଅତି   ଚଢ଼ିଲେ ଝଟତି
ଦେଖନ୍ତି ଚୌଦିଗ ବସି ଶିଖରେ ।
ସହସା ଏକାକେ   ଅସୁରଙ୍କ ମେଳେ
ଅଙ୍କାଳ ଭିତରେ ରମଣୀଟିଏ,
କରି ଦରଶନ   ପବନନନ୍ଦନ
ଭାବିଲେ ନିଶ୍ଚୟ ସୀତା ସତୀ ଏ ।
ନୟନୁଁ ଲୋତକ   ନିଗେଡ଼ି ଝର ଝର
ତନୁ ଅତି କ୍ଷୀଣା ରାମଙ୍କୁ ଝୁରି,
ଦିଶୁଚି ମଳିନ   ପିନ୍ଧିବା ବସନ
ଝରୁଚନ୍ତି ଲୋର ବହୁ ଅଝୁରି ।
ଅଙ୍କୁଶକୁ ଡରି   କରିଣୀ ଯେସନ
ହାତଶାଳେ ଥାଏ କର୍ମ ଆଦରି,
ଅସୁରଙ୍କ ଭୟେ   ଜାନକୀ ତେସନ
ଅଶୋକ କାନନେ ରାମଙ୍କୁ ସୁମରି ।
ଆହାର ବିହାର   କରି ପରିହାର
ତପସ୍ୱିନୀ ପରି କଟାନ୍ତି କାଳ,
ସରସ ବଦନ   ଦିଶଇ ମଳିନ
ଯାଇଚନ୍ତି ଭୁଲି ଭବ ଜଞ୍ଜାଳ ।
ଦୈନ୍ୟରେ ଦଇବ   ତୋ ବଚନ ଭାବ
ନପଡେ କାହାକୁ ଜଣା,
ପିନ୍ଧାଇ ମୁକୁଟ   କରୁ ଛଟପଟ
ଦେଖି ତା ସରବେ ବଣା ।
କିଏ ସେ ସଡ଼ୁଚି   ଗଛ ତଳେ ପଡ଼ି
କିଏ ସେ ଦାଣ୍ଡ ଭିକାରୀ,
କିଏ ସେ ଗଡ଼ୁଚି   ଭୂମୀର ତଳପେ
କିଏ ବା ମୁକୁଟଧାରୀ ।
ଜାନକୀ ଦର୍ଶନେ   ଉଲ୍ଲସିତ ମନେ
ପବନ ନନ୍ଦନ ରାମଙ୍କୁ ସ୍ମରି,
ପାଦପ ଶିଖରେ   ସେ ଦିନ ରାତିରେ
ରହିଲେ ସାମାନ୍ୟ ଆକାର ଧରି ।
ଦେଖିଲା ସ୍ୱପନ   ଏଣେ ଦଶାନନ
ଲଙ୍କାଦେବୀ ଆସି କହନ୍ତି ତାକୁ,
ବାନର ଗୋଟିଏ   ପଶିଚି ଏପୁରେ
ପଡ଼ିଲା ବିପତ୍ତି ଏବେ ଲଙ୍କାକୁ ।
ଚମକି ଉଠିଲା   ପୁଣି ନିଦ୍ରାଗଲା
ନ ଆସଇ ନିଦ ଆଖିକି ତାର,
ଉଠିଲା ତତକ୍ଷଣେ   ନାରୀଙ୍କ ଗହଣେ
ଯିବାକୁ କାନନେ ହେଲା ବାହାର ।

—★—

ନାରୀଙ୍କ ଗହଣେ ରାବଣ ଯାଇ ଅଶୋକ ବନେ,
ମିଳିଲା ଜାନକୀ ସନ୍ନିଧି ଅତି ଆନନ୍ଦ ମନେ ।
ରାବଣକୁ ଦେଖି ସୀତାଙ୍କ ଝରେ ଲୋତକ ଝର,
ବିନାଶ ତାହାର ପାଞ୍ଚିଲେ ଦୃଢ଼ ହୃଦୟୁଁ ଡର ।
କହିଲା ରାବଣ, "କାହିଁକି କରୁ ମୋତେ ନିରାଶ ?
କାହିଁକି ଶୁଖାଉ ବଦନ ହୋଇ ମଳିନ ବାସ ?
ଶତ ଶତ ନାରୀ ଅଛନ୍ତି ପାଦ ଘଷିବେ ନିତ,
କନକ ପଲଙ୍କେ ଶୋଇଲେ ମୋର ବଢ଼ିବ ପ୍ରୀତି ।
ଭରତି କରିଚି ଭଣ୍ଡାରେ ନାନା ଭୂଷଣମାନ,
ମଣ୍ଡି ହୋଇ ଚୁମ୍ବି ବଦନ କର ପୀୟୂଷ ପାନ ।

—✳✳—

## ସୀତାଙ୍କ ଉତ୍ତର

ରାବଣ ବଚନ ସୀତା ନ ପାରିଲେ ସହି,
କହିଲେ ଏମନ୍ତ ତାକୁ କଣ୍ଟକ ଲହି ।

"ଛଡ଼ାଇବେ ରାମ ତୋର ରସିକପଣିଆ,
ତାଙ୍କ ଧନୁବାଣ ଦେଖି ହେବୁ ତୁ ଗ୍ଲାନିଆଁ ।
କହୁଚୁ ବଡ଼ାଇ କେତେ ମୋ ଆଗରେ ବସି,
ବାମନ କି କେତେବେଳେ ଧରିପାରେ ଶଶୀ ।
ଯେତେ କଥା କହିଲେ ହେଁ କୌଶଳ ଲଗାଇ,
ନ ପାରିବୁ କେଉଁ କାଳେ ମୋ ମନ ଭୁଲାଇ ।
ହରାଇଲୁ ଜ୍ଞାନ ତୁହି ମଦିରା ପାନରେ,
ତୋ ମନ ବଳିବ କାହିଁ ସତୀ ମାରଗରେ ।
ବହୁବାର ଶୁଣିଚି ତୋ କଥା ଫୁଲିଣିଆ,
ଆବର ଶୁଣିଚି କେତେ ମନ ଭୁଲଣିଆ ।
ଲୁହା କି ଟାଣିବ କେବେ ପଥର ଚୁମ୍ବକ,
ନ ବୁଡ଼ାଇ ରଖିବ କି ଶିଳାକୁ ଉଦକ ।
ବୈର କରି ଗଦାକଲୁ ବିପୁଳ ସମ୍ପତ୍ତି,
ଅଳପ ଦିନେ ପଡ଼ିବ ବିଷମ ବିପତ୍ତି ।
ଜାତିରେ ଅସୁର ତୁହି ଜାଣିବୁ କି ଧର୍ମ,
ପାପପୁଣ୍ୟ ନ ବିଚାରି କରୁଚୁ କୁକର୍ମ ।
ମାଡ଼ୁ ନାହିଁ ଲାଜ ତୋତେ ହୋଇଅଛୁ ରଜା,
ପରନାରୀ ବଳେ ଆଣି ମାରୁଅଛୁ ମଜା ।
ରାଜା ବୋଲାବା କଥା ଗୋଟିଏ କେବଳ,
ଶହ ଶହ ନାରୀ ଆଣି ଦେଖାଉଚୁ ବଳ ।
ମାଆଙ୍କ ସଦୃଶ ପୂଜ୍ୟ ସଦା ପରନାରୀ,
ଧରିଆଣି କରିଲୁ ତୁ ସେମାନଙ୍କୁ ଦାସୀ ।
କଟାଇଲୁ ଦିନ ମର୍ତ୍ତ୍ୟେ ଅନ୍ୟାୟେ ନିରତ,
ମରିବୁ ସବଂଶେ ପାପୁଁ ନ ହେଲେ ବିରତ ।
କି ଯଶ ପାଇବୁ କହ କୁଳ କ୍ଷୟ କରି,
ପାଉଁଶ କରିବୁ କିଆଁ ଏ ଲଙ୍କା ନଗରୀ ।
ଶୋଷିବ ସାଗର ଜଳ ଶ୍ରୀରାମଙ୍କ ବାଣ,
ଛଡ଼ାଇବେ ଦାଶରଥି ଯେତେ ତୋର ଟାଣ ।
ଅନେକ ସହସ୍ର ଭବେ ବ୍ରହ୍ମପଦ ଲାଗି,
ଆହାର ମୈଥୁନ ତ୍ୟଜି ହୁଅନ୍ତି ବୈରାଗୀ ।
ଉଚ୍ଚକୁଳେ ଜନ୍ମ ଲଭି ବୋଲି ହେଉ ପଙ୍କ,
ଧର୍ମ ଆଚରି ଛଡ଼ା ପୂର୍ବର କଳଙ୍କ ।
ପତିବ୍ରତା ଧର୍ମ କଣ ଜଣାନାହିଁ ତୋତେ,
ତେଣୁ ଏତେ ଲଜ୍ଜାହୀନ କଥା କହୁ ମୋତେ ।

ଶୁଣି ଜାନକୀ ବଚନ କ୍ରୋଧରେ ରାବଣ,
କହିଲା "ଦୁମାସ ମଧ୍ୟେ ଶ୍ରୀରାମ ଲକ୍ଷ୍ମଣ ।
ଦେଖାଇବୁ ଆଣି ହସ୍ତେ ଏ ଲଙ୍କା ନଗରେ,
ନୋହିଲେ ବରିବୁ ମୋତେ ସ୍ୱାମୀ ରୂପେ ଖରେ ।
ଦଶାନନ କଥା ଶୁଣି ସୀତା ଗଲେ ଚଳି,
କହନ୍ତି ତ୍ରିଜଟାକୁ କିଆଁ ଅନାଉ ଏଭଳି ?
ଫୁଟିଯିବ ଆଖି ତୋର ଚାହିଁଲେ ତରଟି,
ବିଧାତା ଦେଲାଣି ଅବା ତୋ ଆୟୁଷ କାଟି ।
ରାମଲକ୍ଷ୍ମଣଙ୍କୁ ଦେଲୁ ବନକୁ ପଠାଇ,
ଏକୁଟିଆ ଦେଖି ମୋତେ ଆଣିଲୁ ହେରାଇ ।
ଏଥିରେ ଅଛୁ କି ଲବେ ତୋହର ବୀରତ୍ୱ ?
କେ ଜାଣି ତୁ ମଣିଥିବୁ ଏହାକୁ ମହତ୍ତ୍ୱ" ।
ଏକାଳେ ରାବଣ କ୍ରୋଧ ଦେଖି ମନ୍ଦୋଦରୀ,
କୋମଳ ବଚନେ କହି ନେଲା ତାଙ୍କୁ ଧରି ।



ଗମନ୍ତେ ରାବଣ    ଅସୁରୁଣୀଗଣ
କହନ୍ତି ସୀତାଙ୍କୁ କଥା ଏସନ,
"ଶୁଣ ମଇଥିଳୀ    ରାବଣଙ୍କ ଭଳି
ନାହିଁ କେ ଭୂପତି ତିନି ଭୁବନେ ।
ଅତୁଳ ସମ୍ପତ୍ତି    ରଖିଚି ସାଇତି
କରିଅଛି ବଶ କେତେ ନରେଶ,
ଡରି ସୁରପତି    ନିରତି ରହନ୍ତି
ନଥାଏ ଲଙ୍କାରେ ଶତ୍ରୁ ପ୍ରବେଶ ।
ପତି ରୂପେ ଯୋଗ୍ୟ    ପୁଣି ସେ ତୋ ଭାଗ୍ୟ
କାହିଁକି ନ ଦିଅ ମନେ ଶରଧା,
ଦେଖି ତାଙ୍କ ରୂପ    ଅବା ବାହୁବଳ
ଝୁରନ୍ତି ତୋ ଭଳି କେତେ ପ୍ରମଦା" ।
ସତୀ ଶିରୋମଣି    ଅସୁରୀଙ୍କ ବାଣୀ
ଶୁଣିଣ କହନ୍ତି କରୁଣ ସ୍ୱରେ,
"ତୁମ ଉପଦେଶ    ଲାଗେ ମୋତେ ବିଷ
କହିଲ ବେଳୁଁ ମୋ ହୃଦୟ ଥରେ ।
ରଘୁମଣି ପରି    କିଏ ହେବ ସରି
ସେ ମୋର ଅଟନ୍ତି ହୃଦ ଚନ୍ଦନ,

ଦେଖି ତାଙ୍କ ମୁଖ ଯାଏ ସବୁ ଦୁଃଖ
ନ ଦେଖିବ କେବେ ତୁମ ବଦନ ।
ଜନକ ଦୁଲଣୀ ଶ୍ରୀରାମ ଘରଣୀ
କାନ୍ଦନ୍ତି ବିକଳେ ପାଦପ ମୂଳେ,
"ପାଟରାଣୀ ହୋଇ ସୁଖେ ଥାନ୍ତି ବହି
ସାକେତନଗରେ ସରଯୂ କୂଳେ ।
ଘଟାଇଲ ବିଧି ଆସିଲି ପଳାଇ
ପତି ସେବା ଲାଗି ଘୋର ଅରଣ୍ୟେ,
ଆଣିଲା ହରାଇ ଦଶାନନ ଯାଇ
ସଢୁଅଛୁ ଏବେ ଅଶୋକ ବନେ ।
ନାଥଙ୍କୁ ନପାଇ ଅନାଥିନୀ ହୋଇ
ଅସୁରୀଙ୍କ ଦାଉ ଅଛୁ ସମ୍ଭାଳି,
ଦଶା ଲେଉଟିବ ଆସିବେ ରାଘବ
ଯାଙ୍କ ପଦେ ମନ ଦେଇଚି ଢାଳି ।
ରାମ ବିନା ଆନ ନାହିଁ ପ୍ରୟୋଜନ
ରେ ଦଇବ ଦେଖା ରାମ ବଦନ,
ପରାଧୀନ ହୋଇ କେତେ କାଳ ସହି
ରହିଥିବ ମନ ହେଉଚି ଛନ୍ନ" ।
ସକଳ ବଚନ ପବନନନ୍ଦନ
ଶିଂଶପା ଶିଖରେ ବସି ଶୁଣିଲେ,
ତଦନ୍ତେ ତପନ କୁଳ ବିବରଣେ
ଲଳିତ ମଧୁର କଣ୍ଠେ କହିଲେ ।
ତାଶୁଣି ଜାନକୀ ଉପରକୁ ଚାହିଁ
ଦେଖିଲେ ବାନର ତରୁଶିଖରେ,
ଲାଞ୍ଜକୁ ହଲାଇ ରାମନାମ ଗାଇ
ହୁଏ ମୋଦଭରେ ଅତି ପ୍ରେମରେ ।
ଜନକ ଦୁହିତା ଅତି ଆକୁଳିତା
ଦେଖି ହନୁମାନ ତଳକୁ ଖସି,
ହୋଇଣ ନିର୍ଭୟ ପୁଚ୍ଛି ପରିଚୟ
ରାମଙ୍କ ବାରତା କହିଲା ବସି ।
କୁଶଳ ବାରତା ରାମଙ୍କର ସୀତା
ପଚାରି ବୁଝିଲେ ମାରୁତ ଠାରୁ,
ସେ ରାଘବ ଦୂତ ବୋଲି ମୈଥିଳୀଙ୍କ
ଜନ୍ମିଲା ବିଶ୍ୱାସ ମୁଦି ଦେବାରୁ ।

ତଦନ୍ତେ ଉଭୟ ସକଳ ବିଷୟ
ହେଲେ କୁହାକୋହି ହରଷଭରେ,
ପିଠିରେ ତାହାଙ୍କୁ ବସାଇ ନେବାକୁ
କହେ ହନୁମାନ ଅତି ଦମ୍ଭରେ ।
ନକରି ଗ୍ରହଣ ତାହାଙ୍କ ବଚନ
ପୁଚ୍ଛନ୍ତି ଜାନକୀ ଅତି ଚକିତେ,
"ବୋହିବ କି ରୂପେ ଏ ସାମାନ୍ୟ ରୂପେ
ହୁଏ ଅନୁମାନ କହ ତୁରିତେ" ।
ହସି ହସି ହନୁ ବଢ଼ାଇଲେ ତନୁ
ସତୀଙ୍କ କଥାରେ ରାମଙ୍କୁ ସ୍ମରି,
ସନ୍ଦେହ ତୁଟିଲା ତେଜ ବଢ଼ିଗଲା
ଦିଶିଲା ଆକାର ଭୂଧର ପରି ।
ଦେଖି ତା ଜାନକୀ ସନ୍ଦେହ ଉପେକ୍ଷି
ଦେଇ ମଥାମଣି କହିଲେ ତାଙ୍କୁ,
"ଖରେ ଫେରି ଯାଇ ସମାଚାର କହି
ଆସ ଲଙ୍କାପୁରୀ ଧରି ରାମଙ୍କୁ" ।
ହରଷେ ପାବନ ପାଇ ମଥାମଣି
ଜାନକୀଙ୍କ ଠାରୁ ଘେନି ବିଦାୟ,
ଜର୍ଜର କରି ବନ ଖାଇ ଫଳମାନ
ଲଙ୍କା ଧ୍ୱଂସିବାକୁ ଚିନ୍ତେ ଉପାୟ ।
ଦେଖି ଏ ଉତ୍ପାତ ଅସୁରୀଙ୍କ ଜାତ
ହେଲା ଅତିଶୟେ ମନେ ତରାସ,
ଜାନକୀ ସମୀପେ ପ୍ରବେଶି ପ୍ରକୋପେ
ପୁଚ୍ଛନ୍ତି ଏ କିଏ କର ପ୍ରକାଶ ।
ଉତ୍ତରିଲେ ସୀତା ହୋଇ ଅତିଭୀତା
"ନଜାଣେ ମୁଁ କିଛି ଅସୁରୀ ମାୟା,
ନ କର ଉପ୍ରୋଧ ବହୁଅଛ କ୍ରୋଧ
ତୁମ ହୃଦୟରେ ନାହିଁକି ଦୟା" ?
ରାବଣ ନିକଟେ ଅସୁରୀଏ ଥୋକେ
ଯାଇ ଜଣାଇଲେ ସବୁ ଘଟଣ,
କୋପେ ଲଙ୍କେଶ୍ୱର ସହସ୍ରେ କିଙ୍କର
ଡାକି ପଠାଇଲା ଅଶୋକ ବନ ।
ପ୍ରବେଶି ସେମାନେ ଦେଖି ହନୁମାନେ
ଗଦାଧରି କଲେ ତା ସଙ୍ଗେ ରଣ,

ନିହତ ସବୁରେ ହେବାରୁ ସେ ମୋଦେ
ଚଢ଼ିଲେ ତୋରଣ ଖମ୍ବ ବହନ ।
ପଡ଼ିଲା ଚହଳ ପବନ ଦୁଲାଳ
ଏକା ବଧିବାରୁ ବହୁ ଦଇତ,
ରାବଣ ଆଜ୍ଞାରେ ଆସିଲେ ସମରେ
ପ୍ରହସ୍ତନନ୍ଦନ ହୋଇ ସଜ୍ଜିତ ।
କମ୍ପେ ଭଣ୍ଡୁଇଁ ହନୁମାନ ଧାଇଁ
ପଥର ଗୋଟିଏ ଆଣି ସଙ୍ଗିର,
ପିଟିବାରୁ ଖରେ ଜମ୍ବୁମାଳି ଶିରେ
ସେ ଗଲା ସେକ୍ଷଣି କୃତାନ୍ତ ଘର,
ମନ୍ତ୍ରୀ ପୁଅମାନେ ଆସି ରଣାଙ୍ଗନେ
ଯୁଝିଲେ ସକ୍ରୋଧେ ହନୁ ସଙ୍ଗରେ ।
ଗୁଡ଼ାଇ ଭୁଡ଼ାଇ ବିଧା ମାରି ମାରି
ନେଲେ ସେମାନଙ୍କ ପ୍ରାଣ ସମରେ,
ଦେଖନ୍ତି ମାରୁତି ପଞ୍ଚ ସେନାପତି
ଆସନ୍ତି ସମରେ ସୈନ୍ୟ ସଜାଇ,
ଗୋଟି ଗୋଟି କରି ଚରଣ ପ୍ରହାରି
ବୈରଶୋଧ ସବୁ ଦେଲେ ଶୁଝାଇ ।
ହୋଇ କୋପଭରି ଅକ୍ଷୟ କୁମରି
ଆସିଲା ସଦମ୍ଭେ ଫୁଲାଇ ଛାତି,
ହନୁ ତାଙ୍କୁ ଧରି ଦାଅନ୍ତେ ଫୋପାଡ଼ି
ଛାଡ଼ିଲା ପରାଣ ବଗ୍ରବା ନାତି ।
ଦାନବ ନିପାତ ଶୁଣି ଦଶମାଥ
ହୋଇ ଚିନ୍ତାକୁଳ କରେ ବିଚାର,
"ଘୋର କପି ଆସି ସମରେ ପ୍ରବେଶି
ବହୁ ଦଇତଙ୍କୁ କଲା ସଂହାର ।
ଡାକ ଜ୍ୟେଷ୍ଠ ପୁତ୍ର ଯୁଦ୍ଧର ଚରିତ
କହି ପଠାଇଲା କପି ନିକଟ,
ଯାଇ ମଧୁବନ ବାନ୍ଧି ହନୁମାନ
ଆଣିଲେ ମହତ୍ତ୍ୱ ହେବ ପ୍ରକଟ" ।
ଶୁଣି ଇନ୍ଦ୍ରଜିତ ଧରି ଦିବ୍ୟ ରଥ
ଗଲେ ଅତି କୋପେ ଅଶୋକ ବନେ,
ବହୁ ପ୍ରୟାସରେ ବାନ୍ଧି ହନୁବୀରେ
ଆଣିଲେ ଘୋଷାରି ସଭା ସଦନେ ।

*★*

## ପଞ୍ଚମ ସର୍ଗ

### ରାବଣ ସହିତ ହନୁମାନର କଥାବାର୍ତ୍ତା

ଘୋର ହନୁମାନ ରୂପ ଦେଖି ଦଶାନନ,
ମନେ ମନେ ଅତିଶୟ ହେଲା ଛନ୍ନଛନ୍ନ ।
ପ୍ରହସ୍ତଙ୍କୁ ଡାକି ଏଣେ କହିଲା ଏସନ,
ପଚାର ତାହାକୁ କିଏ, ତାର ଆଗମନ ।
ପ୍ରହସ୍ତ ପୁଚ୍ଛଇ ଶୁଣି ଜନକ ବଚନ,
କିଏ ତୁ ଆସିଲୁ କିମ୍ପା ଏ ଲଙ୍କା ଭୁବନ ।
ଅଶୋକ ବନକୁ କିଆଁ କଲୁ ଛାରଖାର,
ଦଇତମାନଙ୍କୁ କିଆଁ କଲୁ ସଂହାର ?
ଉତ୍ତରିଲେ ଧୃତି ଧରି ପବନ ଦୁଲାଳ,
"ଯାହା କହେ ମନ ଦେଇ ଶୁଣ ଦୈତ୍ୟମାନ ।
ରାବଣ ଦର୍ଶନ ପାଇଁ ଆସିଥିଲି ଲଙ୍କା,
ଭାଙ୍ଗିଲି ଅଶୋକ ବନ ନ କରି ଆଶଙ୍କା ।
ଭାବିଥିଲି ଡକାଇବେ ଭାଙ୍ଗିଲେ ଏ ବଣ,
ନ ବୁଝି ଦଇତେ କଲେ ମୋତେ ଆକ୍ରମଣ ।
ପ୍ରତିରକ୍ଷା ପାଇଁ କଲି ତାଙ୍କ ସଙ୍ଗେ ରଣ,
ମୋ ସଙ୍ଗେ ନପାରି ସବୁ ଲଭିଲେ ମରଣ ।
ମୋତେ ବାନ୍ଧିବାକୁ ନାହାନ୍ତି କେ ତ୍ରିଭୁବନେ,
ମୋ ଇଚ୍ଛାରେ ବନ୍ଧା ହେଲି ତୁମ ଦରଶନେ ।
ମୋର ନାମ ହନୁମାନ ପବନଙ୍କ ସୁତ,
ଧରଣୀ ଭୂଷଣ ପ୍ରଭୁ ରାମଙ୍କର ଦୂତ ।
ଆସିଲେ ରାଘବ ବନେ ପିତୃସତ୍ୟ ପାଳି,
ତାହାଙ୍କ ସଙ୍ଗେ ଆସିଲେ ଜନକ ଦୁଲାଳୀ ।
ଭାତୃଭକ୍ତ ସାନଭାଇ ସୁମିତ୍ରାନନ୍ଦନ,
କୁଡ଼ିଆରେ ରହିଥିଲେ ପଞ୍ଚବଟୀ ବନ ।
ମୃଗମାରି ଯାଇଥିଲେ ବନେ ବେନି ଭାଇ,
ଏ ସମୟେ ଜାନକୀଙ୍କି ନେଲା କେ ଚୋରାଇ ।
ସୀତାଙ୍କୁ ସେ ଖୋଜି ଖୋଜି ଋଷ୍ୟମୂକେ ଆସି,
ସୁଗ୍ରୀ ସଙ୍ଗ ହେଲେ ସେହି ଅରଣ୍ୟ ବିଶ୍ୱାସୀ ।
ଏକା ବାଣେ ବାଳୀ ମାରି ସୁଗ୍ରୀ କଲେ ରଜା,
ସୀତା ଖୋଜ ପାଇଁ ଚାହାନ୍ତି ତାହାଙ୍କ ପରଜା ।

ମୁଁ ମଧ୍ୟ ଆସିଲି ଖୋଜି ଏ ଲଙ୍କା ନଗରେ,
ଦେଖିଲି ସୀତାଙ୍କୁ ଆସି ଅଶୋକ ବନରେ ।
ପର ଦାରା ଅପହରି ଅରଜିଛ ପାପ,
ସମ୍ଭାଳି ପାରିବ ନାହିଁ ରାମଙ୍କ ପ୍ରତାପ ।
ଲଙ୍କାଗଡ଼ ହେବ ଧ୍ୱଂସ ସବଂଶେ ଅସୁରେ,
ରାମଙ୍କ ବାଣରେ ପୁଣି ଯିବେ ଯମପୁରେ ।
ଫେରାଇ ଦିଅ ଜାନକୀ ଶୁଣି ମୋ ବଚନ,
ଭୋଗକର ନିଶ୍ଚିନ୍ତରେ ଏ ରମ୍ୟ ଭୁବନ ।
ହନୁଙ୍କ ବଚନ ଶୁଣି ଦଶାନନ ରାଗି,
ଆଦେଶିଲେ ଦାନବଙ୍କୁ ତାର ବଧ ଲାଗି ।
ତିଆରି ହେଲେ ଯେବେ ହନୁ ବଧିବାକୁ,
ବିଭୀଷଣ ନିବାରିଲେ କହି ରାବଣକୁ ।
ପାପିଷ୍ଠ ରାବଣ କିପାଁ ଶୁଣିବ କା ବାଣୀ,
ଆଦେଶିଲେ ପ୍ରହସ୍ତକୁ ଦେବାକୁ ସେ ହାଣି ।

ଭାଗ୍ୟବଶେ କେହି ଲଭିଲେ ସମ୍ପଦ
ଉପଦେଶ ଆଉ ନପଡ଼େ କାନେ,
ଘୋଟିଲେ ବିପଦ ପାଗଳ ପରାଏ
ଅଜ୍ଞ ପରାମର୍ଶ ନେଉଥାନ୍ତି ଛନ୍ନେ ।
ଦୈତ୍ୟେ ମାରି ମାରି ହନୁକୁ ଘୋଷାରି
ବୁଲାଇଲେ ଲଙ୍କା ଦାଣ୍ଡେ,
ପ୍ରହାରି ପ୍ରହାରି ନ ପାରିଲେ ମାରି
ହାଲିଆ ହେଲେ ପାଷାଣ୍ଡେ ।
ମାରୁତି ବିଚାରି କପଟ ଆଚରି
ରୋଧ କଲେ ପ୍ରାଣବାୟୁ,
ଦେଖି ତା ଅସୁରେ ମନେ ବିଚାରିଲେ
"ସରିଲା ଏହାର ଆୟୁ" ।
ଟାଣି ଟାଣି ତାକୁ ଲଙ୍କେଶ ଆଗକୁ
ନେଲେ ଦାନବନିକର,
କରି ଦରଶନ ମୂଢ଼ ଦଶାନନ
ହେଲା ଅତି ମୋଦଭର ।
କହେ ଏ ମାଙ୍କଡ଼ କରି ଆଣ୍ଠବଡ଼
ଲଙ୍କାଗଡ଼େ ଚୋର ପରି,
ପଶି ମଧୁବନ କଲୁ ଧ୍ୱଂସଣ
ମାଧୁଷ୍ଟ ଗଲା ତା ସରି ।

ଏ କାଳେ ମାରୁତି ଆଖି ମିଟି ମିଟି
କରି ଉଠିଥିଲେ ବ୍ୟଗ୍ର,
ଲାଙ୍ଗୁଡ଼ ହଲାଇ ରଦନ ଦେଖାଇ
ବସିଲା ରାବଣ ଅଗ୍ରେ ।
କିଏ ହେଲା ବୋକା କିଏ ବା ଚାଲାକା
କିଏ ନୁଆଁଇଲା ଶିର,
ଲାଜ ପାଇ ଅତି ଶୁଖାଇଲେ ମୁଖ
ନ ଫୁଟିଲା କାହାଗିର ।
ଏ ଅନ୍ତେ ମାରୁତି କହେ ହସି ହସି
"ଚକିତ କିପାଁ ରାଜନ,
ମାଡ଼ ମରାଇଲ ଦାଣ୍ଡେ ଘୋଷାରିଲ
ହେଲା ନାହିଁ ବୋଧ ମନ ?

ମୋ ଅଙ୍ଗ ଭେଦିବ ନାହିଁ ଇନ୍ଦ୍ରଙ୍କ କୁଳିଶ,
ନ ପାରିବେ ମାରି କେବେଁ ଅସ୍ତ୍ରେ ବାକଶ ।
କହୁଅଛି ଭେଦ କଥା ଶୁଣ ଦଶାନନ,
ଯତନେ ଗୁଡ଼ାଅ ଆଣି ଲାଙ୍ଗୁଡ଼େ ବସନ ।
ତାଳି ତା ଉପରେ ତୈଳ ଲଗାଇଲେ ନିଆଁ,
ମରିବି ଜଳି ସେକ୍ଷଣି ଭୁକ୍କା ହଠା କିଆଁ ?
କିନ୍ତୁ ଲାଞ୍ଜ ବଢ଼ିଯାଏ ଗୁଡ଼ାଇଲେ ବାସ,
ପୂରଣ କରି ପାରିଲେ ନିଶ୍ଚେ ଯିବ ନାଶ ।
ସତ ବୋଲି ବିଚାରିଲା ବିଶ୍ରବାନନ୍ଦନ,
ପ୍ରହସ୍ତକୁ ଡାକି କହେ ଆଣାଅ ବସନ ।
ଭଣ୍ଡାରେ ଯେତେକ ଥିଲା ଥୋଇଦେଲେ ଆଣି,
ଗୁଡ଼ାଇବାକୁ ବସନ ଲାଞ୍ଜିନେଲେ ଟାଣି ।
ଗୁଡ଼ାଇ ଗୁଡ଼ାଇ ବାସ ହେଲେଣି ନିଷତ,
ଯେତେ ଗୁଡ଼ାଇଲେ ପୁଣି ବଳେ ବୃହଦାଢ଼ ।
ପରିହାସେ ହନୁ କହେ ଦଶାସ୍ୟକୁ ରୁହିଁ'
ଭଣ୍ଡାରେ ବସନ ନାହିଁ ଗୁଡ଼ାଇବା ପାଇଁ" ।
ଜାଣି ନପାରିଲେ କେହି ହନୁର କପଟ,
ସକଳେ ବସନ ପାଇଁ ହେଲେ ଛଟପଟ ।
ରଜାର ହୁକୁମ ନେଇ ସକଳ ଚଳିଲେ,
ଏ ଘରୁ ସେ ଘରେ ପଶି ବସନ ଆଣିଲେ ।
ଗଦାଇଲେ ସେ ଗୁଡ଼ିକ ରାବଣ ଆଗରେ,
ଗୁଡ଼ାଇଲେ ହନୁ ଲାଞ୍ଜେ ହରଷ ମନରେ ।

ଗୁଡ଼ାଇ ଗୁଡ଼ାଇ ବାସ ହୋଇଲେଣି ବକଳ,
ଗୃହଜାତ ବଳକାରୁ ଚଢ଼ିଲା ଚହଳ ।
ବୋଲେ ହନୁ ଅଟ୍ଟହାସେ ଧିକ ଧିକ ଖଣ୍ଡେ,
ଲାଙ୍ଗୁଡ଼େ ଗୁଡ଼ାଇବାକୁ ବସନ ନଅଣ୍ଟ ।
ବସନ ଅଭାବେ ତେଲ ଭଣ୍ଡାରରୁ କାଢ଼ି ।
ଲାଙ୍ଗୁଡ଼ ଉପରେ ସବୁ ଦିଅନ୍ତୁ ଅଜାଡ଼ି ।
ସବୁ ଦେଖି ଦଶାନନ ବସିଚ ମଜଲେ,
ଆଣିବାକୁ ତେଲ କହେ ବହନ ଖନ୍ଦୁନେ ।
ଭଣ୍ଡାର ଘର ତଇଳ ଘରି ଭୁହା ଭୁହା,
ବୋହି ଆଣି ହନୁ ଲାଞ୍ଜ ପାଶେ ହେଲା ଥୁଆ ।
ଇଡ଼ିଲେ ତଇଳ ନେଇ ହନୁ ଲାଙ୍ଗୁଡ଼ରେ,
କୃଶାନୁ ଲଗାଇ ତାକୁ ଗୁଡ଼ିଲେ ଦାଣ୍ଡରେ ।
ଭାବଥିଲେ ନିଶାଚରେ ହନୁ ଯିବ ଜଳି,
ବୁଲାଏ ଲାଞ୍ଜକୁ ପଶି ଏ ଗଳି ସେ ଗଳି ।
ଭବନ ବହିଲା ଖରେ ପୋଡ଼ିଲା ପ୍ରାସାଦ,
ସକଳ ଭାବିଲେ ମନେ ଘୋଟିଲା ପ୍ରମାଦ ।
ଲଙ୍କା ପୋଡ଼ି ହେଲା ଭସ୍ମ ହନୁ ହରଷରେ,
ପହଞ୍ଚିଲେ ଶୀଘ୍ର ଯାଇ ଜାନକୀ ପାଶରେ ।
ଗୋଟି ଗୋଟି କରି ମୋଦେ ଲଙ୍କାର ଘଟଣା,
ଘଟିଥିଲା ଯାହା ସବୁ କରିଲେ ବର୍ଣ୍ଣନା ।
ଏ ଅନ୍ତେ ବିଦାୟ ମାଗି ପୁଲକିତ ମନେ,
ଫେରି ଯିବା ପାଇଁ ଏବେ ଉଠିଲେ ଗଗନେ ।

***

ଆକାଶ ମାର୍ଗରେ ହନୁମାନ ଖରେ
ବାହୁଡ଼ନ୍ତ ମୋଦେ ବାରତା ଧରି,
ମହେନ୍ଦ୍ର ଗିରିରେ ଅଙ୍ଗଦାଦି ବୀରେ
ଚାହାନ୍ତ ଚାହିଁ ଚାତକ ପରି ।
ଘଡ଼ଘଡ଼ି ପରି ହନୁ କରି ରଡ଼ି
ଓହ୍ଲାଇଲେ ନଭୁଁ ମହେନ୍ଦ୍ର ଗିରେ,
ସେ ଘୋର ଗର୍ଜନ ଶୁଣି କପି ଗଣ
ଆରୋହିଲେ ଡେଇଁ ଶୃଙ୍ଗେ ଅଚିରେ ।
ସୀତାଙ୍କ ବାରତା ହୋଇ କଥାବାର୍ତ୍ତା
ଫେରିଲେ କପିଏ ଅତି ସତ୍ୱରେ,
ମାଲ୍ୟବନ୍ତ ଯାଇ ମଥାମଣି ଥୋଇ
କହିଲେ ସକଳ ରାମଙ୍କ ଆଗେ ।

—o—

ଜାନକୀଯାତନା ଶୁଣି ଶ୍ରୀରାମ ଅଧୀର,
ମଥାମଣି ଦେଖି ନେତ୍ରୁଁ ଗଡ଼ାଇଲେ ନୀର ।
ହା ସୀତେ ! ହା ସୀତେ ! କହି ଗଡ଼ନ୍ତି ଭୂମିରେ,
ସୁମିତ୍ରାନନ୍ଦନ ବସି ପ୍ରବୋଧନ୍ତି ଧୀରେ ।
ରାଜ୍ୟ ପାଇଁ ପାଇଁ ଯିଏ ହୋଇଥାନ୍ତେ ରଜା,
ବନେ ବନେ ବୁଲି ଏବେ ଭୋଗନ୍ତି ସେ ସଜା ।
କେତେବେଳେ ଛୁଇଁ ନାହିଁ ଭୂଇଁ ଯାର ପାଦ,
କଣ୍ଟକ ବଣରେ ବୁଲି ସେ ଲଭେ ପ୍ରମାଦ ।
ପଞ୍ଚବାସ ବିନା ଯେହୁ ନ ଲଭେ ସନ୍ତୋଷ,
ବକଳ ବସନ ପିନ୍ଧି ନ ବହନ୍ତି ରୋଷ ।
ମୋତି ମାଣିକ୍ୟରେ ଗଢ଼ା ଯାହାଙ୍କ ଉଆସ,
ଦୀନ ହୀନ ଭାବେ ତାଙ୍କ ତରୁତଳେ ବାସ ।
ସୁମିଷ୍ଟ ବ୍ୟଞ୍ଜନଅନ୍ନ ଯାହାଙ୍କ ଭୋଜନ,
ଫଳମୂଳ ଆହାରରେ କାଟନ୍ତି ଜୀବନ ।
ଖଟନ୍ତି ଯା ପଦେ ଶହ ଶହ ଦାସଦାସୀ,
ପିତୃଆଜ୍ଞା ପାଇଁ ଏବେ ହେଲେ ବନବାସୀ ।
ସୁକୋମଳ ତଳ୍ପ ପାଟ ଶୁଏ ଯେ ନିଇତ,
କରିଅଛି ବସୁମତୀ ତାଙ୍କୁ କୋଳଗତ ।
ହୋଇଥାନ୍ତେ ପାଟରାଣୀ ଯାହାଙ୍କ ଘରଣୀ,
ଲାଞ୍ଛନ୍ତି ଅସୁର ଘରେ ଆଜ ସେ ରମଣୀ ।
ଧନ୍ୟ ଧନ୍ୟ ଭବଲୀଳା ବିଚିତ୍ର ବିଧାନ,
ହନୁଙ୍କ ବଚନେ ହେଲା ସୀତାଙ୍କ ସନ୍ଧାନ ।
କେ ବୁଝିବ ଦୁନିଆଁରେ ବିଧାତାର ଛନ୍ଦ,
ଲାଗିଅଛି ଅହରହ ସୁଖ ଦୁଃଖ ଦ୍ୱନ୍ଦ ।

—o—

କୌଶଲ୍ୟାନନ୍ଦନ କୋମଳ ବଚନ
ସଉମିତ୍ରିଙ୍କର ଶୁଣି ଏକାନ୍ତେ,
ନେତ୍ରୁଁ ପୋଛି ନୀର ଦେଖିଲେ ବାନର
ଦଳ ବସିଥିବା ପାଦପ ତଳେ ।

ଭାଷିଲେ ଏମନ୍ତ ଡାକି ହନୁମନ୍ତ
ଧନ୍ୟ ହନୁମାନ ଧନ୍ୟ ପବନ,
କରିବାକୁ ଦାନ ନାହିଁ କିଛି ଧନ
ଦିଏ ଧନ୍ୟବାଦ କର ଗ୍ରହଣ ।
ଯାଇ ପରଭବ ସୀତା କରି ଠାବ
ଲଙ୍କା ଭସ୍ମ କରି ଫେରିଲ ଯେବେ,
ଦେଖାଇ ଶକତି ରଖିଲ ଖ୍ୟାତି
ତୁମ ସରି ବୀର ଅଛି କେ ଭବେ" ।
ଶ୍ରୀରାମ ଝଟିତି ଡାକି କପିପତି
କହନ୍ତି, "ବାହାର ରଣେ ଚଞ୍ଚଳ,
ଶୁଭବେଳା ଆଜ ଯାନ୍ତୁ କପିରାଜ
ଦେଖାନ୍ତୁ ମାରଗ ସୁବାହୁନଳ ।
ଅଙ୍ଗଦ କାନ୍ଧରେ ସଉମିତ୍ରି ବୀର
ହନୁମାନ କାନ୍ଧେ ମୁଁ ଯିବ ବସି,
ତୁମେ ରହିଥିଲେ ମୋର ସନ୍ନିଧାନେ
ନ ପାରିବ ପଶି କିଏ ଭରସି" ।
ରାମଙ୍କର ଆଜ୍ଞା ନ କରି ଅବଜ୍ଞା
ହୋଇ ସଜବାଜ କପି ସକଳ,
ବାହାରିଲେ ରଣେ ପୁଲକିତ ମନେ
ହୁଙ୍କାରେ କମ୍ପାଇ କାନନ ସ୍ଥଳ ।
ହୋଇ ଧାଡ଼ ଧାଡ଼ ପାଦପ ଉପାଡ଼ି
ଚଳିଚଳନ୍ତି କପି କରି ଗର୍ଜନ,
ଫଳମୂଳ ଖାଇ ଅବା ମଧୁ ପିଇ
କରନ୍ତି ଆନନ୍ଦେ କ୍ଷୁଧା ହରଣ ।
ନଜର ବଢ଼ାଇ ବାଟେ କହି କହି
ଯାଉଁ ଯାଉଁ କେବେ ଉପାଡି ଗିରି,
କନ୍ଦୁକ ପରିଏ ଫିଙ୍ଗନ୍ତି ଆକାଶେ
ପଡ଼ଗଲେ ତାକୁ ଧରନ୍ତି ଚିରି ।
କପିଙ୍କ ଉତ୍ସାହ ଦେଖି ପରନ୍ତପ
ମନୁଁ ଦାଶରଥି କରନ୍ତି ଦୂର,
ସ୍ୱର୍ଣ୍ଣମୟୀ ଲଙ୍କା ନ କରି ଆଶଙ୍କା
ଭାବନ୍ତି ଏମାନେ କରିବେ ଚୂର ।
ମଙ୍ଗଳର ଚିହ୍ନ ହରଷେ ଘନ ଘନ
ଉଡ଼େ ଉଦଲଆ ମୁଣ୍ଡ ଉପରେ,
କୁରଙ୍ଗକୁରଙ୍ଗୀ ବାମଭାଗେ ଚରି
ବୁଲୁଛନ୍ତି ଅତି ହରଷଭରେ ।
ଯାଉଁ ଯାଉଁ ଶେଷେ ସିନ୍ଧୁକୂଳ ପାଶେ
ପହଞ୍ଚି ଶିବିର ନିର୍ମି ସକଳ,
ପାର ହେବା ପାଇଁ ଅଲଙ୍ଘ୍ୟ ଜଳଧି
ଚିନ୍ତିଲେ ଉପାୟ ରାମଙ୍କ ଦଳ ।
ହନୁ ଫେରି ଯାନ୍ତେ ଲଙ୍କାପୁରେ ଦୁଃଖେ
କହେ ଦଶାନନ ଦୈତ୍ୟେ ଅନାଇଁ,
"କପିଟିଏ ଆସି ଲଙ୍କାଗଡ଼େ ପଶି
ସୀତାଠାବ କରିଗଲା ପଳାଇ ।
ଏଣୁ ସିନ୍ଧୁ ପାରି ହେବେ ରାମ ଧରି
ବାନର ଦଳଙ୍କୁ ସୀତା ଉଦ୍ଧାରେ,
ଆଗରୁ ତରକ ଚାହିଁଲେ ଜାନକୀ
ନପାରିବେ ନେଇ ମୁହିଁ ବିଶ୍ୱରେ" ।
ଦଶାସ୍ୟବଚନେ ଶୁଣି ଦୈତ୍ୟଗଣ
କହନ୍ତି ସଭାରେ ଦେଖାଇ ଟାଣ,
"ପାଇଲେ ଅନୁଜ୍ଞା ନ କରେ ଅବଜ୍ଞା
ଯୁଝି ରାମଙ୍କର ନେବୁ ପରାଣ" ।
ଉଠି ବିଭୀଷଣ ଅନାଇଁ ରାବଣ
କହେ କରଯୋଡ଼ି ଅତି ବିନୟେ,
"ନ ବୁଝି କାରଣ ବଳାଉଛ ମନ
ରଣ କରିବାକୁ କଥା ଅନ୍ୟାୟେ ।
ଏକମାତ୍ର ହନୁ ପବନଙ୍କ ସୁନୁ
କଲା କାଳୁବାଳୁ ଦେଖିଲ ସର୍ବେ,
ଦାଶରଥି ସଙ୍ଗେ ଯୁଝିବ କି ଢଙ୍ଗେ
ନଜାଣି କହୁଛ ଅଯଥା ଗର୍ବେ ।
ଛଳେ ନ ବିଚାରି ବିନା ଦୋଷେ ଯାଇ
ଆଣିଲ କୁଟୀରୁ ସୀତା ଚୋରାଇ,
ମୋ ବଚନ ଶୁଣି ସତୀ ଶିରୋମଣି
ରାମଙ୍କ ରମଣୀ ଦିଅ ଫେରାଇ ।
ନ ଦେଲେ ଫେରାଇ ପାରାବାର ଡେଇଁ
ଆସିବେ କପିଏ ରାମ ସହିତ,
ବାନ୍ଧି ଗଲେ ପାଶ ଆମେ ଯିବ ନାଶ
ବୁଡ଼ାଇବ ବଂଶ ସୀତା ନିମିତ୍ତ" ।

ବିଭୀଷଣ ବାଣୀ     ଦଶାସ୍ୟ ନ ଶୁଣି
ଭର୍ତ୍ସିଲା ତାହାକୁ ନାନା ପ୍ରକାରେ,

ଆସନରୁ ଉଠି     ଆଖିକୁ ତରାଟି
ପୁଣି ମାରିବାକୁ ଆସି ଓଟାରେ ।

ରାବଣିଏ ମନା     କରିଲାରୁ ସେନା
କରି ନିବର୍ତ୍ତିଲା ପାପୀ ରାବଣ,

ଚରଣ ପ୍ରହାର     ବହୁତ ଧିକ୍କାର
କହେ "ରାମ ପାଶ ପଶ ଶରଣ" ।

ସହସା ଗଗନ     ଉଠି ବିଭୀଷଣ
କହେ "ତୁମ୍ଭେମାନେ ଥାଅ ସୁଖରେ,

ହିତକୁ ଅହିତ     ମଣୁଅଛ ଭ୍ରାତ
ରହ ଜଗି ଲଙ୍କା ସାବଧାନରେ" ।

ଭାଇକ ଚେତାଇ     ପୁଲକିତ ହୋଇ
ଗଲେ ବିଭୀଷଣ ଗଗନ ମାର୍ଗେ,

ଚତୁମନ୍ତ୍ରୀ ସହ     ହୋଇ ତତପର
ଓହ୍ଲାଇଲେ ତଳେ କପିଙ୍କ ଆଗେ ।

ଦେଇ ପରିଚୟ     କହେ "ନିରାଶ୍ରୟ
କରାଅ ସାକ୍ଷାତ ରାମଙ୍କ ସହ,

ତାଙ୍କ ଶ୍ରୀଚରଣ     ସେବି ଅନୁକ୍ଷଣ
କଟାଇବି ଦିନ ତାହାଙ୍କୁ କହ" ।

ଆଗଭର ହୋଇ     କପିବର ଯାଇ
କହିଲେ ରାମଙ୍କୁ ଅତି ତୁରିତ,

ହନୁଠାରୁ ବୁଝି     ଆଦେଶିଲେ ରାମ
ଆଣିବା ନିମିତ୍ତ ସେହି ଦଇତ ।

ଡାକିବାରୁ ହନୁ     ବିଶ୍ରବାଙ୍କ ସୂନୁ
ଆସି ପୁଲକିତ ରାମ ଦର୍ଶନେ,

ଭକ୍ତି ରଖି ହୃଦେ     ପୂଜି ତାଙ୍କ ପଦେ
ମଜ୍ଜିଗଲେ ରାମ ଗୁଣ କୀର୍ତ୍ତନେ ।

ଆଲୋକ ଉଦୟେ     ଅନ୍ଧାର ଯେସନ
ସାଙ୍ଗ ସଙ୍ଗେ ଯାଏ ଲୁଚି,

ହୃଦପଟେ ଜ୍ଞାନ     ଜାତ ହେଲେ ମୋହ
ତେସନ ପଳାଏ ଘୁଞ୍ଚି ।

ଜାନକୀ ଭରତା     ଲଙ୍କାର ବାରତା
ପୁଚ୍ଛିବାରୁ କହେ ବିଶ୍ରବାସୂନୁ,

"ହେଲେଣି ଲଙ୍କାପୁରୀ     ଚିରି ଗଲା ପରି
ରାବଣ ଜାନକୀ ହରିବା ଦିନୁଁ ।

ରାବଣନନ୍ଦନେ     ପାରଦର୍ଶୀ ରଣେ
ମାୟାରେ ନିପୁଣ ରାବଣ ପରି,

ତାଙ୍କ କୋଷାଗାର     ଅସ୍ତ୍ରେ ଭରପୂର
ସମରେ ମଘବା ନୁହନ୍ତି ସରି" ।

ଶୁଣି ସବୁ କଥା     ଜାନକୀଭରତା
ତାକୁ ସଉମିତ୍ରି କହନ୍ତି ତୋଷେ,

"ମସ୍ତକେ ଏହାଙ୍କ     କରାଅ ସେଚନ
ଆଣି ପାରାବାରୁ ସଲିଳ ପୋଷେ ।

ଲଙ୍କ ସିଂହାସନ     କରି ଆରୋହଣ
ପାଳନ୍ତୁ ପରଜା ଅତି ସୁଖରେ,

ରାଜ୍ୟ ଅଧିକାରୀ     ହେଲେ ପାପାଚାରୀ
ପତନ ତାହାର ସବୁ ଯୁଗରେ" ।

ଏବେ କପି ବୃନ୍ଦ     ନ କରି ବିଳମ୍ବ
ସେତୁ ବାନ୍ଧିବାକୁ ହେଲେ ବାହାରି,

ପକାଇ ଅଚଳ     ପୁଣି ଗଛ ଡାଳ
ପାରାବାର ସେତୁ କଲେ ତିଆରି ।

ଏକାଳେ ଗୁଣ୍ଡୁଚି     ମୂଷାଟିଏ ଆସି
ବାରି ବାଲି ଯାଇ ଅତି ଚତୁରେ,

ସିନ୍ଧୁଜଳେ ବୁଡ଼ି     ବାଲିପରେ ଗଡ଼ି
ଦେଉଥାଏ ଝାଡ଼ି ଦେହ ଆତୁରେ ।

କରି ଦରଶନ     କୌଶଲ୍ୟାନନ୍ଦନ
ଆଣି ତାକୁ କୋଳେ କଲେ ଆଦରି,

ଦେବାରୁ ଆଙ୍ଗୁଳି     ତାହାର ପିଠିକି
ପଞ୍ଚଗାର ହେଲା ଶରୀରେ ତାର ।

ତକା ତକି ହୋଇ     ଗଲେ ପାରି ହୋଇ
ଲଙ୍କା ଅଭିମୁଖେ ହରଷେ ସକଳ,

ଜମାଇ ଆସ୍ଥାନ     କରି ଅବସ୍ଥାନ
କଲେ ଘୋର ରଡ଼ି ବାନର ଦଳ ।

ଦଶାସ୍ୟର ଚର     ଗଲେ ବାର ବାର
କଳିବାକୁ ଏବେ ରାମଙ୍କ ବଳ,

ପଡ଼ିଲେ ଶିବିରେ     ଧରାପଡ଼ି ଦୁଃଖେ
ଲେଉଟିଲେ ମାଡ଼ ଖାଇ ସକଳ ।

ଶୁଣି ଗରଜନ ଭୟେ କମ୍ପମାନ
ହୋଇ ବଂଶପାଣି ଗଲା ପ୍ରାସାଦେ,
କରି ଦରଶନ ରାମଙ୍କ ସଇନ
ଫେରିଲା ସଦନେ ଅତି ବିଷାଦେ ।
* ନରହରଙ୍କର କଳ ବଳକଳ
ଦଶାନନ ମନ ହେଲା ଦୁର୍ବଳ,
ବନ୍ଧୁ ମିତ୍ର ପ୍ରିୟ ନାତି ପୁଣି ପୁଅ
ଆଣିଲା ଡ଼କାଇ ଅତି ଚଞ୍ଚଳ ।
ପାଇ ଅଭୟ ଧାବନ୍ତ ବିଷୟ
କହି ଆଦେଶିଲା ଜଗି ଦୁଆରେ,
"ଅସ୍ତ୍ରଶସ୍ତ୍ର ଧରି ସକଳ ପ୍ରହରୀ
ଚଞ୍ଚଳ ରହନ୍ତୁ ଅତି ହୁସିଆରେ" ।
ହୋଇ ଛଟପଟ ମସ୍ତକେ ମୁକୁଟ
ଲକ୍ଷେ ବାନ୍ଧିଗଲା ଜବେ ଗମନ,
ଅକଳନା ବପି ନିଜେ ମହାକୋପୀ
ହୋଇଲା ଗୁନଆଁ କରି ଦର୍ଶନ ।
ବିଭୀଷଣ ଭାଇ ନଭେ ତାକୁ ଦେଖି
ଏକଥା ରାମଙ୍କ ଶ୍ରୁତି ନିକଟ,
କହିବାରୁ ରାମ ମାରନ୍ତେ ଆଶୁଗ
ପଡ଼ିଲା ଭୂଇଁରେ ସବୁ ମୁକୁଟ ।
ଦଶାସ୍ୟ ଲଜରେ ଫେରି ନିଜ ଘରେ
ମାୟା ରାମ ମୁଣ୍ଡ ନିର୍ମାଣି ଖରେ,
ସୀତାଙ୍କୁ ଦେଖାଇ ରାକ୍ଷସୀଙ୍କୁ କହି
ଫେରିଲା ଭବନେ ବିଷାଦଭରେ ।
ରାମମୁଣ୍ଡ ଦେଖି ବିକଳେ ଜାନକୀ
କରନ୍ତି ରୋଦନ ବାହୁନି ଅତି,
ସରମା ଅସୁରୀ ମିଛ ବୋଲି କହି
ବୋଧଇଲା ତାଙ୍କୁ ଅତି ଝଟତି ।
ନ ସହି ସୁଗ୍ରୀବ ଦଶାସ୍ୟର ଗର୍ବ
ତାହାର ବସିବା ସ୍ଥାନକୁ ଡେଇଁ,
ହେଲେ ଧରାଧରି ପୁଣି ମରାମରି
ଲେଉଟିଲେ ସୁଗ୍ରୀ ଗୋଇଠେ ଦେଇ ।

ଦିଅନ୍ତି ଚିଠାଉ ରାମ ମହାବାହୁ
ବଂଶବାହୁ ପାଖୁ ଲେଖି ଏମନ୍ତ,
"ରେ ରାବଣ ଦର୍ପୀ ଜାନକୀ ସମର୍ପି
ଶରଣ ତୁ ପଶେ ଏ ମୋ ଉଦନ୍ତ ।
ସେ ଚିଠାଉ ନେଇ ପାଚେରିକି ଡେଇଁ
ବାଳୀସୁତ ଗଲା ରାବଣ ପୁରେ,
ଲାଙ୍ଗୁଡ଼କୁ ମୋଡ଼ି ବସେ ନିଶ ମୋଡ଼ି
ବସିନନ୍ତ ଯହିଁ ଲଙ୍କା ଅସୁରେ ।
ରାବଣର ସଭାସଦ ଦେଖି ବାନର ଅଙ୍ଗଦ
ମଣିଲେ ବଡ ପ୍ରମାଦ ପୁଚ୍ଛେ ଦଶାସ୍ୟ,
"କହ କି ନାମ ତୋହର ଅଟୁ କାହାର କୁମର
ଦିଶୁଅଛୁ ତୋ ବଦନ ମାଙ୍କଡ଼ ଆସ୍ୟ
କାହା ଆଜ୍ଞା ପାଇ ଆସିଲୁ
ଦଶାନନ ବଳ କଣ ବୁଝି ନଥିଲୁ ?"
ଉତ୍ତରିଲେ ବାଳୀସୁତ, "ଅଟଇ ମୁଁ ରାମ ଦୂତ,
ମୋ ବାପ ବାନର ନୃପ ବାନ୍ଧି ଲାଞ୍ଜରେ
ତୋତେ ବୁଲେଇ ବୁଲେଇ ବୁଡ଼ାଇଲେ ସିନ୍ଧୁନେଇ
ଦଉଡ଼ି ମୁହଁ ଲଗାଇ କଣ୍ଠ ଦେଶରେ
କର୍କଟ ପରାଏ ଧରି
ଖେଳୁଥିଲା ପିଲାଦନେ ଦେଲୁ ପାସୋର ।
ଶୁଣ କଥାଏ ଆଉରି ମୋ ବାପ କାଖରେ ଧରି
ଚାରବାର ଜଳେ ବୁଡ଼ି ସାରି ତର୍ପଣ
ପହଞ୍ଚିଲେ ଘରେ ଆସି ପଡ଼ିଲୁ ତୁ କାଖୁଁ ଖସି
କାକୁତିରେ ପଡ଼ିବାରୁ ତାଙ୍କ ଶରଣ
ନ ନେଲେ ତୋହର ପରାଣ
ବୋଲାଇ କହୁଚୁ ଏବେ ଦେଖାଇ ଠାଣ" ।
ବିଭୀଷଣ ଧରି ପଚରା ପଚରି
ହୋଇ ଚିଠାଉଟି ଦେଲା ବଢାଇ,
ନ ଧରି ତାହାକୁ ପଢ଼ କହିବାରୁ
ସବୁ ତକ ପଢ଼ିଦେଲା ଶୁଣାଇ ।
ଚିଠାଉ ମରମ ଶୁଣି ଦଶାନନ
କ୍ଷଣେ ଖୁଣ୍ଟାଖୁଣ୍ଟି ହେଲେ ଉଭୟ,
ମୁକୁଟ ଛଡ଼ାଇ ସମର୍ପିଲା ନେଇ
ଶ୍ରୀରାମଙ୍କ କରେ ବାଳୀ ତନୟ ।

* ମନୁଷ୍ୟ ଓ ବାନର

ମୁକୁଟକୁ ଦେଖି ରାମ ମହାସୁଖୀ
ହୋଇ ଆଲିଙ୍ଗିଲେ ତାକୁ,
ବାନର ମାନଙ୍କୁ ଆଦେଶିଲେ ଯେବେ
ଲଙ୍କାପୁରେ ପଶିବାକୁ ।
ରାମଙ୍କ ବରାଦ ପାଇ କପି ବୃନ୍ଦ
ଚାରେରିକ ଭାଙ୍ଗି ପଶିଲେ ପୁରେ,
ମନେ ବହି କ୍ରୋଧ କଲେ ଘୋର ନାଦ
ତା ଦେଖି ଅସୁରେ ଧାଇଁଲେ ଦୂରେ ।
ବାନର ଗର୍ଜ୍ଜନ ଶୁଣି ଦୈତ୍ୟଗଣ
ସମର ଭୂଇଁକି ଆସି ସତ୍ୱର,
କଲେ ଘୋର ରଣ ବହୁ ସେନାଗଣ
ମରିବାରୁ ଗଲେ ଛାଡ଼ି ସମର ।
ଦୈତ୍ୟଙ୍କ ମରଣେ ଇନ୍ଦ୍ରଜିତ ରଣେ
ଯାଇ ମାୟା ଯୁଦ୍ଧ କଲା ବହନ,
ନାଗଶର କାଟି ଲକ୍ଷ୍ମଣ ରାମଙ୍କୁ
ମାରିବାରୁ ହେଲେ ପାଶେ ବନ୍ଧନ ।
ଆଣାଇ ସୀତାଙ୍କୁ ସମର ଭୂଇଁକୁ
ଦେଖାଇଲା ନେଇ ଏହାଙ୍କ ଦଶା,
ସୀତା ତା ଦର୍ଶନେ କାନ୍ଦିଲେ କରୁଣେ
ତ୍ରିଜଟା ବୋଧିଲା ଆସି ସହସା ।
ପୁଷ୍ପକ ଯାନରେ ବାହୁଡ଼ାଇ ନେଲେ
ଅଶୋକ ବନକୁ ପୁଣି ସୀତାଙ୍କୁ,
ଏଣେ ଖଗପତି ହେଲେ ମୁକୁଳାଇ
ନାଗ ପାଶୁଁ ରାମ ସଉମିତ୍ରିଙ୍କୁ ।
ଆସିଲେ ସମରେ ଧୂମ୍ରାକ୍ଷାଦି ବୀରେ
ଦେଖାଇ ନିଜର ଠାଣପଣିଆ,
ହୋଇ ଜଣ ଜଣ ମୁଦିଲେ ନୟନ
ଶୁଣି ତା ରାବଣ ହେଲା ଛୁନିଆଁ ।
ପ୍ରତାପୀ ଅସୁରେ ଯେତେ ଥିଲେ ପୁରେ
ଡକାଇ ଆଣିଲା ବଂଶ ନୟନ,
କରି ଘୋର ରଡ ଗଲା ଉପୁ ଛୁଡ଼
ସମସ୍ତଙ୍କୁ ଧରି ରଣ ଅଙ୍ଗନ ।
ଦୁଇ ପକ୍ଷ ବୀରେ ମାତିଲେ ସମରେ
କାଏ କାହାରିକି ନ ଦିଏ ଛୁଡ଼,
ଏ ପଟେ ସେ ପଟେ ଅସୁରଙ୍କ ମୁଣ୍ଡ
ପକାନ୍ତି କପିଏ ଉଚଳ ତାଡ଼ ।
କୌଶଲ୍ୟାକୁମର ଦେଖି ଦଶଶିର
ଅତି କୋପେ ତାକୁ ବିନ୍ଧିଲେ ଶର,
ସେ ସାୟକ ତାପ ପାଇ ଲଙ୍କ ନୃପ
ପଳାଇଲା ଡରେ ଛାଡ଼ି ସମର ।

*★*

## ରାବଣର ପରାଜୟ ଓ କୁମ୍ଭକର୍ଣ୍ଣର ଯୁଦ୍ଧେ ପ୍ରବେଶ

ବଂଶପାଣି ଲେଉଟିଲା ପରାଭବ ପାଇ,
ଯୁଦ୍ଧ କଥା ଭାବି ଭାବି ଗଲା ରାତି ପାଇ ।
ସୂଚି ମୁନେ ଭାବିଥିଲା ଟାଳିବାକୁ ଗିରି,
ରାମ ଅସ୍ତ୍ରେ ବାଜି ହେଲା ଏବେ ହତଶିରୀ ।
ଜମାଇ ଯାବତ ମନ୍ତ୍ରୀଙ୍କି କହିଲା ଦୁଃଖରେ,
"ନୁହନ୍ତି ସାମାନ୍ୟ କେହି ଏ ନର ବାନରେ ।
ଡାକ ଆଣ କୁମ୍ଭକର୍ଣ୍ଣ ହେବ ମୋର ସାହା,
ନାଉରି ନଥିଲେ କେବେ ତରିବ କି ନାଆ"?
ରାଜ ଆଜ୍ଞା ପାଇ ଗଲେ ଡାକିବାକୁ ତାକୁ,
ନିଦ୍ରାଭଙ୍ଗ କରି ଯେବେ ଆଣିଲେ ତାହାକୁ ।
ଦଶାନନ ଡାକି ତାକୁ ପାଶରେ ବସାଇ,
ଯୁଦ୍ଧ ସମାଚାର ସବୁ କହିଲା ବୁଝାଇ ।
ଏହା ଶୁଣି କୁମ୍ଭକର୍ଣ୍ଣ କହେ ଥଙ୍ଗଥଙ୍ଗ,
"ସମରେ ମାତିବା ନୁହେ ନ୍ୟାୟ ରାମ ସଙ୍ଗେ" ।
କ୍ରୁଦ୍ଧ ହୋଇ ଉଠିଲା ସେ ଶୁଣି ଏ ବଚନ,
"ଯୁକ୍ତି ନ କରି କର ଯୁଦ୍ଧ ଆୟୋଜନ ।
ବିଧାତାର ପ୍ରତିକୂଳେ ଯେତେ କଥା ହିତ,
ସକଳ ମଣନ୍ତି ତାହା ନିରତ ଅହିତ ।
ରାଜାଦେଶେ ବହୁ ହେଲା ସୁରା ହାଣ୍ଡି ହାଣ୍ଡି,
ମୋଦଭରେ କୁମ୍ଭକର୍ଣ୍ଣ ପିଇଲା ଦଗାଣ୍ଡି ।
ଲଙ୍କା ଦାଣ୍ଡେ ନିଶାଭରେ ଯାଏ ଟଳି ଟଳି,
ପହଞ୍ଚିଲା ରଣେ ମଦମତ୍ତ କୁମ୍ଭୀ ଭଳି ।
ଥରେ ଥରେ କରେ ନାଦ ଆଖି ମଳି ମଳି,
ଦେଖି ତା ଭେଳିକି ଗଲେ କପିଏ ତରଳି ।

ମାଳବନ୍ତନୁ ଯୁଦ୍ଧ କରି ଚଳାଇଲେ ଉର,
ଅଙ୍ଗଦ ଆସିଲ ଧାଇଁ କରେ ଗିରି ଧରି ।
ଛେଚିଲ ତାହାର ଶିରେ ବୋହିଲ ରୁଧିର,
କ୍ଷଣେ କ୍ଷଣେ ମୂର୍ଚ୍ଛା ଯାଇ ହେଲ ସେ ଅଧୀର ।
ଉଠି ଅଙ୍ଗଦ ପିଠିକି ବିଧାଏ ମାଇଲ,
ତା ଦେଖି ପର୍ବତ ଧରି ସୁଗ୍ରୀବ ଧାଇଁଲ ।
କ୍ଷଣେ କାଳ ଲଗି ଗଲ ସଂଗ୍ରାମ ତୁମୁଳ,
ଦେଖି ତା ତାଟକା ହେଲେ ଏଣେ କପିକୁଳ ।
କୁମ୍ଭକର୍ଣ୍ଣ ଧାଇଁ ଯାଇ ପର୍ବତ ଉପାଡ଼ି,
ଆଣି ସୁଗ୍ରୀବ ମସ୍ତକେ ଦେଲା ତା କଚାଡ଼ି ।
ସେ ଆଘାତ ପାଇ ସୁଗ୍ରୀ ତଳେ ଗଲ ପଡ଼ି,
ସଙ୍ଗେ ସଙ୍ଗେ ଦୈତ୍ୟବୃନ୍ଦ କଲେ ଜୟ ରଡ଼ି ।
ଯାକି ତାକୁ କାଖତଳେ ଚଳିଲ ବହନ,
ଲଙ୍କାପୁରେ ଦେଖି ତାକୁ ପୁଲକିତ ମନ ।
ଗିରିଟାଏ ଧରି ହନୁ ଧାଇଁଲା ପଛରେ,
ଛିଣ୍ଡାଇ ତା ନାକ କାନ ଅଙ୍ଗଦ ହର୍ଷରେ ।
ମୁକୁଳ ଆସି ଭେଟିଲା କୌଶଲ୍ୟାକୁମର,
ମୋଦେ ଆଲିଙ୍ଗିଲେ ରଘୁମଣି କପିବର ।
ନାକ କାନ ଛିଣ୍ଡିବାରୁ ଲାଜ ପାଇ ଅତି,
ବାହୁଡ଼ିଲା କୁମ୍ଭକର୍ଣ୍ଣ ସଂଗ୍ରାମେ ଝଟତି ।
ବାଡ଼ି ବଜ ଫଣୀପରି ହୁଏ ସେହିକାଳେ,
ଗଲେ ଛପି କପିମାନ ଭୟେ ଶାଖୀ ଡାଳେ ।
ଶ୍ରୀରାମଙ୍କ ସଙ୍ଗେ କଲା ସଂଗ୍ରାମ ଏଥର,
ଛିଣ୍ଡିଲା ତା ହାତ ଗୋଡ଼ ବାଜି ଝଟେ ଶର ।
ଚକ୍ର ପରି ଗଡ଼ିଯାଏ ଗଣ୍ଡିଟି ତାହାର,
କଲେ ବ୍ରହ୍ମଶରେ ରାମ ତାହାକୁ ସଂହାର ।
ଏ ଅନ୍ତେ କୌଶଲ୍ୟାସୁତ ସୁବଳ ଗିରିରେ,
ସେନା ସହ ମହାସୁଖେ ଶୋଇଲେ ରାତିରେ ।
କୁମ୍ଭକର୍ଣ୍ଣ ମୃତ୍ୟୁ ବାର୍ତ୍ତା ପାଇ ଦଶାନନ,
କାନ୍ଦିନା କାନ୍ଦିନା କେତେ କଲା ରୋଦନ ।
ତ୍ରିଶିରା କୁମର ତାକୁ ଆସି ପ୍ରବୋଧିଲେ,
ଆରଦିନ ଷଡ଼ଭାଇ ଯୁଦ୍ଧକୁ ଧାଇଁଲେ ।
ସକଳେ କପିଙ୍କ ହସ୍ତେ ଛାଡ଼ିଲେ ଜୀବନ,
ଦେବେ ମହାସୁଖୀ ଦେଖି ଅସୁର ନିଧନ ।

ପ୍ରାଣୀଏ ପ୍ରାଣକୁ ସବୁଠୁଁ ଅଧିକ
ମଣନ୍ତି ଅନବରତ,
ନିଜର ସର୍ବସ୍ୱ ଦେଇ ବଞ୍ଚିବାକୁ
ନ ଇଚ୍ଛେ କିଏ କହତ ?
ଅତିକାୟ ବୀର ଅସୁର ସଂହାର
ଶୁଣି ରୋଷ ବହ୍ନି ମନେ,
ସିଂହ ନାଦ ମାରି କରି ଘୋର ରଡ଼ି
ରଥେ ଗଲା ବସି ରଣେ ।
ପଡ଼ିଲା ହାବୁଡ଼ି ଯେତେକ ମାଙ୍କଡ଼
ତାଙ୍କୁ ପକାଇଲା ମାରି,
ସୁମିତ୍ରାଙ୍କ ସୁତ ଅତିକାୟ ରଥ
ଦେଖି ଖୁସୀ ହେଲେ ଭାରି ।
କେବେ ତାଙ୍କ ଆଗେ ଠାଣି କହେ ରାଗେ
ସମ୍ଭାଳ ଲକ୍ଷ୍ମଣ ବୀର,
କହନ୍ତି "ବତାଇ ଦେବି ମୁଁ ଛଡ଼ାଇ
କାହିଁକି ହେଉ ଅଧୀର" ?
ଯେତେ ପେଶେ ଶର ଅତିକାୟ ବୀର
ଦେଲେ ତା କାଟି ଲକ୍ଷ୍ମଣ,
କ୍ଷେପି ବ୍ରହ୍ମଶର ଦେଲେ କାଟି ଶିର
ହେଲା ଦୈତ୍ୟର ମରଣ ।
ମରିବାରୁ ଅତିକାୟ ଶୁଣି ବିଶ୍ରବା ତନୟ
ମନେ ଜାତ ହେଲା ଭୟ ଥରଇ ଗାତ୍ର,
ନୟନେ ଲୋତକ ଜଳ ଦେଖି ପାରିମନ୍ତ୍ରୀ ମାନ
ବୋଧନ୍ତି ହୋଇ ବିକଳ ପାହିଲା ରାତି
ଧନ୍ୟ ଧନ୍ୟ ବିଧାତା ଛନ୍ଦ
ପଡ଼ିଲେ ଦଶା ବିପାକ ଉପୁଜେ ଦ୍ୱନ୍ଦ୍ୱ ।
ଯେତେ ଥିଲେ ପୁଅ ନାତି ଯୁଦ୍ଧକୁ ପଠାଇ ଘାତି
ସକଳ ହେଲେ ଆହୁତି ନାହିଁ କେ ସାହା,
କଥା ନମାନି କାହାର ହେଲା କେଡ଼େ ହରବର
ଲଙ୍କାଆଡ଼େ ହାହାକାର ବୁଡ଼ିବ ନାଆ
ବଚନ ଏ ଭବ ବେଭାର
ଯମ କି ଛାଡ଼ିବ ଥିଲେ କଳା ଦୁଆର ।
ଦେଖି ଇନ୍ଦ୍ରଜିତ ପଅରି ଆରତ
ଆସି ତାରି ପାଶେ ଦେଲା ଭରସା,

ହୋମ କାର୍ଯ୍ୟ ସାରି ଇଥଂ ସଜ କରି
ଗଲା ଅନ୍ତରୀକ୍ଷେ ଉଠି ସହସା ।
କାହାକୁ ମୂଷଳ କାହାକୁ ବା ଶୂଳ
ପ୍ରହାରି ଅଙ୍ଗନ କଲା ବାନରେ,
ଲକ୍ଷ୍ମଣ ଅନୁଜ ଦେଖି ତାର ତେଜ
ଲୁଚିଲେ ସେକାଳେ ଗିରି କନ୍ଦରେ ।
ମାରି ବ୍ରହ୍ମବାଣ ହଜାଇଲା ଜ୍ଞାନ
ରାମ ଲକ୍ଷ୍ମଣଙ୍କୁ ଦୁଷ୍ଟ ଦଇତ
ଅତି ମୋଦଭରି ଫେରି ଲଙ୍କାପୁରି
ଜନକ ସମୀପେ ଗଲା ତୁରିତ ।
କରି ନମସ୍କାର ଯୁଦ୍ଧ ସମାଚାର
କହିଲା ବିସ୍ତାରି ହରଷଭରେ,
ଶୁଣି କଥାମାନ କଲା ଆଲିଙ୍ଗନ
ପ୍ରଶଂସି ତାହାକୁ ଅତି ଆଦରେ ।
ଏଣେ ହନୁମାନ ହୋଇ ସଚେତନ
ଜାମ୍ବବାନ ପାଶେ ଯାଇ ବହନ
ତାଙ୍କ ବୋଲ ମାନି ମୃତ ସଞ୍ଜିବନୀ
ଆଣିବାକୁ ଗଲା ଗନ୍ଧମାଦନ ।
ନ ପାଇ ଔଷଧ ମନେ ବହି କ୍ରୋଧ
ଉପାଡ଼ି ସେ ଗିରି ଟେକି ଆଣିଲା,
ସୁବେଳ ପର୍ବତେ ଶ୍ରୀରାମଙ୍କ ପାଶେ
ଓହ୍ଲାଇ କାନ୍ଧରୁ ତଳେ ଥୋଇଲା ।
ଔଷଧି ଗନ୍ଧେ ପାଇ ଚେତା ସର୍ବେ
ଉଠିବାରୁ ହନୁ ନେଇ ତ୍ୱରିତ,
ତାକୁ ଯଥା ସ୍ଥାନେ ଥୋଇ ସାବଧାନେ
ଆସିଲେ ବାହୁଡ଼ି ରାମଙ୍କ କତି ।
ଟାଣୁଆ ଦଇତେ ଥିଲେ ଲଙ୍କେ ଯେତେ
ଗଲେଣି ସକଳ ଶମନ ଘର,
ପ୍ରଜଙ୍ଘ କମ୍ପନ ଆଦିଙ୍କ ମରଣେ
ଅତି ଉଲ୍ଲସିତ ସର୍ବେ ଅମର ।
ଦଶାନନ ମନ ହୁଏ ଛନ୍ନ ଛନ୍ନ
ମରିବାରୁ ସର୍ବେ ଦଇତ କୁଳ,
ଡାକି ଇନ୍ଦ୍ରଜିତ କହିଲା ତୁରିତ
ସମର ଭୂଇଁକି ହୋଇ ଆକୁଳ ।

ରାବଣର ବାଣୀ ଶୁଣିଣ ରାବଣି
ସମର ଭୂଇଁକି ଗଲା ବହନ,
ଯୁଦ୍ଧରେ ନ ପାରି ମାୟା ସୀତା କରି
ହନୁ ଆଗେ ତାହା କଲା ଛେଦନ ।
ଦେଖି ତା ମାରୁତି ଚଳାଇ ତ୍ୱରିତ
ଶ୍ରୀରାମଙ୍କ ପାଶେ କହେ ବିରସେ,
ଯୁଦ୍ଧେ ଇନ୍ଦ୍ରଜିତ ଜାନକୀଙ୍କ ହତ
କରି ଲେଉଟିଲା ଅତି ହରଷେ ।
ହନୁଙ୍କ ବଚନେ କୌଶଲ୍ୟା ନନ୍ଦନ
ବିଳପିଲେ ହୋଇ ବିଶେଷ ବ୍ୟସ୍ତ,
ମଧୁବନେ ସୀତା ଥିବାର ବିଜିତା
କହିବାରୁ ରାମ ହେଲେ ଆଶ୍ୱସ୍ତ ।
ଏ ସମୟେ ବିଭୀଷଣ ରାମଙ୍କୁ କହନ୍ତି
"ଶୁଣ ମୁଁ କହୁଛି ଯାହା ସ୍ଥିର କରି ମତି ।
ବରଷ ଦ୍ୱାଦଶ ଯାଏ ଯେ କାହିଁ ଅଛନ୍ତି
ଆହାର ମୈଥୁନ ନିଦ୍ରା ଥିବ ପରିହରି ।
ସେ କେବଳ ସଂହାରିବ ରାବଣ କୁମରି
ବେଦପତି ଠାରୁ ସେହି ପାଇଛି ଏ ବର ।"
ଚଳିଲା ଘଟଣି ତେଣୁ ରାମଙ୍କ ଶିବିରେ,
କିଏ ସେ ମାରିବ ଦୁଷ୍ଟ ରାବଣି ଅଚିରେ ।
ତା ଶୁଣି ସୁମିତ୍ରା ସୁତ କହନ୍ତି ଦମ୍ଭରେ,
'ଭେଦିବି ତାହାର ଆଣ୍ଠ ଏ ବ୍ରହ୍ମ ଶରରେ' ।
ଜାମ୍ବବାନ କହନ୍ତି ତା ସୁମିତ୍ରା ନନ୍ଦନ
"ପାଳନ୍ତି ବ୍ରହ୍ମଚର୍ଯ୍ୟ ହେଉ ସନ୍ଦେହ ମୋଚନ ।"
ପଚାରିଲେ ତାଙ୍କୁ ଏହା ଶୁଣି ରଘୁନାଥ
ଉତ୍ତରିଲେ ସତବୋଲି ଉର୍ମିଳାଙ୍କ ନାଥ ।
ତେଣୁ ବିଭୀଷଣ ସହ ସୁମିତ୍ରା ନନ୍ଦନ
ରାବଣିର ହୋମସ୍ଥାନେ କରିଲେ ଗମନ ।
ହନୁମାନ ଜାମ୍ବବାନ ଅଙ୍ଗଦ ବାନରେ
ଚଳିଲେ ହରଷେ ସଉମିତ୍ରିଙ୍କ ପଛରେ ।
ବ୍ୟୂହ ଭେଦି ଲଙ୍କାଗଡ଼େ ପଶିଲେ ସକଳେ,
ପହଞ୍ଚିଲେ ଯାଇ ନିକୁମ୍ଭିଲା ବଟ ତଳେ ।
କରୁଥିଲେ ହୋମ ଯହିଁ ଦଶାସ୍ୟନନ୍ଦନ
ସେ କୁଣ୍ଡେ ରଞ୍ଜନେ ଭ୍ରଷ୍ଟ କଲା ହନୁମାନ ।

ହୋମ ସ୍ଥାନେ ବାଳୀସୁତ ଦେଖି ରାବଣିକ,
ବଜାଇଲ ବଧାଣାଏ କସି ତା ପିଠିକି ।
କ୍ରୋଧଭରେ ହୋମ ସ୍ଥାନୁ ଆସି ବାସବାରି,
ନେଲ ସଙ୍ଗ ମାରୁତିର ପଞ୍ଚଶର ମାରି ।
ନ ପଡ଼ିଲ ଜଣା କାହିଁ ଅଙ୍ଗଦ ଲୁଚିଲ,
ବାସବାରି ଖରେ ଯାଇ ବ୍ୟୂହରେ ପଶିଲ ।
ଚେତା ପାଇ ହନୁ    ଉଠି ସେହି ସ୍ଥାନୁ
ଗୋଡ଼ାଇଲ ଦେଖି ଅସୁର ଦଳେ,
ଧରଷିଲ ଖରେ    ଅନେକ ଅସୁରେ
ହରାଇଲେ ପ୍ରାଣ ଅତି ବିକଳେ ।
ସଜ କରି ରଥ    ଉର୍ମିଳାଙ୍କ ନାଥ
ଗଲେ ଯୁଝିବାକୁ ହନୁ ସଙ୍ଗରେ,
ଦୁହିଁଙ୍କର ରଣ    ହୋଇଲା ଭୀଷଣ
ଦେଖି ତା ଲକ୍ଷ୍ମଣ ମିଳିଲେ ଖରେ ।
ଲଗିଲ ସମର    ବେଳୁଁ ବେଳ ଘୋର
ଛାଟିକା ସକଳ କପି ଅସୁରେ,
ସୁମିତ୍ରାକୁମାର    ମାରି ବ୍ରହ୍ମଶର
ପଠାଇଲେ ତାକୁ ଶମନ ପୁରେ ।
ପଡ଼ିବାରୁ ତଳ    ଯୁଦ୍ଧେ ବାସବାରି
ଅତି ପୁଲକିତ ଅରାତି ଦଳ,
କୁଣ୍ଢାକୁଣ୍ଢି ହୋଇ    ଛାଡ଼ି ରଣଭୂଇଁ
ରଘୁମଣି ପାଶେ ଗଲେ ସକଳ ।
ବାସବାରି ମୃତ    ଶୁଣି ରଘୁନାଥ
କୋଳାଇ ଲକ୍ଷ୍ମଣ ହରଷ ମନେ,
ଆଉଁଷି ଶରୀର    ମୋଛି ଶ୍ରମଜାଳ
ତୋଷିଲେ ତାହାଙ୍କୁ ମିଷ୍ଟ ବଚନେ ।
ଲଙ୍କାର ମଉଡ଼ମଣି    ରାବଣି ମରଣ ଶୁଣି
ଶୋକେ ଲୋଟନ୍ତି ଧରଣୀ ଲଙ୍କ ରମଣୀ,
ଘରେ ଘରେ ଉଠେ କୋହ    ଦଶାନନ ଯାଏ ମୋହ
ସକଳ ଉଦ୍ୟେ ଅସ୍ତ ଗଲ ତରଣି,
ବଚନ ବିଧାତା ବରୁର
କେ ଉଠେ ଉଲ୍ଲାସେ ମାତି କାନ୍ଦ କାହାରି ।
ଗର୍ଭଧାରୀ ମନ୍ଦୋଦରୀ    ତା ସଙ୍ଗେ ପ୍ରମିଳାନାରୀ
କପାଳକୁ କର ମାରି କଲେ ରୋଦନ,
ଭୋଗି ବୈଧବ୍ୟ କଷଣ    ହେବ ହୃଦୟ ପାଷାଣ
ଧାଇଁ ଆସି ଦାସୀଗଣ ବୋଧିଲେ ମନ
କାହା ଦୁଃଖ କିଏ ହରିବ
ସମସ୍ତ ଆବର୍ତ୍ତ ମଧ୍ୟେ ସବୁ ଡୁବିବ ।
କହିଲେ କଥା ନ ଘେନ    ଗୁଣ ବାହୁନି ବାହୁନି
କାନ୍ଦନ୍ତି ନ ହୋଇ ଭୁନ ପିଟନ୍ତି ମୁଣ୍ଡ,
ଭୂଷଣ ଛିଣ୍ଡାଇ ଦେଇ    ଲଲାଟୁଁ ସିନ୍ଦୂର ଧୋଇ
ଗଡ଼ନ୍ତି ପ୍ରମିଳା ଦେଇ ନାଶଏ ତୁଣ୍ଡ,
ଶୁଣି ତାର ବିକଳ ନାଦ
ପରନାରୀ ଅପହରି କେଡ଼େ ପ୍ରମାଦ ।
ଦଶାନନ ତାରି ପୁରି    ରୋଷେ ଡାକ ମହୋଦରି
ବିରୂପାକ୍ଷ ଆଦି ବୀର କହେ ଏସନ,
"ଲଙ୍କ ପଶି କପିଥାଟ    ମାରନ୍ତି କେତେ କୁହାଟ
ସହିବ କି ଲଙ୍କରାଟ ଆଣ ସ୍ୟନ୍ଦନ
ବାଘ ଘରେ ମିରିଗ ନାଟ
ମଣ୍ଡୂକ କି ଭୁଜଙ୍ଗକୁ ନଛାଡ଼େ ବାଟ" ?
କ୍ରୋଧେ ଥରହର    ହୋଇ ଦଶଶିର
ସମର ଭୂଇଁକି ଯାଇ ଡାକିଲ,
କାହିଁ ବିଭୀଷଣ    କାହିଁ ରଘୁରାଣ
କାହିଁ ହନୁମାନ ଆସ ବୋଇଲ ।
ତା ଆହ୍ୱାନ ଶୁଣି    କୋପେ ରଘୁମଣି
ରାବଣ ଆଗରେ ହୋଇଲେ ଠିଆ,
ସେ ରୂପ ଦର୍ଶନ    କରି ଦଶାନନ
କ୍ଷଣେକାଳ ହେଲ ଅତି ଗୁନିଆଁ ।
ଚଢ଼ନ୍ତେ ଦମ୍ଭରେ    ମାରନ୍ତେ ସେ ଶର
କାଟନ୍ତି ଶ୍ରୀରାମ କ୍ରୋଧରେ ଜଳି,
ଏକକୁ ଆରେକ    ବିନ୍ଧନ୍ତି ସାୟକ
କିଏ କାହାରିକି ନପାରେ ବଳି ।
ମାରି ସାତ ଶର    ସୁମିତ୍ରାକୁମର
କଲେ ଚୂନୁଚୂନା ସାରଥି ମୁଣ୍ଡ,
ପୁଣି ପାଞ୍ଚ ଶର    ବିନ୍ଧି ତରବରେ
ଧ୍ୱଜସହ କଲେ କାର୍ମୁକ ଗୁଣ୍ଡ ।
ଚଢ଼ି ରଥୁଁ ଡେଇଁ    ତଳେ ଠିଆ ହୋଇ
ଫିଙ୍ଗିଲ ଶକତି ବିଭୀଷଣକୁ,

ମାରି ତିନି ଶର  ସୁମିତ୍ରାକୁମର
କଲେ ନିବାରଣ ଶକତିଟିକୁ ।
ଏକଘ୍ନୀ ଶକତି  ଦଶାନନ କାଢ଼ି
ମାରିବାକୁ ବିଭୀଷଣେ ଉଦ୍ୟତ,
ହେବାରୁ ଲକ୍ଷ୍ମଣ  ତାକୁ ରୋକିବାକୁ
ଠିଆ ହେଲେ ଜବେ ତାର ଅଗ୍ରତ ।
ଲକ୍ଷ୍ମଣଙ୍କୁ ଚାହିଁ  ରାବଣ କହଇ
ଯାଅ ଅପସରି ଏହାର ପାଶୁଁ,
ମୋହର ଆଦେଶେ  ବିଭୀଷଣ ପାଶେ
ଯାଇ ଅବଲମ୍ବେ ତାହାକୁ ତ୍ରାସୁ" ।
ରାବଣ ବଚନ  ସୁମିତ୍ରାନନ୍ଦନ
ଶୁଣି ଉତ୍ତରିଲେ "ବିପଦ କାଳେ,
ଯେ ପଶେ ଶରଣ  ତାକୁ ପ୍ରାଣପଣେ
ନିରତ ରଖିବ ସ୍ୱଆତ୍ମ ଆଳେ" ।
ରୋଷେ ତମ ତମ  ହୋଇ ଦଶାନନ
ତତ୍ପରେ ତାହାଙ୍କୁ ଅସ୍ତ୍ର ଶିଖିବା,
ତହୁଁ ବଳିଗଲା  ଲକ୍ଷ୍ମଣଙ୍କ କ୍ରୋଧ
ଅଚଳ ପରାୟେ ସେ ହେଲେ ଉଗ୍ର ।
ଲକ୍ଷ୍ମଣଙ୍କୁ ଲକ୍ଷ  କରି ସେ ବିଂଶାକ୍ଷ
ମାରିଲା ଶକତି ମହା ରାଗରେ,
ଯାଇ ସେ ଶକତି  ଗରଜନ କରି
ଲକ୍ଷ୍ମଣଙ୍କ ବକ୍ଷେ ଭେଦିଲା ଖରେ ।
ହୋଇ ହତଜ୍ଞାନ  ସୁମିତ୍ରାନନ୍ଦନ
ପଡ଼ିଲେ ଧରଣୀ ତଳେ ବହନ,
ଶୋକରେ ଅଧୀର  ହେଲେ ରଘୁବର
ସହ ବିଭୀଷଣ ମର୍କଟଗଣ ।
କାଢ଼ିବାକୁ ଶକ୍ତି  ନଥିଲା କା ଶକ୍ତି
ରାମ ନିକେ ଯାଇ ତାକୁ କାଢ଼ିଲେ,
ସୁଷେଣ ବଚନେ  ବିଶଲ୍ୟକରଣୀ
ପାଇଁ ହିମାଳୟେ ହନୁ ଚଳିଲେ ।
ଲକ୍ଷ୍ମଣଙ୍କ ବକ୍ଷେ ଶକ୍ତି ଭେଦ ପରେ
ଦଶାନନ ହର୍ଷେ ଲେଉଟିଲା ଘରେ ।
ଗନ୍ଧମାଦନ  ଯାଇ ହନୁମାନ
ଖୋଜନ୍ତେ ଔଷଧ ନପାଇ ଦୁଃଖେ,
ସେ ଅଚଳ ତାଡ଼ି  କାନ୍ଧେ ତାକୁ ଧରି
ଫେରେ ନଭପଥେ ଲଙ୍କାଭିମୁଖେ ।
ଅଯୋଧ୍ୟା ଗଗନେ  ଆସେ ହନୁମାନ
ପବନ ବେଗରେ ଅଚଳ ଧରି,
ଏକାଳେ ସହସା  କୈକେୟୀକୁମର
ଖସାଇଲେ ହନୁ ବାଟୁଳି ମାରି ।
କଥାଭାଷା ପରେ  ବିଦା ଦେଇ ହନୁ
ଉଠିଲା ଆକାଶେ ସେ ଗିରି ଧରି,
ରାତି ନ ପାହୁଣୁ  ପହଞ୍ଚିଲା ଆସି
ସମର ଭୂଇଁରେ ରାମଙ୍କୁ ସ୍ମରି ।
ଏକପ୍ରସ୍ତ ନାଶ  କ୍ଷୀର ଲୋଡ଼ିବାରୁ
ସେହିକ୍ଷଣି ହନୁ ଲଙ୍କା ଗମିଲା,
ତାହା କ୍ଷୀର ଆଣି  ପଦ୍ମ କ୍ଷୀର ସଙ୍ଗେ
ଦେବାରୁ ଲକ୍ଷ୍ମଣ ପ୍ରାଣ ରହିଲା ।
ତଦନ୍ତେ ମାରୁତି  ପର୍ବତକୁ ନେଇ
ଯଥାସ୍ଥାନେ ଥୋଇ ଫେରି ଆସିଲା,
ଦେଖି ତା ବିକ୍ରମ  ଶ୍ରୀରାମ ପ୍ରଶଂସା
କରିବାରୁ ତାର ତେଜ ବଢ଼ିଲା ।
ଲକ୍ଷ୍ମଣ ବଞ୍ଚିବା ଶୁଣି ନିକଷାକୁମାର,
ଚିନ୍ତୁଅଛି ନାନା କଥା ହୋଇ ଉଜାଗର ।
ପଡ଼ିଲା ତାହାକୁ ଏବେ ବିଷମ ସଙ୍କଟ,
ଭାବିଲା ତା ମୃତ୍ୟୁକାଳ ହେଲାଣି ନିକଟ ।
ଏ ସମୟେ ଜନନୀ ତା ପାଖେ ଆସି କହେ,
"ମହୀରାବଣ ପୁଅ ତୋ ପାତାଳରେ ରହେ ।
ଚିନ୍ତିଲେ ସେ ଏହିକ୍ଷଣି ଏଠାକୁ ଆସିବ,
ମାୟାବଳେ ନେଇ ବେନି ଭାଇ ସେ ବଧିବ,
ଜନନୀଙ୍କ କଥା ଶୁଣି ଚିନ୍ତିଲା ସେକ୍ଷଣି,
ଆସିଲା ମହୀରାବଣ ପାଶେ ଲଙ୍କମଣି ।
ରାବଣ ବର୍ଣ୍ଣିଲା ମହୀରାବଣ ଆଗରେ,
ଯାହା ଘଟିଥିଲା ସବୁ ଆମୂଳଚୂଳରେ ।
ସବୁ କଥା ଶୁଣି ମହୀରାବଣ ଚକିତ,
ମଙ୍ଗିଲା ବେନି ଭାଇଙ୍କି ନେବାକୁ ତୁରିତ ।
ଏ ସମୟେ ବିଭୀଷଣ ବିହଙ୍ଗ ରୂପରେ,
ଆସି ଦେଖିଗଲା ସବୁ ଯା ହେଲା ଏଠାରେ ।

ଶିବିରେ କହିଲା ଯାଇ ହେବାକୁ ସତର୍କ,
ବ୍ୟର୍ଥ ହେବ କାର୍ଯ୍ୟ ହେଲେ ଟିକିଏ ଅତର୍କ ।
ଏତେ କହି ବିଭୀଷଣ ବାନରମାନଙ୍କୁ
ନେଇ ଜଗାଇଲା ଗୃହ ଦୁଆରମାନଙ୍କୁ ।
ମହୀରାବଣ କପଟ ନବୁଝି ମାରୁତ
ଦେଖିବାରୁ ତାକୁ ବିଭୀଷଣର ଆକୃତ ।
ଛାଡ଼ି ଦେଲା ଭିତରକୁ ଗଲା ସେ ଦଇତ
ଅଜ୍ଞାନ କରାଇ ଦୁଇ ଭାଇଙ୍କି ତୁରିତ ।
ନେଇଗଲା ପାତାଳକୁ ହରଷ ମନରେ,
କେହି ନ ଜାଣିଲେ ଏହା ରହିଲା ଗୁପ୍ତରେ ।
ଏ ସମୟେ ବିଭୀଷଣ ଆସି ହନୁ ପାଶେ
ପୁଚ୍ଛନ୍ତି ଖବର ତାଙ୍କୁ ରହିଲା ତରାସେ ।
ଭିତରକୁ ଗଲା ବିଭୀଷଣ ଦେଖିବାକୁ
ନ ଦେଖି ତଟସ୍ଥ ହେଲା ରାମ ଲକ୍ଷ୍ମଣଙ୍କୁ ।
କି ହେଲା କି ହେଲା ବୋଲି ପଡ଼ିଲା ଚହଳ
ବାନରମାନଙ୍କ ନେତ୍ର ଝରେ ଲୋତକ ଜଳ ।
ବିଭୀଷଣ କରେ ଶୋକ ହନୁମାନେ ରହି
"କି ବୁଦ୍ଧି କରିବି ମୋତେ ବାଟ ଦିଶୁ ନାହିଁ ।"
ହନୁମାନ କହେ ଦମ୍ଭେ ବାନରମାନଙ୍କୁ
ଖୋଜି ମୁଁ ଆଣିବି ଯାଇ ପାତାଳପୁରକୁ ।
ଏହା କହି ବାୟୁବେଗେ ଚଳିଲା ପାବନି
ପହଞ୍ଚିଲା ପାତାଳରେ ନ ପାଉ ରଜନୀ ।
ମକରଧ୍ୱଜ ସେ ପୁର ଦ୍ୱାରେ ଜଗିଥିଲା
ପ୍ରବେଶିବା ଦେଖି ତାକୁ ପଥ ଓଗାଳିଲା ।
ଧରାଧରି ହୋଇ ଦୁହେଁ ହେଲେ ମହାମରି
ଶେଷେ ହନୁ ପକାଇଲା ତଳେ ତାକୁ ଧରି ।
ପରିଚୟ ମାଗି ପୁଣି ଦେଲା ପରିଚୟ,
ମୋଦେ କୁଣ୍ଢାକୁଣ୍ଢି ହେଲେ ଦୁହେଁ ବାପ ପୁଅ ।
ପୁଅଠାରୁ ବୁଝି ହନୁ ସକଳ ଖବର
ଦେଖିଲା ଭିତରେ ଯାଇ ରମ୍ୟ ସରୋବର ।
ମାଛିରୂପ ଧରି ଯହିଁ ଥିଲେ ବେନିଭାଇ
ପ୍ରବେଶି ରହିଲେ ଦେଲା ବିଭୂତ ଲଗାଇ ।
ଶ୍ରୀରାମ ଲକ୍ଷ୍ମଣ ଦୁହେଁ ଲଭିଲେ ଚେତନା
ହନୁମାନ ସବୁକଥା କରିଲା ବର୍ଣ୍ଣନା ।

କାଳୀ ମନ୍ଦିରରେ ତହୁଁ ହନୁ ପ୍ରବେଶିଲେ,
ସ୍ତୁତି କରିବାରୁ ଦେବୀ ପ୍ରସନ୍ନ ହୋଇଲେ ।
ଉଦ୍ଧାରିବା ବାଟ ଶୁଣି ହନୁମାନ ଯାଇ
ରାମ ଲକ୍ଷ୍ମଣଙ୍କୁ ସବୁ କହିଲେ ବୁଝାଇ ।
ଏ ଅନ୍ତେ ମାରୁତ ଆସି ଦେବୀଙ୍କ ପଛରେ
ଖଣ୍ଡା ଧରି ରହିଥାନ୍ତି ଅତି ଗୋପନରେ ।
ପାପିଷ୍ଠ ମହୀରାବଣ ଧରି ବେନିଭାଇ
ପ୍ରବେଶିଲା ମନ୍ଦିରରେ ବଳି ଦେବାପାଇଁ ।
ଖଣ୍ଡାରେ ଦଗଡ଼ କରି ମହୀରାବଣକୁ
ଧଇଲା କାନ୍ଧରେ ତାର ରାମଲକ୍ଷ୍ମଣଙ୍କୁ ।
ପାତାଳପୁରରୁ ଆସି ପଶନ୍ତି ଶିବିରେ,
ହେଲେ ପୁଲକିତ ବିଭୀଷଣ ଆଦି ବୀରେ ।

ବଜ୍ରବାହୁମର    ମହୀରାବଣର
ମରଣ ବାରତା ଶୁଣି ଦୁଃଖିତ,
ନ କରି ବିଳମ୍ବ    ମନେ ଧରି ଦମ୍ଭ
ବାହାରିଲା ଯୁଦ୍ଧ ହେବ ଦଇତ ।
ରାବଣର ଆଡମ୍ବର    ଦେଖି ସକଳ ବାନର
ହୋଇ ଅଛି ଥରହରି ରାମଙ୍କ ପାଶେ
ଯାଇ ଭାଷିଲେ ଏସନ    ସୈନ୍ୟ ଘେନି ଦଶାନନ
କରିବାକୁ ଆସେ ରଣ କେ ରହିବ ସେ
କରନ୍ତୁ ସମରେ ଗମନ
ରାବଣକୁ ମାରି ଆଣ ସୀତା ବହନ ।
କୌଶଲ୍ୟାନନ୍ଦନ    କପିଙ୍କ ବଚନେ
ସଜ ହୋଇ ଗଲେ କପି ଗହଣେ,
ସୁମିତ୍ରା କୁମାର    ହୋଇ ତତ୍ପର
ଆରମ୍ଭିଲେ ଯୁଦ୍ଧ ଦୁର୍ଗ ତତକ୍ଷଣେ ।
ହୋଇ ମୁହାଁମୁହିଁ    ପାପ ପୁଣ୍ୟ ଦୁଇ
ସମର ଭୂଇଁରେ ଫୁଲାଇ ଛାତି,
ହେଲେ ମରାମରି    ଧନୁଶର ଧରି
ନ ପାରେ କେ କଣି ପ୍ରବେଶ ରାତି ।
ତୁମୁଳ ସଂଗ୍ରାମ    ଚାଲେ ଅବିରାମ
ଶକତି କାହାର ନୁହଇ କମ,
ବନ୍ଧୁଚନ୍ତି ଶର    ହୋଇ ତତ୍ପର
ଉର୍ଦ୍ଧ୍ୱେ ଦେଖୁଚନ୍ତି ଦେବତା ବଳ ।

କ୍ରୋଧେ ଅପଘନ କମ୍ପେ ଘନ ଘନ
ଟଙ୍କାରିଲେ ଧନୁ ଦୁହିଁଙ୍କି ଦୁହେଁ,
କ୍ଷଣେ ନଦେଖିଲେ କେ ଜାଣି ନପାରେ
ପାଣି ଥିଲା ନର ବାନର ମୁହେଁ ।
ହେଲା ରଣ ଭୂଇଁ ରକତର ନଈ
ମାଳ ମାଳ ସ୍ରୋତେ ପଡିଲେ ଢଳି,
ରାମଙ୍କ ସକାଶେ ଆସେ ଦେବା ଦେଖଣେ
"ବିଜୟୀ" ବିମାନ ଧରି ମାତଳି ।
ମିଳି ରାମ ପାଶେ ସାରଥି ହୋଇ ସେ
ଚଳାଇଲା ସମର ବିଜୟୀ ରଥ,
ଶୃଙ୍ଗ ଶୃଙ୍ଗ ସାତ ଦିଗ ଗଲାବ୍ୟାପୀ
ହୁଂକାରେ କମ୍ପି ଉଠି ଲଙ୍କା ଅବନୀ ।
ରଥପରେ ବସି ନଗରୁ ଆଉଁଷି
ଦିଏ ଦଶାନନ ମୁଣ୍ଡକୁ ହସା,
ରାମ ବ୍ରହ୍ମଶର ବାଜି ହୃଦେ ତାର
ଉଡିଗଲା କାହିଁ ତକ୍ଷଣେ ହଂସା ।
ନିଷ୍କଣ୍ଟକ ବସୁନ୍ଧରା ଆଜଠାରୁ ହେଲା,
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଶାନ୍ତି ବିରାଜିଲା ।
ପାପର ରାଜତ୍ୱ ତୁଟି ପୁଣ୍ୟର ରାଜତ୍ୱ
ଲଙ୍କବାରୁ ପ୍ରସରିଲା ରାମଙ୍କ ମହତ୍ତ୍ୱ ।
ମେଘ ବରଷିଲେ ହେଉ ବଡ଼ ଯେତେ
ବାଲିବନ୍ଧ ଲୀନ ଯଥା,
ଯେତେ ବଳଶାଳୀ ହେଉ ନା କିଏ
ପ୍ରବେଶିଲେ କାଳ ତଥା ।
ବିଡ଼ାଳ ମୂଷିକେ ଗିଳିବା ସକାଶେ
ଉତ୍କଟ ଇଚ୍ଛାରେ ଛପେ ଯେସନ,
ମୃତ୍ୟୁ ଆୟୁଷକୁ ନିଜ ଗ୍ରାସ ପାଇଁ
ଅହରହ ଜଗିଥାଏ ତେସନ ।
ହେଲା ପୁଷ୍ପ ବୃଷ୍ଟି ସ୍ୱର୍ଗୁଁ ରାମଙ୍କ ଉପରେ,
"ଜୟ" ନାଦେ କମ୍ପାଇଲେ ସକଳ ବାନରେ ।
ରଥ ଧରି ସ୍ୱର୍ଗେ ଗଲେ ମାତଳି ଲେଉଟି,
ପଡ଼ିଚି ରାବଣ ଏଣେ ମାଟିକି ସାଉଁଟି ।
ମରି ଯାଇଥିଲେ ଯେତେ ସମରେ କପିଏ,
ଦେବାନୁଗ୍ରହେ ଉଠିଲେ ଗୋଟିଏ ଗୋଟିଏ ।



## ( ମନ୍ଦୋଦରୀ ଶୋକ )

ରାବଣ ମରଣ ବାରତା ଶୁଣି ରାବଣ ନାରୀ,
ଧାଇଁଲା ସମର ଭୂଇଁକି ନେତ୍ରୁଁ ବୁହାଇ ବାରି ।
ଭୂତଳେ ପଡ଼ିବା ଦର୍ଶନ କରି ଅସୁର ରାଣୀ,
ଶୋକ ଗଦଗଦ କଣ୍ଠରେ ଭଣେ ଏମନ୍ତ ବାଣୀ ।
କେତେ ମନା କଲେ ନ ଶୁଣି ନର ସଙ୍ଗେ ଯୁଝିଲ,
ସବଂଶ ବୁଡାଇ ଶେଷରେ ନିଜେ ପ୍ରାଣ ହାରିଲ ।
ସ୍ୱର୍ଣ୍ଣମୟୀ ଲଙ୍କା ନଗରୀ ପୋଡି ପାଉଁଶ ହେଲା,
ନ ଡ଼ରି ଅନ୍ତକ କପରି ତୁମ ପରାଣ ନେଲା ।
ନ ଶୁଣୁଛ କି ତୁମ କାନକୁ ମୋର ବିକଳ ରଡ଼ି ?
ଫୁଲରି ପାଖୁଡ଼ା ପରାଏ ଅବା ପଡିଲ ଝଡି ?
ପର୍ବତ ପରାଏ କାହିଁକି ଆଜ ହେଲ ଅଚଳ ?
ନେଲା ହରି କିଏ ତୁମର ଭୁଜ ସକଳ ବଳ ?
ତୋଷୁଥିଲ ଅନବରତ କଥା କୋମଳ କହି,
କେଉଁ ଦୋଷ ଆଜ ଦେଖିଲ ଅଛ ମଉନେ ରହି ?
ଯାଇଛୁ ମଉଳି କାହିଁକି ତବ ସୁନ୍ଦରୁ ମୁଖ ?
ନ ସହି କିଏସେ ଭାଙ୍ଗିଲ ମୋର ଜୀବନ ସୁଖ ?
ନାଉରୀ ନ ଥାଇ ନଉକା କହ ଯିବ କପରି,
ଜାଣି ମୁଁ ନ ଥିଲି ଚାଲିଲ ଛାଡ଼ିଲା ଏପରି ।
ନେଉଥିଲ ସଙ୍ଗେ ସତତ ଦେଉଦେଗ ବୁଲେଇ,
ଏକୁଟିଆ ଆଜ କପରି ଯାଅ ମୋତେ ନ ନେଇ ।
ରେ ଦାରୁଣ ବିଧି ତୁଚ୍ଛାକୁ କିଆଁ ବହିଲୁ ହଂସା ?
ତୋ ଯୋଗୁଁ ଦାଣ୍ଡରେ ଆଜ ମୁଁ ହେଲି ଭଗାରି ହସା
ଅବଳାକୁ କିଆଁ ନ ବୁଝି ଦେଲୁ ଏତେ କଷଣ ?
ହରାଇଲୁ ଅବା ରାଗରେ ତୋର ବିବେକ ପଣ ।
ଫାଟିଯାଉ ନାହିଁ କାହିଁକି ଏ ପାପିଣୀ ହୃଦୟ,
କାହା ମୁଖ ଦେଖି ବଞ୍ଚିବ କହ ହେ କୃପାମୟ !
ଆଗ ପଛ ହୋଇ ସକଳ ଭବୁଁ ଯିବେ ଚଳାଇ,
ଏଥିପାଇଁ କିଆଁ ଲାଗିଚ ଲୋଭ ଏ ପ୍ରାଣ ପାଇଁ" ।
ଯାଇଚି ଯା ଚାଲି ନ ଫେରିବ ଆଉ
କଲେହେଁ କେତେ ପ୍ରୟାସ,
କଳ୍ପନାରେ ଭରା ଆସନ୍ତା କାଲିକି
ନକର ଲବେ ବିଶ୍ୱାସ ।

ବାହାର ଚକ୍‌କଣ ନ ବଢ଼ାଏ ମାନ
ଆବଳତା ଥିଲେ ଭିତର ଘର,
ସମପ୍ତର ହାତ ବ୍ୟସ୍ତ ରହି ସଦା
କରେ ଧୂଳି ଝାବାଝାବ ନକର ।

ଦଶମୁଣ୍ଡ ବିଂଶବାହୁ ବିସ୍ତାର ରାବଣ,
ପଡ଼ିଅଛି ଭୂଇଁପରେ ନ କହି ବଚନ ।
ଉଡ଼ୁଛନ୍ତି ଶକୁନିଏ ହୋଇ ଦଳ ଦଳ,
କୁଆ ଆସି କରୁଛନ୍ତି ବଡ଼ କଲବଲ ।
ଶ୍ରୀରାମଙ୍କ ଆଦେଶରେ ଶବ ନେଲେ ବୋହି,
ଲଗାଇଲେ ଜୁଇ ନେଇ ଚିତା ପରେ ଥୋଇ ।
ପୋଡ଼ି ସେ ପାଉଁଶ ହେଲା ଦେଖିଲେ ସକଳ,
ନାହିଁ ସେ ରୂପ ପଲଙ୍କ ନାହିଁ ଭୁଜ ବଳ ।
ଶ୍ରୀରାମ କହନ୍ତି ଡାକି ସୁମିତ୍ରାସୁତଙ୍କୁ,
"ଅଭିଷେକ କର ଲଙ୍କେ ରାବଣାନୁଜଙ୍କୁ" ।
ଏହା ଶୁଣି ସଉମିତ୍ରି ନେଇ ବିଭୀଷଣ,
କରାଇଲେ ତାଙ୍କୁ ଜବେ ଲଙ୍କାର ରାଜନ ।
ଗଲେ ଚଳି ହନୁମାନ ରାମାଦେଶ ପାଇ,
ଜାନକୀଙ୍କି ସବୁ କଥା କହିଲା ବୁଝାଇ ।
ସବୁ ଶୁଣି ମଇଥିଳୀ ସତ୍ତା ପୁଲକିତ,
ହେଲେ ଛନ୍ନ ଛନ୍ନ ରାମ ଦର୍ଶନ ନିମିତ୍ତ ।
ହନୁ ଫେରି ରାଘବଙ୍କୁ ଯୋଡ଼ି ବେନିକର,
କହେ ସୀତା ଲୋଡ଼ୁଛନ୍ତି ଦର୍ଶନ ତୁମର ।
କହନ୍ତି ଶ୍ରୀରାମ ଚାହିଁ ରାବଣାନୁଜଙ୍କୁ,
"ଭୂଷଣ ପିନ୍ଧାଇ ଆଣ ଏଠାକୁ ସୀତାଙ୍କୁ" ।
ଶୁଣିବାରୁ ବିଭୀଷଣ ଯାଇ ମଧୁବନ,
ପିନ୍ଧାଇ ଭୂଷଣ ସୀତା ଆଣିଲେ ବହନ ।
ସୀତାଙ୍କୁ ଅନାଇଁ ରାମ କହନ୍ତି ଏସନ,
"କରିଅଛି ମୁଁ ମୋହର କର୍ତ୍ତବ୍ୟ ସାଧନ ।
ରହିଥିଲ ବହୁଦିନ ରାକ୍ଷସ ପୁରରେ,
ପଡ଼ିଥିବ ନିଶ୍ଚେ ପାପ ପାଶ ବନ୍ଧନରେ ।
ନରଖି ମୋଠାରେ ଆଶା ଅନ୍ୟ ପତି ବର,
ଲୋକ ଅପବାଦ ଲାଗି ମୋତେ ମାଡ଼େ ଡର ।
ଏ ବଚନେ ଶୁଣି ସୀତା କହିଲେ ରାମଙ୍କୁ,
"ମୋର ମନ କଥା ନାହିଁ ଅଜଣା ତୁମଙ୍କୁ ।
ମୋ କରମ ଫଳ ମୁହିଁ କରିଅଛି ଭୋଗ,
ଅନ୍ୟଥା ନୁହଇ କେବେ ଘଟେ ଯାହା ଯୋଗ ।
ଏହା କହି ସୀତା ଦେବୀ କରିଲେ ରୋଦନ,
ହନୁମାନେ ଚାହିଁ ପୁଣି କହିଲେ ଏସନ ।
"ମୋର ଚରିତକୁ ଶଙ୍କା କରୁଛନ୍ତି ରାମ,
ପୋଡ଼ା କପାଳକୁ ମୋର ବିହି ହେଲା ବାମ ।
ମୋ ଚରିତ ଜାଣିଛ ତ ପବନକୁମର,
ପୁଣି ଜାଣନ୍ତି ଉତ୍ତମ ଲକ୍ଷ୍ମଣ ଦେବର ।
ନ ସହିବ ଅପବାଦ କେବେହେଲେ ସୀତା,
ରଖିବ ଜୀବନ କପାଁ ଜନକ ଦୁହିତା ।
ବଢ଼ିହୋମେ ଝାସ ଦେଇ ତେଜିବ ଜୀବନ,
ନିଷ୍କଳଙ୍କ ଚରିତ୍ରରେ ନ ହେବ ଦହନ" ।
ସଉମିତ୍ରି ବୀର ଯାଇ ଆଣିଲେ ଅନଳ,
ଜନକନନ୍ଦିନୀ ଆଖି କରି ଛଳ ଛଳ ।
ପଶିଲେ ବହ୍ନିରେ ସାକ୍ଷୀ ରଖି ଦିଗପାଳେ,
ବିଭୀଷଣ ଘୃତ ଆଣି ବହ୍ନିପରେ ଢାଳେ ।
ସକଳ କଲେ ରୋଦନ ଲକ୍ଷ୍ମଣ ସହିତ,
ସମ୍ଭାଳି ପାରିଲା ନାହିଁ ରାମଙ୍କର ଚିତ୍ତ ।
ହା ସୀତେ ହା ସୀତେ କହି ଶ୍ରୀରାମ କାନ୍ଦନ୍ତି,
କାନ୍ଦନ୍ତି ଭୂଇଁରେ ଗଡ଼ି ଅସୁରୁଣୀଚିତ୍ତ ।
ରାମ କାନ୍ଦିବାର ଦେଖି ଶୀଘ୍ର ସୀତା ଧରି,
ବାହାରିଲେ ତା ଭିତରୁ ବାଳ ରବି ପରି ।
ସମର୍ପିଲେ ତାଙ୍କୁ ଶିଖି ରାମଙ୍କ ହାତରେ,
ପବିତ୍ର ଅଟନ୍ତି କହି ଜଗତ ମଧ୍ୟରେ ।
କହନ୍ତି ଶ୍ରୀରାମ ହୋଇ ପୁଲକିତ ଅତି,
"ଅପବାଦୁଁ ବାହି ହେଲି ଆହେ ମହାମତି" ।
ହରଷମନେ କପିଏ ହେଲେ ଉଆଁ ଭେଇଁ,
ରାମଗଲେ ଜାନକୀଙ୍କ ଶିବିରକୁ ନେଇ ।
ଚଉଦ ବରଷ ହେଲା ରାମ ବନବାସ,
ଅଯୋଧ୍ୟା ଯିବାକୁ ଫେରି ମାନସ ଉଲ୍ଲାସ ।

*★*

## ହନୁମାନ

ଧନ୍ୟ ହନୁମାନ ଧନ୍ୟ ତୋ ଜନକ,
ରଖିଗଲ ନାମ ଅବ୍ୟତ କଣ୍ଟକ ।
ସାହସେ ଲଙ୍ଘିଲ ଅପାର ସାଗର,
ଖୋଜିଲ ଲଙ୍କାରେ ପଶି ଘର ଘର ।
ଅଶୋକ ବନରେ ସୀତା ଠାବ କରି,
ଧ୍ୱଂସିଲ ସେ ବନ କାହାକୁ ନ ଡ଼ରି ।
ଭୁଜେ ଅସୁରଙ୍କ ଦେଲ ଚୋଟି ଚପି,
ଯୁଗେ ଯୁଗେ ଥିବ ସେହି ସ୍ୱର୍ଣ୍ଣଲିପି ।
ଆପେ ବନ୍ଧା ହୋଇ ଇନ୍ଦ୍ରଜିତ ପାଶେ,
ଗଲ ହରଷରେ ଦଶାସ୍ୟର ବାସେ ।
ଦେଲେ ନିଶାଚରେ ନାନା ପରାଭବ,
କାର୍ଯ୍ୟସିଦ୍ଧି ଲଗି ରହିଲ ନୀରବ ।
ନିର୍ଭୀକତା ହେତୁ କହିଲ ଫିଟାଇ,
ଯାଇଥିଲ ଲଙ୍କା ଯେଉଁ କାର୍ଯ୍ୟ ପାଇଁ ।
ରାବଣ ଆଗରେ ସତ୍ୟତା ପ୍ରକାଶ,
କରି କଲ ଖରେ ଲଙ୍କା ଧ୍ୱଂସ ନାଶ ।
ଯାଇ ହିମାଳୟୁ ସ୍ୱତକ ଭିତରେ,
ଗନ୍ଧମାଦନକୁ ଆଣିଲ କାନ୍ଧରେ ।
ଯା ଯୋଗୁଁ ପାଇଲେ ଲକ୍ଷ୍ମଣ ଜୀବନ,
ରାମନାମ ସ୍ମରି କଲ ଯା ସାଧନ ।
ପ୍ରବେଶି କୌଶଳେ ପାତାଳ ପୁରରେ,
ମହୀରାବଣକୁ ଛେଦିଲ ଖଡ଼୍ଗରେ ।
ରାମଲକ୍ଷ୍ମଣଙ୍କୁ ବୋହି କାନ୍ଧପରେ,
ଆଣିଲ ସେଠାରୁ ଘଡ଼ିକ ଭିତରେ ।
ହୋଇ ବ୍ରହ୍ମଚାରୀ ଏ କର୍ମ ସାଧିଲ,
ଯୁଗେ ଯୁଗେ ରାମ ମହତ୍ତ୍ୱ ରଖିଲ ।
ଅକ୍ଷୟ କୀରତି ରଖିଗଲ ଭବେ,
ସତ୍ୟତାର ଜୟ ହେଲା ଅତି ଜବେ ।

ସାରି ବନବାସ ଚଉଦ ବରଷ
ସହି ନାନା କ୍ଳେଶ ଜାନକୀପତି,
ରାବଣଙ୍କୁ ମାରି ସୀତାଙ୍କୁ ଉଦ୍ଧାରି
ଅଯୋଧ୍ୟା ଯିବାକୁ ଉତ୍ସୁକ ଅତି ।
ଆଣି ବିଭୀଷଣ ଥୋଇଲେ ବିମାନ
ସଜ ହେଲେ ରାମ ସୀତା ଲକ୍ଷ୍ମଣ,
ଯିବା ଲଗି ସଙ୍ଗେ ରାକ୍ଷସବାନରେ
ସେମାନଙ୍କ ମନ ଅତି ଉଚ୍ଛନ୍ନ ।
ପୁଲକିତ ମନେ ଆରୋହି ସ୍ୟନ୍ଦନେ
ଗଗନ ମାର୍ଗରେ ଅଯୋଧ୍ୟା ମୁଖେ,
ପ୍ରକୃତି ମାଧୁରୀ ଦରଶନ କରି
ସକଳ ଗମିଲେ ଅଶେଷ ସୁଖେ ।
ଗଗନ-ମାର୍ଗରୁ ଓହ୍ଲାଇ ସତ୍ୱରେ
ଭରଦ୍ୱାଜାଶ୍ରମେ ନେଲେ ବିଶ୍ରାମ,
ତହିଁ ଆରଦିନ ଡ଼ାକି ହନୁମାନ
ଯିବାକୁ ଅଯୋଧ୍ୟା କହିଲେ ରାମ
ପବନ ବେଗରେ ପବନ କୁମାର
ଯାଇ ପହଞ୍ଚିଲେ ଅଯୋଧ୍ୟାପୁର,
ରାମ ଫେରିବାର ବାରତା ଶୁଣନ୍ତେ
ସକଳ ଆନନ୍ଦେ ହେଲେ ଅଧୀର ।
ପବନ ଦୁଲାଳ ବାହାରି ଚଞ୍ଚଳ
ଭରତଙ୍କ ପାଶୁଁ ମେଲାଣି ନେଇ,
କୌଶଲ୍ୟା କୁମାର ସନ୍ନିଧେ ପହଞ୍ଚି
ହେଲେ ଉଲ୍ଲସିତ ବାରତା ଦେଇ ।
ଶୁଣି ରାମ ଆଗମନ ଅଯୋଧ୍ୟା ନଗରୀଜନ
ଅତି ପୁଲକିତ ମନ ଦର୍ଶନ ପାଇଁ,
ତହିଁ ସ୍ୱାଗତ ପରାଏ ରହିଥିଲେ ଆଜ୍ଞାଏ
ଘଣ୍ଟ ଶଙ୍ଖ କାହାଳୀରେ ପୁରି କମ୍ପାଇ,
ସଜାଇଲେ ପଥର ନିକର
ହାରିବେ ପାପ ସକଳ ସେବି ପଯ୍ୟର ।
ଅନୁଚର ସେନ ଶ୍ରୀରାମ ଆସନ୍ତି
ଅତି ଉଦବେଗରେ ଆରୋହି ରଥ,
ଭରତ ଏ ପଟେ ମହା ଆଡ଼ମ୍ବରେ
କଲେ ସମ୍ବର୍ଦ୍ଧନା ଓଗାଳି ପଥ ।
ଭକତି ଅନ୍ତରେ ପୁଜି ରଘୁବୀରେ
ସଙ୍ଗୋଳିଲେ ବନ୍ଧୁ ଅତି ପ୍ରେମରେ,
ଲକ୍ଷ୍ମଣ ଏ ପାଖୁଁ ଆସି ଭରତଙ୍କୁ
ନମିଲେ ସେ ଯଣି ଭକ୍ତି ଚିତ୍ତରେ ।

ନଜର ବଳମ୍ବ କୁଶଳ ସମ୍ବାଦ
ପଚ୍ଛର ଆସିଲେ ଭରତ ସଙ୍ଗେ,
ଦର୍ଶନେ ସଭଏ ଅଭିନନ୍ଦିଲା କ
କୁନ୍ତୁ କୁନ୍ତୁ ନାଦେ ତାଲ ତରଙ୍ଗେ ?
ଲୋକାରଣ୍ୟ ମଧ୍ୟେ ଚଳିଲେ ସକଳ
ରାଣୀ ଅନ୍ତଃପୁରେ ଅତି ବ୍ୟଗ୍ରରେ,
ଜନନୀମାନଙ୍କ ଚରଣେ ପ୍ରଣମି
ଲଭିଲେ ଆଶିଷ ହରଷଭରେ ।
ଲଗାନ୍ତି ଏ ଭବେ କନ୍ଦଳ ନାଶ୍ୱଏ
ଯୁଗେ ଯୁଗେ ବେଳେ ବେଳେ,
ନଥିଲେ ମନ୍ଥରା ରାମ ବନବାସ
ଘଟନ୍ତା କ କେତେବେଳେ ?
କଣ୍ଟୁ ହିଁ ନଜାଣି ଅଯୋଧ୍ୟା ଧୋବଣୀ
ତୁଚ୍ଛା ଅପବାଦ କଲା ରଚନା,
ସମ୍ଭାଳି ନପାରି ରାବଣ ବଇର
କଲେ ବନ୍ଦୀସର ସତୀ ଲଳନା ।
କଳହ ଭିଆଇ ସୂର୍ପଣଖା ଯାଇ
ଭାଇକୁ ଦେଲା ବତାଇ,
ରାବଣ ମରଣେ କଲା ଆମନ୍ତ୍ରଣ
କୁନ ତା ଦେଲା ଭସାଇ ।
ଦୁର୍ବହ ଶାସନ କୈକେୟୀନନ୍ଦନ
ସମର୍ପିବା ଲାଗି ହେଲେ ଆକୁଳ,
ଅମନ୍ତ୍ରିଲେ ଖରେ ମହର୍ଷି ବଶିଷ୍ଠ
ଅଭିଷେକ ପାଇଁ ଭୂପତିକୁଳ ।
ମଙ୍ଗଳ ବେଳାରେ ମହା ଆଡମ୍ବରେ
ରାଜ୍ୟର ଶାସନ ନେଲେ ଶ୍ରୀରାମ,
ସେ ରାମ ରାଇଜ ଗଲା କାହିଁ ଆଜ
ମାଡ଼ୁଅଛୁ ଲଜ ବିଧାତା ବାମ ।
କ୍ଷମତା ଲଳସା ସମ୍ପତ୍ତି ପିପାସା
କରିବାରୁ ଗ୍ରାସ ସକଳ ମୋହ,
ପାପପୁଣ୍ୟ ଜ୍ଞାନ ନଥାଏ ହୃଦର
ଭବ ଭବ ସଦା ଉଠୁଚ କୋହ ।
ରହିଚ ପାଠରେ ବୃକିଚ ଶାଠରେ
ଏ ରାଜ ଶାସନ ଲୋକ ମତରେ,
ବାହାଦୁରି ଲାଗି ଲାଗେ ବାଡାବାଡ
ଥିବ ରାମନାମ ଅମଗୋଷ୍ଠରେ ।
ବନ୍ଧ ଯାଉଅଛୁ ଜନନର ସୁଅ,
ଗଡାଉଚ ନିତ କଏ କେତେ ଲୁହ ।
ପରସ୍ୱ ହରଣେ ନଜର ସତତ,
ନ ଚିନ୍ତେ କଏ ସେ ଭୂତ ଭବିଷ୍ୟତ ।
ଘଡାଇଚ ଜାଲ ସ୍ୱାର୍ଥ ଗୃହଆଡ଼େ,
ଛପି ରହି ଏଣେ ଲଳସା ଉଡ଼ାଡ଼େ ।
ଶଠତା ଲଗାଇ ମସ୍ତକେ ମୁକୁଟ,
ଦେଉଅଛୁ ଖଞ୍ଜି ନାନା ନଟକୁଟ ।
ପୁଣ୍ୟର ଉଜଲ ପାପ ନକଟରେ,
କରି ବାହାଦୁରି କଏ କେ ପ୍ରୀତରେ ।
ଦେଖାଉଚ ହିଂସା କେତେ ଅଭିନୟ,
ନିରତ ମନକୁ କରୁଚ ଅଥୟ ।
କୃତଘ୍ନତା ଚପି ଦେଉଚ ସଂସାର,
ଚଉଦିଗେ ମାଡ଼ ଯାଉଚ ଅନ୍ଧାର ।
ହାଟବାଟ ଘାଟେ ମିଥ୍ୟାର ପସରା,
ବାନ୍ଧି ବସିଅଛୁ ସସାଗରା ଧରା ।
ଚକ୍ରୁର ପଣରେ ଜଟିଆ ଲଗାଇ,
କୁଟୀଳତା କରେ ନଶ୍ୱାହକୁ ବାଇ ।
ଯାଉଚ ଜଗତୁଁ ଉଭେଇ ବିଶ୍ୱାସ,
ସଭିଙ୍କ ହୃଦୟେ ଉପୁଜଇ ତ୍ରାସ ।
ହେଉଅଛୁ ଚୂନା ଦାଉ ଗରେବର,
ତୁଚ୍ଛାରେ କଏ ବା ହୁଏ ଫରଫର ।
କଏ ବା ଧନର ବଡ଼ିମା ଦେଖାଇ,
କହେ ବୃଥା କଥା ଭୁଡାଇ ଭୁଡାଇ ।
କାନକୁହା କେତେ ଟେକଲେଣି ମୁଣ୍ଡ,
ବରୁଡ଼ର ଶୁଣ୍ଡ ଯିଭ ତାଙ୍କ ତୁଣ୍ଡ ।
ଦେଖାଇ ହୁଏ ଯେ ନଜ ବାହୁବଳ,
ଚରଣେ ତାର ବିଷମୟ ଫଳ ।
ଭାଗ୍ୟ ପ୍ରତିକୂଳ ହେଲେ ମଣିଷର,
ଅମାତରେ ବଶ ସିନା ନରନ୍ତର ।
ତୁଚ୍ଛା ତମ କହି ଫୁଲଇଲେ ଗୁଡ,
ଜାଣି କେ ପାରିବ ଜଗତେ ଅଗ୍ରଡ ।

*★*

# କୁ ରୁ କ୍ଷେ ତ୍ର

## ପ୍ରଥମ ସର୍ଗ

ଏକଦା ଧର୍ମାତ୍ମା  କୁରୁବଂଶ ନୃପେ
ଶାସୁଥିଲେ ଏ ଧରଣୀ,
ମହାଯଶା ପାଣ୍ଡୁ  ଜନମି ସେ କୁଳେ
ହେଲେ ନୃପତି ଅଗ୍ରଣୀ ।
ତାଙ୍କ ବଡ଼ଭାଇ  ଧୃତରାଷ୍ଟ୍ର ଥିଲେ
ଜନମ କାଳରୁ ଅନ୍ଧ,
ଧର୍ମଶାସ୍ତ୍ରେ ପଟୁ  ଥିଲେହେଁ ସେ ସଦା
ପାଞ୍ଚୁଥିଲେ ନାନା ଛନ୍ଦ ।
ଥିଲା ରାଜଧାନୀ  ହସ୍ତିନା ତାଙ୍କର
ବିଚିତ୍ର ବୀର୍ଯ୍ୟ ଜନକ,
ଧର୍ମ ବଶବର୍ତ୍ତୀ  ଥିବାରୁ ଭୂପେ ତା
ଦଶେ ଅତି ଝକମକ ।
ଧୃତରାଷ୍ଟ୍ରଙ୍କର  ଜନନୀ ଅମ୍ବିକା
ଅମ୍ବାଳିକା ପାଣ୍ଡୁଙ୍କର,
ପିତୃ ମୃତ ହେତୁ  ପିତାମହ ଭୀଷ୍ମ
ପାଳକ ସେମାନଙ୍କର ।
ଗାନ୍ଧାର ନୃପତି  ସୁବଳ ଦୁହିତା
ସୁଶୀଳା ଗାନ୍ଧାରୀ ସହ,

ଗାଙ୍ଗେୟଙ୍କ ବୋଲେ  ଧୃତରାଷ୍ଟ୍ରଙ୍କର
ହେଲା ଦାର ପରିଗ୍ରହ ।
ଭୋଜରାଜ ଜେମା  କୁନ୍ତୀ ସ୍ୱୟମ୍ବରେ
ପାଣ୍ଡୁଙ୍କୁ ବରଣ କରି,
ପତିଙ୍କ ଗହଣେ  ଶ୍ୱଶୁର ସଦନେ
ଆସିଲେ ଯୌତୁକ ଧରି ।
କିଛୁଦିନ ଅନ୍ତେ  ମଦ୍ରେଶ ଶଲ୍ୟଙ୍କ
ଭଗିନୀ ମାଦ୍ରୀଙ୍କ ସହ,
ପୁନରପି ମହା  ଯଶା ପାଣ୍ଡୁଙ୍କର
ହେଲା ଶୁଭ ପରିଣୟ ।
ଅପୂର୍ବୀ ଗାନ୍ଧାରୀ  ଦୁଇ ସମ୍ବତ୍ସର
ଗର୍ଭକୁ ଧାରଣ କରି,
ଲୌହ ପିଣ୍ଡ ପରି  ମାଂସ ପିଣ୍ଡଟିଏ
ପ୍ରସବିଲେ କର୍ମାଦରି ।
ବ୍ୟାସଙ୍କ ବୋଲରେ  ଯତନେ ଧୋଇଲେ
ମାଂସ ପିଣ୍ଡଟିକୁ ଖରେ,
ଧୋଉ ଧୋଉ ତାହା  ହେଲା ବିଭାଜିତ
ଏକଶ ଏକ ଖଣ୍ଡରେ ।
ଏକଶତ ଏକ  ଘୃତକୁମ୍ଭ ଆଣି
ପୂରାଇଲେ ତା ଯତନେ,

ଦୁଇ ସମ୍ବତ୍ସର ଜଳଜରେ ସାଇତି
ରଖିଲେ ଗୁପତ ସ୍ଥାନେ ।
ଜ୍ୟେଷ୍ଠ ଦୁର୍ଯ୍ୟୋଧନ ଜାତ ହେବା ଦିନ
ରବିଲେ ଫେରୁକଦମ୍ବ
ମାସକ ଭିତରେ ଅନ୍ୟାନ୍ୟ କ୍ରମରେ
ଜନ୍ମିଲେ ଦୁଃଶିଳା ସହ ।
ବର୍ତ୍ତିଲେ ଦିନେ ପାଣ୍ଡୁ ନୃପ ମନେ
ରାଇଜ ବିସ୍ତାର ଲାଗି
ବାହାରିଲେ ଘରୁ ଗୁରୁଜନ ଠାରୁ
ଆନନ୍ଦେ ମେଲାଣି ମାଗି ।
ଜିଣି ରାଜ୍ୟମାନ ଆଣି ବହୁ ଧନ
ଲେଉଟିଲେ ମୋଦଭରେ
ଭୀଷ୍ମ ମହାମତି ତଥା ପ୍ରଜାପତି
ସମ୍ବର୍ଦ୍ଧିଲେ ସମାଦରେ ।
ପାଣ୍ଡୁ ଅନନ୍ତର କାନନ ବିହାର
ପାଇଁ ଦମ୍ପତି ସହିତ
ଯାଇ ରହିଲେ ସେ ହିମାଳୟ ପାଶେ
ହୋଇ ଅତି ପୁଲକିତ ।
ଗଲା କିଛି ଦିନ ପାଣ୍ଡୁ କଲେ ମନ
ହେବାକୁ ତପସ୍ୟା ରତ
ଫଳ ମୂଳାହାରୀ ପୁଣି ଜଟାଧାରୀ
ହୋଇ ରହିଲେ ନିରତ ।
କୃଶ ହେଲା ତନୁ ପାଶୋରିଲେ ମନୁ
ସୁଖ ଭୋଗ ସଂସାରର
ଏଣେ ଧୃତରାଷ୍ଟ୍ର ହେଲେ ଶୋକାବିଷ୍ଟ
ଶୁଣି ତାଙ୍କ ଏ ଖବର ।
ଥାଇ ଅନପତ୍ୟ ପାଣ୍ଡୁ ଅହରହ
କାଟନ୍ତି ଦୁଃଖେ ସମୟ
ଦୁଇ ରାଣୀ ଥିଲେ ଆରାଧନା ଫଳେ
ହେଲା ଗରଭ ସଞ୍ଚୟ ।
କୁନ୍ତୀଙ୍କ ଗର୍ଭରୁ ଯୁଧିଷ୍ଠିର ଭୀମ
ଅର୍ଜୁନ ହୋଇଲେ ଜାତ
ପ୍ରସବିଲେ ମାଦ୍ରୀ ଏଣେ ସହଦେବ
ନକୁଳ ଯମଜ ସୁତ ।

କେତେ କାଳ ପରେ ଦଇବ ବଶରେ
ହେଲା ମୃତ୍ୟୁ ପାଣ୍ଡୁଙ୍କର
ତାଙ୍କ ଚିତାଗ୍ନିରେ ପଡ଼ି ମାଦ୍ରୀ ହେଲେ
ଅନୁଗାମିନୀ ତାଙ୍କର ।
ଏ ବାରତା ଶୁଣି ଋଷି ଏ ତକ୍ଷଣି
ସେଠାକୁ ହୋଇ ଆଗତ
ସେମାନଙ୍କୁ ଘେନି ଗଲେ ରାଜଧାନୀ
ହୋଇଣ ଅତି ଆରତ ।
ନଗରେ ପ୍ରବେଶି ବୃଦ୍ଧତମ ଋଷି
କହନ୍ତି କୁରୁ ସଭାରେ
ସପ୍ତର ଦିବସ ହେଲା କୁରୁଈଶ
ନାହାନ୍ତି ଆଉ ସଂସାରେ ।
କୁନ୍ତୀ ସଉଭୁଣୀ ପତି ଗୁଣ ଗୁଣି
ତେଜିଲେ ଶେଷେ ଜୀବନ
ତପସ୍ୟା କାଳରେ ବନେ ଜନମିଲେ
ଏ ପଞ୍ଚ ପାଣ୍ଡୁ ନନ୍ଦନ ।
ଦେଇ ଏ ସନ୍ଦେଶ ହୋଇଲେ ଅଦୃଶ୍ୟ
ତଞ୍ଚଳ ତପସ୍ୱୀ କୁଳ
ଯେତେ ନର ନାରୀ ଥିଲେ ତହିଁ ପୁର
ସରବେ ଶୋକେ ଆକୁଳ ।
ଜନମ ମରଣ ଘଟେ ଅନୁକ୍ଷଣ
ଦେଖନ୍ତି ସକଳ ଭବେ
ହରଷ ବିଷାଦ ନାଦ ଶୁଣି ଶୁଣି
ଚନ୍ତେ କି କଏସେ ଲଭେ ।
ଦିନୁଁ ଦିନ ଭୀମ ଦେଖାଇ ବିକ୍ରମ
ବଢ଼ାଇଲେ ନିଜ ଖ୍ୟାତି
ହସ କଉତୁକେ କୌରବ ମାନଙ୍କୁ
କାଖରେ ଜାକି ପଳାନ୍ତି ।
କେବେ ଜଳେ ବୁଡ଼ି ସେମାନଙ୍କୁ ଧରି
ରହନ୍ତି ବହୁ ସମୟ
ଅବା କେଶ ଧରି ଘୋଷାରି ଘୋଷାରି
କରନ୍ତି ଅତି ଅଥୟ ।
କୌରବଙ୍କ ସହ ରହି ଅହରହ
ପାଣ୍ଡବେ ହେଲେ କୁଶଳୀ

କଲୁ ବଇଭବେ ମତ୍ତ କଉରବେ
ହର୍ଷରେ ଯାଆନ୍ତି କାଳ ।
ଦୁର୍ଯ୍ୟୋଧନ ଦିନେ ବିଚାରିଣ ମନେ
ମାରିବାକୁ ବୃକୋଦର,
ନ କରି ପ୍ରଘଟ ଆଚରି କପଟ
ପାଞ୍ଚିଲା ନାନା ଫନ୍ଦର ।
ଜାହ୍ନବୀ କୂଳରେ ପ୍ରମାଣ କୋଟୀରେ
କ୍ରୀଡ଼ା ସଦନ ତୋଳାଇ,
କଉଶଳ କରି ପାଣ୍ଡବଙ୍କୁ ଧରି
ଗଲା ଜଳ କ୍ରୀଡ଼ା ପାଇଁ ।
କୌରବ ପାଣ୍ଡବେ ପ୍ରବେଶି ସେ ସ୍ଥାନେ
ଆହ୍ଲାଦେ କଲେ ଭୋଜନ,
କଉତୁକ ଛଳେ ଗୋଳା ହଳାହଳ
ଭୀମେ ଦେଲେ ଦୁର୍ଯ୍ୟୋଧନ ।
ତଦନ୍ତେ ସକଳ କ୍ରୀଡ଼ିବାକୁ ଜଳେ
ଗଲେ ମୋଦିତ ମାନସେ,
କଟ୍ଟିକ୍ଷଣ ଧରି ଖେଳ ଖେଳ କରି
ଲେଉଟିଲେ କ୍ରୀଡ଼ାବାସେ ।
ପରିଶ୍ରମ କ୍ଳାନ୍ତି ଦେଲା ବାଧା ଅତି
ସକଳ କଲେ ଶୟନ,
ଭୀମ ସଜ୍ଜାହୀନ ଦେଖି ଦୁର୍ଯ୍ୟୋଧନ
ଗଲେ ଜଳେ ନିକ୍ଷେପଣ ।
ଭୀମ ଭସି ଭସି ଅବଶେଷେ ଯାଇ
ମିଳଲେ ନାଗ ଭୁବନେ,
ଲଭିଲେ ଚେତନା ଯିବାରୁ ସେ ବିଷ
ମହାନାଗଙ୍କ ଦଂଶନେ ।
ଶାଉ ବୃକୋଦର ହେବାରୁ ତତ୍ପର
ପୋଡ଼ିବାକୁ ସେମାନଙ୍କୁ,
ଭୟ କରି ନାଗେ ପଳାଇଲେ ଖରେ
ବାସୁକୀଙ୍କ ସମୀପକୁ ।
ଯାବନ୍ତ ବିଷୟ ସର୍ପରାଜ ତାଙ୍କୁ
କହିଲେ ବ୍ୟଥିତ ଚିତ୍ତେ,
ଭୀମ ବୋଲି ଜାଣି ଆସିଲେ ସେଠାକୁ
ବାସୁକୀ ଅତି ତ୍ୱରିତେ ।

ତାହାଙ୍କୁ ଆଲିଙ୍ଗି ଅଷ୍ଟକୁଣ୍ଡ ରସ
ଆଣିଦେଲେ ଶକ୍ତି ଲାଗି,
ପାଣ୍ଡୁଙ୍କ ନନ୍ଦନ ବୃକୋଦର ଉରେ
ପିଇଲେ ତା ମାଗି ମାଗି ।
ଦୁର୍ଯ୍ୟୋଧନ ଆଦି ଲେଉଟିଲେ ଏଣେ
ନାନାବିଧ କ୍ରୀଡ଼ା ସାରି,
ଭୀମଙ୍କୁ ନ ଦେଖି ଅନ୍ୟ ସହୋଦର
ତାଙ୍କ ପାଇଁ ହେଲେ ଘାରି ।
କୁରଭୂମି ପରିଏ ହୁଅନ୍ତି ବିକଳ
ମାତା ସହ ସହୋଦରେ,
ନାଗଲୋକୁ ସୁଖେ ଲେଉଟିଲେ ପୁରେ
ଭୀମ ଅଷ୍ଟ ଦିବସରେ ।
ଅଯଥା ଭାବନା କରୁଥାନ୍ତି ଲୋକେ
ପରର ଅନିଷ୍ଟ ପାଇଁ,
ଭାଗ୍ୟ ଅନୁକୂଳ ଥିବ ଯେତେକାଳ
ତାରିନ୍ତି ଜଗତ ସାଇଁ ।
ମାତା ଭ୍ରାତା ପାଶେ ଯାଇ ଭୀମସେନ
କହିଲେ ସବୁ ବିଷୟ,
ସକଳ ଶ୍ରବଣେ ସେମାନଙ୍କ ମନେ
ଜନ୍ମିଲା ଅତି ବିସ୍ମୟ ।
ତଦନ୍ତେ ପାଣ୍ଡବ ସହ କଉରବେ
କୃପଙ୍କ ତତ୍ତ୍ୱାବଧାନେ,
ହେଲେ ଅଧିଗତ ସବୁ ଧନୁର୍ବେଦ
ପାରଗ ଗଦା ଶୁଳିକେ ।
କେତେଦିନ ଅନ୍ତେ ସେମାନଙ୍କୁ ନେଇ
ଗ୍ଗଡ଼ିଲେ ଗଙ୍ଗା ନନ୍ଦନ,
ବିଦ୍ୟା ଶିକ୍ଷା ଲାଗି ଶାସ୍ତ୍ରେ ବିଶାରଦ
ଦ୍ରୋଣଙ୍କ ପାଖରେ ବହନ ।
ଅଳପ କାଳରେ କୌରବ ପାଣ୍ଡବେ
ଶାସ୍ତ୍ରେ ହେଲେ ଧୁରନ୍ଧର,
ଧାନୁକ ବିଦ୍ୟାରେ ବିଶେଷ ଅଧିକ
କୁନ୍ତୀ କନିଷ୍ଠ କୁମାର ।
ଦ୍ରୁପଦଙ୍କ ସଙ୍ଗେ ଯୁଝି ଦୁର୍ଯ୍ୟୋଧନ
ପରାଭବ ପାଇ ଅତି,

ବିଷଣ୍ଣ ବଦନେ ଲେଉଟିଲେ ପୁରେ
ଧରି ଗଜବାଜ ରଥ ।
ତଦନ୍ତେ ଅର୍ଜୁନ ହେଲେ ସମ୍ମୁଖୀନ
ଦ୍ରୁପଦଙ୍କ ସଙ୍ଗେ ରଣେ,
ପରାଜିତ କରି ଆଣିଥିଲେ ଧରି
ନ ମାରି ତାଙ୍କୁ ପରାଣେ ।
ଯୌବରାଜେ ପାଣ୍ଡୁ ସୁତ ଯୁଧିଷ୍ଠିର
ଅଧିଷ୍ଠିତ ହୋଇ ସୁଖେ,
ପାଳିବାରୁ ପ୍ରଜା ସଦାଗ୍ରହ ଗୁଣେ
ପ୍ରଶଂସିତ ଜନମୁଖେ ।
ପାଣ୍ଡବଙ୍କ ଖ୍ୟାତି ପ୍ରସରିଲା ଅତି
ଚତୁର୍ଦ୍ଦିଗେ କ୍ରମେ କ୍ରମେ,
ପାପୀ କଉରବେ ସନ୍ତତ ଡରିଲେ
ଭୀମାର୍ଜୁନଙ୍କ ବିକ୍ରମେ ।
ସଂସାରେ କାହାରି ହୃଦୟେ ସୌହାର୍ଦ୍ଦ୍ୟ
ନ ରହେ ହୋଇ ଅଜରି,
କାଳ ବଶେ ସବୁ ହୋଇଥାଏ ଜୀର୍ଣ୍ଣ
ପଡ଼େ କେବେ ନିରନ୍ତରି ।
ସପୁତ୍ରକୁନ୍ତୀଙ୍କୁ ଦଗ୍ଧ କରିବାକୁ
ମନ୍ତ୍ରଣା କରି କୌରବେ,
ପଠାଇଲେ ତାଙ୍କୁ କୌଶଳ ଭିଆଇ
ବାରଣାବତକୁ ଜବେ ।
ଏଣେ ଦୁର୍ଯ୍ୟୋଧନ ଡାକି ପୁରୋଚନ
କହନ୍ତି, "ବାରଣାବତ",
ଯାଇ ଜତୁଗୃହ ନିର୍ମି ପାଣ୍ଡୁ ପୁତ୍ରେ
ରଖାଅ ତହିଁ ତୁରିତ ।
ଅଗ୍ନି ସନ୍ଦୀପକ ଦ୍ରବ୍ୟ ଗୋପନରେ
ରଖିଥିବ ଚତୁପାଶେ,
ସୁବିଧାନୁଯାୟୀ ଲଗାଇବ ନିଆଁ
ପୋଡ଼ି ମରିବେ ସବଂଶେ ।
କଥା ଅନୁଯାୟୀ ପୁରୋଚନ ଯାଇ
ତଦ୍ରୂପ କଲେ ନିର୍ମାଣ,
ଜନନୀ କୁମାରେ ରହିଲେ ତହିଁରେ
ସୁମରି ଆରତ ତ୍ରାଣ ।
ବିଦୁର ଆଗରୁ ଜାଣି ଏ ମନ୍ତ୍ରଣା
ପଠାଇଲେ ଲୋକ ଜଣେ,
ଛଦ୍ମବେଶେ ଆସି ତା ଭିତରେ ବିଳ
କଲା ସେ ଅତି ଗୋପନେ ।
ପ୍ରତୀକ ଜନ୍ମାଇ ପୁରୋଚନ ମନେ
ଥାଆନ୍ତି ପାଣ୍ଡୁ ନନ୍ଦନେ,
ହୋଇ ପୁଲକିତ କରନ୍ତି ମୃଗୟା
ବୁଲି ଏ ବନୁ ସେ ବନେ ।
ଏପରି ବରଷେ କଟନ୍ତେ ସେମାନେ
ବର୍ତ୍ତିଲେ ପଳାୟନେ,
ଦାନ ଛଳନାରେ କୁନ୍ତୀ ଯୋଗାଡ଼ିଲେ
ରାଜ ବ୍ରାହ୍ମଣ ଭୋଜନେ ।
ସେଦିନ ଗୋଟିଏ ନିଷାଦ ରମଣୀ
ଘେନି ତା'ର ପଞ୍ଚପୁତ୍ର,
କାଳବଶେ ତହ ହୋଇ ଉପଗତ
ଶୋଇଲା ସେ ଜନ ସାଥ ।
ଏ ସୁଯୋଗେ ଭୀମ ପାବକ ଲଗାଇ
ଚତୁପାଶେ ସେ ଘରର,
ସମସ୍ତଙ୍କୁ କାନ୍ଧେ ବୋହି ପଳାଇଲେ
ନିବିଡ଼ ବନ ଭିତର ।
ଫଳମୂଳ ଶୂନ୍ୟ ହିଂସ୍ର ଜନ୍ତୁ ପୂର୍ଣ୍ଣ
ବନେ ଆସି ସାୟଂକାଳେ,
ଭକ୍ଷପେୟହୀନ ହୋଇ ପାଣ୍ଡୁ ସୁତ
ବିଶ୍ରମିଲେ ତରୁ ତଳେ ।
ତୃଷ୍ଣାରେ କାତର ହେବାରୁ ଜନନୀ
ଭୀମ ଗଲେ ଖୋଜି ଖୋଜି ପାଣି,
ଜଳାଶୟେ ଯାଇ ମନ୍ଦେ ନିଜେ ପିଇ
ଫେରିଲେ ସଲିଳ ଆଣି ।
ଜନନୀ ଭାଇଙ୍କି ଭୂଇଁରେ ଶୋଇବା
ଦେଖି ଖେଦ ବହ୍ନି ମନେ,
ନିନ୍ଦି କପାଳକୁ ପୁଣି କୌରବଙ୍କୁ
ବସିଲେ ଅଶ୍ରୁ ଲୋଚନେ ।
ଆଢ୍ୟ ବା ଅନାଢ୍ୟ ରାଜା ବା ପରଜା
ଭୋଗନ୍ତି ଦୁଃଖ ସକଳ,

ଏ ମତ ଜୀବନେ ହୋଇ କ୍ଳେଶ ଶୂନ୍ୟ
ଅଛୁ କଏ ଅବିରଳ,
ଏଣେ ପୁରଜନେ ପାଣ୍ଡବ ଦହନେ
ଅତଶୟ ଦୁଃଖ ଭର,
ପାପମତ କୁରୁ ନୃପଙ୍କ ନିକଟା
ଦେଲେ ବାଉତା ସତ୍ୱର ।
ଏ ବାରତା ପାଇ ଦୁଃଖେ କୁରୁସାଇଁ
ତଥା ସ୍ୱଜ ପରିବାର,
ଛଳନା ବେଦନ କଲେ ବହୁକ୍ଷଣ
ତେଜ ଆହାର ବହାର ।
କାନନ ବଶ ହୋଇ ହିଡ଼ମ୍ବୀ ରାକ୍ଷସୀ
ହେଲ ତବ ଉପଗତ,
ଭୀମସେନ ସଙ୍ଗେ କଥା ହେଉ ହେଉ
ହୋଇଲେ ସବେ ଜାଗ୍ରତ ।
ଭଗିମାର ଡ଼େର ହେବାରୁ ହିଡମ୍ବ
ପ୍ରବେଶିଲ ସେହି ସ୍ଥାନେ,
ଭୀମଙ୍କ ସଙ୍ଗରେ ଆରମ୍ଭି କଜଆ
ଗଲ ଶମନ ଭୁବନେ ।
ପିତାମହ ବ୍ୟାସ ଆସି ଉପଦେଶ
ଦେବାରୁ ସେମାନେ ଯାଇ,
ଏକଚକ୍ରୀ ଗ୍ରାମେ ବ୍ରାହ୍ମଣ ସଦନେ
ରହିଲେ ଚହ୍ନା ନ ଦେଇ ।
କାଳକୁ ପ୍ରତୀକ୍ଷା କରି ମାଗି ଭିକ୍ଷା
ଚାଳନ୍ତି ସନ୍ତୋଷଭରେ,
ପୁରବାସୀଙ୍କର ଲଭିଲେ ଆଦର
ନିଜ ମହତ ଗୁଣରେ ।
ବକର ଦୌରାତ୍ମ୍ୟେ ଏକଚକ୍ରୀ ବାସୀ
ଥାଆନ୍ତି ଭୀତ ଚତ୍ତରେ,
ଜାଣିବାରୁ ଭୀମ ଲଢ଼ି ତା ସଙ୍ଗରେ
ପ୍ରାଣ ନେଲେ କ୍ଷଣକରେ ।
ହେବ ସ୍ୱୟମ୍ବର ପାଞ୍ଚାଳ କନ୍ୟାର
ବାଜିଲା ନାଗରା ଚଉଦଗରେ,
ବହୁ ରାଜସୁତ ତହିଁ ସମାଗତ
ଗଜବାଜ ସଙ୍ଗେ ଆଡ଼ମ୍ବରରେ ।

ପାଇ ଏ ଖବର ପାଣ୍ଡୁସୁତଙ୍କର
ପାଞ୍ଚାଳ ଗମନେ ବଳିଲ ମନ,
ପୃଥା ସହ ସୁତେ ଗମିଲେ ତୁରିତେ
ବ୍ରାହ୍ମଣ ବେଶରେ ଅତି ବହନ ।
ମିଳି ସେ ନଗରେ ପ୍ରଚ୍ଛନ୍ନ ବେଶରେ
କୁମ୍ଭକାର ଶାଳେ ବସା ସ୍ଥାପନ,
କରି ସନ୍ତୋଷରେ ରହିଲେ ସେଠାରେ
ଭିକ୍ଷା ବୃତ୍ତି କରି ଅବଲମ୍ବନ ।
ହଂସ ବର୍ଣ୍ଣ ପରି ପୁଷ୍ପଗୁଚ୍ଛ ପୁରି
ପାଉଥିଲ ଶୋଭା ବଭା ପ୍ରାଙ୍ଗଣ,
କର୍ପୂର ଚନ୍ଦନ ବାସ ପ୍ରଭଞ୍ଜନ
ବୋଳ ଅବା କରେ ମନ ହରଣ ।
ଶଙ୍ଖ ବେଣୁ ବୀଣା କାହାଳୀ ବାଜାରେ
କମ୍ପୁଅଛି ଆଜ ପାଞ୍ଚାଳ ଧରା,
ହୋଇ ଆଶାବାଦୀ ଅନେକ ଭୂପତ
ରୁଣ୍ଡ ଲଭିବାକୁ କୃଷ୍ଣାଙ୍କୁ ପରା ।
ଭଗିମାଙ୍କ ଧରି ପାଞ୍ଚାଳ କୁମାର
କହନ୍ତି ପ୍ରବେଶି ସଭା ପ୍ରାଙ୍ଗଣ,
ଉର୍ଦ୍ଧ୍ୱସ୍ଥିତ ଲକ୍ଷ୍ୟ ମାରିବ ଯେ ଲାଖ
କରିବେ ତାହାଙ୍କୁ କୃଷ୍ଣା ବରଣ ।
ଗୋଟି ଗୋଟି ହୋଇ ନୃପତଏ ଆସି
ଫେରିଲେ ସେଠାରୁ ଅତି ଲଜରେ,
ଆସି ଧନଞ୍ଜୟ ମାଇଲେ ସେ ଲାଖ
ଅବଲୀଳାକ୍ରମେ ପରିଶେଷରେ ।
ନଭୁଁ ପଡେ ଖସି ଦିବ୍ୟ ପୁଷ୍ପରାଶି
ଜିଷ୍ଣୁଙ୍କ ମୂର୍ଦ୍ଧାରେ ଥରକୁ ଥର,
ତା ଦେଖି ନରେଶେ ଈର୍ଷା ପରବଶେ
ଆକ୍ରମଣ ଲାଗି ଦେଲେ ନଜର ।
ମହାବଳ ଭୀମ ଧରି ମହାଦ୍ରୁମ
ପାର୍ଥଙ୍କ ସମୀପେ ହୋଇଲେ ଠିଆ,
ସମରେ ପ୍ରବୃତ୍ତ ଯେତେ ହେଲେ ନୃପ
ଛଡାଇଲେ ତାଙ୍କ ବୀରପଣିଆ ।
ତଦନ୍ତେ ଅର୍ଜୁନ କୃଷ୍ଣା ଭୀମସେନ
କୁଲାଳ ସଦନେ ହେଲେ ପ୍ରବିଷ୍ଟ,

ସେମାନଙ୍କୁ ଦେଖି ଭୋଜରାଜ ସୁତା
କୁନ୍ତୀ ହେଲେ ଅତି ପ୍ରମୋଦାବିଷ୍ଟ ।
ଶୁଭବେଳା ଦେଖି ପାଞ୍ଚାଳ ନୃପତି
ନେଲେ ଡାକି ପାଣ୍ଡୁନନ୍ଦନଗଣ,
କୁନ୍ତୀଙ୍କ କଥାରେ କୃଷ୍ଣା ସହ ହେଲା
ପଞ୍ଚ ଭାଇଙ୍କର ପାଣିଗ୍ରହଣ ।
ଏ ଅନ୍ତେ ସାନନ୍ଦେ ପାଣ୍ଡୁ ସୁତମାନେ
ପାଇ ନାନାବିଧ ଉପଢୌକନ,
ପାଞ୍ଚାଳ ନଗରେ କରି ଅବସ୍ଥାନ
ମହାସୁଖେ କାଳ କଲେ ଯାପନ ।
ହେଲା ଏ ଖବର ପବନ ବା ଚର
ହୋଇ ଦୁର୍ଯ୍ୟୋଧନ ଅତି ଚଞ୍ଚଳ,
ତତ୍ପରେ ସେ ବିଷୟରେ କଲେ ବାର ବାର
ଡାକି ଅନ୍ତରଙ୍ଗ ବନ୍ଧୁ ସକଳ ।
ବିଚାର ଶେଷରେ ଦୁର୍ଯ୍ୟୋଧନ ବୋଲେ
ପାଞ୍ଚାଳ ଦେଶକୁ ବ୍ରାହ୍ମଣ ଯାଇ,
ଘଟ ପତ୍ନୀ ଅବା ଭାଇଙ୍କ ମଧ୍ୟରେ
ବିବାଗ ଶତ୍ରୁତା ଆସନ୍ତୁ ଥୁଆଇ ।
ଅବା ସେମାନଙ୍କ ଆଗମନ ଲାଗି
ଉନ୍ନତ ବଳମ୍ବେ ହେଉ ଯତନ,
ଆସିଲେ ଏଠାରେ ବିଧି ଅନୁସାରେ
ହର୍ଣ୍ଣି ସେମାନଙ୍କ ନେବା ଜୀବନ ।
ଆହା ବସୁନ୍ଧରା ପରଶ୍ରୀକାତରା
କେତେ ତୋ କୋଳରେ ବଢ଼ି,
ନାନା ଉପଦ୍ରବ ଉଆଇ ନିରତ
ଦେଖାନ୍ତି ଆଗରେ ଛଡ଼ି ।
କର୍ଣ୍ଣଙ୍କ ମନକୁ ନ ପାଇ ଏ କଥା
କହନ୍ତି ଉପାୟ କରି,
କରି ଛିନ୍ନ ମୂଳ ପାଣ୍ଡବ ସକଳ
ବିକ୍ରମ ଧର୍ମ ଆଚରି ।
ଭୀଷ୍ମ ଦ୍ରୋଣ ଆଦି ଡକାଇ ପୁଛନ୍ତେ
ରାଜ୍ୟାର୍ଦ୍ଧ ଦେବା ନିମିତ୍ତ,
କହନ୍ତେ ସେମାନେ ତତ୍କାଳେ କେତେକ
ହେଲେ ଅତି ଆନନ୍ଦିତ ।

ବାଧ୍ୟ ହୋଇ ଅନ୍ଧ ହୃଦେ ରଖି ଛନ୍ଦ
ଦେଇ ବହୁବିଧ ମନ,
ଘାଞ୍ଚାଳେ ବିଦୁର ପଠାନ୍ତି ସତ୍ୱର
ସମୀପେ ପାଣ୍ଡୁନନ୍ଦନ ।
ପହଞ୍ଚି ସେଠାରେ ରାଜ ନଗରକୁ
ଯାଇ ମିଳିଲେ ଦ୍ରୁପଦ,
ଏ ଅନ୍ତେ ସପୁତ୍ରା କୁନ୍ତୀ ପାଞ୍ଚାଳୀଙ୍କି
ଭେଟି ଲଭିଲେ ଆନନ୍ଦ ।
ବାର୍ତ୍ତା ବିନିମୟ ପରେ ଯୁଧିଷ୍ଠିର
ହସ୍ତିନା ଗମନ ଲାଗି,
ହେଲେ ସଜବାଜ ଭ୍ରାତା ପତ୍ନୀ ମାତା
ସହିତ ମେଲାଣି ମାଗି ।
ପହଞ୍ଚି ହସ୍ତିନା ନଗରେ ଭେଟିଲେ
ଗୁରୁଜନଙ୍କୁ ସକଳ,
ଚରଣ ବନ୍ଦନା କରି ସେମାନଙ୍କ
ହେଲେ ଆନନ୍ଦବର୍ଦ୍ଧନ ।
ନଗର ବାସୀଙ୍କ ପଚାରି କୁଶଳ
ବିଶ୍ରମିଲେ କିଛି ଦିନ,
ଧୃତରାଷ୍ଟ୍ର ଭୀଷ୍ମ ପାଣ୍ଡବଙ୍କୁ ଡାକି
କରିଦେଲେ ରାଜ୍ୟ ଚିହ୍ନ ।
ପାଣ୍ଡବ ପ୍ରସ୍ଥକୁ କରି ରାଜଧାନୀ
ଗମିଲେ କୁନ୍ତୀ ସବଂଶ,
ନ୍ୟାୟ ଧର୍ମେ ପ୍ରଜା ଶାସିବାରୁ କ୍ରମେ
ପ୍ରସରିଲା ତାଙ୍କ ଯଶ !

*★*

## ଦ୍ୱିତୀୟ ସର୍ଗ

ପାଣ୍ଡବ ସଦନେ ସମାଗତ ଦିନେ
ହେଲେ ଦେବର୍ଷି ନାରଦ,
ଧର୍ମ ପରାୟଣ ପାଣ୍ଡୁ ସୁତେ ତାଙ୍କୁ
ଦେଖି ଲଭିଲେ ଆହ୍ଲାଦ ।
ଏ ଖବର ପାଇ ଯାଜ୍ଞସେନୀ ଆସି
ରହି ଅବଗୁଣ୍ଠନରେ,

ପ୍ରଣତ କରନ୍ତେ ଆଶୀର୍ବାଦ ଲଭି
ଫେରିଲେ ହରଷଭରେ ।
ନିର୍ଜନେ ନାରଦ ଦେଲେ ଉପଦେଶ
ରଖ ପ୍ରୀତି ପରସ୍ପର,
ଭେଦ ଭାବ ଜାତ ନହୁଏ ଯେପରି
ବଢ଼ଅ ତୁଷ୍ଟି ନିରନ୍ତର ।
ଶୁଣି ଏ ବଚନ ପାଣ୍ଡୁପୁତ୍ରେ ସ୍ଥିର
କଲେ ଦେବର୍ଷିଙ୍କ ଆଗେ,
"କୃଷ୍ଣା ସଙ୍ଗେ କେହି ଭ୍ରାତା ଥିଲେ ଅନ୍ୟ
ଯିବେ ନାହିଁ ଅନୁରାଗେ ।
ଦ୍ୱାଦଶ ବରଷ ହେବ ବ୍ରହ୍ମଚାରୀ
ଯେ କରେ ଏହା ଲଙ୍ଘନ",
ଏ ବଚନ ଶୁଣି ପ୍ରୀତେ ମହାମୁନି
କଲେ ସ୍ୱସ୍ଥାନେ ଗମନ ।
ବହୁକାଳ ଗତେ ଜଣେ ବିପ୍ର ଦିନେ
ଆସି ନୃପତି ଦୁଆରେ,
କେତେ ତାଙ୍କ ଗୋରୁ ଚୋରେ ନେଇଯିବା
କହିଲେ ଉଚ୍ଚ ସ୍ୱରରେ ।
ଶୁଣି ତା ଫାଲ୍‌ଗୁନି ଅଭୟ ବଚନ
ଦେଇଗଲେ ଅସ୍ତ୍ରାଗାରେ,
ଯୁଧିଷ୍ଠିର କୃଷ୍ଣା ଥିବା ସେ ସଦନେ
ପଡ଼ିଲି ତାଙ୍କ ନେତ୍ରରେ ।
କରି ସମ୍ଭାଷଣ ଯୁଧିଷ୍ଠିର ସହ
ଲେଉଟିଲେ ଧନୁ ଧରି,
ବିପ୍ର ସଙ୍ଗେ ଯାଇ ଚୋର ହସ୍ତୁ ଗାଈ
ଉଦ୍ଧରିଲେ ଯୁଦ୍ଧ କରି ।
ପାର୍ଥ ଅନନ୍ତର ଲେଉଟି ନଗରୀ
ଧର୍ମରାଜଙ୍କୁ କହନ୍ତି,
"ଲଙ୍ଘିଛି ନିୟମ ଯିବି ବନାଦେଶ
ଦିଅ ମୋତେ ଅନୁମତି ।
ଦୁଃଖେ ଅନୁମତି ଦେବାରୁ ରାଜନ
ଅର୍ଜୁନ ଗଲେ କାନନ,
କାହିଁ ତପସ୍ୟାରେ କାହିଁ ହୋମ କରି
କଲେ ସେ କାଳ ଯାପନ ।

ପ୍ରଭାସ ତୀର୍ଥରେ ଗଉଠୀ ଥିବାର
ଶୁଣି କୃଷ୍ଣ ଗଲେ ତହିଁ,
ଭେଟା ଭେଟି ହୋଇ କୁଶଳ ପଚାରି
ରହିଲେ ସୁଖେ ଏକତ୍ର ।
ତଦନ୍ତେ ମାଧବ ଗଉଠୀଙ୍କୁ ଧରି
କଲେ ଦ୍ୱାରକା ଗମନ,
ପୁର ଜନମାନେ କଲେ ରାଜମାର୍ଗେ
କୃଷ୍ଣାର୍ଜୁନଙ୍କ ଦର୍ଶନ ।
କୃଷ୍ଣଙ୍କ ଭଗିନୀ ସୁଭଦ୍ରାଙ୍କ ରୂପେ
ହେଲେ ବଶ ଧନଞ୍ଜୟ,
କୃଷ୍ଣଙ୍କ ସ୍ୱୀକୃତ ଲଭି ଦୁହିଁଙ୍କର
ହେଲା ଶୁଭ ପରିଣୟ ।
ବରଷକ ପରେ ପୁଷ୍କର ତୀର୍ଥକୁ
ଅର୍ଜୁନ କଲେ ଗମନ,
ଅବଶିଷ୍ଟ କାଳ ଯାପି ଇନ୍ଦ୍ରପ୍ରସ୍ଥ
କରିଲେ ପ୍ରତ୍ୟାବର୍ତ୍ତନ ।
ଭେଟି ଧର୍ମରାଜ ପାଞ୍ଚାଳୀ ସମୀପେ
ତଦନ୍ତେ କଲେ ଗମନ,
କାନ୍ଦିବାରୁ କୃଷ୍ଣା କଲେ ତାଙ୍କୁ ବୋଧ
କହି ସାନ୍ତ୍ୱନା ବଚନ ।
କୌଶେୟ ବସନ କରି ପରିଧାନ
ସୁଭଦ୍ରା ଅନ୍ତଃପୁରରେ,
ପଶି ଯଶସ୍ୱିନୀ କୁନ୍ତୀଙ୍କ ଚରଣେ
ବନ୍ଦିଲେ ବିନମ୍ରଭରେ ।
ଶୁଣନ୍ତେ ମାଧବ ଧନଞ୍ଜୟଙ୍କର
ଇନ୍ଦ୍ରପ୍ରସ୍ଥ ଆଗମନ,
ଆସିଲେ ସେଠାକୁ ବଳରାମ ସହ
ଧରି ଉପଢୌକନ ।
ପୁଷ୍ପମାଲ୍ୟ ଧ୍ୱଜ ତୋରଣ ଦାମରେ
ପ୍ରତି ଘର ସୁଶୋଭିତ,
ରାଜପଥମାନ ଚନ୍ଦନ ରସରେ
ହୋଇଥିଲା ଅତି ସିକ୍ତ ।
ଅତି ପ୍ରୀତ ମନେ ଧର୍ମରାଜ କଲେ
ସେମାନଙ୍କୁ ଆଲିଙ୍ଗନ,

ବିଧି ଅନୁଯାୟୀ ମୋଦେ କଲେ ତାଙ୍କୁ
ମାଧବ ଅଭିବାଦନ ।
ଉପମାନ ମାନ ଦର୍ଶନେ ସକଳ
ଚମତ୍କୃତ ହେଲେ ଅତି,
ବହୁଦିନ ଧରି ରହି ଇନ୍ଦ୍ରପ୍ରସ୍ଥେ
ନାନାରଙ୍ଗେ ବିହରନ୍ତି ।
ତଦନ୍ତେ କୃଷ୍ଣଙ୍କ ଅନୁଚରମାନେ
ବଳରାମଙ୍କ ସହିତ,
ବହୁ ଦିନାନ୍ତରେ ଦ୍ୱାରକା ଫେରିଲେ
ସର୍ବେ ହୋଇ ଆନନ୍ଦିତ ।
ଅର୍ଜୁନ ଔରଷୁ ସୁଭଦ୍ରାଙ୍କ ଗର୍ଭୁ
ହେଲେ ଅଭିମନ୍ୟୁ ଜାତ,
ତାଙ୍କ ତେଜ ଦେଖି ହେଲେ ଆଚମ୍ବିତ
ଧରଣୀ କ୍ଷତ୍ରିୟ ବ୍ରାତ ।
ଧନୁର୍ବେଦ ପାର୍ଥ ଶିଖାଇଲେ ତାଙ୍କୁ
ନାନାବିଧ ଶାସ୍ତ୍ରମାନ,
ଅନଧିକ କାଳେ ଧନୁରେ ପାରଗ
ହେଲେ ଜନକ ସମାନ ।
ପଞ୍ଚପତି ଠାରୁ ପାଞ୍ଚ ବୀରସୁତ
ଶୁଭ ଲକ୍ଷଣା ପାଞ୍ଚାଳୀ,
ପ୍ରସବିଲେ ବର୍ଷେ ବର୍ଷେ ବ୍ୟବଧାନେ
ମହାସୁଖୀ ପିତାବଳୀ ।
ପାଣ୍ଡବଙ୍କ ସଙ୍ଗେ କ୍ରୀଡ଼ି ନାନାରଙ୍ଗେ
ବହୁ ଦିବସ କଟାଇ,
ଆରୋହି ରଥରେ ଦ୍ୱାରବତୀ କୃଷ୍ଣ
ଗମିଲେ ବିଦାୟ ନେଇ ।

*★*

## ୩ୟ ସର୍ଗ

ଧରମ ପାଳନ ନ୍ୟାୟ ଆଚରଣ
କରି ଯୁଧିଷ୍ଠିର ପ୍ରଜା ଶାସିଲେ,
ନଥିଲା ରାଇଜେ ଈତିଭୟ କେବେ
ପ୍ରଜାବର୍ଗ କାଳ ସୁଖେ କାଟିଲେ ।
ଆଳସ୍ୟ ବର୍ଜନ କ୍ରୋଧ ସମ୍ବରଣ
ସତ୍ୟତା ଆଶ୍ରୟ କରି ନିରତ,
ଲୋଭ ନିବାରଣ ହୋଇ ଜିତେନ୍ଦ୍ରିୟ
ବଢାଇଲେ ଯଶ କର୍ତ୍ତବ୍ୟେ ରତ ।
ରାଜସୂୟ ଯଜ୍ଞ କରିବା ନିମିତ୍ତ
ଏକାଳେ ତାଙ୍କର ବଳିଲା ମନ,
ଦ୍ୱାରକାରୁ ଆସି ମିଳିଲେ ଦୈବାତ୍
ହିତ ଚମଟିଆ ମଧୁସୂଦନ ।
ଶରଣ ବତ୍ସଳ ପାଣ୍ଡବ ଭୂପାଳ
ଯଥୋଚିତ ତାଙ୍କୁ କରି ସତ୍କାର,
ଅନୁଜଙ୍କ ସହ ରାଜସୂୟ ଯଜ୍ଞ
କରିବା ନିମିତ୍ତ କଲେ ବିଚାର ।
କଥା କରି ସ୍ଥିର ରାଜା ଯୁଧିଷ୍ଠିର
ମଧୁସୂଦନଙ୍କ ସମ୍ମତି ମାଗି,
ସର୍ବେ ହୋଇ ଠୁଳ କଲେ ଅନୁକୂଳ
ଯଜ୍ଞୀୟ ସାମଗ୍ରୀ ଯୋଗାଡ଼ ଲାଗି ।
ମଙ୍ଗଳ ବେଳାରେ ମହା ଆଡ଼ମ୍ବରେ
ଆରମ୍ଭିଲେ ଯଜ୍ଞ ସବୁ ସଜାଡ଼ି,
ଆମନ୍ତ୍ରଣ ପାଇ ଭୂପମାନେ ଆସି
ଉପହାରମାନ ଦେଲେ ଅଜାଡ଼ି ।
ଶକୁନି ବିଦୁର କୃପ ଦୁର୍ଯ୍ୟୋଧନ
ଦ୍ରୋଣ ଭୀଷ୍ମ ଆଦି ଆସି ସକଳ,
ଯଥା ଅନୁରୂପ ହୋଇଣ ସତ୍କୃତ
କରି ଦରଶନ ହେଲେ ବିହ୍ୱଳ ।
ଯେ ଯାହା ରାଜ୍ୟକୁ ନୃପେ ଗଲେ ବିଜେ
ହୋଇ ପୁଲକିତ ଯଜ୍ଞ ଶେଷରେ,
ପାଣ୍ଡବ ସମ୍ପଦ ଦେଖି ଦୁର୍ଯ୍ୟୋଧନ
ଗମିଲା ମଉନେ ବିଷାଦଭରେ !
ବାସବ କୋଦଣ୍ଡ ପରାଏ ସମ୍ପତ୍ତି
ଦେଖାଏ ବିଭିନ୍ନ ରଙ୍ଗ,
ଟକାଏ ଖାଲରେ ବୁଝେ କେ ସଂସାରେ
ଛୁଟେ କି କଏ ତା ସଙ୍ଗ ।
ଦୁଃଖ ରୂପୀ କଇଁ ବିକାଶ ନିମିତ୍ତ
ଚନ୍ଦ୍ର କିରଣ ସଦୃଶ,

ରଜନୀ ପରାଏ ସତକର୍ମ ରୂପୀ
ତାମରସ କରେ କୃଶ ।
ସୌଜନ୍ୟ କମଳ କରେ ସଙ୍କୁଚିତ
ହିମାଂଶୁ କିରଣ ପରି,
ବିବେକ ଚନ୍ଦ୍ରଙ୍କୁ ଗ୍ରାସ କରିବାକୁ
ରାହୁ କି ହେବ ତା ସରି ।
ଶକୁନିଙ୍କି ବୁଦ୍ଧିଁ ପୁଚ୍ଛେ କୁରୁସାଇଁ
ପାଣ୍ଡବ ବିଜିତ ହେବେ କେସନ,
ଅକ୍ଷକ୍ରୀଡ଼ା ପଟ୍ଟୁ ମାମୁଁ ଉତ୍ତରନ୍ତି
କରିଲେ ସେମାନେ ଦ୍ୟୁତ କ୍ରୀଡ଼ନ ।
ପାଇଲି ମନକୁ ହୋଇ ହୃଷ୍ଟଚିତ୍ତ
ଫେରିଲେ ହସ୍ତିନା ମାମୁଁ ଭଣଜା,
ଧୃତରାଷ୍ଟ୍ରେ ପୁଚ୍ଛି ଅନୁମତି ମାଗି
ଡକାଇ ଆଣିଲେ ପାଣ୍ଡବ ରଜା ।
ପଶାଖେଳ କଥା କହନ୍ତେ ଶକୁନି
ଉତ୍ତରନ୍ତି ଧର୍ମରାଜ ତକ୍ଷଣେ,
ଏ ପାପ କର୍ମେ ବଳାଇବି ମନ
ତେଜି ପ୍ରବଞ୍ଚନା ନ ପଶ ଏ ରଣେ ।
ବହୁ ଶାସ୍ତ୍ର ଜାଣି ପାଣ୍ଡବ ନୃମଣି
ନ ବୁଝି ଶକୁନି ଛନ୍ଦ,
ହରାଇଲେ ଦ୍ୟୁତ ପଶାଖେଳେମାତି
ଉପୁଜିଲା ନାନା ଦ୍ୱନ୍ଦ୍ୱ ।
ଜପ୍ସ ଜପ୍ସ କହେ କପଟୀ ଶକୁନି
ଧର୍ମରାଜ କିଛି ନପାରି ଜାଣି,
ଭାଇ ସହ ସବୁ ହରାଇଲେ ଦୁଃଶା
କୃଷ୍ଣାଙ୍କୁ ସଭାକୁ ଆଣିଲେ ଟାଣି ।
ବସୁନ୍ଧରା ରୂପୀ ବିଶାଳ ବଣରେ
କୃଷ୍ଣା ବିଷବଲ୍ଲୀ ମାତ୍ର,
ଆହା କି ଢଙ୍ଗରେ ନିମିଷେ ଦେଉଛି
ଶଠତା ଫଳ ଅଜାଡ଼ି ।
ପବନ ସଂଯୋଗେ ବହ୍ନି ପୋଡ଼ି ବନ
କରେ ଶୋଭା ହୀନ ଯଥା,
କପଟେ ଶକୁନି ଖେଳ ଶିଖାଇ୍ନ
କଲି ଧର୍ମରାଜ ତଥା ।

କେଶ ଆକର୍ଷି କରି ଦୁଃଶାସନ
ଆଣନ୍ତେ ସଭାସ୍ଥଳକୁ,
କାତରା ହୋଇ ସେ ଡ଼ାକି ହୃଷୀକେଶ
ବନ୍ଦନ କଲେ ତଳକୁ ।
ଚରାଚର ସର୍ବେ ଦୈବ ବଶବର୍ତ୍ତୀ
ଦୈବ ସିନା ବଳବାନ,
ଭୁଜାରେ ମଣିଷ ଦେଖାଏ ତା ଟାଣ
ହରାଏ ଶେଷେ ସମ୍ମାନ ।
ଥିରି ଥିରି ସ୍ୱରେ କହନ୍ତି ଅଧୀରେ
"ବିବସ୍ତ୍ରା କରନା ମୋତେ,
ରଜସ୍ୱଳା ନାରୀ ଛୁଉଁଛୁ କପରି
ଲଜ ମାଡ଼ୁ ନାହିଁ ତୋତେ ।
କରୁ ତୁ ଅକାର୍ଯ୍ୟ ଆରେ ରେ ଅନାର୍ଯ୍ୟ
ଧିକ ଧିକ ଦୁଃଶାସନ,
ହୃଡ଼ୁ ତୁ ଧରମ କରି ଏ କୁକର୍ମ
ଦେଖୁଛନ୍ତି ସଭାଜନ ।
ଅଚିରେ ଏ ବଂଶ ହେବ ସବୁ ଧ୍ୱଂସ
ହେଲାଣି ନିକଟ କାଳ,
ଆଚରୁ କୁତ୍ସିତ ଗଳେ ବାନ୍ଧି ପାଶ
ମଉନ ଭୂପତିମାଳ" ।
ନ ପାରି ସମ୍ଭାଳି ଭୀମ ମହାବଳୀ
ଉତ୍ତୋଳି ଭୁଜ କହନ୍ତି,
"ଆଦେଶିଲେ ଗୁରୁ ଭୁଜ ଖଡ୍‌ଗେ କୁରୁ
ବଂଶକୁ ପୋଛି ଦିଅନ୍ତି" ।
ସବୁ ଭୂପମାନେ ଥିବାରୁ ମଉନେ
ବିକର୍ଣ୍ଣ ତହିଁ କହନ୍ତି,
"ନିରପେକ୍ଷ ଭାବେ ସବୁ ପରଖିଲେ
ପାଞ୍ଚାଳୀ ଜିତା ନୁହନ୍ତି ।
ମାଂସଜୀବୀ ବ୍ୟାଧ ଗଛ ପଟେ ରହି
ଲୋଭେ ମାରି ପକ୍ଷୀ ଯଥା.
ଲୋଭୀ କଉରବେ କପଟ ପଶାରେ
କଲେ ରାଜ୍ୟ ଲାଭ ତଥା ।
ଶୁଣି ଏ ବଚନ କହେ ଦୁର୍ଯ୍ୟୋଧନ
ବାଳ୍ୟ ଚପଳତା ଛଳେ,

ବିକର୍ଣ୍ଣ ଏପରି କହନ୍ତେ ନ ଜାଣି
ଉପୁଜେ ଦ୍ୱନ୍ଦ୍ୱ ଯା ଫଳେ ।
"ଯାଅ ଦୁଃଶାସନ କର ଉଲଗନ
ପାଣ୍ଡବ ଯାଜ୍ଞସେନୀଙ୍କୁ",
ଓଟାରନ୍ତେ ବସ୍ତ୍ର ରକ୍ଷାକର ବୋଲି
ଡାକନ୍ତି କୃଷ୍ଣା କୃଷ୍ଣଙ୍କୁ ।
ତାଙ୍କ ଆର୍ତ୍ତନାଦ ଶୁଣି ବାସୁଦେବ
ରହି ଅଲକ୍ଷ୍ୟ ସ୍ଥଳରେ,
ନାନା ସୁବସନ ଦେଇ ଆବରଣେ
କଲେ ପାଞ୍ଚାଳୀଙ୍କି ଖରେ ।
କୃଷ୍ଣାଙ୍କ ଏ ଗତି ଦେଖି ଭୀମ କହେ
ସମ୍ଭାଳି ନପାରି ଲବେ,
ସମରେ ଦୁଃଶାର ପିଇବି ରୁଧିର
ବକ୍ଷସ୍ଥଳ କୋରି ଜବେ ।
ଏପରି ବଚନ ପଢ଼େ ଘନ ଘନ
ଦୁଃଶା ବସିଲା ଲାଜରେ,
ଏ ଘୋର ଅନ୍ୟାୟ ଦେଖି ନୃପତିଏ
ତୁନି କି ଅର୍ଥ ବଶରେ ?
ଅର୍ଥ ଲାଗି ଜନେ କୁତ୍ସିତ କରମେ
ପ୍ରବର୍ତ୍ତନ୍ତି ଅହରହ,
ତା କବଳେ ପଡି ଧର୍ମ ମାର୍ଗ ଛାଡ଼ି
ଭିଆନ୍ତି ତୃଷ୍ଣା କଳହ ।
ଅନନ୍ତର କର୍ଣ୍ଣ ସ୍ଥଉଳ ବଚନ
ବୋଲେ ଚାହିଁ ପାଞ୍ଚାଳୀ,
"ହୁଅ ଦାସୀ ହୋଇ ଅନ୍ତଃପୁରେ ଯାଇ
ଆଲିଙ୍ଗି କୁରୁପତିଙ୍କି" ।
ଈଷଦ୍ଧାସ୍ୟ କରି ବାସ ଶୂନ୍ୟ କରି
ବାମୋରୁକୁ ଦୁର୍ଯ୍ୟୋଧନ,
ନିର୍ଲଜ୍ଜ ବଦନେ ଦ୍ରୁପଦ ସୁତାଙ୍କୁ
କଲା ତାହା ପ୍ରଦର୍ଶନ ।
ଧୃତରାଷ୍ଟ୍ର ବୁଢା ଡାକି ଦୁର୍ଯ୍ୟୋଧନ
କଲେ ବହୁ ତିରସ୍କାର,
ଦ୍ରୁପଦ ସୁତାଙ୍କୁ କହିଲେ ଆଶ୍ୱାସି
"ମନ ଇଚ୍ଛା ମାଗ ବର" ।

ମାଗି ଦୁଇ ବର ମୁକୁଳି ସେଠାରୁ
ଗମିଲେ ପାଣ୍ଡବ ମୂର୍ଖ,
ପୁନଶ୍ଚ ରାଜନ ଡକାଇ ଥିବାରୁ
ଲେଉଟିଲେ ଅତି ଦୁଃଖେ ।
ଦ୍ୱାଦଶ ବରଷ ବନବାସ ସହ
ଅଜ୍ଞାତ ବାସ ବରଷେ,
ପଣ କରି ଏବେ ଖେଳିଲେ ଯୁଧିଷ୍ଠି
ପଡି ସେ କପଟ-ପାଶେ ।
ହାରି ବନବାସ ଯିବା ଲାଗି ବିଦା
ମାଗି ଯୁଧିଷ୍ଠିର ଗଣ,
କୁରଙ୍ଗୀ ଚେମ କରି ପରିଧାନ
ଗଲେ ତହୁଁ ଛଅ ଜଣ ।
ଅଜ୍ଞତାରେ ଭରି ଦେଖ ବସୁନ୍ଧରା
ବିବେକ ରୂପୀ ନୟନେ,
ତୃଷ୍ଣାର କବଳେ ପଡି କଲବଲ
ହୁଅନ୍ତି କପରି ଜନେ ।
ଜାଲେ ପଡ଼ିଥିବା ବିହଙ୍ଗ ଯେପରି
ଶୋକେ ଦୁଃଖେ ଯାଏ ସଢ଼,
ଡୁବଇ ଅଜ୍ଞାନେ ମଣିଷ ସେପରି
ତୃଷ୍ଣା କବଳରେ ପଡ଼ି ।
ସମୁଦ୍ର ଭିତରେ ତରଙ୍ଗ ଜନ୍ମାଏ
ଭଉଁରି ଗୁଡ଼ିକୁ ଯଥା,
ହୃଦୟ ମଧ୍ୟରେ ତୃଷ୍ଣା ଉପୁଜାଏ
ଭ୍ରମ ଆକୁଳତା ତଥା ।
ପକ୍ଷୀକୁ ଜାଲରେ ପଶାଇବା ଲାଗି
ପ୍ରୟାସୀ ବ୍ୟାଧ ଯେସନ,
ମୋହ ରୂପୀ ପାଶେ ପକାଇବା ପାଇଁ
ତୃଷ୍ଣା ଜାଗ୍ରତ ତେସନ ।
ସତା ପତରକୁ ନେଇଯାଏ କାହିଁ
ତୋଫାନ ବହି ଯେସନ,
ମାନବ ଚିତ୍ତକୁ ପହଞ୍ଚାଏ କାହିଁ
ପ୍ରବେଶି ତୃଷ୍ଣା ତେସନ ।
ତପତ ଉଦୟୁ ସଙ୍ଗେ ସଙ୍ଗେ ହୁଏ
ଯେସନ ତଡ଼ ବୁଦ୍ବୁଦ୍,

ବିବେକ ବିନାଶି    ସେକ୍ଷଣି ତୃଷ୍ଣାକୁ
ତେସନ ହିଏ ଘଉତ ।
ନ ହୋଇ ଗୋଚର    ଘଟଇ ନିରନ୍ତର
ଶତ ଶତ ଦୁରଗତ,
ସମ୍ପତ୍ତି ପ୍ରଦାନେ    ଅଥବା ବିନୟେ
କେ ପାରେ ରୋଧି ନିଯୁତ ।

*★*

## ଚତୁର୍ଥ ସର୍ଗ

ତିନିଦିନ ପରେ    ଅର୍ଦ୍ଧ ରଜନୀରେ
କିର୍ମୀର ନାମେ ରାକ୍ଷସ,
ପାଣ୍ଡବଙ୍କ ପାଶେ    ପ୍ରବେଶିଲା ବେଗେ
କାନନ କରି ତାମସ ।
ହେଲେ ପିଠାପିଠି    ଭୀମ କିର୍ମୀ ଦୁହେଁ
ତରୁମାନଙ୍କୁ ଉପାଡ଼ି ।
ଭୀମ ବହ୍ନି କ୍ରୋଧ    ତାକୁ ବାହୁ ଯୁଦ୍ଧେ
ପକାଇ ଦେଲେ କବଳିତ ।
ତଳେ ମାଡ଼ି ବସି    ଭୀମ ହସି ହସି
କଣ୍ଠ କଲେ ନିପୀଡ଼ନ,
ପାଣ୍ଡବେ ସମସ୍ତ    ହେଲେ ହୃଷ୍ଟ ଅତି
ଦେଖି ରାକ୍ଷସ ନିଧନ ।
କୃଷ୍ଣ ଆଗମନ    ଦେଖି ଯାଜ୍ଞସେନୀ
ବିଳପିଲେ ବିକଳରେ,
ଆଶ୍ୱାସି ତାହାଙ୍କୁ    ପୁଣି ପାଣ୍ଡବଙ୍କୁ
ଗମିଲେ ନିଜ ନଗରେ ।
ଯାଇ ଦ୍ୱୈତବନ    କଲେ ଅବସ୍ଥାନ
ପାଣ୍ଡବମାନେ ସୁଖରେ,
ମାର୍କଣ୍ଡେୟ ଋଷି    ସେଠାରେ ପ୍ରବେଶି
କହନ୍ତି ହରଷଭରେ ।
"ଅଛି ବୋଲି ବଳ    ଅଧର୍ମ ଆଚର
ଅବିଧେୟ ନିରନ୍ତର,
ହୋଇ ବଳବନ୍ତ    ଅଧର୍ମାଚରଣ
କରେ କି କେବେ କୁଞ୍ଜର" ?

ଅନନ୍ତର ଋଷି    ଗଲେ ବିଦା ମାଗି
ଉତ୍ତର ଦିଗେ ସିଇଲେ,
ପାଣ୍ଡବ ସକଳ    ଯାଜ୍ଞସେନୀ ସହ
କଥାବାର୍ତ୍ତା ଆରମ୍ଭିଲେ ।
ପୁଚ୍ଛନ୍ତି ପାଞ୍ଚାଳୀ    ଯୁଧିଷ୍ଠିର ଚାହିଁ
ନ ବହ କିପାଇଁ କ୍ରୋଧ,
ହୀନ ହୋଇ ରହ    କୌରବେ ସମସ୍ତ
କଲେ ନ୍ୟାୟକୁ ବିରୋଧ ।
ଉତ୍ତରନ୍ତି ତହୁଁ    ଯୁଧିଷ୍ଠିର ରାଜ
"କ୍ରୋଧ ବିନାଶ କାରଣ,
ହୁଅଇ ମଙ୍ଗଳ    ସଦା ମନୀଷୀର
କଲେ କ୍ରୋଧ ସମ୍ବରଣ ।
ନାନାବିଧ ପାପ    କର୍ମେ ହୁଏ ଲିପ୍ତ
କ୍ରୋଧୀ ବ୍ୟକ୍ତି ନିରନ୍ତର,
ହୁଏ ଅପମାନ    ମନୀଷୀ ବ୍ୟକ୍ତିଙ୍କ
ଗୁରୁଙ୍କୁ ନଥାଏ ଡର ।
ଅକର୍ତ୍ତବ୍ୟ କିବା    ଅବକ୍ତବ୍ୟ କେବେ
ନ ବିଚାରେ ଲବେ କିଛି,
ହୋଇ ଜ୍ଞାନ ହରା    ସାଧଇ ଅହିତ
ଶୁଣଇ ପଛରେ ଛି ଛି ।
ନୁହଇ ସହଜ    ଜିଣିବାକୁ କ୍ରୋଧ
କ୍ରୋଧ ମୂଳ ଅନର୍ଥର,
ଅବଧ ନିହତ    କରି କରୁଥାଏ
ବଧ୍ୟ ପୂଜା ନିରନ୍ତର ।
ଦୁର୍ବଳଙ୍କୁ ବାଧା    ଦେଲେ ବଳବାନ
ନିଜେ ହୁଏ ଆତ୍ମଘାତୀ,
ହୋଇ ଜିତ ଚିତ୍ତ    କରିଲେ ସତ୍କାର୍ଯ୍ୟ
ଅଚିରେ ଜଣେ ଅରାତି ।
ଆପଦ କାଳରେ    ଆଚରନ୍ତି କ୍ଷମା
ବିଜ୍ଞ ଲୋକେ ଭବେ ସଦା,
ହୋଇ କ୍ଷମାଶୀଳ    ଆଚରିଲେ ଦୟା
ବଢ଼ଇ ଆତ୍ମ ମର୍ଯ୍ୟାଦା ।
କ୍ଷମାଶୀଳ ଯେବେ    ନଥାନ୍ତା କେ ଭବେ
ସମ୍ଭବ କି କେବେ ସନ୍ଧି,

ମୃତେ ତା ନ ଭାବ     ଅସାର କଥାରେ
ତୁଚ୍ଛାକୁ ହୁଅନ୍ତି ଧନ୍ଦ ।
କ୍ଷମା ବ୍ରହ୍ମ ସତ୍ୟ     ଭୂତ ଭବିଷ୍ୟତ
କ୍ଷମା ଧୃତ ଏ ଜଗତ,
ହୋଇ କ୍ଷମାଶୀଳ     ବର୍ଜିଲେ କ୍ରୋଧ
କହନ୍ତି ତାକୁ ସଂଯତ" ।
ଦ୍ରୁପଦ ନନ୍ଦିନୀ     ଯୁଧିଷ୍ଠିର ବାଣୀ
ଶୁଣି ଦିଅନ୍ତି ଉତ୍ତର,
"ଈଶ୍ୱର ମାୟାରେ     ହୁଅନ୍ତି ଚାଳିତ
ଏ ଜଗତେ ଚରାଚର ।
ତୃଣ ଅଗ୍ର ସଦା     ହୁଏ ବଶୀଭୂତ
ପ୍ରବଳ ବାୟୁରେ ଯେହ୍ନେ,
ରହନ୍ତି ପ୍ରାଣିଏ     ଅଭିପ୍ରେତ କାର୍ଯ୍ୟେ
ଈଶ୍ୱର ବଶରେ ତେହ୍ନେ ।
ଖେଳନାକୁ ଧରି     ଆପଣା ଇଚ୍ଛାରେ
ଖେଳେ ବାଳକ ଯେସନ,
ଭୂତ ନିଚୟଙ୍କୁ     ଧରି ପରମେଶ
କ୍ରୀଡନ୍ତି ସଦା ତେସନ ।
କର୍ମକୁ ଉପେକ୍ଷି     ଭାଗ୍ୟ ଉପାସନା
କରଇ ଯେଉଁ ମାନବ,
ତାହାକୁ ସଂସାରେ     କହନ୍ତି ଅଧମ
ପାଏ ସଦା ପରାଭବ ।
ଏହା କହି ତୁନି     ହେଲେ ଯାଜ୍ଞସେନୀ
ଏ ଅନ୍ତେ କହନ୍ତି ଭୀମ,
"ହୁଅ ଯୁଦ୍ଧ ସଜ     ଆହେ ଧର୍ମରାଜ
ଦେଖାଇ ବଳ ଅସୀମ" ।
ଆଶୁଗ ସଦୃଶ     ଦ୍ରୁତଗାମୀ କାଳ
କେ ଅଛି ତାହାକୁ ବଳି,
କେତେବେଳେ ଆସି     କରେ ଆକ୍ରମଣ
ପଡ଼ନ୍ତି ପ୍ରାଣିଏ ଟଳି ।
ଉତ୍ତରିଲେ ତାଙ୍କୁ     ତହୁଁ ଧର୍ମରାଜ
"ନକର ସତ୍ୟ ଲଙ୍ଘନ,
ତ୍ରୟୋଦଶ ବର୍ଷ     ଶେଷାନ୍ତେ ଆରମ୍ଭ
ହେବ ଯୁଦ୍ଧ ଆୟୋଜନ ।
ବଞ୍ଚକ ନିଧନେ     ଯେ ନୁହେ ପ୍ରୟାସୀ
ଧିକ ଧିକ ତା ଜୀବନ,
କର୍ମଶୀଳ ସିନା     ହୁଅନ୍ତି ଅମର
କରି ଯଶ ଉପାର୍ଜ୍ଜନ ।
ସ୍ୱକାର୍ଯ୍ୟ ସାଧନ     ଲାଗି ଅଭିପ୍ରେତ
ନୁହେ ଏ ଜନମ କାର,
ପରର କଲ୍ୟାଣ     ଯେ କରେ ସତତ
ଜୀବନ ସାର୍ଥକ ତାର ।
ବହୁ ମହୁମାଛି     ମିଶି ମଧୁହାରୀ
ବିନାଶେ ସମର୍ଥ ଯଥା,
ଅନେକ ଦୁର୍ବଳ     ଏକତ୍ର ମର୍ଦ୍ଦନେ
ବଳବନ୍ତ ଶତ୍ରୁ ତଥା ।
କେତେକାଳ ତହିଁ     ରହି ପାଣ୍ଡୁସୁତ
ଗମିଲେ କାମ୍ୟକ ବନେ,
ବ୍ୟାସ ଆସି ବନେ     ଉପଦେଶ ଦେଇ
ବାହୁଡ଼ିଲେ ସ୍ୱଭବନେ ।
ସ୍ୱର୍ଗ ଯିବା ପାଇଁ     ମାନସ ବଳାଇ
ବାହାରିଲେ ଧନଞ୍ଜୟ,
ଭ୍ରମି ଗିରି ବନ     ଦେଖି ରମ୍ୟସ୍ଥାନ
ପହଞ୍ଚିଲେ ହିମାଳୟ ।
ତପସ୍ୟାରେ ରତ     ହେଲେ ପୃଥାସୁତ
ମହାଦେବଙ୍କ ଦର୍ଶନେ,
ମନୋରଥ ପୂର୍ଣ୍ଣ     ହୁଅନ୍ତେ ଚଳିଲେ
ସତ୍ୱରି ଇନ୍ଦ୍ର ଭବନ ।
ତଦନ୍ତେ ପାଣ୍ଡବେ     ପାଞ୍ଚାଳୀଙ୍କ ସହ
ଗମିଲେ ଗନ୍ଧମାଦନ,
ପାର୍ଥ ଆଗମନ     ପ୍ରତୀକ୍ଷାରେ ରହି
କରନ୍ତି କାଳ ଯାପନ ।
ଇନ୍ଦ୍ରପୁରେ ପାର୍ଥ     ରହି ପାଞ୍ଚବର୍ଷ
ନାନା ଅସ୍ତ୍ର ଶିକ୍ଷା କରି,
ଇନ୍ଦ୍ରଙ୍କ ରଥରେ     ଫେରିଲେ ବହନ
ମାତଳିଙ୍କ ସଙ୍ଗେ ଧରି ।
ରଥୁଁ ଅବତରି     ଗନ୍ଧମାଦନରେ
ଭେଟିଲେ ପାଣ୍ଡୁସୁତଙ୍କୁ,

ଅହ୍ଲାଦେ ଅଧୀର ହୋଇ ଯଦୁବୀର
ସମ୍ବର୍ଦ୍ଧିଲେ ମାତଳିଙ୍କୁ ।
ମାତଳିଙ୍କୁ ଏଣେ ବିଦାଦେଇ ସର୍ବେ
ଫେରିଲେ କାମ୍ୟକ ବନ,
ଅଜ୍ଞାତ ବର୍ଷକ ଯାପନ ନିମିତ୍ତ
ନିଶ୍ଚିତ କଲେ ଚିନ୍ତନ ।
ସର୍ବେ ହୋଇ ମେଳ ସଦା ଭିଳ ଭିଳ
ଚିହ୍ନିବାକୁ ମତ୍ସ୍ୟ ଦେଶେ,
କରଣ ନିଶ୍ଚୟ ପାଣ୍ଡବନିଚୟ
ଗମିଲେ ସେ ଦେଶେ ଶେଷେ ।
ହୋଇ ଗୋଟି ଗୋଟି ରାଜା ପାଶେ ଭେଟି
ରହିଲେ ଯେ ଯାହା ସଜେ,
ନିଜ ନିଜ କାର୍ଯ୍ୟେ ରାଜ ଦମ୍ପତିଙ୍କ
ତୋଷିଲେ ମନ ସହଜେ ।
ଯୁଧିଷ୍ଠିର ଦଶା ଖେଳ କରି ପେଷା
ରହିଲେ ବିରାଟ ସଙ୍ଗେ,
ଧନଞ୍ଜୟ ନାଚ ଶିଖାଇ ଉତ୍ତରା
ଥିଲେ ନପୁଂସକ ଢଙ୍ଗେ ।
ଅଶ୍ୱଙ୍କ ରକ୍ଷକ ନକୁଳ ଅନୁଜ
ଥିଲେ ଗାଈ ଜଗୁଆଳ,
ଭୀମ ସୂପକାର ପାଞ୍ଚାଳୀ ସୈରିନ୍ଧ୍ରୀ
ହୋଇ କଟାଇଲେ କାଳ ।
ଧନ୍ୟରେ ଅଦୃଷ୍ଟ ତୋପରି ବଳିଷ୍ଠ
ଅଛି କି କିଏ ସଂସାରେ,
କ ଫିଟେ କା ପାଟି ଯେତେ ହେଲେ ଘାଣ୍ଟି
କରୁ ତୁ ଯାହା ଇଚ୍ଛାରେ ।
ମଣିଷକୁ ଧରି ଲୁଣ୍ଠାଇଟି ଘରି
କରୁଥାଉ ନିଶି ଦିବସ,
ଦେଉ ଅପମାନ କରୁ ସନମାନ
ବୁଝି କେ ଏ ତୋ ରହସ୍ୟ ।
ଯେତେ ଜପ ତପ ହୁଏ ସବୁ ବ୍ୟର୍ଥ
ନ ଶୁଣୁ କାହା ଗୁହାରି,
ତୋ ପଥର ହୃଦ ନ ତରଳେ ଲବେ
ହେଲେହେଁ କେ କେତେ ଘାରି ।

---

## ପଞ୍ଚମ ସର୍ଗ

ଦଶମାସ ଅନ୍ତେ କୀଚକର ବନେ
ପଡିଲା ନୟନ କୃଷ୍ଣା ଉପରେ,
କାମେ ହୋଇ ବାଇ ପୃଚ୍ଛନ୍ତି ସେ ଯାଇ
ଭଗ୍ନୀ ସୁଦେଷ୍ଣାଙ୍କୁ ହାସ୍ୟ ଆସ୍ୟରେ ।
"ଏ କିଏ କାମିନୀ କାହାର ରମଣୀ
ଅଛନ୍ତି ଅବା କପରି ?
ଏ ମନୋହାରିଣୀ ଭନ୍ତୁ ଗୋ ଭଗିନୀ
ମୋ ଅଙ୍କ ଶୋଭନ କରି ।
ହେବାକୁ ପ୍ରଣୟୀ ସିଂହ ନନ୍ଦମାର
ଜମ୍ବୁକ ଇଚ୍ଛେ ଯେସନ,
କରିବାକୁ ବଶ ଦ୍ରୁପଦ ସୁତାଙ୍କୁ
କୀଚକ ବାଞ୍ଛେ ତେସନ ।
ତାଙ୍କ ନେତ୍ର ଠାଣି ଲବଣ୍ୟ ରୂପରେ
କୀଚକ ହେଲା ବିହ୍ୱଳ,
ସମୀପେ ପ୍ରବେଶି କହିଲେ ସମ୍ବୋଧି
"କାନ୍ତିଆ ମୋ କାମାନଳ" ।
ରମଣୀୟ ମାନ ଥୋଇଲେ ନ ଚିହ୍ନ
ଅଶୋଭ ଦିଶଇ ଯଥା,
ସଂଭୋଗ ବିରହେ ସୁନ୍ଦର ନାଶଏ
ଦିଶନ୍ତି ମଳିନ ତଥା,
ଦେଖି ତାର ତୃଷ୍ଣା ଅତି ଖେଦେ କୃଷ୍ଣା
କହନ୍ତି କରୁଣ ସ୍ୱରେ ।
"ପରିଣୀତା ନାରୀ ଗୁପ୍ତ ପରନାରୀ
ଲଙ୍ଘନ୍ତି କି ସାଧୁ ନରେ ?
ନୁହେ ସମୀଚୀନ ଏତାଦୃଶ ତୁମ
ଦୁର୍ଣାମପ୍ରଦ ଅଭିଳାଷ,
ବସୁନ୍ଧରା ତଳେ ଦୁଃଖପ୍ରଦ ସିନା
ସଦା ଏ ଭଳି ବିଳାସ ।
ମାତୃକ୍ରୋଡ଼ଶାୟୀ ବାଳକ ଚନ୍ଦ୍ରଙ୍କୁ
ଧରିବାକୁ ଇଚ୍ଛେ ଯଥା,
ଏ ପରଗୃହିକା ଲଭିବା ନିମିତ୍ତ
ବଳାଉଛ ମନ ତଥା ।

ହୋଇ ପାପାଶୟ ଛୁଇଁଲେ ଏ ଦେହ
ଧ୍ରୁବ ତୁମର ମରଣ,
କଳୁଷ ପଙ୍କରେ ନ ବୁଲ ସତ୍ପଥେ
ନିରତ କର ଭ୍ରମଣ
ହୋଇ ଆଶାଶୂନ୍ୟ କୀଚକ ସେ ଦିନ
ଭଗିନୀ ସମୀପେ ଯାଇ,
ପାଞ୍ଚାଳୀ ସୁନ୍ଦରୀ ମଙ୍ଗିବ କପଟ
କହିଲେ ସବୁ ବୁଝାଇ ।
ବିରାଟ ମହିଷୀ କୀଚକ ବଚନେ
ପଠାଇଲେ ଯାଜ୍ଞସେନୀ,
କୀଚକ ସଦନେ ତୃଷା ନିବାରଣ
ଆଣିବାକୁ ସୁରା ଘେନି ।
ଗମନ୍ତେ ସେଠାକୁ ଧଇଲ ଆଗୁଳ
ପତିବ୍ରତା ପାଞ୍ଚାଳୀଙ୍କି
ସତୀତ୍ୱ ଧର୍ମରେ ହୋଇ ବଳବତୀ
ନିକ୍ଷେପିଲେ ତାକୁ ଝିଙ୍କି ।
କୋପେ କମ୍ପମାନ ହୋଇ ଖରତରେ
ଯାଇ ରାଜନ ସମୀପ,
ଯାବନ୍ତ ବିଷୟ ଭାଷନ୍ତେ ପାଞ୍ଚାଳୀ
ଶୁଣି ତୁନି ମତ୍ସ୍ୟାଧୀପ ।
ଧର୍ମଙ୍କ ନନ୍ଦନ ଦେଖି ପାଞ୍ଚାଳୀଙ୍କି
କହିଲେ ଫେରିବା ଲଗି,
ତାଙ୍କ କଥା ଶୁଣି ଦୁଃଖେ କାନ୍ଦି କାନ୍ଦି
ଲେଉଟିଲେ ବଦା ମାଗି ।
ସେ ଦିନ ରାତିରେ ନିର୍ଜ୍ଜନ ବେଳାରେ
ପ୍ରବେଶି ଭୀମ ସଦନେ,
ତାହାଙ୍କୁ ଉଠାଇ ଯାବନ୍ତ ଘଟଣା
ବର୍ଣ୍ଣିଲେ କରି ରୋଦନ ।
ଦେଖି ପାଞ୍ଚାଳୀ ରୋଦନ ବୃକୋଦର ଘନ ଘନ
କରି ତାଙ୍କୁ ଆଲିଙ୍ଗନ ଦେଲେ ସାନ୍ତ୍ୱନା
ଟାଣି ଆପଣା ଅଞ୍ଚଳ ନୟନୁଁ ଲୋତକ ଜଳ
ପୋଛି କହନ୍ତି ଚଞ୍ଚଳ ନୋହି ବିମନା
କରି ଆୟୋଜନ ଗୋପନେ
କୀଚକ ଆସିବା ଲଗି ନୃତ୍ୟ ଭବନେ ।

ତାହାଙ୍କ ବଚନ ମାନି ପାଞ୍ଚାଳୀ ପାଶୋରି ଗ୍ଲାନି
ତାଙ୍କୁ ସମ୍ମତି ପ୍ରଦାନି ଫେରିଲେ ଘରେ
ରାତ୍ର ଅବସାନ ପରେ ଶେଯୁଁ ଉଠି ପ୍ରଭାତରେ
ପ୍ରବେଶି କୀଚକ ଘରେ କୃଷ୍ଣା ଆଗରେ
କହିଲ "ମୁଁ ତୋହର ଦାସ
ଏଣି ନୟନା ନକର ମୋତେ ନିରାଶ ।
କୀଚକର ବାଣୀ ଦ୍ରୁପଦ ନନ୍ଦିନୀ
ଶୁଣି କହନ୍ତି ତାହାଙ୍କୁ,
"ଅଦ୍ୟ ରଜନୀରେ ନୃତ୍ୟ ମନ୍ଦିରରେ
ଆସ କ୍ରୀଡ଼ା କରିବାକୁ" ।
ସତ ବୋଲି ମଣି ଏ ବଚନ ଶୁଣି
କୀଚକ ସ୍ୱଗୃହେ ଯାଇ,
ଆଭରଣ ଯୁକ୍ତ ହୋଇ ପୁଲକିତ
ରହିଲ ସମୟ ଚାହିଁ ।
ଦ୍ରୁପଦ କୁମାରୀ ଭୀମସେନ ଠାରେ
ଦେବାରୁ ହରଷେ ମନେ,
ନୃତ୍ୟ ମନ୍ଦିରରେ ଯଥା ସମୟରେ
ଯାଇ ରହିଲେ ଗୋପନେ ।
ଆସନ୍ତେ କୀଚକ କେଶଗୁଚ୍ଛ ତାଙ୍କ
ଆକର୍ଷନ୍ତେ ବୃକୋଦର,
ହୋଇ ଧରାଧରି ଲଗିଗଲ ଘୋର
ବାହୁଯୁଦ୍ଧ ପରସ୍ପର ।
ପଶୁକୁ ରଜ୍ଜୁରେ ବାନ୍ଧିବା ପରାଏ
ବାହୁଦ୍ୱୟେ ତାକୁ ଛନ୍ଦି,
ଭୀମସେନ ତଳେ ପକାଇ ତାହାକୁ
ଚପିଦେଲେ ବୁକୁ ସନ୍ଧି ।
ଗଲା ତା ଜୀବନ ହର୍ଷେ କୃଷ୍ଣା ମନ
ଚହଳ ପଡ଼ିଲ ନଗରେ,
କୀଚକ ବାନ୍ଧବେ ବେଢ଼ି ଚଉପାଶେ
ବିଳପିଲେ ଆର୍ତ୍ତସ୍ୱରେ ।
କୀଚକ ନିଧନ କୃଷ୍ଣା ହେତୁ ବୋଲି
ଫଇଲ ହାଲ ହୁରୁଳ,
ଶବ ସଙ୍ଗେ ବାନ୍ଧି ନେବାରୁ କୃଷ୍ଣାଙ୍କୁ
କ୍ରନ୍ଦନ ପଡ଼େ ଉଚ୍ଛୁଳି ।

ଭୀମ ପାଞ୍ଚାଳୀଙ୍କ କରୁଣ ବଚନେ
ଉଠିଲେ ଶେଯରୁ ଶୁଣି,
ଧାଇଁଲେ ଶ୍ମଶାନେ ଲଙ୍ଘି ପ୍ରାଚୀରକୁ
କୁଟୁମ୍ବ ବିନାଶେ ପୁଣି ।
ତାହାଙ୍କ ଧାବନେ ମାଲ ସାଇମାନେ
ହୋଇ ଅତି ଭୀତତ୍ରସ୍ତ,
"ସୈରନ୍ଧ୍ରୀଙ୍କି ଭୂତ" ବୋଲି କରି ରଡ
ପଳାଇଲେ ଇତସ୍ତତ ।
ନାହିଁରେ ଜଗତେ ଗୋପନୀୟ ସ୍ଥାନ
ଲୁଚିବାକୁ ଜନ୍ତୁପତ,
ଗୋଡାଇ ପଛରେ ସେମାନଙ୍କୁ ଭୀମ
ପଠାଇଲେ ଯମ କତ ।
ସର୍ବାଙ୍ଗ ଧଉତ କରି ଯାଜ୍ଞସେନୀ
ଲେଉଟିଲେ ନଅରକୁ,
ଅନ୍ୟ ବାଟେ ଆସି ଭୀମ ମହାବାହୁ
ଗମିଲେ ପାକ ଗୃହକୁ ।
ଏଣେ ହସ୍ତିନାରେ ପାଣ୍ଡବ ସନ୍ଧାନେ
ପଡ଼ିଚି ଗବେଷ୍ଣା ସଦା,
ଏ ଦେଶୁ ସେ ଦେଶ ବୁଲି ବୁଲି ବହୁ
ଚର ଆସି ହେଲେ ଗଦା ।
ନପାଇ ସନ୍ଧାନ ରଜା ଦୁର୍ଯ୍ୟୋଧନ
ହେଲେ ଅତି ସନ୍ତାପିତ,
ରାଜସଭା ଡାକି ବହୁରରେ କଷ୍ଟି
ହେଲ ନାହିଁ ମୀମାଂସିତ ।
କୀଚକ ମରଣ କରିଣ ଶ୍ରବଣ
ସୁଶର୍ମା କହେ, "ରାଜନ,
ବିରାଟ ନୃପତି ସଙ୍ଗେ କରି ଯୁଦ୍ଧ
ଆଣିବା ତାଙ୍କ ଗୋଧନ" ।
ହସ୍ତିନା ନୃପତି ଦେବାରୁ ସ୍ୱୀକୃତି
ଯୁଦ୍ଧ ଆୟୋଜନ କରି,
ସୁଶର୍ମା ଗମିଲେ ମତ୍ସ୍ୟ ଦେଶ ଆଗେ
ସୈନ୍ୟଦଳ ସଙ୍ଗେ ଧରି ।
କରି ଆକ୍ରମଣ ବିରାଟ ବନ୍ଧନ
କରନ୍ତେ ପାଣ୍ଡୁ ନନ୍ଦନ,

ଭୀମ ବାହୁବଳେ ମୁକୁଳାଇ ତାଙ୍କୁ
କଲେ ସୁଶର୍ମା ବନ୍ଧନ ।
ଯୁଧିଷ୍ଠିରାଦେଶ ପାଇ ଭୀମସେନ
ସୁଶର୍ମାଙ୍କୁ ଦେଲେ ଛାଡ଼ି,
ଏଣେ ମତ୍ସ୍ୟ ଦେଶ ନୃପତି ପାଣ୍ଡବେ
ଦେଲେ ସମ୍ପତ୍ତି ଅଜାଡ଼ି ।
ଦାସତ୍ୱ ଶୃଙ୍ଖଳୁ ମୁକୁଳି ସୁଶର୍ମା
ମୁକ୍ତ କରି ବିରାଟଙ୍କୁ,
ହସ୍ତିନାକୁ ଫେରି ଯାବନ୍ତ ଘଟଣା
କହିଲେ ଦୁର୍ଯ୍ୟୋଧନଙ୍କୁ ।
ଭୀଷ୍ମ ଦ୍ରୋଣ ଆଦି ଅମାତ୍ୟଙ୍କ ସଙ୍ଗେ
କୁରୁ ରାଜ ଦୁର୍ଯ୍ୟୋଧନ,
ମତ୍ସ୍ୟ ଦେଶେ ପଶି ବଳାତ୍କାରେ କଲେ
ଅପହରଣ ଗୋଧନ ।
ବିରାଟ ନନ୍ଦନ ଉତ୍ତର ତା ଶୁଣି
ସମରେ ବଳାଇ ମନ୍ତ,
କରି ଆତ୍ମଶ୍ଳାଘା ଅତି ତରବର
ହୋଇ ଖୋଜିଲେ ସାରଥି ।
ଏକାନ୍ତେ ପାଞ୍ଚାଳୀ କହନ୍ତି ସଧୀରେ
ଯାଇ ଉତ୍ତରଙ୍କ ପାଶେ,
"ସାରଥି ଭାବରେ ବୃହନ୍ନଳା ଗଲେ
ପଳାଇବେ ବୈରି ତ୍ରାସେ ।
ତାଙ୍କ ଏ ବଚନେ ଉତ୍ତରାକୁ କହି
ବୃହନ୍ନଳାଙ୍କୁ ଡକାଇ,
ହେବାକୁ ସାରଥି କହିଲେ ଉତ୍ତର
ବିନୟେ ତାଙ୍କୁ ବୁଝାଇ ।
ଅତ୍ୟନ୍ତ ସହର୍ଷ୍ଟୁ ବୀରବର ଜିଷ୍ଣୁ
ଗଲେ ଯୁଦ୍ଧ ଲାଗି ମଞ୍ଚି,
ବିପକ୍ଷ ଭାବିଲେ ସବ୍ୟସାଚୀ ବୋଲି
ବୀକ୍ଷଣେ ତାହାଙ୍କ ଭଙ୍ଗି ।
କଉରବଙ୍କର ଦେଖି ସୈନ୍ୟବଳ
ମୂଢ ବିରାଟ କୁମାର,
କାପୁରୁଷ ପରି ଦେଲା ପଛଘୁଞ୍ଚା
ହୋଇ ଭୟେ ଥରହର ।

ରଥ ଅବତରି   ପଳାୟନ ବେଳେ
ପଛରେ ପାର୍ଥ ଗୋଡ଼ାଇ,
ସାରଥି ହେବାକୁ   କହି ହସି ହସି
ଆଣିଲେ ତାଙ୍କୁ ମନାଇ ।
ଶବ ଭୂମିସ୍ଥିତ   ଶମୀ ତରୁ ପାଶେ
ନେଇ ଶରେ ଉତ୍ତରଙ୍କୁ,
ଚଢ଼ି ତହିଁ ପରେ   ଆନୟନେ ଶର
ସାଙ୍ଗେ କହିଲେ ତାଙ୍କୁ ।
ପାର୍ଥଙ୍କ ବଚନେ   ଉତ୍ତର ଆରୋହି
ଆଣିଲେ ମାରଣ ଶର,
ସେ ଗୁଡ଼କୁ ଦେଖି   ପୁଛନ୍ତେ କାହାର
ଅର୍ଜୁନ ଦେଲେ ଉତ୍ତର ।
କୃଷ୍ଣ ଠାରୁ ଶୁଣି   ଉତ୍ତର ହରଷେ
ଗଲେ ଆରୋହି ସ୍ୟନ୍ଦନ,
ଫାଲ୍‌ଗୁନଙ୍କୁ ଦେଖି   କଉରବ ଗଣ
ଭୟେ ହେଲେ ଛନ୍ନ ଛନ୍ନ ।
ତାଙ୍କ ସଙ୍ଗେ ରଣ   କରିବାକୁ ଦ୍ରୋଣ
ଭୀଷ୍ମ ମନ କଲେ ଉଣା,
ସେମାନଙ୍କ କଥା   ତପନ ତନୟ
ଶୁଣି ନ ଘେନିଲେ ମନା ।
ତୁମୁଳ ସମର   କଉରବଙ୍କର
ଲଗିଲା କୃଷ୍ଣଙ୍କ ସହ,
ଦେଖାଇ ସାମର୍ଥ୍ୟ   ଯୁଝିଲେ ହେଁ ସର୍ବେ
ଗଲେ ଲଭି ପରାଜୟ ।
ଅଙ୍କୁଶ ନ ଧରି   ବାରଣ ପୃଷ୍ଠରେ
ବସିଲେ ବିଷମ ଯଥା,
କୌଶଳ ନ ଜାଣି   ପଶିଲେ ସମରେ
ମିଳଇ କୁଫଳ ତଥା ।
ସମର ବିଜୟୀ   ମହା ଉଲ୍ଲସିତ
ହୋଇ ଫେରନ୍ତି ନଗରୀ,
କୁମାର ପ୍ରଶଂସା   କଲେ ଜନ ଜନ
ବିରାଟ ପାଇ ଖବର ।

*★*

## ଷଷ୍ଠ ସର୍ଗ

ଜନକ ଦର୍ଶନ   କରି ଭୂମିଞ୍ଜୟ
ଯୁଦ୍ଧ ବୃତ୍ତାନ୍ତ ଯାବନ୍ତ,
କହନ୍ତେ "କାହାନ୍ତି   ସେ ଦେବକୁମାର
ଡ଼କାଅ ତାଙ୍କୁ ତୁରତ" ।
ଦୁରଦ୍ଦିନ ଅନ୍ତେ   ଆସିବେ ବୋଲି ସେ
କହିବାରୁ ଭୂମିଞ୍ଜୟ,
କରିଲେ ପ୍ରତୀକ୍ଷା   ମତ୍ସ୍ୟ ନରପତି
ଅଭିଳାଷେ ପରିଚୟ ।
ଏ ଅନ୍ତେ ବିଜୟ   ଉତ୍ତରଙ୍କ ସହ
କରି ବିଶ୍ରମ ଗୋପନେ,
ତୁରିତ ପ୍ରବେଶି   ଧର୍ମସୁତ ପାଶେ
କହିଲେ ତା ହର୍ଷ ମନେ ।
ତୃତୀୟ ଦିବସେ   ପ୍ରତିଜ୍ଞାନ୍ତେ ପଞ୍ଚ
ପାଣ୍ଡବ ସାରି ସ୍ନାହାନ,
ସଭା ମଣ୍ଡପରେ   ପ୍ରବେଶିଲେ କରି
ଶୁକ୍ଳ ବାସ ପରିଧାନ ।
ହେଲେ ଉପବିଷ୍ଟ   ରାଜା ଯୁଧିଷ୍ଠିର
ପୁଲକେ ରାଜ ଆସନେ,
ଅନ୍ୟ ଭ୍ରାତାମାନେ   ତାହାଙ୍କ ଆଗରେ
ବସିଲେ ସାହାସ ମନେ ।
କିଛିକ୍ଷଣ ପରେ   ରାଜକାର୍ଯ୍ୟ ଲାଗି
ଆସି ବିରାଟ ଭୂପତି,
ଏତାଦୃଶାବସ୍ଥା   ଦର୍ଶନେ ପୁଛନ୍ତେ
ମନେ ବହି କୋପ ଅତି ।
"ଆମର ଯାଚକ   ହୋଇଣ କପରି
ବସିଛ ଏ ସିଂହାସନେ",
ଉତ୍ତରନ୍ତି କୃଷ୍ଣ   "ଏ ପୁରୁଷ ଯୋଗ୍ୟ
ବସିବାକୁ ଇନ୍ଦ୍ରାସନେ" ।
ତଦନ୍ତେ ଉତ୍ତର   କୁନ୍ତୀ ସୁତଙ୍କର
ଜବେ ଦେଇ ପରିଚୟ,
କହନ୍ତି "ଭଗ୍ନୀଙ୍କ   ବିଜୟଙ୍କ ସହ
ହେବା ଲାଗି ପରିଣୟ" ।

ହୋଇ ଅସମ୍ମତ ଏ ବଚନେ ଶୁଣି
କହନ୍ତି ଶ୍ୱେତବାହନ,
ଉତ୍ତରାଙ୍କ ସହ ଅଭିମନ୍ୟୁଙ୍କର
ହେଉ ମଙ୍ଗଳ ମିଳନ ।
ବିରାଟ ରାଜନ ଉତ୍ତମ ସମ୍ବନ୍ଧ
କହି ମଙ୍ଗିଲେ ବହନ.
ଶୁଭ ଲଗନରେ ମହା ଆଡ଼ମ୍ବରେ
ବିବାହ କଲେ ସମ୍ପନ୍ନ ।
ବିଶ୍ୱ ବାସିଜନ ସକଳ ରାଜନ
ବସିଥିଲେ ସ୍ଥିରମନେ,
ବାସୁଦେବ ଆସି ଓଜସ୍ୱିନୀ ବାକ୍ୟେ
କହନ୍ତି ଶୁଣ ରାଜନେ ।
ପାଣ୍ଡବେ ସମ୍ପୃକ୍ତ କଲେ ସମାଦୃତ
ଚେତେଶ୍ରେଷ୍ଠ ସିଂହାସନେ,
ହୋଇ ନ୍ୟାୟଯୁକ୍ତ ପୁଣି ଧର୍ମଯୁକ୍ତ
କ୍ଷମ କାରଣ ବର୍ଦ୍ଧନେ ।
କପଟ ଆଚରି ନେଲେ ଅପହରି
କୌରବେ ପାଣ୍ଡବ ରାଜ୍ୟ,
କରନ୍ତୁ ଏଥର ନକରି ବିଳମ୍ବ
ବିଗୃହୀତ ଯାହା ନ୍ୟାଯ୍ୟ ।
ଦୂତ ପେଷି ଆଗେ ଧୃତରାଷ୍ଟ୍ର ପାଶେ
"ବୁଝନ୍ତୁ ତାହାଙ୍କ ମନ,
କହନ୍ତେ ପାଞ୍ଚାଳ ନରେଶ ଦ୍ରୁପଦ
ମଙ୍ଗିଲେ ସଭାସ୍ଥ ଜନ ।
ଗଲେ ପୁରୋହିତ ଧୃତରାଷ୍ଟ୍ର ପାଶେ
ହସ୍ତିନା ଭୁବନ ଘରେ,
ଫେରିଲେ ଏକାଳେ ଦ୍ୱାରକା ଶ୍ରୀକୃଷ୍ଣ
ବଳରାମଙ୍କ ସଙ୍ଗରେ ।
ଦୁର୍ଯ୍ୟୋଧନ ଜିଷ୍ଣୁ ଦୁହେଁ ଦୁଇଆଡ଼ୁ
ଗଲେ ବାସୁଦେବ ପାଶ,
ସୁପ୍ତ ଥିବା ଶୁଣି ଭରସି ସେ ଦୁହେଁ
ପଶିଲେ ଶୟନାବାସ ।
କୃଷ୍ଣ ପାଦ ତଳେ ନମ୍ର କରଯୋଡ଼ି
ବସିଲେ ଶ୍ୱେତବାହନ,

ଶିର ପାଶେ ଥିବା ଉତ୍କୃଷ୍ଟ ଆସନେ
ବସିଲେ କୁରୁ ରାଜନ ।
ନିଦ୍ରାନ୍ତେ କେଶବ ଆଗେ ବିଜୟଙ୍କୁ
କୁରୁରାଜଙ୍କୁ ପଛରେ,
ଦେଖି ଦୁହିଁଙ୍କର ଆଗମନ ହେତୁ
ପୁଚ୍ଛିଲେ ହରଷ ଭରେ ।
ସାହାଯ୍ୟ ପ୍ରାର୍ଥନା କରିବାରୁ ଦୁହେଁ
କହିଲେ ମୁଁ ରଣେ ଯାଇ,
ନ ଯୁଝି ସାହାଯ୍ୟ କରିବ ନିଶ୍ଚୟ
ଗୋଟିକ ପକ୍ଷରେ ଥାଇ ।
ନାରାୟଣୀ ସେନା ଲଢ଼ିବେ ସମରେ
ଅପର ପକ୍ଷରେ ରହି,
କେଉଁଟି ବରିଣ କର ଅର୍ଜୁନ
ଆଗେ ତୁମେ ଦିଅ କହି" ।
ସାରଥି ହେବାକୁ କହନ୍ତେ ବିଜୟ
କଲେ ଅଙ୍ଗୀକାର ତାଙ୍କୁ,
ତେଣୁ ଦୁର୍ଯ୍ୟୋଧନ ମହା ମୋଦଭରେ
ମଙ୍ଗିଲ ସେନା ନେବାକୁ ।
ଗମନାନ୍ତେ କୁରୁ ରାଜ ସେହି ସ୍ଥାନୁ
ଜିଷ୍ଣୁ ଯୁଧିଷ୍ଠିର ପାଶେ,
ବାସୁଦେବ ଠାରୁ ବିଦା ମାଗି ଖରେ
ମିଳିଲେ ମହାଉଲ୍ଲାସେ ।
କୁରୁସଭା ମଧ୍ୟେ ମିଳି ପୁରୋହିତ
କହନ୍ତି ହିତ ବଚନ,
"ପାଣ୍ଡବ କୌରବେ ମିଶନ୍ତୁ ଉଭୟେ
ନ କରି ଯୁଦ୍ଧ ବରଣ ।
ଏକଥା ଶ୍ରବଣେ ବିଦା ଦେଇ ତାଙ୍କୁ
ପଠାଇଲେ ସଞ୍ଜୟଙ୍କୁ,
ନକରି ବିଳମ୍ବ ଦୁହେଁ ହୋଇ ସାଙ୍ଗ
ଭେଟିଲେ ଯୁଧିଷ୍ଠିରଙ୍କୁ ।
ନ ପଡ଼ଇ ଜଣା ପୂର୍ବରୁ କଦାପି
କେ ଭୋଗିବ କି ଅବସ୍ଥା,
ସେ ପାଇଁ ମନୀଷ ହୁଏ ହତବର
ନ ଜାଣି ଭବ ବ୍ୟବସ୍ଥା ।

ବହୁଦିନ ପରେ ଦେଖି ସଞ୍ଜୟଙ୍କୁ
ଯୁଧିଷ୍ଠିର ମୋଦଭର,
କୁଶଳାଦି ପ୍ରଶ୍ନ କରି ଅନ୍ୟ କଥା
ପକାଇଲେ ଅନନ୍ତର ।
କହନ୍ତି ସଞ୍ଜୟ "ଦେଉ ଦୁର୍ଯ୍ୟୋଧନ
ହୋଇ ନ୍ୟାୟ ଅନୁଗତ,
କପଟ ପଶାରେ ଅଧର୍ମ ଆଚରି
କରିଛ ଯା କରଗତ ।
ନ କଲେ ଏକଥା କଦାପି ନିସ୍ତାର
ଲଭିବ ନାହିଁ ସମରେ,
ଭୋଗ ଲୋଭାଦିରେ ହୋଇ ଆସକତ
ମାତିଛୁ ଛୁଟୁ ଗଦାରେ" ।
କହନ୍ତି ସଞ୍ଜୟ "ଜୟ ପରାଜୟ
ଦୁଇଟି ଯାକ ଅସ୍ଥିର,
ସମରେ ପ୍ରବର୍ତ୍ତି କେ ସୁଖ ପାଇଛି
କହ ଏ ମର ଶରୀର ।
ଧର୍ମଙ୍କ ନନ୍ଦନ ଶୁଣି ଏ ବଚନ
ଉତ୍ତରନ୍ତି ସଞ୍ଜୟଙ୍କୁ,
"ନିତାନ୍ତ ଇଚ୍ଛୁକ ସନ୍ଧି ଲାଗି ଆମ୍ଭେ
କହ ଯାଇ କୌରବଙ୍କୁ ।
ପାଞ୍ଚଖଣ୍ଡି ଗ୍ରାମ କରନ୍ତୁ ପ୍ରଦାନ
ଅବିଳମ୍ବେ ପାଣ୍ଡବଙ୍କୁ ।
ଚିର ଯୁଦ୍ଧ ଭୟ ନ କର ସଂଶୟ
ଆସନ୍ନ ଅବା ଯୁଦ୍ଧକୁ,
ଧୃତରାଷ୍ଟ୍ର ପାଶେ ସଞ୍ଜୟ ପ୍ରବେଶି
ଏସନ କଥା କହନ୍ତି,
"ପାଞ୍ଚଖଣ୍ଡି ଗ୍ରାମ ନ ଦେଲେ ପାଣ୍ଡବେ
ଘୋଟିବ ପ୍ରମାଦ ଅନ୍ତି" ।
ସଞ୍ଜୟ ଯିବାରୁ ଧୃତରାଷ୍ଟ୍ର ନରପତି,
ଡକାଇ ବିଦୁର ହିତ ବଚନ ପୁଛନ୍ତି ।
ଅନନ୍ତର ଆରମ୍ଭିଲେ ସେ ମୃଦୁ ବଚନେ,
ଅବଗତ ଥିଲେ ଯାହା ଶାସ୍ତ୍ର ଅଧ୍ୟୟନେ ।
ଈଶ୍ବର ଅଛନ୍ତି ବୋଲି ଧୃତ କରେ ମନ,
କଦାପି ନ ବହେ କ୍ରୋଧ ଦମ୍ଭ ଅଭିମାନ ।
ସମ୍ପତ୍ତି ବା ବିପତ୍ତିରେ ରଖେ ଏକଚିତ୍ତ,
ନ ଚଳେ କଦାପି ହେଲେ କଷ୍ଟ ଅହିତ ।
ନ ଜାଣନ୍ତି ଅନ୍ୟେ ଯାର ଭବିଷ୍ୟତ କର୍ମ,
ହୋଇଥାନ୍ତି ନିରନ୍ତର ଅନୁଗତ ଧର୍ମ ।
ବିପତ୍ତି ସମୟେ କଦା ନୁହଇ କାତର,
ନ କରଇ ନଷ୍ଟଦ୍ରବ୍ୟ ନିମିତ୍ତ ଖାତର ।
ନ କରଇ ହରଣ ଯେ ବୃଥାରେ ସମୟ,
କରଇ ସାଧନା ବଶେ ଇନ୍ଦ୍ରିୟଙ୍କୁ ଜୟ ।
ନୁହଇ ସମ୍ମାନେ କେତେବେଳେ ପୁଲକିତ,
ଅବମାନନାରେ କେବେ ନୁହେ ସନ୍ତାପିତ ।
ଅବିରତ ଅନୁରାଗୀ ଉତ୍କୃଷ୍ଟ କାର୍ଯ୍ୟରେ,
କହଇ ବଚନ ଅନ୍ୟେ ଅତି ବିନୟରେ ।
ଜନ୍ମାନ୍ତର ବିଶ୍ବାସ ଯେ କରେ ଅବିରତେ,
ପଣ୍ଡିତ ବୋଲନ୍ତି ଭବେ ତାହାକୁ ସକଳେ ।
ନିଜେ ଦୋଷେ ଥାଇ ଲିପ୍ତ ଯେ ଅନ୍ୟ ଉପରେ,
ଆରୋପି କହଇ ସଦା ବଚନ କ୍ରୋଧରେ ।
ସ୍ବକର୍ତ୍ତବ୍ୟ କର୍ମ ଭୃତ୍ୟ ଦ୍ୱାରା ଯେ କରାଇ,
ମୂର୍ଖ ବୋଲି ନିରତେ ସେ ଗଣିତ ହୁଅଇ ।
ସମୁଦ୍ର ତରଣୀ ପରି ସତ୍ୟର ମହିମା,
କ୍ଷମାଶୀଳ ବ୍ୟକ୍ତି ଭବେ ଧର୍ମର ପ୍ରତିମା ।
ଅହିଂସା ସର୍ବ ପ୍ରକାର ସୁଖର ଆକର,
ଆୟୁଧ ଅଟଇ ହିଂସା ଦୁର୍ଜନ ଜନର ।
କାମ କ୍ରୋଧ ଲୋଭ ମୋହ ବିନାଶର ମୂଳ,
ବର୍ଜନ୍ତି ଏ ଗୁଣଙ୍କୁ ସଦା ସାଧୁକୁଳ ।
ପରଧନେ ଲୋଭ ଅବା ପର ସ୍ତ୍ରୀ ହରଣ,
ଭୟଙ୍କର ଦୋଷ ଏଣୁ ନ ବଳାଅ ମନ ।
ଆଳସ୍ୟ ସ୍ୱାର୍ଥ ସୂତ୍ରତା ନିଦ୍ରା କ୍ରୋଧ ଭୟ,
କରିଥାନ୍ତି ବିସର୍ଜନ ସଜ୍ଜନ ନିଶ୍ଚୟ ।
କ୍ଷମା ଧୈର୍ଯ୍ୟ ପରିଶ୍ରମ ପୁଣି ସତ୍ୟବାନ,
ମଣିଷର ଅଳଙ୍କାର ରତନ ସମାନ ।
ଲୋଭେ ପଡ଼ି ମତ୍ସ୍ୟ ବଡ଼ଶୀକୁ ଗ୍ରାସି
ମରଣ ଲଭଇ ଯଥା,
ହୁଅଇ ବିନଷ୍ଟ ତୃଷ୍ଣାର କବଳେ
ପଡ଼ି ଅବିବେକୀ ତଥା ।

ଇନ୍ଦ୍ରିୟ ପ୍ରିତିର ଆୟତ୍ତେ ରହି ଯେ
କରେ ଇଚ୍ଛା ସୁଖ ଲାଭ,
ଚରଣାମ୍ବ ତାର ହୋଇ ଭୟାବହ
ପଦେ ପଦେ ପରାଭବ ।
ମଧୁକର ପୁଷ୍ପ ଆଳ ଲୋକର
ମକରନ୍ଦ ପିଏ ଯଥା,
ନୃପତି ପ୍ରଜାଙ୍କୁ ନ ଦେଇ କଷଣ
ନେଉଥିବ କର ତଥା ।
କାମିନୀ ନିକଟ ନପୁଂସକ ପତି
କରନ୍ତି ଅଛା ଯେସନ,
ଅନୁଗ୍ରହ ହୀନ ରାଜାଙ୍କୁ ପ୍ରଜାଏ
କରନ୍ତି ଘୃଣା ତେସନ ।
ବ୍ୟାଧ ଭୟଗ୍ରସ୍ତ ମୃଗକୁଳ ପରି
ପ୍ରଜାଏ ରହନ୍ତି ଯହି,
ସସାଗରା ଧରା ଭୂପତି ହେଲେ ହେଁ
ନିଧନେ ହୁଅନ୍ତି ଲୟ ।
ଯୌବନ ତୁଟଲୁ ଆସି ବୃଦ୍ଧାବସ୍ଥା
ହରଣ କରେ ଯେସନ,
ପରବେଶି ଆଶା ମନର ଆର୍ଣ୍ଣକୁ
ଚ୍ୟୁତ କରଇ ତେସନ ।
ମଣିମ୍ବର ସ୍ଥିତି ନୁହଇ ସମ୍ଭବ
ଧର୍ମ ପରିକଷଣ ବିନା,
ବୁଦ୍ଧି କଳୁଷତା ଉପୁଜଇ ସଦା
ବିନାଶ କାଳରେ ସିନା ।
ବିଦୁରଙ୍କ ସହ କଥା ହେଉ ହେଉ
ରଜନୀ ହେଲା ପ୍ରଭାତ,
ଦ୍ରୋଣ କର୍ଣ୍ଣ ଆଦି ବହୁବୀର ସହ
ଜମିଲେ ଭୂପତି ବ୍ରାତ ।
ତଦନ୍ତେ ସଞ୍ଜୟ ସଭା ମଧ୍ୟେ ଆସି
ହୃଷ୍ଟମନେ ପ୍ରବେଶିଲେ,
ପାଣ୍ଡବମାନର କହିଥିଲେ ଯାହା
ଗୋଟି ଗୋଟି ବଖାଣିଲେ ।
ସଞ୍ଜୟ ବଚନ ଶୁଣି ଧୃତରାଷ୍ଟ୍ର
ମେଣ୍ଟାଇବାକୁ କଳହ,

ଅତି ଚିନ୍ତାପୂର୍ଣ୍ଣ ନାନା ଉପଦେଶ
ଦେଲେ କୌରବନନ୍ଦନ ।
ଜନକ ବଚନ କରିଣ ଶ୍ରବଣ
ମହାକୋପୀ ଦୁର୍ଯ୍ୟୋଧନ,
କହନ୍ତି ରାଗରେ "ଲାଗିଲେ ସମର
ଧ୍ରୁବ ପାଣ୍ଡବ ନିଧନ ।
ପୁନରପି ପିତା କହନ୍ତି ତାହାଙ୍କୁ
"ଯାଅ ନାହିଁ କୁମାର୍ଗରେ
କ୍ଷାନ୍ତ ହୋଇ ଯୁଦ୍ଧୁଁ କଲେ ସନ୍ଧି ଶୀଘ୍ର
ଯାପିବ କାଳ ସୁଖରେ" ।
ଏ ଅନ୍ତେ କେଶବ ଶାନ୍ତି ଉଦ୍ଦେଶ୍ୟରେ
ପ୍ରବେଶି ହସ୍ତିନାପୁରେ,
ଧୃତରାଷ୍ଟ୍ର ଭୀଷ୍ମ ଦ୍ରୋଣ ସଙ୍ଗେ ମିଶି
ଭେଟିଲେ ତହୁଁ ବିଦୁରେ ।
କୃଷ୍ଣ ଆଗମନ ହୋଇନ୍ତେ ଅବଗତ
କୁନ୍ତୀ ପ୍ରବେଶି ପାଖରେ,
ପାଣ୍ଡବମାନଙ୍କ କୁଶଳ ବାରତା
ପୁଚ୍ଛିଲେ ବିଷାଦଭରେ ।
ଦେଇ ଆଶ୍ୱାସନା କୁନ୍ତୀଙ୍କୁ ଶ୍ରୀକୃଷ୍ଣ
ମିଳଲେ ସଭା ସଦନେ,
କୌରବେ ତାହାଙ୍କୁ ସ୍ୱାଗତ ଜଣାଇ
ବସାଇଲେ ଦିବ୍ୟାସନେ ।
ଶାନ୍ତି ସ୍ଥାପନାର୍ଥେ ବହୁ ହିତବାଣୀ
କହନ୍ତେ ମଧୁସୂଦନ,
ପାଣ୍ଡବଙ୍କୁ କିଛି ଦେବୁ ନାହିଁ ବୋଲି
ଉଠି କହେ ଦୁର୍ଯ୍ୟୋଧନ ।
କ୍ରୋଧରେ ତାହାଙ୍କୁ କହନ୍ତି କେଶବ
"ମରଣ ତୁମ ନିକଟ,
ହେବାରୁ ଏପରି କହ କଥା ସିନା
ଘଟିବ ଗୁରୁ ସଙ୍କଟ ।
ଶକୁନି ସଙ୍ଗରେ କୁମନ୍ତ୍ରଣା କରି
ପଶିଲ ଅକ୍ଷ କ୍ରୀଡ଼ାରେ,
ନ ଜାଣେ କଏସେ ଅନ୍ୟାୟ ଆଚରି
ନେଲ ରାଜ୍ୟ ଶଠତାରେ ।

ଶୁଣୀଲ କୃଷ୍ଣାଙ୍କୁ ସଭା ମଧ୍ୟେ ଆଣି
ଯାହା ହେଲ ପରାଭବ,
ସଂସାରେ କୌଣସି ପୁରୁଷ ଶକ୍ତିରେ
ହୁଏ କି କେବେ ସମ୍ଭବ ।
ପାଣ୍ଡବମାନଙ୍କୁ ମାରିବା ଇଚ୍ଛାରେ
ଖାଦ୍ୟେ ଦେଲ ହଳାହଳ,
ଦଇବ ବଶରୁ ସକଳ ଯତନ
ହେଲ ତୁମର ବିଫଳ" ।
ଅନନ୍ତର ଦୁଃଶା କୁରୁସଭା ମଧ୍ୟେ
କହିଲେ ଦୁର୍ଯ୍ୟୋଧନଙ୍କୁ,
"ନ କରିଲେ ସନ୍ଧି ପାଣ୍ଡବଙ୍କ ହସ୍ତେ
ଅର୍ପିବୁ ନେଇ ତୁମକୁ" ।
ଏ ବଚନ ଶୁଣି କୋପେ ଦୁର୍ଯ୍ୟୋଧନ
ଗଲ ସଭାରୁ ପଳାଇ,
ବୋଲନ୍ତି ଶ୍ରୀକୃଷ୍ଣ ଉଚିତ ଯା କର
ପାପ କର୍ମ ନ ଛୋଡ଼ାଇ" ।
ଏ ବାକ୍ୟ ଶ୍ରବଣେ ଧୃତରାଷ୍ଟ୍ର ଅନ୍ଧ
ଆଦେଶିଲେ ବିଦୁରଙ୍କୁ,
"ସଙ୍ଗେ ସଙ୍ଗେ ଯାଇ ସଭା ମଧ୍ୟେ ଆଣ
ମହାପ୍ରାଜ୍ଞ ଗାନ୍ଧାରୀଙ୍କୁ" ।

*★*

## ସପ୍ତମ ସର୍ଗ

ବିଦୁର ସେକ୍ଷଣି ଯାଇ ଗାନ୍ଧାରୀଙ୍କୁ
ଆସିଲେ ତବ ବହନ,
ସେ ଆସି ପତିଙ୍କୁ କହନ୍ତି "ଡକାଅ
ରାଜ୍ୟ ଲୋଭୀ ଦୁର୍ଯ୍ୟୋଧନ ।"
ସହସା ବିଦୁର ଯାଇ ପାପାତ୍ମାକୁ
ଘେନି ଆସିଲେ ସଙ୍ଗରେ,
ଜନନୀଙ୍କ ବାକ୍ୟ ଶୁଣିବା ଇଚ୍ଛାରେ
ବସିଲେ ତାଙ୍କ ପାଶରେ ।
ବୁଝାନ୍ତି ଜନନୀ "ପିତା ଗୁରୁଜନ
ବଚନ କଲେ ପାଳନ,
ବିରାଜିବ ଶାନ୍ତି ସୁଖେ ଯିବ କାଳ
ହେବ ପ୍ରଶଂସା ଭାଜନ ।
କାମ କ୍ରୋଧ ଦୁହେଁ ମନୁଷ୍ୟ ସୁଖରେ
ଦିଅନ୍ତି କରିଣ ବାଧା,
ସେ ଦୁହିଁଙ୍କୁ ଜିଣି ପାରିଲେ ମନରେ
ଉପୁଜେ ଅତି ଶରଧା ।
ଆପଣା ଚରିତ୍ର ନ କରି ପରୀକ୍ଷା
ଖୋଜେ ଯେ ଅନ୍ୟର ଦୋଷ,
ପରିହାସ ତାକୁ କରୁଥାନ୍ତି ଲୋକେ
ତେଣୁ ଉପୁଜଇ ରୋଷ ।
ରାଜ୍ୟର ଅର୍ଦ୍ଧାଂଶ ଦେଇ ପାଣ୍ଡବଙ୍କୁ
କର ରାଜ୍ୟ ଅନୁଭୋଗ,
ଆସି ବାସୁଦେବ କର ସନ୍ଧି ଏବେ
ନ କଲେ ବୃଥା ଦୁର୍ଯ୍ୟୋଗ" ।
ଅନାଦର କରି ମାତୃ ବାକ୍ୟ ଗଲେ
ତେଜି ସଭା ଦୁର୍ଯ୍ୟୋଧନ,
ଶକୁନିଙ୍କ ସଙ୍ଗ କଲେ ସେ ମନ୍ତ୍ରଣା
ବାନ୍ଧିବାକୁ ଜନାର୍ଦ୍ଦନ ।
ଏ ମନ୍ତ୍ରଣା ଜାଣି ସାତ୍ୟକି ସହସା
ଯାଇ ସଭା ମଣ୍ଡପକୁ
କେଶବଙ୍କୁ କହି ଜଣାଇଲେ ପରେ
ଧୃତରାଷ୍ଟ୍ର ବିଦୁରଙ୍କୁ ।
ଏ କଥା ଶ୍ରବଣେ କହନ୍ତି କେଶବ
"ଦେଉଅଛୁ ଅନୁମତି,
ଆସି ଦୁର୍ଯ୍ୟୋଧନ କରନ୍ତୁ ବନ୍ଧନ
ତହିଁ ନାହିଁ ମୋ ଆପତ୍ତି" ।
ଧୃତରାଷ୍ଟ୍ର ତହୁଁ ଡାକି ଦୁର୍ଯ୍ୟୋଧନ
ଧିକ୍କାରିଲେ କ୍ରୋଧେ ଅତି,
"ରେ ମୂଢ ପାପାତ୍ମା ନ ବୁଝୁ କପର
ଏହାର କି ପରିଣତି" ।
ଆହେ ଦୁର୍ଯ୍ୟୋଧନ "ମୁଁ ନୁହେଁ ଏକାକୀ"
କହି ହସନ୍ତି କେଶବ,
ଶରୀରୁ ତାହାଙ୍କ ପାବକ ସଦୃଶ
ଇନ୍ଦ୍ରାଦି ହେଲେ ଉଦ୍ଭବ ।

ସଞ୍ଜୟ ବିଦୁର ଭୀଷ୍ମ ଦ୍ରୋଣ ବେନି
କୃଷ୍ଣଙ୍କ ରୂପ ଦର୍ଶନେ,
ତତକ୍ଷ୍ୟ ନୃପତି ସକଳ ଭୟରେ
ଥିଲେ ମୁଦ୍ରିତ ନୟନେ ।
ଏ ଅନ୍ତେ କେଶବ ପାଣ୍ଡବଙ୍କ ପାଶେ
ଲେଉଟିଲେ ବିଦା ମାଗି,
କଥାବାର୍ତ୍ତା ହୋଇ ଦେଲେ ପରାମର୍ଶ
ପାଣ୍ଡବଙ୍କୁ ଯୁଦ୍ଧ ଲାଗି ।
କୃଷ୍ଣ ଗମନାନ୍ତେ ଏଣେ ଦୁର୍ଯ୍ୟୋଧନ
କଲେ ଯୁଦ୍ଧ ଆୟୋଜନ,
ଶକୁନିଙ୍କି କହେ ଯୁଦ୍ଧ ହେବ ବୋଲି
ଘୋଷଣା କର ବଚନ" ।
ପାଣ୍ଡବମାନେ ଶ୍ରୀକୃଷ୍ଣଙ୍କ ସଙ୍ଗେ
ମିଳିଲେ କୁରୁକ୍ଷେତ୍ରରେ,
ବଜ୍ରଧ୍ୱନି ପରି କମ୍ପିଲା ଆକାଶ
ଶଙ୍ଖ ଦୁନ୍ଦୁଭି ନାଦରେ ।
ବିଶାଳ ସେନାରେ ଛତିଷ୍ଠା ପ୍ରବେଶି
କଲେ ଖରେ ସାଜସଜ୍ଜା,
ସମର ଭୂଇଁରେ ପ୍ରବେଶିଲେ ଆସି
ଦୁଇ ପକ୍ଷେ ବହୁ ରଜା ।
ବିରାଟ ଦ୍ରୁପଦେ ହେଲେ ସେନାପତି
ରହି ପାଣ୍ଡବ ପକ୍ଷରେ,
ପାଞ୍ଚଜନ୍ୟ ଶଙ୍ଖ ବଜାନ୍ତି ଶ୍ରୀକୃଷ୍ଣ
ରହି ରହି ଥରେ ଥରେ ।
ଶାନ୍ତନୁ ନନ୍ଦନ ହେଲେ ସେନାପତି
କଉରବ ମାନଙ୍କର,
ଅସ୍ତ୍ରେ ସୁସଜ୍ଜିତ ହୋଇ ପ୍ରବେଶିଲେ
ରଣ ଭୂଇଁରେ ସତ୍ୱର ।
ଶିବିର ନିର୍ମାଣି କଲେ ଦୁଇପଟୁ
ଯେ ଯାହା ସୁବିଧା ଧରି,
କୁରୁକ୍ଷେତ୍ର ଏବେ ଦିଶେ ଶୋଭିବନ
ହସ୍ତିନା ନଗରୀ ପରି ।
ସମରେ କୁଶଳ ଦୁଇ ପକ୍ଷ ଦଳ
କରଣ ବ୍ୟୂହ ରଚନା,

ଆପଣା ଆପଣା ଗୁଉଣିରେ ରହି
କଲେ ବିଜୟ କାମନା ।
ଶୁଭେ ହେଷାରବ ତୁରଙ୍ଗଗଣଙ୍କ
ଶଙ୍ଖ ଦୁନ୍ଦୁଭିର ଧ୍ୱନି,
ପ୍ରତେ ହେଲା ଅବା ଜଳଦ ବର୍ଷିଣେ
ବର୍ଷନ୍ତି ଇନ୍ଦ୍ର ଅଶନି ।
କୃଷ୍ଣଙ୍କ କଥାରେ ସବ୍ୟସାଚୀ ମୋଦେ
କଲେ ପାଠ ଚଣ୍ଡୀସ୍ତବ,
ଦେବୀକାତ୍ୟାୟନୀ ହୋଇ ଆବିର୍ଭୂତା
କହନ୍ତି "ଜୟ ପାଣ୍ଡବ" ।
ବଜାଇଲେ ସଦା ପାଞ୍ଚଜନ୍ୟ ଶଙ୍ଖ
କେଶବ ହୋଇ ସାରଥି,
ସବ୍ୟସାଚୀ ରଥେ ବିପକ୍ଷ ରଥିଏ
ହତୋତ୍ସାହ ହେଲେ ଅତି ।
ରଥ ସେନା କୃଷ୍ଣ ବିପକ୍ଷ ନିକଟା
କଷ୍ଣଙ୍କୁ ସ୍ଥାପି କହନ୍ତି,
"କର ଦରଶନ କୁରୁ ପକ୍ଷ ଦଳ
ଯେତେ ଯେଉଁଠି ଅଛନ୍ତି" ।
ସ୍ୱଜନ ମାନଙ୍କୁ ବିପକ୍ଷ ଦଳରେ
ଦେଖି କହନ୍ତି ବିଜୟ,
ହେ ମଧୁସୂଦନ ଲଭିବି କ ଯଶ
ଏମାନଙ୍କୁ କରି କ୍ଷୟ ।
ରୋମାଞ୍ଚିତ ରୋମ ହୁଏ ଘନ ଘନ
ଅଙ୍ଗ ପ୍ରତ୍ୟଙ୍ଗ ଅବଶ,
ପଡୁଅଛି ଖସି ଗାଣ୍ଡିବ ହସ୍ତରୁ
ଚଞ୍ଚଳ ଅତି ମାନସ ।
ଲୋଡ଼ା ନାହିଁ ମୋର ରାଜ୍ୟ ଅବା ଭୋଗ
ମାରି ରଣେ ଗୁରୁଜନ" ।
କେଉଁ ସୁଖ ଆଶେ ମୁଣ୍ଡାଇବି ପାପ
କୁଟୁମ୍ବ କରି ହନନ,
ଏହା କହି ରଥେ ବସି ପଡିବାରୁ
ତ୍ୟାଗକରି ଶରାସନ,
ହାସ୍ୟ ବଦନରେ କହନ୍ତି ମାଧବ
"ନକର ଦୁଃଖ ଏସନ ।

କୁଳାଚାରେ ବଶ ହେଲେ ହେ ବିଜୟ
ନ ହେବ ଶୁଭ ମଙ୍ଗଳ,
ଖଣ୍ଡିତା ବରଜ ହୁଅ ଆଗଭର
ବିନାଶେ ଶତ୍ରୁ ସକଳ ।
ଦୁଃଖେ ପ୍ରମୋଦେ ନୋହି ବିଚଳିତ
ଯେ ଆଚରେ ସମ ଭାବ
ସଂସାରେ ସିନା ସେ ହୋଇ ମହାସୁଖୀ
କରଇ ସୁଖ୍ୟାତି ଲଭ ।
ଜନମ ମରଣ ଚକ୍ର ଆବର୍ତ୍ତନ
ପର୍ଯ୍ୟାୟେ ଘୂରଇ ସଦା,
ଆପଣା ଧରମ ଦେଇ ଜଳାଞ୍ଜଳି
ନ କର ଶୋଚନା କଦା ।
ସମରେ ପ୍ରବର୍ତ୍ତି ଯୁଗେ ଯୁଗେ କୀର୍ତ୍ତି
ରଖିଯାଅ ମହୀ ତଳେ,
କ୍ଷତ୍ରୀୟ ଧରମ ଯୁଦ୍ଧକୁ କେବଳ
କହନ୍ତି ବୁଧ ସକଳେ ।
ଜୟ ପରାଜୟ ଏକା ବୋଲି ମଣି
ପ୍ରବୃତ୍ତ ହୁଅ ସମରେ,
ନ ପଶିଲେ ରଣେ କାପୁରୁଷ ବୋଲି
ବୁଡ଼ିବ ଅପବାଦରେ" ।
କେଶବଙ୍କ ଠାରୁ ଉପଦେଶ ବାଣୀ
ଶୁଣି ଜିଷ୍ଣୁ ଉତ୍ସାହିତ,
ଭୀମସେନଙ୍କର ସିଂହନାଦ ଶ୍ରବଣେ
କୁରୁବଳ ତ୍ରାସାନ୍ୱିତ ।
ଶାନ୍ତନୁ ନନ୍ଦନ ଜିଷ୍ଣୁ ଉପରେ
ବିଦ୍ୱେଷୀ ହୋଇ ଯୁଦ୍ଧରେ,
ଆପଣା ଆପଣା ସାମର୍ଥ୍ୟ ଦେଖାଇ
ଯୁଝିଲେ ରଣ କ୍ଷେତ୍ରରେ ।
ଭୀମସେନଙ୍କର ଦୁର୍ଯ୍ୟୋଧନ ସହ
ଲାଗିଲା ଯୁଦ୍ଧ ତୁମୁଳ,
ଯେତେ ଯୁଝିଲେହେଁ ସପକ୍ଷେ କାହାର
ହେଲା ନାହିଁ ଅନୁକୂଳ ।
ଜଳଦମଣ୍ଡଳୀ ପର୍ବତ ଉପରେ
ବର୍ଷନ୍ତି ବାରି ଯେସନ,
ସୁଭଦ୍ରା ନନ୍ଦନ କଉରବ ଦଳେ
କ୍ଷେପନ୍ତି ଶର ତେସନ ।
ଦୁଃଶାସନ ସହ ନକୁଳ ଯୁଝିଣ
ଛେଦିଲେ ଶରାସନକୁ,
ଅନନ୍ତର ଦୁଃଶା- କଲେ ନିପୀଡ଼ିତ
ନକୁଳ ଅଶ୍ୱମାନଙ୍କୁ ।
ପାଞ୍ଚଦିନ ଯୁଦ୍ଧେ ମହାବଳୀ ଭୀମ
ଅଗଣିତ କୁରୁବଳ,
କରିବାରୁ କ୍ଷୟ ଆସି ଦୁର୍ଯ୍ୟୋଧନ
କମ୍ପାଇଲା ରଣ ସ୍ଥଳ ।
ଦରଶନ କରି ତାହାଙ୍କୁ ଏକାଳେ
କହନ୍ତି ଭୀମ ସରୋଷେ,
"ରେ ଗାନ୍ଧାରୀ ସୁତ ଚଳନା ଆଜ ତୁ
ମରିବୁ ଆପଣା ଦୋଷେ ।
ରଖିଥାରେ ମନ ଯାହା ସଭା ମଧ୍ୟେ
ଭାଷିଲୁ କୁଟ ବଚନେ,
ସଂହାରି ତୋତେ ରେ କୃଷ୍ଣା ମନସ୍ତାପ
କରିବି ଅପନୋଦନ ।
ଏହା କହି ଭୀମ କ୍ଷେପି ଶର ତାଙ୍କ
ଅଶ୍ୱକୁ କଲେ ହନନ
ମହା କ୍ରୋଧ ଭରେ ସାରଥି ସହିତ
ଛେଦିଲେ ରଥକେତନ ।
ମେଘ ପଟଳକୁ ମହା ପ୍ରଭଞ୍ଜନ
ଉଡ଼ାଇ ଦିଏ ଯେସନ
କୌରବବଳଙ୍କୁ ମହାବଳୀ ଭୀମ
ଦଣ୍ଡିତ ଦେଲେ ତେସନ ।
ଲଭି ପରାଜୟ ଦୁର୍ଯ୍ୟୋଧନ ବୀର
ହତାଶେ ଗଲା ଶିବିରେ,
ଦେଲେ ପ୍ରବୋଧନା ବସାଇ ପାଶରେ
ଗଙ୍ଗା ନନ୍ଦନ ଗୀତରେ ।
ପାହିବାରୁ ନିଶି ପାଣ୍ଡୁପୁତ୍ରେ ମିଶି
ମିଳି ସମର ପ୍ରାଙ୍ଗଣେ,
ସିଂହ ଗରଜନ କଲେ ଘନ ଘନ
କଉରବ ବଦାରଣେ ।

ତହିଁ ପରବେଶ କରି କୃପ ଭୀଷ୍ମ
ଆକ୍ରମିଲେ ଧନଞ୍ଜୟ,
ଦ୍ରୋଣ ଆସି ଭୀମ ସେନଙ୍କୁ କ୍ଷେପିଲେ
ସୁତୀକ୍ଷ୍ଣ ସାୟକଚୟ ।
କୋପାନଳେ ଜଳି ଭୀମ ମହାବାହୁ
ଗୋଡ଼ାଇଲେ କୌରବଙ୍କୁ,
ମାରି କେତେ ଭାଇ ଦୁର୍ଯ୍ୟୋଧନଙ୍କର
ଲେଉଟିଲେ ଶିବିରକୁ ।
କୃପ ଭୀଷ୍ମ ଦ୍ରୋଣ ତିନିଙ୍କର ଜିଷ୍ଣୁ
ଏକାକୀ ରଥ ଓଗାଳି,
ମହା ପରାକ୍ରମେ ଯୁଝି କଲେ ଚୂର୍ଣ୍ଣ
ସେମାନଙ୍କ ରଥାବଳୀ ।
ଦୁର୍ଯ୍ୟୋଧନ କୃପ ଦ୍ରୋଣ ଭୀଷ୍ମ ଆଦି
ଫେରିଲେ ନିଜ ଶିବିରେ,
ନଅ ଭାଇଙ୍କର ମରଣ ଚିନ୍ତାରେ
ଯାପିଲେ ନିଶି ଅସ୍ଥିରେ ।
ଏହିପରି ଗତେ ଦଶମ ଦିନରେ
ପାଣ୍ଡବେ ପ୍ରତିଜ୍ଞା କରି,
ଭୀଷ୍ମ ବଧ ଲାଗି ହେଲେ ସଜବାଜ
ଯେ ଯାହାର ବଳ ଧରି ।
ଆମିଷ ନିମିତ୍ତ ଦୁଇ ଶ୍ୟେନଙ୍କର
ଉପୁଜେ କଳହ ଯଥା,
ଜୟ କାମନାରେ ପାଣ୍ଡବ କୌରବେ
ଲଢ଼ିଲେ ସଂଗ୍ରାମେ ତଥା ।
ପାରାବାର ବେଗ କରେ ନିବାରଣ
ବେଳାଭୂମି ଯେଉଁପରି,
କୌରବ ସେନାଙ୍କ ଅଗ୍ରଗତି ରୋଧେ
ବୃକୋଦର ସେହିପରି ।
ଅଂଶୁମାଳୀ ଯଥା ବିସ୍ତାରି କିରଣ
କରନ୍ତି ଗ୍ରହଣ ଜଳ,
ଗଙ୍ଗା ସୁତ ତଥା ନିକ୍ଷେପି ସାୟକ
ଶୋଷିଲେ ପାଣ୍ଡବ ବଳ ।
ମହା ଧନୁର୍ଦ୍ଧର ସୁଭଦ୍ରା କୁମାର
ବିନ୍ଧିବାରୁ ପାଞ୍ଚଶର,

ବିପକ୍ଷେ ବର୍ଷିଲେ ପ୍ରଚଣ୍ଡଶରମାନ
କ୍ରୋଧେ ହୋଇ ଜରଜର ।
ହୋଇ ଉକମ୍ପିତ ଅଭିମନ୍ୟୁ ବୀର
ଗଲେ ନୃତ୍ୟ କରି କରି,
ତଡ଼ିଦ ଭଲ୍ଲାସ୍ତ୍ର ମାରିବାରୁ କୋପେ
ବିପକ୍ଷେ ଗଲେ ଓହରି ।
ଭୀଷ୍ମଙ୍କ ନିକଟ ହୁଅନ୍ତେ ଧାବିତ
ଫାଲ୍‌ଗୁନି ସହସା ଆସି,
ଦୁଃଶାସନ ବ୍ୟଗ୍ର ମିଳିଲା ସେଠାରେ
ଅତିକୋପ ପରକାଶି ।
ପୂର୍ଣ୍ଣିମା ନିଶିରେ ରାହୁ କ୍ରୁଦ୍ଧ ହୋଇ
ଇନ୍ଦୁଙ୍କୁ ପୀଡ଼ଇ ଯଥା,
ସମର ଭୂଇଁରେ କୋପାନ୍ୱିତ ଜିଷ୍ଣୁ
ଦହିଲେ ଦୁଃଶାସୁ ତଥା ।
ସାରଥି ନିପାତ ପୁଣି ଅଶ୍ୱରଥ
କୋଦଣ୍ଡ ହେବାରୁ ଗୁଣ୍ଡ,
ଯୁଦ୍ଧ ଭୂଇଁ ତେଜି ପଳାଇଲା ଖରେ
ଦୁଃଶାସନ ପୋତି ମୁଣ୍ଡ ।
ଦୁର୍ଯ୍ୟୋଧନ ବଳ ପାଇ କେତେ ରଥୀ
ଆସନ୍ତେ ବିଜୟ କାରଣ,
ଦିବ୍ୟାସ୍ତ୍ର ପ୍ରୟୋଗେ କେ ମଲେ କିଏ ବା
ପଳାୟନ କଲେ ତ୍ରାସେ ।
ତା ଦର୍ଶନ କରି ସମ୍ଭାଳି ନପାରି
ଆସନ୍ତେ ଗଙ୍ଗା ନନ୍ଦନ,
ଶିଖଣ୍ଡୀ ତାହାଙ୍କୁ ଅକଳନା ମହା
ଶର କ୍ଷେପିଲେ ବହନ ।
ଏକାଳେ ଅର୍ଜ୍ଜୁନ ବିନ୍ଧି ଦିବ୍ୟ ଶର
କଲେ ତାଙ୍କୁ ଅଚେତନ,
ପାଣ୍ଡବଙ୍କ ଜୟ ପାଣ୍ଡବଙ୍କ ଜୟ
ଶୁଭିଲା ଘୋର ଗର୍ଜ୍ଜନ ।
କ୍ଷଣକାଳ ପରେ ଲଭି ସେ ଚେତନା
ପୁଣି ଆକ୍ରମିଲେ ରଣ,
ମିଳି ସବ୍ୟସାଚୀ ଶିଖଣ୍ଡୀଙ୍କ ସଙ୍ଗେ
କଲେ ତାହାଙ୍କୁ ପତନ ।

ଶୁଣନ୍ତି ଗାଙ୍ଗେୟ ଦୁର୍ଯ୍ୟୋଧନ ଡ଼ାକ
ସମରୁ ହେବାକୁ କ୍ଷାନ୍ତ,
ଶର ଶଯ୍ୟା ପରେ ରହି କେତେ ଦିନ
ହୋଇଗଲେ କେଉଁଣ ନିତାନ୍ତ ।
ପଡ଼େ ହାହାକାର କୌରବ ଶିବିରେ
ମୁହେଁ ନାହିଁ ପାଣି କା'ର,
ପାଣ୍ଡବ ପକ୍ଷୀୟ କଟ୍ୟୋଲ୍ଲାସେ ମାତି
କରନ୍ତି ସୁଖେ ବିହାର ।
***

## ଅଷ୍ଟମ ସର୍ଗ

### ( ଦ୍ରୋଣ ବଧ )

ଭୀଷ୍ମଙ୍କ ପତନ ଦାରୁଣ କଷଣ
ଦେଲା କୌରବଙ୍କ ମନେ,
ପରାଜୟ ଭୟେ ସକଳ ବନ୍ଧୁଏ
ବସିଛନ୍ତି ଅବସନ୍ନେ ।
ନାହିଁ ସେ ଉଲ୍ଲାସ କି ଅବା ସାହସ
ହୃଦ ଥରେ ଅନୁକ୍ଷଣେ,
ନେତ୍ରୁ ଲୁହଧାର ଗଡ଼େ ବାର ବାର
ନ ପଡ଼େ ପଲକ କ୍ଷଣେ ।
କୌରବ କଠିନ କରି ହୃଦ ଟାଣ
ଉଠି କହେ ଦୁର୍ଯ୍ୟୋଧନ,
ନହୋଇ ନିରାଶ କରି ପରିବେଶ
ସମରେ ଏବେ ବହନ ।
କର୍ଣ୍ଣଧାର ଶୂନ୍ୟ ତରଣୀ ଜଳରେ
ହୁଏ ସ୍ଥାନଚ୍ୟୁତ ଯଥା,
ନାୟକ ବିହୀନ ସୈନ୍ୟ ଯୁଦ୍ଧରେ
ହୁଅନ୍ତି ଅସ୍ଥିର ତଥା ।
ତେଣୁ ଦ୍ରୋଣାଚାର୍ଯ୍ୟ ହୁଅନ୍ତୁ ନାୟକ
କଉରବ ସେନାଙ୍କର,
ଏକଥା ଶ୍ରବଣେ ସକଳ ହରଷେ
ହେଲେ ତାଙ୍କ ଅନୁଚର ।

ରଣର ଝଙ୍କାର ଶୁଭେ ବାରମ୍ବାର
ଦୁଇପକ୍ଷୁ ଏ କାଳରେ,
କଲେ ନିକ୍ଷେପଣ ମର୍ମଭେଦୀ ବାଣ
ଯୋଦ୍ଧାଗଣ ଅତି ଖରେ ।
ସହସା ପ୍ରବେଶି ଦ୍ରୋଣ ମହାରଥୀ
ଆକ୍ରମିଲେ ଯୁଧିଷ୍ଠିର,
କ୍ଷେପି ଇଷୁମାନ ଛେଦି ଶରାସନ
ତାହାଙ୍କୁ କଲେ ଅସ୍ଥିର ।
କରି ତା ଦର୍ଶନ ଆସି ଅର୍ଜୁନ
କ୍ଷେପିବାରୁ ଶରାବଳୀ,
କିଏ ରଥୋପରୁ କେ ବା ଗଜୋପରୁ
ଭୂଇଁରେ ପଡ଼ିଲେ ଢଳି ।
କେଶରୀ ଗର୍ଜ୍ଜନେ କୁରଙ୍ଗ କୁରଙ୍ଗୀ
ନାସିନ୍ତି ଚଳନ୍ତି ଯଥା,
ବିଜୟ ନାଦରେ କୌରବ ସଇନେ
ତାଡ଼ିତ ଶଙ୍କାରେ ତଥା ।
ଅର୍ଜ୍ଜୁନଙ୍କ ଭଳ ସମରେ କୁଶଳୀ
ନାହାନ୍ତି ନିକ କୁରୁବଳ,
ବୋଲି ଦ୍ରୋଣାଚାର୍ଯ୍ୟ କହନ୍ତି ଦୁଃଖରେ
ଦୁର୍ଯ୍ୟୋଧନଙ୍କୁ ଏକାଳେ ।
ତାହାଙ୍କ ବଚନେ ତ୍ରିଗର୍ତ୍ତ ସଇନେ
ନିଜ ବଡ଼ିମା ଦେଖାଇ,
ଯୁଦ୍ଧରେ ପ୍ରବର୍ତ୍ତି ହେଲେ ଅଗ୍ରବର୍ତ୍ତୀ
ଅର୍ଜ୍ଜୁନ ନିଧନ ପାଇଁ ।
ମାର୍ଜ୍ଜାର ଦର୍ଶନେ ଇନ୍ଦୁରନିକର
ଚଳନ୍ତି ଭୟରେ ଯଥା,
ଫାଲ୍‌ଗୁନଙ୍କ ବାଣେ ସତ୍ୱର ସେମାନେ
ଦେଲେ ପୃଷ୍ଠଭଙ୍ଗ ତଥା ।
କରି ଦରଶନ ସୈନ୍ୟଙ୍କ ନିଧନ
ଅଭିମନ୍ୟୁଙ୍କ ହାତରେ,
ଦୁର୍ଯ୍ୟୋଧନ ଖରେ ପ୍ରବେଶି ସମରେ
ଯୁଝିଲେ ତାଙ୍କ ସଙ୍ଗରେ,
ତାଙ୍କୁ କରି ହାସ୍ୟ ସୁଭଦ୍ରା ନନ୍ଦନ
ଦୁର୍ଯ୍ୟୋଧନଙ୍କ ଉପରେ,

ବରଷିଲେ ଶର କଇକା ପରାଏ
ବାର ବାର କୋଧଭରେ ।
ନତ ପର୍ବ ଶର ନିକ୍ଷେପି ସଞ୍ଚର
ନିବାରିଲେ ଦୁର୍ଯ୍ୟୋଧନ,
ତା ଦେଖି କ୍ଷେପିଲେ ମହାଶର ତାଙ୍କୁ
ପୁଣି ସୁଭଦ୍ରାନନ୍ଦନ ।
ଲଗିଲା ତୁମୁଳ ଯୁଦ୍ଧ କ୍ଷଣକାଳ
ଦୁଇ ବୀରଙ୍କ ମଧ୍ୟରେ,
ହୋଇ ପ୍ରପୀଡ଼ିତ ଧୃତରାଷ୍ଟ୍ର ସୁତ
ଲେଉଟିଲେ ଦୁଃଖଭରେ ।

***

## ( ଅଭିମନ୍ୟୁ ବଧ )

ଅଭିମନ୍ୟୁଙ୍କର ବିକ୍ରମ ବୀକ୍ଷଣେ
ଚିନ୍ତାକୁଳ କୁରୁପତି,
ଦ୍ରୋଣ କର୍ଣ୍ଣ କୃପ ମିଶି ଧାବମାନ
ହେଲେ ଅଭିମନ୍ୟୁ ପ୍ରତି ।
ଯେତେକ କଉଶଳ କଲେହେଁ ବିଫଳ
ସେମାନଙ୍କର ପ୍ରୟାସ,
ଅଭିମନ୍ୟୁଙ୍କର ସାୟକ ପ୍ରହାର
ମଣିଲେ ଆପଣା ନାଶ ।
ଛାଡ଼ି ମନୁ ଆସ କରିଣ ସାହସ
ପ୍ରତିଶୋଧ ନେବା ଲାଗି,
ଦୁର୍ଯ୍ୟୋଧନ ସୁତ ଲକ୍ଷ୍ମଣ ଏକାକେ
ହେଲେ ଯୁଦ୍ଧେ ଅନୁରାଗୀ ।
ପଛେ ପଛେ ତାର ପିତା ପୁନର୍ବାର
ହେଲେ ଅନୁଗାମୀ ଖରେ,
ବାରିଧାରା ସମ ବରଷିଲେ ବାଣ
ଅର୍ଜୁନ ସୁତ ଉପରେ ।
ବାୟୁ ପ୍ରବାହତ ହୋଇ ମେଘମାଳ
ଉଡ଼ାଇ ଦିଏ ଯେସନ,
ଏକା ଅଭିମନ୍ୟୁ କଲେ ବିଚଳିତ
ପିତା ପୁତ୍ରଙ୍କୁ ତେସନ ।

ଦଣ୍ଡାହତ ଫଣୀ ପରି କ୍ରୁଦ୍ଧ ହୋଇ
ଅଭିମନ୍ୟୁ ଏ କାଳରେ,
ଛିଣ୍ଡାଇଲେ ମୁଣ୍ଡ ଭଲ୍ଲଟିଏ କ୍ଷେପି
ଲକ୍ଷ୍ମଣ ଉପରେ ଖରେ ।
କଲେ ହାହାକାର କୌରବ ନିକର
ଲକ୍ଷ୍ମଣଙ୍କ ନିଧନେ,
ଅନ୍ୟାୟ ଆଚରି ସର୍ବେ ହୋଇ ମେଳ
ବଧିଲେ କୃଷ୍ଣ ନନ୍ଦନେ ।
ଲୁବ୍‌ଧ ବ୍ୟକ୍ତିମାନେ ନ ପାରନ୍ତି ଜାଣି
ଆପଣା ଦୋଷ ନିକର,
ମୋହେ ହୋଇ ବଶ ଲୋଭରେ ପ୍ରବୃତ୍ତ
ହୋନ୍ତି ସିନା ନିରନ୍ତର ।
ହୋଇ ଶୋକାତୁର ରାଜା ଯୁଧିଷ୍ଠିର
ଅଭିମନ୍ୟୁ ବଧ ଶୁଣି,
ପ୍ରବେଶି ଶିବିରେ ନିନ୍ଦି କପାଳକୁ
ବିଳପିଲେ ଗୁଣ ଗୁଣି ।
ଆସନ୍ତେ ଶିବିରେ କୃଷ୍ଣ ସବ୍ୟସାଚୀ
ଶୁଣି ମରଣ ଖବର,
ପୁତ୍ର ଗୁଣ ସ୍ମରି ଜନକ ଅର୍ଜୁନ
ଶୋକରେ ହେଲେ କାତର ।
ଫେରିଲେ କେଶବ ଦେଇ ଆଶ୍ୱାସନା
ସୁଭଦ୍ରାଙ୍କ ପାଶେ ଯାଇ,
ପୁତ୍ର ଗୁଣ ଗୁଣି ବିଷାଦ ଉଜାଗର
ଗଲା ଧୀରେ ଧୀରେ ପାହି ।
ନୁହେ କେ ସମର୍ଥ ଏ ଭବେ ମୃତ୍ୟୁକୁ
କରିବାକୁ ଅତିକ୍ରମ,
ତା ଆଗରୁ ଋଷି ନପାରେ କେ ଆସି
ଦେଖାଇ ନିଜ ବିକ୍ରମ ।
ଶୋକାକୁଳ କୃଷ୍ଣ ନିଦ୍ରିତ ସମୟେ
ସ୍ୱପନେ ଦେଖି କୃଷ୍ଣଙ୍କୁ,
ଜୟଦ୍ରଥ ବଧ ନିମିତ୍ତ ଉପାୟ
ପୁଚ୍ଛିଲେ ଦୁଃଖେ ତାହାଙ୍କୁ ।
ଫାଲ୍‌ଗୁନ ବଚନେ ଉତ୍ତରିଲେ କୃଷ୍ଣ
"କର ଧ୍ୟାନ ମହେଶଙ୍କୁ,

ଯାହାଙ୍କ ପ୍ରସାଦେ ଲବ୍ଧ ପାଶୁପତ
ବଧିବ ଜୟଦ୍ରଥକୁ" ।
ଶୁଣି ଧନଞ୍ଜୟ କୃଷ୍ଣଙ୍କ ବଚନ
ହେଲେ ସମାସୀନ ଧ୍ୟାନେ,
ଦେଖିଲେ ନିଜକୁ ଗଗନ ମଣ୍ଡଳେ
କୃଷ୍ଣଙ୍କର ସନ୍ନିଧାନେ ।
କେଶବ କର୍ତ୍ତୃକ ଗୃହୀତ ହୋଇ ସେ
ବାୟୁ ବେଗେ ହିମାଳୟେ,
ଯାଇ ଶୈଳାଗ୍ରେ ଭେଟି ବୃଷଧ୍ୱଜ
ବନ୍ଦିଲେ ଅତି ବିନୟେ ।
ଅନନ୍ତର ଜଟୀ ପକାଇ ସୁଦୃଷ୍ଟି
ପୂରିଲେ ଅଭିଳାଷ,
"ଦିବ୍ୟ ଅସ୍ତ୍ରଲାଭେ ଆଗମନ ବୋଲି
ଅର୍ଜୁନ କଲେ ପ୍ରକାଶ ।
ହୋଇ କୃତକାର୍ଯ୍ୟ ସହୃଷ୍ଟ ଚିତ୍ତରେ
ଅନୁଜ୍ଞା ଗ୍ରହଣ କରି,
ପରମ ହରଷେ ବାହୁଡ଼ିଲେ ଦୁହେଁ
ପାଶୁପତ ଅସ୍ତ୍ର ଧରି ।
ସାରି ନିତ୍ୟକର୍ମ ଯଶୋଦା ନନ୍ଦନ
ଅର୍ଜୁନଙ୍କୁ ସଙ୍ଗେ ଧରି,
ପ୍ରବେଶିଲେ ରଣେ କୌରବ ନିଧନେ
ପାଣ୍ଡବାରୁ ବିଘ୍ନବଶ ।
ଉଭୟ ପକ୍ଷର ମହାରଥୀମାନେ
ଜମିବାରୁ ରଣ ସ୍ଥଳେ,
ଆକାଶ ମଣ୍ଡଳ ହେଲା ନିନାଦିତ
ସେମାନଙ୍କ କୋଳାହଳେ ।
ହୋଇ ଧାଡ଼ି ଧାଡ଼ି କୁରୁବଳ ମାଡ଼ି
ଆସନ୍ତେ ଦେଖି ସାତ୍ୟକି,
କଲେ ଶର ବୃଷ୍ଟି ନିର୍ଭୟ ଚିତ୍ତରେ
ସେଠାରୁ ତଳେ ନ ଟେକି ।
ତୁରଙ୍ଗ ମାତଙ୍ଗ ଶତାଙ୍ଗ ସହିତ
ଶତ ଶତ ଯୋଦ୍ଧାବଳୀ,
ସାତ୍ୟକି କର୍ତ୍ତୃକ ପ୍ରେରିତ ଶାୟକେ
ପଡ଼ିଲେ ସମରେ ଟଳି ।

ଶତ ଦୁର୍ଯ୍ୟୋଦ୍ଧ ଏକାଳେ ପ୍ରବେଶି
ରୋକିଲେ ସାତ୍ୟକି ଗତି,
ମାରି ପ୍ରଚଣ୍ଡ ଶର ନିହତ କଲେ ସେ
ଦୁର୍ଯ୍ୟୋଧନଙ୍କ ସାରଥି ।
ସାରଥି ବିହୀନ ହୋଇ ପଳାୟନ
କଲେ ରଣ ସ୍ଥଳୁ ଖରେ,
ସାତ୍ୟକି ତଦନ୍ତେ ପ୍ରବେଶିଲେ ଯାଇଁ
ଧନଞ୍ଜୟଙ୍କ ସମୀପରେ ।
ଲଗିଗଲେ ରଣେ ଭୀମସେନ କର୍ଣ୍ଣ
ଦୁହେଁ ଦୁଇପଟୁ ଆସି,
କଲେ ବିମୋଚନ ମହା ଶରମାନ
ଆପଣା ବଳ ପ୍ରକାଶି ।
ଗୋରୁପଲ ବାଘ ଦେଖି ଇତସ୍ତତଃ
ଯାଆନ୍ତି ପଳାଇ ଯେହ୍ନେ,
କଉରବ ଦଳ ଭୀମଙ୍କ ଦର୍ଶନେ
ଗମନେ ଉଦ୍‌ଭ୍ରାନ୍ତ ତେହ୍ନେ ।
ଦୁର୍ଯ୍ୟୋଧନ ଭ୍ରାତା ସମୂହ କର୍ଣ୍ଣଙ୍କ
ସହାୟ ହୋଇ ଏକାଳେ,
ହେଲେ ନିପତିତ ଏକତ୍ରିଂଶ ଜଣ
ଭୀମଙ୍କ ଶର ଜାଳେ ।
ପୃଷ୍ଠଭଙ୍ଗ ଦେଇ ସମରୁ ପଳାଇ
ଗଲେ ସେମାନେ ଅଧୀରେ,
ମହୋଲ୍ଲାସ ବାଦ୍ୟ ବହିଗଲା ଖରେ
ଏଣେ ପାଣ୍ଡବ ଶିବିରେ ।
ଅର୍ଜୁନ ଯେ କାଳେ ଆକର୍ଷି ସାୟକ
ହେରିଲେ ସିନ୍ଧୁରାଜାଙ୍କୁ,
ଲେଲିହାନ ଅଗ୍ନି ପରାଏ ଦଶିଲେ
ବିପକ୍ଷ ସେନାମାନଙ୍କୁ ।
ଶାଣିତ ସାୟକ ମାନ ନିକ୍ଷେପିଣ
ରଣସ୍ଥଳ ବାଣମୟ,
କରିବାରୁ କୁରୁ ପକ୍ଷୀୟ ସେନାଏ
କଲେ ଅତିଶୟ ଭୟ ।
ଶରାହତ ହୋଇ ତେଜି ଜୟଦ୍ରଥ
କୃପଶଲ୍ୟ ଆଦି ବୀରେ,

ଜଣାଗଲ ଗୁଡ଼ ପ୍ରାଣ ବକଳରେ
ପଶିଲେ ଯେଷ୍ଠା ଶିବରେ ।
କୃଷ୍ଣଙ୍କ ଆଦେଶେ ଅଗ୍ନି ତୁଲ୍ୟ ଶର
କୋଦଣ୍ଡେ କରି ସ୍ଥାପନ,
ବନ୍ଧନେ ସେ ଶର ଜୟଦ୍ରଥଙ୍କର
କଲା ମସ୍ତକ ଛେଦନ ।

## ( ଦ୍ରୋଣ ବଧ )

ଦ୍ରୋଣ ବଧ ଲାଗି ହୁଅନ୍ତେ ପ୍ରବୃତ୍ତ
ପାଣ୍ଡବ ପକ୍ଷୀୟ ରଣେ,
କର୍ଣ୍ଣ ଦୁର୍ଯ୍ୟୋଧନ ହୋଇଲେ ସନ୍ନଦ୍ଧ
ପାଣ୍ଡବ ପ୍ରାଣ ହରଣେ ।
କୌରବ ସେନାଙ୍କୁ ଆକ୍ରମିଲେ କୃଷ୍ଣ
ଅତିକ୍ରମି ଦ୍ରୋଣ କର୍ଣ୍ଣ,
କଲେ ଭୂମିଶାୟୀ ଅସଂଖ୍ୟ ରଥୀଏ
ବିପକ୍ଷ ହୋଇଲେ ବିଷଣ୍ଣ ।
ଏକାଳେ ଶକୁନି ଦୁର୍ଯ୍ୟୋଧନ କର୍ଣ୍ଣ
ନିକ୍ଷେପିଲେ ଶରଶତ,
ଅର୍ଜୁନ ନିଷ୍ଫଳ କଲେ ସେ ଗୁଡ଼ିକ
ନିରୋଧି ସେମାନଙ୍କ ଗତି ।
ଏ ସମୟେ ଦ୍ରୋଣ ଉତ୍ତରେ ଗମନ
କରି କଲେ ଅବସ୍ଥାନ,
ପାଣ୍ଡବସଇନେ ତାହାଙ୍କ ଦର୍ଶନେ
ହୋଇଲେ ତ୍ରାସେ କମ୍ପମାନ ।
ଦ୍ରୁପଦ ବିରାଟ ତାଙ୍କ ସଙ୍ଗେ ଯୁଝି
କଲେ ଭୂମି ଆଲିଙ୍ଗନ,
ହୋଇ କ୍ରୁଦ୍ଧ ଅତି ଆକ୍ରମିଲେ ଦ୍ରୋଣ
ପାଞ୍ଚାଳ ରାଜନନ୍ଦନ ।
ସହସା ଅର୍ଜୁନ ଦ୍ରୋଣଙ୍କ ସମ୍ମୁଖେ
ପ୍ରବେଶି ରଣ ଅଙ୍ଗନେ,
ତାହାଙ୍କ ସକଳ ଅସ୍ତ୍ରକୁ ଖଣ୍ଡିଲେ
ଅଚିରେ ହାସ୍ୟ ବଦନେ ।
ଗୁରୁ ଶିଷ୍ୟ ମଧ୍ୟେ ତୁମୁଳ ସଂଗ୍ରାମ
ଲାଗିଲା ବହୁ ସମୟ,

ନମାଏଁ ଭ୍ରାନ୍ତ ଦୁଇ ସିଂହ ଅବା
ଇଚ୍ଛନ୍ତି ଯେଷ୍ଠା ବିଜୟ ।
ଦାବାଗ୍ନି ସମୟେ ପ୍ରଜ୍ୱଳିତ ବହ୍ନି
ବନ ଦଗ୍ଧ କରେ ଯେସନ୍ତେ,
ସମର କାଳରେ ଗୁରୁଶିଷ୍ୟ ଦୁହେଁ
ସୈନ୍ୟ କଲେ ହତ ତେସନ୍ତେ ।
ଅଶ୍ୱତ୍ଥାମା ହତ ବୋଲି କୁହାଇଲେ
କେଶବ କରି କୌଶଳ,
ଅଶ୍ୱତ୍ଥାମା ହତ ଅଶ୍ୱତ୍ଥାମା ହତ
ପଡ଼ିଲା ରଣେ ଚହଳ ।
ଯୁଧିଷ୍ଠିର ମୁଖୁ ଅଶ୍ୱତ୍ଥାମା ହତ
ଶୁଣନ୍ତେ ଦ୍ରୋଣ ଚକିତେ,
ଶରାସନ ଛାଡ଼ି ସ୍ୟନ୍ଦନ ଉପରେ
ଖସି ପଡ଼ିଲେ ତ୍ୱରିତେ ।
ଅଭୀଷ୍ଟ ସାଧନେ ମଣିଷ ପରା କେ
ସ୍ୱାର୍ଥପର ନାହିଁ ଭବେ,
ପାପ ପୁଣ୍ୟ କିଛୁ ନ ବିଗୃରି କେଭେ
ଇଚ୍ଛାମତେ କାର୍ଯ୍ୟ କବେ ।
ପୁନରପି ଧନୁ ଧରି ଦ୍ରୋଣାଚାର୍ଯ୍ୟ
ହୋଇଲେ ପ୍ରବୃତ୍ତ ସମରେ,
ପାଞ୍ଚାଳ ନନ୍ଦନ ଧୃଷ୍ଟଦ୍ୟୁମ୍ନ ଆସି
ପ୍ରବେଶିଲେ ତହିଁ ଖରେ ।
ସମରେ ପ୍ରବର୍ତ୍ତି ଲକ୍ଷ ଦୁଇ ରଥୀ
କଲେ କ୍ଷୟ ସୈନ୍ୟଗଣ,
ଅନନ୍ତର ଦ୍ରୋଣ ଧୃଷ୍ଟଦ୍ୟୁମ୍ନ ବଧେ
କଲେ ଦିବ୍ୟାସ୍ତ୍ର ଗ୍ରହଣ ।
ତା ଦେଖି ସାତ୍ୟକି କର୍ଣ୍ଣଙ୍କ ସମ୍ମୁଖେ
କରିବାରୁ ତା ଛେଦନ,
କୁପିତେ ପାଞ୍ଚାଳେ କର୍ଣ୍ଣ ମହାରଥୀ
ସାତ୍ୟକିଙ୍କର ନିଧନ ।
ପିପିଲିକା ଗଣ ଭୁଜଙ୍ଗକୁ ବେଢ଼ି
କରନ୍ତି ଆକୁଳ ଯଥା,
ଧୃଷ୍ଟଦ୍ୟୁମ୍ନ ଚେଦି ମତ୍ସ୍ୟ ଆଦି ନୃପେ
କଲେ ଦ୍ରୋଣାଚାର୍ଯ୍ୟ ତଥା ।

ହେବାରୁ ନିପ୍ରେଜ ଦ୍ରୋଣ ମହାରଥୀ
ଧୃଷ୍ଟଦ୍ୟୁମ୍ନ ଗଦା କାଢ଼ି,
ଲଗ କର ଶିର ଅନନ୍ତ ବଳରେ
ତାହାକୁ ଦେଲେ ଫୋପାଡ଼ି ।

ଭଙ୍ଗ୍ରାକ୍ତ ଦେହରେ ସ୍ୟନ୍ଦନୁ ଭୂତଳେ
ଯେବେ ଦ୍ରୋଣ ଗଲେ ପଡ଼ି,
ବୋଧ ହେଲା ଅବା ଲୋହିତାଙ୍ଗ ଗ୍ରହ
ପଡ଼ିଲେ ନଭରୁ ଝଡ଼ି ।

ଦ୍ରୋଣଙ୍କ ନିଧନେ କୌରବ ନିକର
କଲେ ଶଙ୍କି ପଳାୟନ,
ସହାସ୍ୟ ବଦନେ ଭୀମ ଆସି କଲେ
ଧୃଷ୍ଟଦ୍ୟୁମ୍ନ ଆଲିଙ୍ଗନ ।

ଶିଶୁ ବ୍ୟାଘ୍ରଗ୍ରସ୍ତ ଏ ଦେହ ନିମିତ୍ତ
ହୁଅ ସତତ ବିମୁଖ,
ବିଷୟ ବାସନା କଲେ ପରିତ୍ୟାଗ
ମିଳଇ ଅନନ୍ତ ସୁଖ ।

ପାଣିରୁ ମାଛକୁ ଆଣିଲେ ସ୍ଥଳକୁ
ବିକଳ ହୁଅନ୍ତି ଯଥା,
ଦ୍ରୋଣଙ୍କ ମରଣେ କଉରବ ଗଣ
ହେଲେଣି ଆକୁଳ ତଥା ।



## ଦୁଃଶାସନ ଓ କର୍ଣ୍ଣବଧ

ରଥୀ ଶ୍ରେଷ୍ଠ ଦ୍ରୋଣ ହେବାରୁ ନିଧନ
ପାଣ୍ଡବମାନେ ମୋଦିତ,
କୁରୁସେନା ମଧ୍ୟେ ଅଧିପତି ଲଗି
ଦୁର୍ଯ୍ୟୋଧନ ଚିନ୍ତାନ୍ୱିତ ।

କହନ୍ତି ତାହାକେ ଅଶ୍ୱତ୍ଥାମା ରଥୀ
ଦେଖାଇ ନାନା ଯୁକତି,
କର୍ଣ୍ଣଙ୍କ ବ୍ୟତିତ ନୁହେ କେ ସମର୍ଥ
ହେବା ଲଗି ସେନାପତି ।

ତହୁଁ ଦୁର୍ଯ୍ୟୋଧନ ବଦନ ପ୍ରସନ୍ନ
କରି କହନ୍ତି କର୍ଣ୍ଣଙ୍କୁ,
"ନିଅ ଯୁଦ୍ଧ ଭାର ସେନା ରକ୍ଷା କରି
ଜୟ କର ପାଣ୍ଡବଙ୍କୁ" ।

କରି ତା ଶ୍ରବଣ ପୁଲକିତ କର୍ଣ୍ଣ
ଦିଅନ୍ତି ତାଙ୍କୁ ଉତ୍ତର,
ନ କର ସନ୍ଦେହ କୌରବଙ୍କ ଜୟ
ଘଟିବ ଅତି ସତ୍ୱର" ।

ଏ ଭାବେ ମଣିଷ ହୋଇ ଅପଦସ୍ତ
ନାନାମତେ ବାର ବାର,
କ୍ରୋଧ ହୋଇ ବଶ ହରାଇ ବିବେକ
ନ ଗୁଣେ ତ୍ରାଣ ତାହାର ।

ସବ୍ୟସାଚୀ ସଙ୍ଗେ ଯୁଝିବା ସକାଶେ
ହୋଇ ଅତି ଅଭିଳାଷୀ,
ନିଜର ଗରିମା ବଖାଣିଲେ କର୍ଣ୍ଣ
ଦୁର୍ଯ୍ୟୋଧନ ପାଶେ ଆସି ।

ମନେ ମନେ ଭାବ ପୂର୍ବବୈର ଭାବ
ନେବା ଲଗି ପ୍ରତିଶୋଧ,
ହେବାକୁ ସାରଥି ମଦ୍ର ନରପତି
କଲେ ତାଙ୍କୁ ଅନୁରୋଧ ।

ହୋଇ ଆହ୍ଲାଦିତ ଧୃତରାଷ୍ଟ୍ର ସୁତ
ଶଲ୍ୟଙ୍କ ସମୀପେ ଯାଇ,
କର୍ଣ୍ଣଙ୍କ ରଥରେ ସାରଥି ହେବାକୁ
କହିଲେ ତାଙ୍କୁ ବୁଝାଇ ।

ଦୁର୍ଯ୍ୟୋଧନ ବାକ୍ୟେ କ୍ରୋଧରେ ଅସ୍ଥିର
ହୋଇ ଶଲ୍ୟ ତତକ୍ଷଣି,
ପୃଚ୍ଛିଲେ ତାହାଙ୍କୁ "ନ ବୁଝି କପର
କର୍ଣ୍ଣଙ୍କୁ କଲ ଅଗ୍ରଣୀ" ।

"ଅର୍ଜ୍ଜୁନ ସମାନ କର୍ଣ୍ଣ ବଳୀୟାନ
ତୁମେ କୃଷ୍ଣଙ୍କ ସମାନ,
ହେବାକୁ ସାରଥି ଯୋଗ୍ୟ କର୍ଣ୍ଣ ରଥେ
ହେଲା ମୋର ଅନୁମାନ" ।

ଶ୍ରବଣେ ଏ ବାକ୍ୟ ହୋଇ ଖୁସି ସେହି
କରି ତାହା ଅଙ୍ଗୀକାର,
ଶଙ୍ଖ ବୀଣା ବେଣୁ ବଜାଇ ଉଲ୍ଲାସେ
ଯୁଦ୍ଧକୁ ହେଲେ ବାହାର ।

ନିଜ ଫୁଲା ପଣ        କହି କହି କର୍ଣ୍ଣ
ଗଲେ ରଣ ସ୍ଥଳେ ଖରେ,
ଶଲ୍ୟ ତା ଶ୍ରବଣ        କରି ଉପହାସ
ନିକ୍ଷେପିଲେ ପ୍ରତ୍ୟୁତ୍ତରେ ।
ସମ୍ବୋଧି କର୍ଣ୍ଣଙ୍କୁ        ମଦ୍ରରାଜ ଶଲ୍ୟ
କହନ୍ତି ବାଣୀ ଏସନ,
ଗର୍ଭଶାୟୀ କୃଷ୍ଣ-        ସର୍ପ ଧରିବାକୁ
ନ ବଳାଅ କେବେଁ ମନ" ।
ଏ ବଚନ ଶୁଣି        ତପନ ନନ୍ଦନ
କ୍ରୋଧେ କହନ୍ତି ଶଲ୍ୟଙ୍କୁ,
"କାପୁରୁଷ ପରି        ଭୁପରି ଏ ଭାଷା
ତ୍ୟଜ ରଥ ଯୁଝିବାକୁ" ।
ନେଲେ ରଥ ବାହି        ଅର୍ଜୁନ ସମୀପେ
ମଦ୍ରରାଜ ଶଲ୍ୟ ଡରେ,
ପାବକ ବିନାଶ        ନୁହଇ ସମ୍ଭବ
କେବେ କାଷ୍ଠ ସାହାଯ୍ୟରେ ।

ଆସୁଛନ୍ତି କୃଷ୍ଣାର୍ଜୁନ ବଚସ ରଥରେ,
ଆଚ୍ଛନ୍ନ ନଭୋମଣ୍ଡଳ ଧୂଳିପଟଳରେ ।
ଏକତ୍ର ମିଶି ଦୁଅନ୍ତ ସମ୍ମୁଖ ବନ୍ତି,
ପରସ୍ପର ସମ୍ଭାଷଣେ ଦୃଷ୍ଟିପକ୍ଷୀତନ୍ତି ।
ଲୋମାଞ୍ଚକର ନିନାଦ ଶୁଭେ ଘନ ଘନ,
ଦ୍ରୁତ ବେଗେ ଅଶ୍ୱ କୃଷ୍ଣ କରନ୍ତି ଚାଳନ ।
ଶୋଭେ ଶିରେ କଉସ୍ତୁଭ ମଣି ତାହାଙ୍କର,
କପିଧ୍ୱଜୀଙ୍କୁ ଦେଖି କୁରୁବୃନ୍ଦ ଥରହର ।
ଏକାଳେ ଗାଣ୍ଡୀବ ଧନୁ ହେଲା ଟଙ୍କାରିତ,
ନିକ୍ଷେପିତ ମାଳ ମାଳ ସାୟକ ଶାଣିତ ।
ଶତ ଶତ ନରପାଳ ଶସ୍ତ୍ର ସଜ୍ଜିତରେ,
ଧରାଶାୟୀ ହେଲେ ଏବେ ଅର୍ଜୁନଙ୍କ ଶରେ ।
ଶତ୍ରୁକୁଳ ନାଶକାରୀ ସେ ଶ୍ୱେତବାହନ,
ମହାରଥୀ କର୍ଣ୍ଣ ଏବେ କଲେ ଦରଶନ ।
ଶତ୍ରୁ ମକ୍ଷ ଗଜବାଜି ନୃପତି ସହିତ,
ଫାଲ୍‌ଗୁନ କର୍ଣ୍ଣକ ହେଲେ ଭୂମିରେ ଶାୟିତ ।
କର୍ଣ୍ଣଙ୍କୁ ସାହାଯ୍ୟ ଦେବା ଲାଗି ଦୁର୍ଯ୍ୟୋଧନ,
ଭ୍ରାତୃବୃନ୍ଦ ସହ ରଣେ କଲେ ଆଗମନ ।

ପାଣ୍ଡବ ସେନାଙ୍କ ମଧ୍ୟେ ପଶି କର୍ଣ୍ଣ ବୀର,
ଶତ ଶତ ନାଶି କଲେ ନିତାନ୍ତ ଅସ୍ଥିର ।
ଏ ସମୟେ ଭୀମସେନ କର୍ଣ୍ଣଙ୍କ ପୁତ୍ରକୁ,
ପଠାଇଲେ ଅବିଳମ୍ବେ ଶମନ ପୁରକୁ ।
ଅନନ୍ତର ଦେଲେ ପୀଡ଼ା କୃପ ଦୁଃଶାସନ,
କରି ଛିନ୍ନ ଜବେ ସେମାନଙ୍କ ଶରାସନ ।
ଯୁଧିଷ୍ଠିର ସମ୍ମୁଖକୁ ହୋଇ ଧାବମାନ,
ନିକ୍ଷେପିଲେ ସେକ୍ଷେ କର୍ଣ୍ଣବୀର ଶରମାନ ।
ହୋଇ ପ୍ରଜ୍ୱଳିତ ଘୃତଯୁକ୍ତ ଅଗ୍ନି ସମ,
ଦେଖାଇଲେ ଯୁଧିଷ୍ଠିର ଆପଣା ବିକ୍ରମ ।
ତାହାଙ୍କ ଶର ଆଘାତେ ହୋଇଣ ମୂର୍ଚ୍ଛିତ,
ଶଲ୍ୟ ଅଗ୍ରେ କର୍ଣ୍ଣ ହେଲେ ସ୍ୟନ୍ଦନୁ ପତିତ ।
ତାଦୃଶ ଅବସ୍ଥା ଦେଖି କୁରୁସେନାମାନେ,
ହେଲେ ଧାବମାନ ଶୀଘ୍ର ରଥ ସନ୍ନିଧାନେ ।
ଅବିଳମ୍ବେ ଚେତା ପାଇ କର୍ଣ୍ଣ ମହାରଥୀ,
ନିକ୍ଷେପନ୍ତେ ଯୁଧିଷ୍ଠିର ମହାଶରତତି ।
ରଣସ୍ଥଳୁ ତତକ୍ଷଣି ହେଲେ ପ୍ରତ୍ୟାଗତ,
ବୋଲେ କର୍ଣ୍ଣ ତାଙ୍କୁ "ଯୁଦ୍ଧୁଁ ନହୁଅ ବିରତ" ।
ମହାବାହୁ ଭୀମସେନ ଥିଲେ ନିକଟରେ,
ବ୍ୟଗ୍ରେ ଆସି ଠିଆ ହୋଇ କର୍ଣ୍ଣଙ୍କ ଆଗରେ ।
ତାହାଙ୍କ ଉପରେ ଆରମ୍ଭିଲେ ଆକ୍ରମଣ,
ପ୍ରତିଶର ବର୍ଷି କର୍ଣ୍ଣ କଲେ ତା ବାରଣ ।
ଉତ୍କୃଷ୍ଟ ସାୟକ କାଢ଼ି ତଦନ୍ତେ ପାବନି,
ମାରନ୍ତେ କର୍ଣ୍ଣ ବକ୍ଷକୁ କମ୍ପିଲା ଅବନୀ ।
ଶରଘାତେ କର୍ଣ୍ଣବୀର ହେଲେ ଅଚେତନ,
ରଥ ଧରି ଶଲ୍ୟ ଯୁଦ୍ଧୁଁ କଲେ ପଳାୟନ ।

ତଦନ୍ତେ ପାବନି        ଦୁର୍ଯ୍ୟୋଧନଙ୍କର
ବିନାଶିଲେ ଛନଭାଇ,
ତାଙ୍କ ଭୀମ ରୂପ        ସନ୍ଦର୍ଶନେ ଗଲେ
କୁରୁଯୋଦ୍ଧେ ପଳାଇ ।
ତାଦୃଶ ଅବସ୍ଥା        ଦେଖି କୌରବଙ୍କ
ପୁନଶ୍ଚ ଆସିଲେ କର୍ଣ୍ଣ,
ଦୁଇ ବୀରଙ୍କର        ଭୀଷଣ ସମର
ଲାଗିଗଲା ବହୁକ୍ଷଣ ।

ଅକଳନା ଯୋଦ୍ଧା ପୁଣି ଗଜବାଜି
ହେଲେ ଭୂମିରେ ପତିତ,
ରକ୍ତ ମାଂସ ଖାଇ କାକ ଗୃଧ୍ର ଶିବା
ହେଲେ ଅତି ପୁଲକିତ ।
ହୃଅନ୍ଧ ଚକିତ କର୍ଣ୍ଣ ମହାବୀର
ଦେଖି ଭୀମଙ୍କ ବିକ୍ରମ,
କୌରବ ସଇନେ ଅଚଳ ସମରେ
ଭଗନ ନଉକା ସମ ।
ସହସ୍ର ସହସ୍ର ସଂଶପ୍ତକ ସୈନ୍ୟ
କରି ହତ ଫାଲ୍‌ଗୁନି,
ଡାକନ୍ତି ଗମ୍ଭୀରେ ମହା ରୋଷଭରେ
"କାହିଁ ଗଲ୍ ସେ ଶକୁନି" ।
ନିକ୍ଷେପି ନାଗାସ୍ତ୍ର ଚରଣ ବନ୍ଧନ
କରି କୁରୁବଳଙ୍କର,
ଅନାୟାସେ ବଧି ବାରୁ ସେମାନଙ୍କୁ
ପାଣ୍ଡବେ ହରଷଭର ।
ଅଦ୍ଭୁତ କଥାକୁ ଚେତାଇ ଶ୍ରୀକୃଷ୍ଣ
କହନ୍ତି ଅରଜୁନଙ୍କୁ,
ଅନତି ବିଳମ୍ବେ ଚିନ୍ତ ବଧୋପାୟ
କରି ବିନାଶ କର୍ଣ୍ଣଙ୍କୁ ।
ପବନ ନନ୍ଦନ ଦେଖି ଦୁଃଶାସନ
ଧାଇଁଲେ ଅତି ତ୍ୱରାରେ,
ହେଲେ ସେ ଅଚେତ କିଛିକ୍ଷଣ ରଥେ
ଦୁଃଶାସନର ପ୍ରହାରେ ।
ଚେତା ପାଇ ଭୀମ ଅତି କ୍ରୋଧଭରେ
କ୍ଷେପିଲେ ପ୍ରଚଣ୍ଡ ଶକ୍ତି,
ତାକୁ ଦୁଃଶାସନ ଦଶଗୋଟି ବାଣେ
ଖଣ୍ଡିଲେ ଅତି ତଡ଼ିତି ।
ତଦନ୍ତେ ପାବନି ଟେକି ଗଦା ଏକ
ନିକ୍ଷେପନ୍ତେ ଅତି ଭରେ,
ସେହ୍ନକ୍ଷଣି ଦୁଃଶା ପଡ଼ିଲ ଆଘାତେ
ଦଂଶିତ ଗଜ ଦୂରରେ ।
ତାଦୃଶ ଅବସ୍ଥା ଦୁଃଶାସନଙ୍କର
ଦେଖି ପବନ ନନ୍ଦନ,
କଲେ ସମ୍ବୋଧନ କୌରବ ପକ୍ଷୀୟେ
"ରଖ ଦୁଃଶାକୁ ବହନ" ।
ମହୂର୍ତ୍ତ ବେଗରେ ମାରୁତି ପ୍ରବେଶି
କରେ ତରବାରି ଧରି,
ବସି କଣ୍ଠ ଦେଶେ ପିଇଲ ରୁଧିର
ବକ୍ଷସ୍ଥଳ ବିଦ୍ଧ କରି ।
ଦୁଃଶାର ନିଧନ ଦେଖି ଦୁର୍ଯ୍ୟୋଧନ
ହୋଇ ଭୀତନସ୍ତ ଅତି,
କହିଲେ କର୍ଣ୍ଣଙ୍କୁ "ଅବଲମ୍ବି ଧୃତି
ଯାଅ ସବ୍ୟସାଚୀ କତି" ।
ହେଲେ ଭେଟାଭେଟି ଦୁଇ ମହାରଥୀ
କ୍ରୋଧେ ଆକ୍ଷି ରଙ୍ଗ କରି.
ଯେ ଯାହା ଦିବ୍ୟାସ୍ତ୍ରେ ସାଇତି ଥିଲେ ଯା
ହେବେ ଦୁହେଁ ମରାମରି ।
ବ୍ରହ୍ମର୍ଷି ରାଜର୍ଷି ଦେବର୍ଷି ଗନ୍ଧର୍ବେ
ନେଲେ ଅର୍ଜୁନଙ୍କ ପକ୍ଷ,
ଅସୁର ଗୁହ୍ୟକ ଖେଚର ପ୍ରଭୃତି
ହେଲେ ତାଙ୍କର ବିପକ୍ଷ ।
ଲାଗିଲେ ବିବାଦ ଇନ୍ଦ୍ର ଭାନୁ ଦୁହେଁ
ନିଜ ସୁତଙ୍କ ବିଜୟେ,
ଅର୍ଜୁନ ସାରଥୀ କେଶବ ଚହିଁଲେ
କର୍ଣ୍ଣଙ୍କର ପରାଜୟେ ।
ଅର୍ଜୁନ ବାଣରେ କର୍ଣ୍ଣଙ୍କ ନିଧନେ
ଅବସନ୍ନ ଦୁର୍ଯ୍ୟୋଧନ,
ପାଣ୍ଡବ ଶିବିରେ ଜୟ କୋଳାହଳେ
ପୂରି ଉଠିଲ ଗଗନ ।
ଗୋଟି ଗୋଟି ହୋଇ ରଥୀଏ ପରାଣ
ବିସର୍ଜିଲେ ରଣ ସ୍ଥଳେ,
ହୋଇ ଆଶା ଶୂନ୍ୟ ଏଣେ ଦୁର୍ଯ୍ୟୋଧନ
ଦଗଧ ହେଲ ଚିନ୍ତାନଳେ ।
ବୃଷ ନିଜ ଶୃଙ୍ଗ ନିଜେ କଲେ ଭଗ୍ନ
ମଦମତ୍ତ ହୋଇ ଯଥା,
ଦୁର୍ଯ୍ୟୋଧନ ନିଜ ଶିରୀ କଲ ଲୋପ
ଦର୍ପଗ୍ରସ୍ତ ହୋଇ ତଥା ।

ତଦନ୍ତେ ପାବନ ଗଦା ଯୁଦ୍ଧ ଲାଗି
ନାଦ କଲେ ଘନ ଘନ,
ନପାରି ସମ୍ଭାଳି ହାତେ ଗଦା ଧରି
ପହଞ୍ଚିଲେ ଦୁର୍ଯ୍ୟୋଧନ ।
ଦୁଇ ବୀରଙ୍କର ଲାଗିଲା ଲଢେଇ
ଶେଷେ କରି ଜାନୁ ଭଗ୍ନ,
ପବନ ନନ୍ଦନ ଦୁର୍ଯ୍ୟୋଧନଙ୍କର
ନେଲେ ପରାଣ ବହନ ।
ପୁତ୍ର ପୃଥ୍ୱୀ ନାରୀ ଜୀବ ସଙ୍ଗେ କେହି
ନ ଯାନ୍ତି ମରଣ ବେଳେ,
ସ୍ୱକୀୟ ସୁକୃତ ଦୁଷ୍କୃତ କରମ
ଅନୁଗାମୀ ସେତେବେଳେ ।
କାମନା ତଟିନୀ ପାରି ହେବା ଲାଗି
ସନ୍ତୋଷ କେବଳ ସେତୁ,
ଆହା ! ଏ ସଂସାରେ ସବୁ କାରବାରେ
କାମନା ଅଶାନ୍ତି ହେତୁ ।
କେ ଦେଖିଛି ଭାଇ ବସୁଧାର ମଧ୍ୟେ
ପୂର୍ତ୍ତି ହେବା କାମୋଦର,
ଯେତେ ପାଉଥିଲେ ସେତେ ଲୋଡୁଥାଏ
ହାଇଁ ହାଇଁ ନିରନ୍ତର ।
ଏହି ସେହି କୁରୁକ୍ଷେତ୍ର ଯହିଁ କୁରୁଗଣ,
ପାଞ୍ଚ ଖଣ୍ଡି ଗଡ଼ା ଲାଗି ଆରମ୍ଭିଲେ ରଣ ।
ଲୋଭ କ୍ରୋଧ ଅବା ମିଶି କାଳ ରୂପେ ପଶି,
ଅଗଣିତ ଜୀବନକୁ ପକାଇଲେ ଧ୍ୱଂସି ।
ଆତ୍ମଜନ ଶୂନ୍ୟ ହୋଇ ହେଲେ ଯୁଦ୍ଧ ରଙ୍କା,
ଦଉଲେଭୂତଳେ ଯଥା ବାୟୁଯୋଗେ ଲଙ୍କା(ଗଛ ଉଡ଼ାଳ)
ଶୋଣିତ ରଞ୍ଜିତ ହୋଇ ଅପଘନମାନ,
ଦିଶୁଅଛି କୁସୁମିତ କିଂଶୁକ ସମାନ ।
ଛିଡ଼ିଛି ମସ୍ତକ କାହିଁ ଉରୁ ବା ଉଗନ,
ଛିନ୍ନ ପାଣି ହୋଇ ଛିଣ୍ଡିଅଛି ଶରାସନ ।
ହୋଇ ଲୋଭ ଅନୁବର୍ତ୍ତୀ ଭୁଲାଇଲେ ଚିତ୍ତ,
ହରାଇଲେ ବନ୍ଧୁ ଭାଇ ପୁଅ ସ୍ୱାର୍ଥେ ମାତ୍ତ ।
ନାହିଁ ତନୁ ନେଇ ଛାଡ଼ି ଦମ୍ଭ ଧାମ୍ଭିକର,
ସମର ଭୂଇଁ କହୁ କ ବରିର ଶାଠ୍ୟର ।

ଅଳକାଶ ତଳେ ଦେହ ସିଞ୍ଚୁଛି ଶିଶିରେ,
ଚନ୍ଦନ ମର୍ଦ୍ଦିତ ହୋଇ ଥିଲା ଯା ଗୃହଦ୍ୱାରେ ।
ଗୋମାୟୁ ଗୃଧ୍ରଆ ଗୃଧ୍ର ମାଂସଜୀବୀମାନେ,
ବୁଲୁଛନ୍ତି କୁରୁକ୍ଷେତ୍ରେ ମୋଦେ ରକ୍ତପାନେ ।
ସଙ୍ଗୋଳିବାକୁ କାହାକୁ ଜଣେ ବୋଲି ନାହିଁ,
ପଡ଼ିଛନ୍ତି ଗଙ୍ଗାସୁତ ମରଣକୁ ଚାହିଁ ।
ନାହିଁ ସେ ଶକୁନି ଆଜ ଯାର କୁମନ୍ତ୍ରଣେ,
ନ ରହିଲେ କୁରୁବଂଶେ କେହି ହେଲେ ଜଣେ ।
କହୁଥିଲା କର୍ଣ୍ଣ ବଡ଼ ପଣେ ସେଉଁ ଭାଷା,
କାଣ୍ଟୀ ଆଶୁଗାଘାତେ ଚୂର୍ଣ୍ଣ ଯେହି ଆଶା ।
ପାପାଶ୍ରିତ ଦୁଃଶାସନ ଶୁଣି ଯାର ବାଣୀ,
ଆଣିଥିଲା ପାଞ୍ଚାଳୀଙ୍କି ସଭା ମଧ୍ୟେ ଟାଣି ।
ପାଇଲା ତା ପ୍ରତିଫଳ ଅକାଳ ଦିବସରେ,
କୃଷ୍ଣା ବେଣୀ ବନ୍ଧା ହେଲା ତାର ଶୋଣିତରେ ।
ପୁତ୍ରସ୍ନେହ ଧୃତରାଷ୍ଟ୍ର ନ ଛାଡ଼ି କପଟ,
ପୁତ୍ରଙ୍କ ବିନାଶେ ହେଲେ କେଡ଼େ ଛଟପଟ ।
ଭବରେ ଭବଙ୍କ ଲୀଳା ଏହିପରି ଭାଇ,
ଏଥି ଲାଗି ଏତେ କଅାଁ ପ୍ରାଣ ପାଇଁ ବାଇ ।
ଜରାମୃତ୍ୟୁ କବଳରୁ କେ ନୁହେ ମୁକତ,
ନ ଜାଣେ କେ କିଏ କେତେବେଳେ କାଳଗ୍ରସ୍ତ ।
ଜନ୍ମିଲା ବୈରାଗ୍ୟ ମନେ ଯୁଧିଷ୍ଠିରଙ୍କର,
ପୁଚ୍ଛନ୍ତି ସେ ହିତକଥା ଶାନ୍ତନୁକୁମର ।
ଉତ୍ତରନ୍ତି ଗଙ୍ଗାସୁତ ଏକାନ୍ତେ ତାହାଙ୍କୁ,
"ଆଦର କରନ୍ତୁ ସର୍ବେ ଉଦ୍ୟୋଗୀ ରାଜାଙ୍କୁ ।
ସତ୍ୟନିଷ୍ଠ ଜିତେନ୍ଦ୍ରିୟ ନ୍ୟାୟ ଅନୁଗତ,
ହୋଇ ରାଜା ପାଳିବ ଯେ ପରଜା ସତତ ।
ଏଅନ୍ତେ ଇଚ୍ଛାରେ ଭୀଷ୍ମ ଛାଡ଼ିଲେ ଜୀବନ,
ଯଥାବିଧି କରି ତାଙ୍କ ପୃଥାଙ୍କ ନନ୍ଦନ ।
କେଶବ ସାଙ୍ଗକ ଭ୍ରାତୃବୃନ୍ଦଙ୍କ ସହିତ,
ଗମିଲେ ହସ୍ତିନା ଶୋକେ ହୋଇ ଆକୁଳିତ ।

***

# ଚେତନା

## ଆଧୁନିକ ସଭ୍ୟତା

ଯେଉଁଦିନ ମାତୃଗର୍ଭୁ ପଡ଼ିଲି ଭୂତଳେ,
କୁଆଁ କୁଆଁ ହୋଇ କେତେ କାନ୍ଦିଲି ବିକଳେ ।
ନଗ୍ନ ଦେହରୁ ପୋଛି ଲାଜ ମାଆ କୋଳେ ଧରି,
ଶୁଆଇଲେ ପାଖେ ତାଙ୍କ ଚନ୍ଦ୍ର କଳା ପରି ।
ଆନନ୍ଦରେ ନାଚୁଥିଲେ କେତେ ପିଲା ଦେଖି,
ନେଇଗଲେ ବାପା ଆସି ତିଥି ଘଣ୍ଟା ଦେଖି ।
ବଢ଼ୁଥିଲି ଦିନୁଁ ଦିନ ଚୁପି ମାତୃସ୍ତନ,
ଛୁଇଁଲେ ସାମାନ୍ୟ ରୋଗ ମାଆ କେତେ କ୍ଷୁନ୍ନ ।
ରୋଗ ବେଳେ ରହୁଥାନ୍ତି ରାତିଯାକ ଜାଗି,
କେତେ ବ୍ରତ ଉପବାସ କରନ୍ତି ମୋ ଲାଗି ।
ମୋରି ସେବା ଲାଗି କେବେ ନୁହନ୍ତି ବିମୁଖ,
ଆନନ୍ଦ ଲଭନ୍ତି ଦେଖି ମୋରି ହସ ମୁଖ ।
ବସିଲି ମନକୁ ମନ ଅଭ୍ୟାସ ବଳରେ,
ଆଣ୍ଠେଇଲି ତହୁଁ ଧୀରେ କିଛି ଦିନ ପରେ ।
ନଥିଲା ପାଟିରେ ଦାନ୍ତ ଜନମ କାଳରେ,
ଗୋଟିଏ ଗୋଟିଏ ହୋଇ ଉଠେ କ୍ରମଶରେ ।
କଟକଡ କଟକଡ଼େ ମଡ ଶିଖିଗଲି ବୋଲି,
ନ ଜାଣି ଖାଇଛି କେତେ ଥର ମାଟିବାଲି ।
ମୋ ଦରେଟି କଥା ଶୁଣି ବାପା ମାଆ ଖୁସି,
ହଠହଠା କରେ ତାଙ୍କୁ ବହୁବାର ରୁଷି ।
କ୍ରମେ କ୍ରମେ ବଢ଼ିବାରୁ ଛାଡ଼ି ମାତୃସ୍ତନ,
ଭାତ ଖାଇବାରେ ଏବେ ବଳାଇଲି ମନ ।
ସାଙ୍ଗ ପିଲା ସଙ୍ଗେ ମିଶି ଖେଳେ ଧୂଳି ଖେଳ,
ଫେରିଆସେ ହୁଏ ଯେବେ ଭୋକଖିଆ ବେଳ ।
ବୟସ ହେବାରୁ ନାଆଁ ଲେଖା ହେଲା ସ୍କୁଲେ,
ପଢ଼ିବାକୁ ଯାଉଥାଏ ସାଙ୍ଗ ପିଲା ତୁଲେ ।
ଶିଖିଲି ବିଦେଶୀ ଭାଷା ବିଦେଶୀ ସଭ୍ୟତା,
ଯେଣିକି ଚାହିଁଲେ ତେଣେ ଦେଖିଲି ଶଠତା ।
ମନ ଦେଇ ପାଠ ପଢ଼ି କେତେକ ବରଷ,
ଗ୍ରାମେ ଫେରି ନ ଦେଖିଲି କାହା ମୁଖେ ହସ ।
ସମାଜ ସଂସ୍କାର ଲାଗି ବଳାଇଲି ମନ,
ନ ଶୁଣିଲି ଆଜ୍ଞା ଏବେ ଜନନୀ ବଚନ ।
ମୁଣ୍ଡକୁ ପାଇଲା ହାତ ଶୁଣିବ ବା କିଆଁ,
ଆଧୁନିକ ସଭ୍ୟତା ଏ ଏବର ଦୁନିଆଁ ।

## ଶରତ୍

ନିଶି ଆଗମନ ଦେଖି ଶଶୀମଣି
ଦେଲେ ଶୁଭ୍ରାଲୋକ ଢାଳି,

ସେ ଆଲୋକ ପାଇ ଆନନ୍ଦ ବଢ଼େଇ
ହେଲା କୁମୁଦମାଳୀ ।
ମୁହଁ ମୋଡ଼ଦେଲା ସରୋଜମା ଏଣେ
ସଖୀର ଦେଖି ଏ ସୁଖ ,
ମଣିଷ ଯେସନ ପଡ଼ୋଶୀ ସମ୍ପଦେ
ଅନବରତ ବିମୁଖ ।
ତରୁଡ଼ାଳେ ବସି ମେଲାଇଲା ଥଣ୍ଟ
ଚକୋର ଚନ୍ଦ୍ରିକା ପାନେ,
ଗୋଟି ଗୋଟି ହୋଇ କୁମୁଦ ବାନ୍ଧବେ
ଘେରିଲେ ତାରକାମାନେ ।
ହସୁଥିଲା କିଏ ମଳିନ କିଏ ବା
ହସୁଥିଲା ଝକମକ,
ଥିଲେ ଏକ ଲକ୍ଷ୍ୟେ ସତ ସାରା କା'ର
ନଥିଲା ପଡ଼ ପଲକ ।
ଏ ଶୋଭା ଦର୍ଶନେ ମୋଦେ ଶିଶୁଗଣ
ଜନନୀ କୋଳରେ ବସି,
ତାଳି ମାରି ମାରି ଜହ୍ନମାମୁଁ ବୋଲି
ନାଚୁଛନ୍ତି ହସି ହସି ।
ବସିଲା ସେ ସଭା ନିଶି ସାରା ନଭେ
ନିସ୍ତବ୍ଧ ଧରଣୀ ତଳ,
ଯାଇବାରୁ ରାତି ଉଭେଇ ଗଲେ କି
ଶୁଭିବାରୁ କୋଳାହଳ ।
ଟିପିନେଇ ଅବା ଧରଣୀ ଘଟଣା
ଘଟିଥିଲା ଯା ଦିବସେ,
ବିଶ୍ୱ କରତାଙ୍କ ପଦତଳେ ଅର୍ପି
ଦେଲେ କି ମହା ହରଷେ ।

*★*

## ଚେତନା

ଅବୁଝା ମନରେ ଅଡୁଆ ଲଗାଇ
ଖେଳୁଅଛୁ କେତେ ରଙ୍ଗେ,
ଦେଖି ସବୁ ଭବେ ନ ଜାଣିଲୁ ଲବେ
କି ଘେନି ଯିବୁ ତୁ ସଙ୍ଗେ ।
ଅ[illegible] କଲି ସଦା ଅଣବାଟେ ଯାଉ
ନ ବିଚାରି ଭଲମନ୍ଦ,
କି ବୋଲନ୍ତି ଜନେ ମ ଭାବିଲୁ ଧନେ
ତୁଚ୍ଛାକୁ ମଣୁ ଆନନ୍ଦ ।
କଲି ଯେତେ ମନା କଲୁ ଉପାସନା
କାମିନୀ-କାଞ୍ଚନ ନିତ,
ଗଲୁ ସିନା ବୁଡ଼ି ଅସନ୍ତୋଷ ଜଳେ
ନଗଲା ତୋ ତେଷା ଗତ ।
ଟାକସି ଫୁଟାଇ ଟାକି ଅଛି ଯମ
କେତେବେଳେ ଦେବ ଗିଳି,
ନ ପାରିବ ରଖି ତା ହାବୁଡ଼ୁ କେହି
ଭାଇବନ୍ଧୁ ଯେତେ ମିଳି ।
ଦଉଡ଼ି ହେଉଚୁ ଦଣ୍ଡକ ପାଇଁକି
ମୋହ ଅନ୍ଧକାରେ ସିନା,
କେ ପାଇବ ଭବେ ଜ୍ଞାନ ଜ୍ୟୋତି କେବେ
ହୃଦୟୁ ନିର୍ମଳ ବିନା ।
ଆଲୁଅ ଅନ୍ଧାର ଲେଉଟିଲା ଘର
ଚହଲାଉ ଜୀବନ ସୁଅ,
ମିଛ କରି ପେଶା ହେଉ ଲୋକହସା
ଦେହରେ ବୋଳି କାଦୁଅ ।
ସ୍ୱାର୍ଥଚିନ୍ତା କରି ଜୀବନଟି ସରି
ଯାଉଚି ଦେଖୁନୁ ଥରେ,
ପ୍ରଲୋଭନ ପଛେ ଧାଇଁ ଧାଇଁ କପା
ସତୁରୁ ଅପବାଦରେ ।
ମୃଗତୃଷ୍ଣା ପଛେ ଧାଇଁଚୁ ସିନାରେ
ଅତି ତୁଚ୍ଛ ଆଶା ପୋଷି ।
ପାରିଚ କିଏ ସେ ପାରିବ ବା କିଏ
ଜଗତେ ଇନ୍ଦ୍ରିୟ ତୋଷି ।
କାହା ପାଇଁ ଏତେ ରଖୁଚୁ ସାଇତି
ବିଚାରିଲୁ ନାହିଁ ଥରେ,
ନଦେଇ ମୁଠାଏ ଭୋକିଲା ପେଟକୁ
କଥା କହୁ ଆଡମ୍ବରେ ।

ଧରିବାକୁ ମୀନ କେଉଟ ଯେସନ
ପାଣିକ କରେ ଗୋଳିଆ,
କୁଟିଳ ତେସନ ସ୍ୱାର୍ଥ ଆଶା ରଖି
ପୂରାଏ ଚଢ଼େ଼ ଅଳିଆ ।
ଜୀବନ ବସନ୍ତ ନ ରହେ ସତତ
କାହାର କେବେ ଏ ଭବେ,
ଜାଣି ଜାଣି ନରେ ପଡନ୍ତ ଖାଲରେ
ଭବିଷ୍ୟ ନ ଚିନ୍ତି ଲବେ ।
ହିଂସାକୁ ଆୟୁଧ କରି କିଏ ଭବେ
ପାଇଛି କି କେବେ ଯଶ,
ଦେଖାନ୍ତୁ କିପାଇଁ ଫିଟାଇ ନୟନ
ସକଳେ ପ୍ରେମରେ ବଶ ।
ଉଠୁଚ୍ଛୁ ହାତ ଟିକକ କଥାରେ
ଐଶ୍ୱର୍ଯ୍ୟ ମଦମତ୍ତରେ,
ଦୋଷକୁ ଘୋଡାଇ ଦେଉ ଧମକାଇ
ଯଦ୍ଧ ବା କିଏ ପଟ୍ଟରେ ।
ଅନ୍ୟର ରକତ ଶୋଷିଲୁ ନିରତ
ଆପଣାର ବାହୁବଳେ,
କରିଲୁ କି ଲକ୍ଷ୍ୟ ହେବୁ ଦିନେ ଭକ୍ଷ
ପଡି କାଳର କବଳେ ।
ଆସିଅଛୁ ଏକା ଯିବୁ ଫେରି ଏକା
ନୟନୁ ଲୁହ ଗଡାଇ,
ବୋଲୁଅଛୁ ଯାକୁ ମୋର ମୋର ବୋଲି
ଯିବ କି ପଛେ ଗୋଡ଼ାଇ ।
ଟହଲିଆ ଧରି ଟହଲି ଟହଲି
ବେଳସିନା ଯାଏ ବୁଡି,
ଠଉରିଲୁ କି କେତେବେଳେ ଯିବ
ପ୍ରାଣପକ୍ଷୀ ତୋର ଉଡି ।
ସୁଖ ବୋଲି ଯାହା ମଣୁଅଛୁ ଆଜ
କାଲି ତା ଦୁଃଖ କେବଳ,
ପାରିବୁ କି ରୋକ ତାକୁ କେତେବେଳେ
ଖଟାଇ ତୋ ବୁଦ୍ଧି ବଳ ।
ସୁଖ ଦୁଃଖ ଭାଇ ମାନସ ବିକାର
ଘାରୁଛି ସିନା ହୃଦୟ,
ସେ କଥା ବିଚାରି ବିଚାରି ନିୟତ
ମଣିଷ ହୁଏ ଅଥୟ ।
ଗରିବର ରଡ ଶୁଭେ ଘଡ଼ ଘଡ
ଚଉଦିଗେ ନିରନ୍ତର,
ନ ଶୁଣିଲୁ ପରି ରହୁଚୁ କପରି
ପଥର କରି ଅନ୍ତର ।
ଧନ ଥାଉ ଅବା ନଥାଉ ହାତରେ
ଜରା କାଳୀନ ତାଡ଼ନା,
ନିରତ ଜୀବନେ ମରଣୁ ଅଧିକ
କଲୁ କି କେବେ ଭାବନା ।
ନ ମେଲାଲେ ଆଖି ନ ପାରିବୁ ଦେଖି
ସବୁରି ଆୟୁ କପରି,
ଗ୍ରାସୁଅଛି ବସି କାଳ ଦିବାନିଶି
କାହାକୁ ଡରେ ନ ଡରି ।
ପେଟ ପେଟ ବୋଲି ଛଟପଟ ହୋଇ
ଘୂରୁଚନ୍ତି ଏଣେ ଲୋକେ,
ମୁହଁ ଦେଲୁ ମୋଡି କାହା ବୋଲେ ପଡ଼ି
ନଦେଇ କାହାକୁ ଟୋକେ ।
ନଶ୍ୱରତା ବ୍ୟାପି ରହିଛି ଜଗତ
ଦେଖୁଚୁ ତ ଅହରହ,
ପଙ୍କେ ପଶି ମୀନ ଧରିବା ପାଇଁକି
ବଳୁଛି କିପାଁ ଆଗ୍ରହ ।
ଭଣ୍ଡାର ପୂରାଇ ପଡିଲୁ ଭଣ୍ଡାଇ
ଫୁଲାଉ ଛାତି ଭୁଛାରେ,
ଆସିଲେ ତା ବେଳ ନ ପାରିବୁ ଜଗି
ଯିବ ଉଡି ତା ଇଚ୍ଛାରେ ।
ଥୟ ହୋଇ ଥରେ ବସି ଏକୁଟିଆ
ଭାବିଲୁ କି ତୁ କିଏସେ,
ଥିବୁ ଯେତେ ଦିନ ଏ ଧରଣୀ ତଳେ
ଚଳିବୁ କା ଉପଦେଶେ ।
ଘଡ଼ିକ ଭିତରେ ଚଉଦିଗ ବୁଲି
ନ ହେଉ ହାଲିଆ ତିଳେ,
ଭବର ଭଙ୍ଗୁର ଲୀଳା ଦେଖି ମଧ୍ୟ
ପଶିଲା କଳ୍ପନା ବଳେ ।

ଆଟୋପ ଦେଖାଇ ନ ଦେଉ ଭୁଲାଇ
ଛାଡ଼ିଲୁ ଧରମ ତତ୍ତ୍ୱ,
ଚାହିଁଲୁ କି ଲଭେ ଏ ଭବ ସାଗରୁ
ହେବୁ ପାରି କେଉଁପରି ।
ଅର୍ଥ ଲାଳସାରେ ମାତି କାହିଁ ବାଟେ
ପଣି ଆପଣା ସମ୍ମାନ,
ଦେଉଅଛୁ ବଳି ଦେଖାଇ ଧୃଷ୍ଟତା
ନ ବିଚାରି ଅପମାନ ।
ଯାହା ପାଇଁ ଏତେ ହୋଇ ଛଟପଟ
ଦିନ ସରେ ଭାଳି ଭାଳି,
ଛୁଟିକ ପଥର କରି ସେହି ମୁଖେ
ଦେଉଅଛୁ ବିଷ ଢାଳି ।
ପାଠୁଆ ବୋଲି ତୁ ମଣୁଚୁ ସିନାରେ
ନିଜକୁ ନ ଚିହ୍ନି ଲଭେ,
ଦେଖାଉ ଗରିମା ଟିକିକ କଥାରେ
ଜଡ଼ ସଦା ଅବାସ୍ତବେ ।
କାହିଁରେ ଆନନ୍ଦ ନାହିଁରେ ଜଗତେ
ଅନୁଭବ ଅନୁକ୍ଷଣେ,
ଆଶାରେ ଆଖି କି ରଖୁଚୁ ପକାଇ
ତାସୋରି ସବୁ ତକ୍ଷଣେ ।
ରଖି ମହାଯଶ ଦେଇ ମାଂସ ଖଣ୍ଡ
ଆପଣା ଦେହରୁ କାଟି,
କେତେ ଯେ ଗଲେଣି ରଥୀ ମହାରଥୀ
ପଡ଼ିଚି ଦେଖ ଏ ମାଟି ।
ତେଜ ସବୁ ଆଶା କାହାକୁ ଭରସା
କଲେ ତରିବୁ ସଂସାରୁ,
ମୋହ ପଙ୍କେ ପଡ଼ି ଦିନ ଗଲା ସରି
କେତେବେଳେ ନ ବୁଝୁରୁ ।
ଆସିବ ଯେବେଳେ ଅନ୍ତିମ ଡାକରା
ରହି ନ ପାରିବୁ କ୍ଷଣେ,
ମହାପଥ ମଧ୍ୟେ ଚାଲି ଚାଲି ଯିବୁ
ନଥିବ ସାହା ବି ଜଣେ ।
ଆକାଶେ ବିଜୁଳି ସାଗରେ ଲହରୀ
ପରାଏ ତୋର ଯୌବନ,
ତେଜି ଅଭିମାନ ପ୍ରଭୁ ନାମ ଗାଇ
ଯାଉ ଏ ତୋର ଜୀବନ ।
କିଏ କେତେ ଦିନ ରହିବ ସଂସାରେ
ନ ପଡ଼େ କାହାକୁ ଜଣା,
ଆପଣା ଭିତରେ କଳହ ଇଚ୍ଛାରେ
ଭୁଆଇ ହେଉଛୁ ବଣା ।
ବଇରି ବୋଲି ତୁ ମଣୁଛୁ ଯାହାକୁ
ନୁହଇ ସେ ତୋ ବଇରି.
ଦଳେ ରିପୁ ପରି ତୋ ଘଟେ ନିରତ
ବୁଲୁଚନ୍ତି ଘିରି ଘିରି ।
ମିଶି ପରସ୍ପର ଭିଆନ୍ତି କଳହ
ପଡ଼େ କି ତୋ ନୟନରେ,
ସେ ଗୁଡ଼ିକୁ ଧରି ରଖିଲେ ଆୟତ୍ତେ
ଯାପିବୁ କାଳ ସୁଖରେ ।
ଉତ୍ତାଳ ତରଙ୍ଗ ପରାଏ ଚପଳ
ହେଲେହେଁ ଧନ ପରାଣ,
ମୋହେ ହୋଇ ଅନ୍ଧ ହୁଡ଼ନ୍ତି ସନ୍ମାର୍ଗ
ଏ ଭବେ ମାନବଗଣ ।
କେତେ ଶକ୍ତିଶାଳୀ ହେଉଥିରେ ମନୀଷ
ଅନ୍ୟାୟରେ ହେଲେ ରତ,
ସମୟ ଚକରେ ଘୋରି ହୋଇ ଏଣେ
ହୁଅଇ ଧ୍ୱସ୍ତ ବିଧ୍ୱସ୍ତ ।
ମହତ ଗୁଣରେ ମୋହିତ କରିରେ
ମହାଜନେ ଏ ଦେଶର,
କରିଗଲେ ଯାହା ରାଜେ ଯୁଗେ ଯୁଗେ
ଅଛି କି ତା ପଟାନ୍ତର ।
ତ୍ୟାଗ ଛାଡ଼ି ଭୋଗ- ବିଳାସ-ବ୍ୟସନେ
ଯାଉଛୁ ସମସ୍ତ ବିତ୍ତ,
ଚିନ୍ତିବାକୁ ଲଭେ ଅବସର କାହିଁ
ଏ ମତ୍ତ ସଂସାର ସ୍ରୋତ ।
ଠକ ଠକ ବୋଲି ପଡ଼ୁଅଛି ହୁରି
ବାଜୁଛି କି ତୋର କାନେ ?
ପାରିବୁ କି ଏଡ଼ି ଉହ୍ନିଲେ ରେ ବେଢ଼ି
ଅନ୍ତକ ଡଗରମାନେ ।

ପଶୁରଆ ବୋଲି ନ କହିଲେ କେହି
ସାର୍ଥକ ହେବ ଜୀବନ,
କ୍ରୋଧ ବଶ ଲୋଭେ ବିହରିବୁ ସଦା
ଲୋଷ୍ଟ୍ରବତ ପରଧନ ।

ଷଣ୍ଢ ହୋଇ ସିନା ଘଡ଼ିକ ପାଇଁକି
ପ୍ରବେଶି ପାପ ପଙ୍କରେ,
ଧୂଆ ଧୋଇ ହୋଇ ସଦ୍‌ଗତି କାମନା
କରୁନାହୁଁ କିଆଁ ଥରେ ।

ଦ୍ୱାରପାଳ ହୋଇ ବିବେକ ଅନାଇଁ
ରହିଅଛି ନିରନ୍ତର,
ମାନିଲେ ତା ବୋଲ ପଶି ନ ପାରିବ
କେବେହେଁ ଅମିତ ତସ୍କର ।

ସାତ୍ତ୍ୱିକ ବଳରେ ବଳବାନ ହୋଇ
କରିବୁ ଯେବେ କରମ,
ଇହ ଲୋକେ ସୁଖ ପାଇବୁ ସନ୍ତତ
ସାର୍ଥକ ହେବ ଜନମ ।

ଅର୍ଥ ଦାସ ହୋଇ ଅନର୍ଥ ଭିଆଇ
ମାତିଛୁ ସିନା ଗରବେ,
ପାଖେଇ ଆସୁଚି ତୋ ଅନ୍ତିମ ବେଳ
ଜାଣି ପାରୁନାହୁଁ ଲବେ ।

ଅର୍ଥ ଲାଳସାରେ ବଶବର୍ତ୍ତୀ ହୋଇ
କୁକର୍ମ ରତ ସରବେ,
ଧର୍ମ ଉପାର୍ଜନ କରିବାକୁ କେବେ
ବଳାନ୍ତି ମନ କି ଲବେ ।

ଦୁର୍ଲ୍ଲଭ ଜୀବନ ବୃଥା କରୁଚୁ
ପାପ ଆଚରଣେ ସିନା,
ଲଭିବୁ କି ମୁକ୍ତି ଏ ଭବ ସାଗରୁ
ପରମେଶ-ଧ୍ୟାନ ବିନା ।

ଏ ଜଗତେ କେହି ନୁହେ ଚିରସ୍ଥାୟୀ
ଦେଖୁଛୁ ତ ଅହରହ,
ଆପଣା ହିତରେ ପର ଲାଳସାରେ
ଲାଗିଛୁ କିଆଁ କଳହ ?

ଆତ୍ମକୃତ କର୍ମ- ଫଳ ତୁ ଭୋଗିବୁ
ଇହ କି ପର-ଲୋକରେ,
ସବୁ ଜାଣି ଜାଣି କପଟ ଲୋଭେ ପଡ଼ି
ପଶୁଚୁ ପାପ-ପଙ୍କରେ ।

ଅର୍ଥ ସିନା ଭବେ ଭିଆଏ ଅନର୍ଥ
ଅର୍ଥରେ ବଶ ଜଗତ,
ଅର୍ଥ ଲାଗି ପୁଣି କୁତ୍ସିତ କରମ
କରନ୍ତି ଜନେ ନିରତ ।

ଅର୍ଥର କାରଣ ନୁହଇ ଧୀଶକ୍ତି
ଅବା ସୁଖ ହେତୁ ଧନ,
ମୂଢ଼େ ତା ନ ବୁଝି ଆଶାରେ ପ୍ରବେଶି
କରନ୍ତି କାଳ ଯାପନ ।

ଅତିକ୍ରମ କରି ପାରେ କି କିଏ ସେ
ମୃତ୍ୟୁକୁ ଏ ଭୂମଣ୍ଡଳେ,
କିଏ ଆଜ ପୁଣି କାଲି ବା କିଏ ସେ
ପଡ଼ୁଚି ତା'ର କବଳେ ।

ବ୍ୟସନରେ ମାତି ଧର୍ମଧ୍ୱଜ ପୂର୍ବେ
ଭୋଗିଲେ ଯାହା କଷଣ,
ହେଜନ୍ତୁ କି ବାରେ ଘଟିଥିଲା ଯାହା
ଗଢ଼ିବାକୁ ଆଚରଣ ।

ଆପଣା ବୁଦ୍ଧିକି ପ୍ରଶଂସା କରି ତୁ
ହିତକୁ ମଣୁ ଅହିତ,
ପ୍ରମାଦରେ ପଡ଼ି ପ୍ରମତ୍ତ ହେବାରୁ
ସତତ ହେଉ ନିନ୍ଦିତ ।

କାମ କ୍ରୋଧ ମୋହ- ଦ୍ୱେଷାଦିକୁ ଜିଣି
ଲଭିବୁ ସନ୍ତୋଷ ମର୍ମେ,
କାଳର ଗତିକୁ ଲକ୍ଷ୍ୟ କରି ସଦା
ଲାଗିବୁ କର୍ତ୍ତବ୍ୟ କର୍ମେ ।

ବିଷୟ-ମୋହରେ ବ୍ୟସ୍ତ ରହି ସଦା
ପାଉଛୁ ବିବିଧ ଦୁଃଖ,
ତହିଁରୁ ଅନ୍ତର ହେଲେ ସିନା ଭବେ
ଲଭିବୁ ପରମ ସୁଖ ।

ଆସକ୍ତିରୁ ଦୁଃଖ ଜନମି ନିରତ
ଦହୁଅଛି ଏ ଶରୀର,
ଅନିତ୍ୟ ବସ୍ତୁକୁ ନିତ୍ୟ ବୋଲି ମଣି
ହେଉଛୁ ଲୁଚ୍ଚା ଅସ୍ଥିର ।

ବୀଜ ବୁଣା ବସ୍ତୁ ନୁହଇ ଉତ୍ପତ୍ତି
ହେତୁ ରଖିଥିବୁ ସଦା,
କର୍ମ ଅନୁଯାୟୀ ଭୋଗିବୁ ତା ଫଳ
ନୋହିବ ଅନ୍ୟଥା କଦା ।
ଜନ୍ମ ହାର ଜନ ଦାସତ୍ୱ ଶୃଙ୍ଖଳେ
ଆବଦ୍ଧ ହୋଇ ଏ ଭବେ,
ଭୋଗୁଚନ୍ତି କ୍ଳେଶ ଅବିରତ ସିନା
ନ ବୁଝିବାରେ କାଏ ଲବେ ।
ଆପଣାର ଦୋଷ ଆଲୋଚନା କରି
ସଂଶୋଧିବୁ ଯେବେ ନିତ୍ୟ,
ହୃଦୟ ନିର୍ମଳ ହୋଇ କ୍ରମେ କ୍ରମେ
ଉପୁଜିବ ଅତି ପ୍ରୀତି ।
ଧର୍ମ ଈଶ୍ୱର ନକରେ ତ କେହି
ଜଡ଼ିତ ସ୍ୱାର୍ଥେ ଅନ୍ତର,
ଭାଇଠାରୁ ଭାଇ ଠକି ନେବା ଲାଗି
ହେଉଛି କେତେ ତତ୍ପର ।
ଐଶ୍ୱର୍ଯ୍ୟ ଅବା ପ୍ରଭୁତ୍ୱ କାହାର
ରହେ ନାହିଁ ଚିରଦିନ,
ଆସିଲେ ତା ବେଳ ଛପି ଛପି କାଳ
କରେ ତାକୁ ଧ୍ୱଂସନ ।
କଳଙ୍କିତ କରେ ଜୀବନକୁ ସିନା
ଶତ୍ରୁତା ଅବା କପଟ,
କାଳର ଚକ୍ରକୁ ନ ବୁଝି ମଣିଷ
ହେଉ ଅଛୁ ଛଟପଟ ।
ସଂସାର ପାଶଟି ଅତିଶୟ ଟାଣ
ଛିଣ୍ଡାଇବା କଷ୍ଟକର,
ସତ୍ୟକାମୀ ହୋଇ କର୍ତ୍ତବ୍ୟ ପଥରେ
ଚାଲିଥିବୁ ନିରନ୍ତର ।
ଅଜ୍ଞାନତାର ମୋହେ ବଶ ହୋଇ
ସୃଷ୍ଟି ଚକ୍ରେ ନିରନ୍ତର,
ଦେଖି ହେଉଅଛୁ ମଣିଷ ସଂସାରେ
ସହି ଦୁଃଖ ଘୋରତର ।
ମରଣ କାହାକୁ ନକରେ ଅପେକ୍ଷା
କେତେବେଳେ ଏ ସଂସାରେ,
କେଉଁ ବାଟେ ଆସି କେଉଁ ବାଟେ ଯାଏ
କେ ତାକୁ ଦେଖି ନପାରେ ।
ଅସତ୍ୟକୁ ତେଜ ସତ୍ୟକୁ ଆଶ୍ରୟ
କରିଥାଏ ଯେଉଁ ଜନ,
ପରମ ଆନନ୍ଦ ଉପୁଜଇ ହୃଦେ
ସାର୍ଥକ ତାଇ ଜୀବନ ।
ଲୋଭାସକ୍ତ ହୋଇ ଏ ଭବେ ମଣିଷ
ବୁଝଇ ଉଦ୍‌ବେଗ-ସିନା
ନ ଲଭଇ କେହି ଧନ ଅବା ମାନ
ଦୈବ ଅନୁକୂଳ ବିନା ।
ଆତ୍ମ ସୁଖ ଲାଗି ସନ୍ତାନଙ୍କୁ ଛାଡି
ମଣିଷ ଅର୍ଥ ପଛେ,
ଧାଇଁ ଧାଇଁ ଶେଷ ପାଗଳ ପରାଏ
ପଶଇ ଅଣ ବାଟରେ ।
ହୃଦ ସରୋବରେ ଫୁଟି ତାମରସ
ହେଉ ଶିବ ଉପହାର,
ଷଟ୍‌ପଦ ଦଳ ହଂସ ଗାନ ସେବା ହେଉ
ଜୀବନର ଗଳହାର ।

***

## ପଞ୍ଚାୟତ ନିର୍ବାଚନ

କୋକିଳା ରେ, ଯାଇଥିଲୁ କେଉଁଦୂର ଦେଶେ,
ଆଇଲୁ ବରଷେ ପରେ କାହାର ଆଦେଶେ ।
କୁହୁ କୁହୁ ସ୍ୱର ତୋର ପଡ଼ଇ ଉଦାସେ,
ଶୁଣି ଧାଇଁଲେଣି ପିଲେ ଗାଁ ବାଡ଼ ଆଡ଼େ ।
ଆମ୍ଭ ବଉଳବା ଦେଖି ଆଇଲୁ କି ଧାଇଁ,
ଅବା ବାର୍ତ୍ତା ନେବାପାଇଁ ପଠାଇଲେ ସାଇଁ ।
ଟାଳିଛୁ ଯା ଗ୍ରାମେ ଗ୍ରାମେ ଶୁଣିଲୁ କି ବାରେ ।
ହୋଇଚନ୍ତି ଠୁଳ ରୋଗୀ ପଣ୍ଡାବାରେ ।
ପଞ୍ଚାୟତ ନିର୍ବାଚନ ଚାଲିଛି ପ୍ରଚାର,
ଦେଖାଉଛି ବଳକଳ ଏଣେ ସେ ଯାହାର ।
ନିଜ ନିଜ ଗୋଷ୍ଠୀ ଏବେ ପଡ଼ୁଛି ପଦାରେ,
ମତଦାତା ଆଶ୍ରୟ କଲେ ଜିତିବା ଆଶାରେ ।

ଆତ୍ମୀୟମାନଙ୍କ ମଧ୍ୟେ ଲାଗିଚି ଲଢେଇ,
କହି ବୁଲୁଛନ୍ତି ଦେଖ ଯେ ଯାହା ବଡ଼ାଇ ।
ଅର୍ଥ ସ୍ୱାର୍ଥ ଲାଗି କେହି ହେଉଛନ୍ତି ଠକ,
ଭୋଟ ମାଗି ଗଲାବେଳେ ଦେଉଛନ୍ତି ଟାଙ୍କି ।
ମେମ୍ବର ପଦକୁ ଆହା ! ବଡ ବୋଲି ମଣି,
ସାହି ସାହି ଗ୍ରାମେ ଗ୍ରାମେ ଲାଗେ ଟଣାଟଣି ।
ଯାଇଚି ଏକତା ଲିଭି ଜନହିତ ଧ୍ୱନି,
ଶୁଭୁଅଛି ଚଉଦିଗେ କମ୍ପାଇ ଅବନୀ ।
ମିଥ୍ୟାର ଆଶ୍ରୟ କରି କଚେରି ଦୁଆରେ,
ହେଉଛନ୍ତି ଛୁଡା ଦେଖ ଭଦ୍ର ପରିବାରେ ।
ହେଲେଣି ଏକାଠି ଯେତେ ପ୍ରବଞ୍ଚନା ପଟୁ,
ଲାଗିଲା ପ୍ରଚୁର ଘୋର ଏ ପଟୁ ସେ ପଟୁ ।
ନ ମାନେ ନିଦ କାହାକୁ ରାତି ସାରା ବୁଲି,
ନିଏ ଟୋକେ ପିଇ ଦେଇ ଚାଲେ ଝୁଲି ଝୁଲି ।
ପ୍ରବର୍ତ୍ତାନ୍ତି ଭୋଟରଙ୍କୁ ଯେ ଯାହା ଫିକରେ,
ଚଡ଼ନ୍ତି କେତେକ ଶେଷେ ଅର୍ଥ କବଳରେ ।
ସଜ ଦେଖି ଉଜିବନ୍ତ ମାରୁଚି ପୁଲାଏ,
ଜୟ ହେଲେ ମୋଦଭରେ ନିଶକୁ ଫୁଲାଏ ।
କରୁଛନ୍ତି କଥାବାର୍ତ୍ତା କେହି ବା ହାତରେ,
ଧନ୍ୟ ଧନ୍ୟ ଗଣତନ୍ତ୍ର ଏ ସଭ୍ୟ ଦେଶରେ ।
ପଦେ ପଦେ ହୁଡୁଚନ୍ତି ପ୍ରଚାରକଗଣ,
ଏହି ପରା କ୍ଷମତାର ବିକେନ୍ଦ୍ର କରଣ ।
ଆଭ୍ୟନ୍ତର ଚିହ୍ନ ଆଜ ମିଶିଚି ଧୂଳିରେ,
ଉଭେଇ ଯାଇଚି ଶାନ୍ତି ଗାଁ ଗହଳରେ ।
ଅମାତ-ଅଶାନ୍ତଙ୍କର ମିଶିବାରୁ ହାତ,
ଅହରହ ନିଶାହର ବୁକେ କସେ ନାତ ।
ଜୀବନର ବାସ୍ତବତା ନ ବୁଝି ମାନବେ,
ପକାନ୍ତି ଅଙ୍କିକ ସଦା କ୍ଷମତା ବିଭବେ ।

—**—

## ନଦୀ

ପର୍ବତ କନ୍ଦରୁ ତଟମଟିଏ ଲେ
କଳ କଳ ନାଦ କରି,
ଆସୁଅଛି ବହି ତରଙ୍ଗର ହୋଇ
ପଥର ଗୁଡ଼ିଏ ଧରି ।
ବାଟେ ଭେଟି ଭେଟି · କେତେ ଗଛ ଲଟି
ଦେହେ ବୋଳି ମାଟି ଗୋଡ଼,
ସଳଖେ ନ ଚାଲି ଧାଇଁଚି ପ୍ରସରି
ବାରମ୍ବାର ମୁହଁ ମୋଡ଼ ।
ବାଟେ ବାଟେ ପଲ୍ଲୀ- ପଥକ ଦର୍ଶନେ
ପାଦ ଧୋଉଅଛି ଧୋଇ,
ପଡ଼େ ଯା ହାବୁଡ଼େ ତାର ଗତି ପଥେ
ପୁଲକେ ନିଏ ତା ବୋହି ।
କାହା ସଙ୍ଗେ ସେହି ଅଚିହ୍ନା ନୁହଇ
ସବୁରି ଜୀବନ ଧନ,
ବାଟଯାକ ସେବି ଅବଶେଷେ ଯାଇ
ଲଭେ ସାଗରେ ମିଳନ ।
କରେ ଜଳ-ଦାନ ଅମୃତ ସମାନ
ପାଇ ତା ଖୁସି ସକଳେ,
ଜଗତେ ତା ପରି ପର ଉପକାରୀ
କେ ଦେଖେ କି କେତେବେଳେ ।
ବର୍ଷିଲେ ଅତି ଫାଟେ ତାର ଛାତି
କିଆରିମାନ ବାରିରେ,
ବୁଡ଼ଯାଏ ସିନା ହୁଅଇ ତା ସୁନା
ଅଜାଡ଼ ପଟୁ ତହିଁରେ ।

—**—

## ଧନୀ

କହ ଧନୀ, ଯେତେବେଳେ ପଡ଼ିଲୁ ମେଦିନୀ ତଳେ
ଥିଲା କି କିଛି ତୋ କରେ ଅବା ଅଣ୍ଟାରେ,
ଆସିଲୁ ଲଙ୍ଗଳା ହୋଇ କଲା ମାଆ ଧୂଆଧୋଇ
ତଦନ୍ତେ ଦେଲେ ଶୁଆଇ ଅତି ଯତ୍ନରେ
କୁଆଁ କୁଆଁ ହୋଇ କାନ୍ଦିଲୁ
କ୍ଷୀର ଟୋକେ ପିଇବାରୁ ତୁନି ହୋଇଲୁ ।
ମୁଣ୍ଡକୁ ପାଇଲା ହାତ ପରବୁକେ ଦେଲୁ ଲାତ
ଆଚରି ସଦା ଅସତ ଅର୍ଜିଲୁ ଧନ,
ହାତରେ ହେଲା ପଇସା ତଥାପି ବଢ଼ିଲା ଆଶା
ନ ଛୁଟିଲା ଧନ ନିଶା, ମନ ପବନ
ହେଲା ଅବିରତ ଅସ୍ଥିର
ଧନ ଗର୍ବେ ବାହାରେ ଉଦ୍ଧତ ଗିର ।

# ସୂର୍ଯ୍ୟ

ବସ୍ତ ଦେବ ବୋଲି ପଡ଼ଲଣି ହୁରି
ନଳମା ଉତ୍ତ ସଙ୍ଗରେ,
ପକ୍ଷୀଏ ଗଗନେ ହୁଳହୁଳି ଛଳେ
କୁଜଲେ ପୁଲକଭରେ ।
ପୂରୁବ ଆକାଶ ନାଲି ଟହ ଟହ
ହଉଚିଲଣି କ୍ରମେ କ୍ରମେ,
ଏ ଖବର ପାଇ ମୋଦଭରେ ଗୁଞ୍ଜି
ମଧୁପ କାସାରେ ଭ୍ରମେ ।

କାହୁଁ ଆସି ବାଆ ବନ୍ଧ ଅନ୍ତରୀକ୍ଷ
ଧୂଳିରେ ଦେଲା ଘୋଡାଇ,
ସଙ୍ଗେ ସଙ୍ଗେ ଆସି ସାରଦ ରବିଙ୍କି
ରଖିଲା କୋଳ ମେଲାଇ ।
ଦଣ୍ଡକରେ ଆଜି ଦଣ୍ଡକେ ଲିଭାଇ
ଦେଲା ସେଉଁ ଚନ୍ଦ୍ରକର,
ରେ ଚଗଲା ମନ ରହୁ ତୋର ଲୟ
ତାଙ୍କ ପଦେ ନିରନ୍ତର ।

***



# ବର୍ତ୍ତମାନ

ସୁନାର ଭାରତ ଏହି ସାକ୍ଷୀ ଇତିହାସ,
କରୁଅଛି କାଳ ଏବେ ତାକୁ ଉପହାସ ।
ଦିନୁଦିନ ବଢୁଅଛି ମନର ବିକାର,
ଶୁଭୁଅଛି ଦରିଦ୍ରର କରୁଣ ଚିତ୍କାର ।
ମୁଣ୍ଡ ଗୁଞ୍ଜିବାକୁ କାହିଁ ନାହିଁ ଥାନ ହାତେ,
ମନୋବଳ ଭାଙ୍ଗିଯାଏ ଅନ୍ୟାୟର ଘାତେ ।
ହା, ଅନ୍ନ, ହା, ଅନ୍ନ ବୋଲି କେହି ଛାଡ଼େ ରଡ଼ି,
ଜଳାଭାବୁଁ କାର ଏଣେ ହଂସା ଯାଏ ଉଡ଼ି ।
କନା ଖଣ୍ଡେ ଅଣ୍ଟା ଲାଗି କିଏ ବା ଆତୁର,
ଶାସନରେ ବସି କିଏ କରୁଅଛି ଜୁର ।
ଅନାହାର ବଢ଼ିବାରୁ ତୁଟିଛି ବିଶ୍ୱାସ,
ଏଥିଲାଗି ମନେ ସଦା ଉପୁଜଇ ହାସ ।
ଗାଁ ଦଳାଦଳି ପୁଣି ହେଲାଣି ଉତ୍କଟ,
ଦରବାରେ ଧାଇଁ ଧାଇଁ ଲୋକେ ଛଟପଟ ।
ବର୍ଷ ବର୍ଷ ଧରି ଦାବୀ ନ ତୁଟେ କାହାର,
ତେଣୁ ତାର ଖୋଜେ ବାଟ ଅନ୍ୟାୟ ଆହାର ।
ସତ୍ତ୍ୱଗୁଣ ହୃଦୟରୁ ପାଇଲାଣି ଲୋପ,
ଚୋରମାନେ ଦେଖି ତମୋଗୁଣର ପ୍ରକୋପ ।
ଉତ୍କୋଚ ବଢ଼ିଲା ଯାର ଜଣା ହେଲା ତାର,
ଗଣତନ୍ତ୍ର ଶାସନରେ ଏ ନ୍ୟାୟ ବେଭାର ।

ଗୃକରଠୁଁ ମ୍ବାନ ଭାଇ ସାଧାରଣ ଲୋକେ,
ମନ୍ତ୍ରୀ ଖାଲି ତୁଣ୍ଡେ ମାରି ଶୋଉଛନ୍ତି ଭୋକେ ।
ହଜାର ହଜାର ପାଇ ହାକିମମାନଙ୍କର,
ଟଙ୍କା ତଳେ ବସି ବସି କଟାନ୍ତି ବାସର ।
ଅନୁରୂପ କରାଣିଏ ଆଚରଣ କରି,
ସାନନ୍ଦେ ଫେରନ୍ତି ଘରେ ବାବୁ ମନ ଧରି ।
ବେତନକୁ ବୁଝି କିଏ କଲା କେତେ କାମ,
ତଦାରଖ କରିବାକୁ ନାହାନ୍ତି ହାକିମ ।
ଶାସ୍ତ୍ର ଜ୍ଞାନ ନ ଅଛି ପାଠୁଆ ବୋଲାଇ,
ଶାସନକୁ ଆକ୍ରୁଡନ୍ତି ସେଥି ବାଟ ପାଇ ।
କରୁଅଛି ବଂଶଗୃର ସମାଜେ ରାଜତ୍ୱ,
ଦିନୁଦିନ ହ୍ରାସ ତେଣୁ ଏ ଦେଶ ମହତ୍ତ୍ୱ ।
ଗ୍ରାସିଅଛି ମଣିଷକୁ ବିଷୟ ବାସନା,
ତେଣୁ ମନେ ଖେଳୁଅଛି ଅସାର କଳ୍ପନା ।
ନିଜ ନିଜ ମନୋରଥ ଚରିତାର୍ଥ ପାଇଁ,
ହରାନ୍ତି ବିବେକ ଜନେ ତୃଷ୍ଣା ପଛେ ଧାଇଁ ।
ଏ ଦେଶରେ ହରିଶ୍ଚନ୍ଦ୍ର ଶିବି ଉପାଖ୍ୟାନ ।
ଶୁଣି ପଢି ଶାସକର ନ ଉପୁଜେ ଜ୍ଞାନ ॥
ବର୍ଜନ ଧର୍ମ କେତେ ମୂଢ଼ତାବଶରେ ।
ଚରିବ ସଂହାର କରି ଲିପ୍ତ ଦୁଷ୍କର୍ମରେ ।

ନିଜ ଅଭ୍ୟୁଦୟ ଲାଗି ପରିବେକ୍ର ଯାନ,
ହୋଇଅଛି ମଣିଷର ଏକମାତ୍ର ଧ୍ୟାନ ।
ଅଜ୍ଞାନ-ଜନିତ ଫଳ ଏତ ଦୁନିଆଁର,
ତେଣୁ ସଦା ପଡ଼ୁଅଛି ଚିହ୍ନ ହାହାକାର ।
ବୃଥା ଆସ୍ଫାଳନ ସିନା ଶୁଭେ ନିରନ୍ତର,
ଦୁର୍ମତି ବାରଣେ କାହୁଁ କେ ନୁହେଁ ତତ୍ପର ।
ସ୍ୱମସ୍ତଙ୍କ ଚରାଭୂଇଁ ହୋଇଛି ଏ ଦେଶ,
ତେଣୁ ତା ସନ୍ତାନ ଆଜ ପାଉଅଛି କ୍ଳେଶ ।
ମେଘ ପରି ନାନା ବେଶ ପକାଇ ମାନବ,
ଆପଣା ମର୍ଯ୍ୟାଦା ଏବେ କରୁଛି ଲାଘବ ।
ସର୍ବଗ୍ରାସୀ କାଳ ଆଖି ଆଗରେ ନାଚୁଛି,
ଭାଗ୍ୟର ପ୍ରଭାବେ କିଏ ଉଠୁଛି ପଡ଼ୁଛି ।
ଟାଣୋର ନଦିଅ ମନୁଁ ଏହା ଦେଖି ନିତି,
ଆପଣା ବଢାଇ କାହିଁ ସ୍ୱାର୍ଥେ କିଆଁ ପ୍ରୀତି ।
ଜୀବନର ସୁଖ ଦୁଃଖ ହୁଅ ଭାଗୀଦାର,
ଅନ୍ୟ ସଙ୍ଗେ ତେଣୁ ହେବ ଧର୍ମ ସଞ୍ଚାର ।
ମିତ୍ରରୂପେ ଶତ୍ରୁ କେତେ ଅଛନ୍ତି ଜଗତେ,
ନଜାଣି ପ୍ରକୃତ ତାଙ୍କ ଯିବନି ପରତେ ।
ଦିନ ଥିଲା ଯେତେବେଳେ ରହି ଗୁରୁ ଘରେ,
ଏ ଦେଶର ପିଲାମାନେ ଆନନ୍ଦ ମନରେ ।
କରୁଥିଲେ ଶିକ୍ଷା ଲାଭ ଗୁରୁସେବା କରି,
ଯାହାର ମହତ୍ତ୍ୱ ଥିଲା ଯୁଗ ଯୁଗ ଧରି ।
ସେ ଶିକ୍ଷା ବିଲୀନ ଆଜ ବିସ୍ମୃତି-ଗରଭେ,
ପାଶ୍ଚାତ୍ୟ ଦୃଷ୍ଟି ଭଙ୍ଗିରେ ମାତନ୍ତି ସରବେ ।
ବଦଳିଛି ଚିନ୍ତାଧାରା ଗ୍ରାସିଅଛି ମୋହ,
ନଡରେ କେ କରିବାକୁ ଗୁରୁସଙ୍ଗେ ଦ୍ରୋହ ।
ଦେଖାନ୍ତି ବଡ ପଣିଆ ସ୍ୱାର୍ଥେ ହୋଇ ବଶ,
ଭ୍ରୂକ୍ଷେପ ନଥାଏ କା'ର ଲଭି ଅପଯଶ ।
କଷଟିରେ କଷିବାକୁ ନାହାନ୍ତି କଷୀଆ,
ଏ ସବୁ ଦେଖିଲେ ଭାଇ, ଲାଗୁଛି ଘୃଣିଆଁ ।
ସେ ହୁଏ ବଇରି ସଦା ଯେ ପାଏଁ କୁଶଳ,
ବିପରୀତ କଥା ଦେଖ ଉଦାସନ ଖଳ ।
ଲାଗିଅଛି ସିନା ତନ୍ତ୍ର ଏ ଆସନ ଲାଗି,
ଲୋକର କଲ୍ୟାଣ ପାଇଁ କିଏ ଅନୁରାଗୀ ।

ଜାଲକୁ ବିସ୍ତାରି କରି ବସିଛି ବଞ୍ଚକ,
ସାଧୁଙ୍କ ନାଆଁ ଶୁଣିଲେ ସଦା ଠକ ଠକ ।
ସେ ଜାଲେ ମଜୁଛି ଯେହୁ ସର୍ବନାଶ ତାର,
ଫିଟିବାକୁ ସେ ଜାଲରୁ କଠିନ ବେଭାର ।
ପାପ ପୁଣ୍ୟ ବିଚାରକୁ ଦଳିଚି ପଦରେ,
ଦୁରାଶାର ଅନୁବର୍ତ୍ତୀ ସମ୍ପଦ ମୋହରେ ।
ଲଣ୍ଡଭଣ୍ଡ ପଣେ କେହି ତା ସଙ୍ଗେ ସମାନ,
ନୁହଇ ଯେହେତୁ କରେ ବିସର୍ଜନ ମାନ ।
ଅର୍ଥ ପଦେ ଅହରହ ନୁଆଁଇଛି ମୁଣ୍ଡ,
ଅନୃତ ଭାଷଣେ ପୁଣି ବ୍ୟସ୍ତ ତାର ତୁଣ୍ଡ ।
ଦିବାନିଶି ଶୁଭୁଅଛି ଚଉଦିଗେ ରଡ଼ି,
କାଟୁଛନ୍ତି ଚଣ୍ଡି କେତେ ଅର୍ଥ ଲୋଭେ ପଡ଼ି ।
ପରିଣାମେ ଗଢ଼ୁଅଛି ଯେଉଁ ଲୁହଧାର,
କରିଡ଼ିବ ଦିନେ ସେହି ନଥିବ ନିସ୍ତାର ।
ଅର୍ଥ କଣ୍ଠା ପଡ଼ିଅଛି ନ୍ୟାୟ ସରଣୀରେ,
ଏଣୁ ଦାନ ହିନ୍ନସନ୍ନ ଆଜ ଧରଣୀରେ ।
ସବୁଠାରୁ ବଳି ଅର୍ଥ, ପରଧର୍ମ ତୋର,
ସାଧୁ ଏ କରନ୍ତି ତେଣୁ ଦୂରୁ ନମସ୍କାର ।
ଦସ୍ୟୁ ରତ୍ନାକର କଥା ଶୁଣିଥିବ ଭାଇ,
ନିଜର ଦୁଷ୍କର୍ମ ଲାଗି କେ ଭାଗୀ ନୁହଇ ।
ସତ୍ୟ କହି ତୁଷ୍ଟ ହୁଅ ଜୀବନେ ସର୍ବଥା,
ଗୁରୁଜନ ମନେ କେବେ ଦିଅ ନାହିଁ ବ୍ୟଥା ।
ଆଳସ୍ୟ ବରଜି ନିଜ କର୍ମେ ଦିଅ ମନ,
ଖଳର ବଚନ ସଦା କରିବ ବର୍ଜନ ।
ଅନ୍ତରାତ୍ମା ସାକ୍ଷୀ ତୋର କରିବା କର୍ମରେ,
ନ ପାପ ସମ୍ପୃ ବୃଥା ବିତଣ୍ଡା ତର୍କରେ ।
ଅବଶ୍ୟମ୍ଭାବୀ ମରଣ ଧାଇଁଛି ପଛରେ,
ମାଡ଼ିବସି ଗିଳିଦେବ କେଉଁ ମୁହୂର୍ତ୍ତରେ ।
ସେବେ ପୁଣ କଳନାଦ ପାଶେ ଡାକେ ଆଇ,
ତା ହାତୁଡ଼ୁ କିଏ ହେଲେ ନପାରେ ଫିଟାଇ ।
ଆଶା ବିବର୍ଜିତ ହେଲେ ଶାନ୍ତି ଥାଏ ମନେ,
ତେଣୁ ମନୀଷ ଲଭଇ ସୁନିଦ୍ରା ଶୟନେ ।
ମରଣ ଆଶ୍ରିତ ଜନ୍ମ ରଖି ଏହା ମନେ,
କରିଯାଅ ପୁଣ୍ୟ କର୍ମ ସଦା ଏ ଭୁବନେ ।

ନ ଜାଣି ପାରେ କେହ୍ବ କାଳର ଗତି,
ତେଣୁ କ୍ବଳାବ ଭବେ ସୁପଥେ ହିତ ।

—✻✻—

## ଅନ୍ତିମ

ଅଜଣା ବାଇଜେ ଫେରିଯିବ ଯେବେ
ଅଣ୍ଟାରେ ନ ଥିବ ପଇସାଟିଏ,
ଭିଡ଼ି ଥିବ ବାଳ ଫୁରୁ ଫୁରୁ ହୋଇ
ମୁଣ୍ଡରେ ନଥିବ ତେଲ ଟିକିଏ ।
କଏ ବା କାନ୍ଦିବ ହସିବ ବା କଏ
ତୁଳନା କରି ମୋ କାର୍ଯ୍ୟ ନିକର,
ଜାଣି ପାରିବନି ଭଲ ମନ୍ଦ କିଛି
ପସରା ଫାଟିବ ଯେବେତ ବୃନ୍ତର ।
ପୁଣ୍ୟ ଅବା ପାପ ଅଛି ଥିବ ଯା
ହସାଇ କନ୍ଦାଇ ସାରା ଜୀବନେ,
ନ କହାଇ ଅନ୍ତର ହୃଦୟୁ କନ୍ଦରୁ
ଲୁଚି ରହିଥିବ ଅତି ଗୋପନେ ।
କଳ୍ପନା ପ୍ରାସାଦ ତୋଳିଲି ଯା ବସି
ସବୁ ହେଲ ଚୂନା କାଳ ପ୍ରଭାବେ,
ଘଟଣା ଚକ୍ରରେ ଦେଉ ଦିନ ଗତି
ଦେଖି ହେଉଅଛୁ ଜୀବନ ଅଭାବେ ।

—✻✻—

## ଈଶ୍ବର ଚିନ୍ତା

ଖଟି ଦିନ ସାରା ମାଟି କାଢ଼ି କାଢ଼ି
ପେଟକୁ ନ ମିଳେ ଜାଉ,
ଧମକ ଦେଖାଇ ଚମକାଇ ଦେଲେ
ସମ୍ଭବ କ ଦେଶ ଆଉ ?
ମିଛ ସତ ଗାଇ ଲୋକଙ୍କୁ ଭୁଲାଇ
ହଲାଉଚ ହାତ ସିନା,
କଲି କ ହିସାବ ସତ ଚିନ୍ତା କେତେ
ଏବେଣ ଦାନାକନା ବିନା ।
ଗଛେ ଫୁଲମାନ ବଗି ବେଳେ ଶୋଭା
ସଭାରେ ନାହିଁ ତା ମୂଲ,
ଗଛରୁ ଝଡ଼ିଲେ ଦଶ୍ବରେ କଏ ସେ
ଅତି ସୁବାସିତ ଫୁଲ ।
ପୁଚ୍ଛିବ କିଏତ ମିଶିବ ମାଟିରେ
ନପଡ଼ି ଆଖିରେ କା'ର,
କ୍ଷମତାକୁ ଡର ନ ଫିଟାଇ ପାଟି
କରୁଚ ଦୁହୁଁ ଜୁହାର ।

—✻✻—



# ର ଘୁ ବଂ ଶ

## ପ୍ରଥମ ସର୍ଗ

ଦିଲୀପ ନାମରେ ପୂର୍ବେ ରଘୁବଂଶେ
ମହାଯଶା ନରପତି,
ନୀତିପରିପୂର୍ଣ୍ଣ ହୋଇ ଶାସ୍ତ୍ରମତେ
ଶାସୁଥିଲେ ଏ ଧରଣୀ ।
ଆଗ ଚକ ଗାରେ ପଛ ଚକ ଯଥା
ଘୁରଇ ସଦା ଅନୁସରି,
ମନୁ କୃତାଧ୍ୱର ପଦ୍ଧତି ପାଳନ୍ତି
ଲଙ୍ଘନ ତଥା ନ କରି ।
ନେଇ ନିୟନ୍ତ୍ରର ପ୍ରଜାଙ୍କ ଠାରୁ
ଧର୍ମମତେ ରାଜକର,
କରୁଥିଲେ ଦାନ ସେମାନଙ୍କ ହିତେ
ଶୂନ୍ୟ କରି ଗନ୍ଧାଧର ।
ସାଧୁ ଉପାୟରେ ସମ୍ପଦ ନିକର
କରି ସଦା ଉପାର୍ଜ୍ଜନ,
ଆସକ୍ତିରହିତ ହୋଇ ସାଧୁଥିଲେ
ଧର୍ମ୍ମ କର୍ମ୍ମ ସେ ରାଜନ ।
ଦେଖାଉ ନଥିଲେ ନିଜର ବଡ଼ାଇ
କ୍ଷମାଗୁଣେ ଥିଲେ ବଳୀ,
ଧରାଧାମେ ତାଙ୍କ ସର୍ବ ବିଦ୍ୟା ଜ୍ଞାନ
ପାରୁ କେ ନଥିଲେ କଳି ।
ଥିଲେହେଁ ନୃପର ବହୁ ରାଣୀ ଏଣେ
ରାଜନେମା ମଗଧଜା,
ସରଳା ସୁଶୀଳା ସାଧ୍ୱୀ ସୁଦକ୍ଷିଣା
ପ୍ରିୟତମା ରାଜାଙ୍କର ।
ବହୁବର୍ଷ ଧରି ସନ୍ତାନ ଜନମ
ନୋହିବାରୁ ଜାୟାପତି,
ପୁତ୍ର ଲଭି ଆଶେ ବାହାରିଲେ ଦୁହେଁ
ପ୍ରଭୁପଦେ ଦେଇ ମତି ।
ରାଜ୍ୟଭାର ମନ୍ତ୍ରୀ- ହସ୍ତେ ସମରପି
ନିଷ୍ଠାରେ ହୋଇ ବତନ,
ଗଲାବେଳେ ବେନି କମ୍ପିଲା କାନନ
ରଥର ଘର୍ଘର ସ୍ୱନେ ।
ବାଟେ ବାଟେ କେକା କେକୀଙ୍କର ଧ୍ୱନି
ହେଉଥିଲା ସୁଖକର,
ଏଣେଣ ଅଶ୍ୱଖୁରର ସମୁତ୍ଥିତ ଧୂଳି
ଘୋଡାଇ ଦେଲା ଅମ୍ବର ।
ବନପକ୍ଷୀଙ୍କର ଶୁଭୁଥିଲା ନାଦ
ଅବ୍ୟକ୍ତ ମଧୁର ସ୍ୱନ,

ପଥଶ୍ରମକ୍ଳାନ୍ତ ହରୁଥିଲା ଧୀରେ
କୋମଳ ମଧୁ ପବନ ।
ଅଭ୍ୟର୍ଥନା ଲାଗି ଗ୍ରୀବା ଟେକ ଟେକ
ପଥେ କୁରଙ୍ଗନିକର,
ହେଲେ ଉତ୍ସ ଅବା ରଥଧ୍ୱନି ଶୁଣି
ମାନସେ ନଥିଲି ଡର ।
କମଳ ବନରୁ ମୃଦୁବାତ ବହି
ଦେଉଥିଲା ବାସ,
ହେଉଥିଲେ ଖୁସି ଲଭି ବେନି ବାଟେ
ବଡ଼ୁ ବପ୍ରଙ୍କ ଆଶିଷ ।
ମାର୍ଗେ ଆଖିରଙ୍କୁ ପଚାରି ପଚାରି
ବନ ତରୁଲତା ନାମ,
ପୁଲକିତ ମନେ ସେ ରାଜଦମ୍ପତି
ଗମୁଥିଲେ ଅବିରାମ ।
ଦିଲୀପ ରାଜନ ମହର୍ଷୀଙ୍କ ପଥେ
ନାନା ମନୋହର ଛବି,
ଦେଖାଇ ଦେଖାଇ ପଥଶ୍ରମକ୍ଳାନ୍ତି
ନ ପାରିଲେ ଅନୁଭବି ।
ହବା ଅବସାନେ ଦୁହେଁ ତପୋବନେ
ପ୍ରବେଶିଲେ ହରଷରେ,
ଯହିଁ ପଶୁଥିଲେ କୁଶକାଠଫଳ
ଧରି ତପସ୍ୱୀ ଏ ଘରେ ।
ସୁନ୍ଦର ବରଣ କୃଷ୍ଣସାରପନ୍ତି
ଆଦରେ ହୋଇ ପାଳିତ,
ସୀମନ୍ତିନୀଙ୍କର ସନ୍ତାନ ପରାଏ
ଉଟଜ ଦ୍ୱାରେ ଶାୟିତ ।
ଶ୍ରମେ ସମ୍ପ୍ରାପ୍ତ ନିବାର ଧାନରେ
ବ୍ୟାପ୍ତ କୁଟୀର ପ୍ରାଙ୍ଗଣ,
କୁରଙ୍ଗନିକର ଯହିଁ କରୁଥିଲେ
ସୁଖେ ଚର୍ବିତ ଚର୍ବଣ ।
ହୋମାଗ୍ନି ସୂଚକ ଆହୁତିର ଧୂମ
ଗନ୍ଧ ଥିଲା ମନୋହର,
ମନକୁ ପବିତ୍ର କରୁଥିଲା ତାହା
ଆଗତ ଅତିଥିଙ୍କର ।

ଜାୟାସହ ଭୂପ ହୋଇ ଉପସ୍ଥିତ
ରଥୁଁ ଆଗେ ଅବତରି,
ଦେଲେ ଉତୁରାଇ ସେ ପୁଣ୍ୟାଶ୍ରମରେ
ମହର୍ଷୀଙ୍କ ହାତ ଧରି ।
ଶିଷ୍ଟାଚାର ପରେ ତାପସନିକର
ନେଲେ ତାଙ୍କୁ ସମାଦରେ,
ଯହିଁ ବସିଥିଲେ ବଶିଷ୍ଠ ମୁନୀନ୍ଦ୍ର
ସ୍ୱାହା ସହ ମୋଦଭରେ ।
ମହାଦେଈ ସହ ନରମଣି ଯାଇ
କଲେ ପଦେ ପ୍ରଣତି,
ଗୁରୁ ଗୁରୁପତ୍ନୀ ଆଶୀର୍ବାଦ କରି
ସଙ୍ଖୋଳି ନେଲେ ଝଟତି ।
ତହୁଁ ଋଷିବର ହିତାହିତ କଥା
ପୁଚ୍ଛିଲେ ନିଜ ରାଜ୍ୟର,
"ତୁମ୍ଭ ପ୍ରସାଦରୁ ମଙ୍ଗଳ ବୋଲି ସେ
ଉତ୍ତରିଲେ ନରବର ।
ସକଳ ବିଷୟ ମଙ୍ଗଳ ହେଲେ ହେଁ
ନ ଦେଖି ସୁତ ବଦନ,
ମୋର ଅନ୍ତେ ପିଣ୍ଡ ଲୁପ୍ତ ହେବ ବୋଲି
କରୁଛି ସଦା ଚିନ୍ତନ ।
ଯାଗ କର୍ମ କରି ସୁକୃତ ଅର୍ଜି
ଅପୁର୍ବିକ ହେଲା ଭବେ,
ଢାଣ୍ଟି ହେଉଅଛି ମନ ଅହରହ
ଶାନ୍ତ ଲାଗୁନାହିଁ ଲବେ ।
ମୁକ୍ତିର ଉପାୟ କର ଦୟା ବହି
ଯେଣୁ ମୁଁ ତବ ଆଶ୍ରିତ,
ମିହିର କୁଳର ନୋହୁ ପିଣ୍ଡ ଲୋପ
କର ପିତୃଗଣେ ପ୍ରୀତ" ।
ମୁଦ୍ରିତ ନୟନେ ସ୍ଥିର ହୋଇ କ୍ଷଣେ
କହିଲେ ଯତି ପୁଙ୍ଗବ,
"ମୋର ସନ୍ତାନଙ୍କ ଆରାଧନା ବିନା
ନୋହିବ ତନୟ ତବ ।
ଏହି ଅଭିଶାପ ଦେଇଥିଲେ ପୂର୍ବେ
ସୁରଧେନୁ ରୋଷଭରେ,

କରିଥିଲ ଯେଣୁ    ହେଯ୍ୟ ତାଙ୍କୁ ଦିନେ
ଶୋଇଥିବା ସମୟରେ"।
ଧନ ଥିଲେ ମାନ    ନ ବଢଇ କା'ର
ନ ଜାଣେ କିଏ ଯୁ! ଭବେ,
ଆପଣାର ତମ    ଦେଖାଇ ହେବାକୁ
ଇଚ୍ଛନ୍ତି ସଦା ସରବେ।
"ପୂଜନୀୟ ପ୍ରତି    ପୂଜା ବ୍ୟତିକ୍ରମ
ହେଲେ ନୁହଇ ମଙ୍ଗଳ,
କରେ ସିନା ସଦା    ଇଷ୍ଟ କାର୍ଯ୍ୟ ନାଶ
ପୁଣି ସକଳ କୁଶଳ।
ଉପୁଜୁଛି ବିଘ୍ନ    ପୁତ୍ର ଲାଭ ପଥେ
ସୁରଭିଙ୍କ ଅପମାନେ,
ପ୍ରତିନିଧି କରି    ନନ୍ଦିନୀଙ୍କି ସେବ
ରହ ତାଙ୍କ ସନ୍ନିଧାନେ।
ନନ୍ଦିନୀ ସନ୍ତୋଷେ    ତବ ମନୋରଥ
ଅବଶ୍ୟ ହେବ ପୂରଣ",
କହୁ କହୁ ଏହା    କାମଧେନୁ ସୁତା
ବନୁ କଲେ ଆଗମନ।
ଅଭିଷିକ୍ତ କରି    ଧରା ଦୁଗ୍ଧଧାରେ
କରନ୍ତେ ଏଥି ପ୍ରବେଶ,
ହୋଇ ପୁଲକିତ    ଭକତି ଅନ୍ତରେ
ପୂଜିଲେ ତାଙ୍କୁ ନରେଶ।
ଧନ୍ୟରେ ସଂସାର    ସମ୍ପଦ କାନନ ତୁ
ପାଶୋରୁ ମନୁଁ ଭକତି,
କେତେ ଦେବଦେବୀ    କରୁଥାଉ ପୂଜା
ଟଳିଲେ ସିନା ବିପତ୍ତି।
ବିଦ୍ୟାର୍ଥୀ ଯେସନ    ବିଦ୍ୟାକୁ ନିବିଷ୍ଟ
ଚିତ୍ତେ କରନ୍ତି ସାଧନ,
ଗାଈଙ୍କୁ ତେସନ    ସେବ ବୋଲି ସଦା
କହିଲେ ସେ ତପୋଧନ।
"ଯିବାବେଳେ    ଉଠି ବେଳେ ଉଠି
ବସିବା କାଳରେ ବସି,
ସେବା କରି ବେନି    ଜନ ଏହି ରୂପେ
ଶୁଦ୍ଧ ମନେ ହସି ହସି।

ସଞ୍ଜ ଚରି ବୁଲି    ଆସିବା ସମୟେ
ପାଛଗୁଟି ଆଣିବ ଯାଇ,
ଭକତ ଅନ୍ତରେ    ତୁଷ୍ଟ ହେବାଯାଏଁ
ରହ ଏକନିଷ୍ଠ ହୋଇ"।
ପୁତ୍ର ଲାଭ ଆଶା    ଦେଇ ଉଭୟଙ୍କୁ
ଆଶୀର୍ବାଦ କରି ମୁନି,
"ହେଉ ବିଘ୍ନ ଦୂର    ତବ ପିତା ପରି
ବୋଲି ହୋଇଲେ ସେ ତୁନି"।
ଗୁରୁ ଗୁରୁପତ୍ନୀ    ପଦେ ହୃଷ୍ଟ ମନେ
ନିବେଶି ଦୁହେଁ ହୃଦୟ,
କୁଟୀର କୋଳରେ    ନାନା ଆଳାପରେ
ଯାପିଲେ ନିଶି ସମୟ।
ପୁଅ ପାଇଁ ସତେ    ଛଟପଟ କେତେ
ହେଉଛି ମହୀଶ ନିତ,
ଉପୁଜଇ ଚିନ୍ତ    ମନେ ଆଜ କାଲି
ଦେଖିଣ ପୁଅଙ୍କ ଖତ।

—**—

## ଦ୍ୱିତୀୟ ସର୍ଗ

ବିଭାବରୀ ଅନ୍ତେ    ଉଠି ଉଷାକାଳେ
ଶୁଣି ବେଦ ଧ୍ୱନି ବେନି,
ଗନ୍ଧ ପୁଷ୍ପେ ପୂଜା    କରି ମୁନି ଧେନୁ
ବନମୁଖେ ଗଲେ ଘେନି।
ଧୂଳିପୂର୍ଣ୍ଣ ପଥେ    ଯାଉଁ ଯାଉଁ ପଛେ
ପତିବ୍ରତା ମହାଦେଈ,
ଅଯୋଧ୍ୟା ନରେଶ    ଦେଲେ ତାଙ୍କୁ ଘରେ
ଅଧବାଟୁଁ ଲେଉଟାଇ।
ନନ୍ଦିନୀ ସେବାରେ    ଏକାନ୍ତ ମନରେ
ନିଯୁକ୍ତ ହୋଇ ରାଜନ,
ବ୍ରତ ରକ୍ଷା ଲାଗି    ଧେନୁ ସଙ୍ଗେ ସଙ୍ଗେ
ଭ୍ରମିଲେ କାନନ ବନ।
ସୁକୋମଳ ତୃଣ    ଖୁଆଇ ଖୁଆଇ
କରାଇ ସକଳ ପାନ।

ଗଲେ ଗଜ ଗଜ ଲତା ତଳେ ତଳେ
କରି ଏକମାତ୍ର ଧ୍ୟାନ,
ତାଙ୍କୁ ଅନୁସରି ଯାଉଥିଲେ ଭୂପ
କେତେବେଳେ ଲଇଁ ଲଇଁ,
କେବେ ବା ସଳଖେ କେବେ ବକ୍ର ଗତି
କରି ହୋଇ ଧଇଁ ସଇଁ ।
ଏସବେ ରଜନ କରନ୍ତେ ବିହାର
ପକ୍ଷୀଏ ତରୁ ଡାଳରେ,
ମୃଦୁରବ ଛଳେ ଜୟଧ୍ୱନି ମୋଦେ
ଉଚ୍ଚାରିଲେ ତତ୍କାଳରେ ।
ମନ୍ଦ ପବନରେ ଆନ୍ଦୋଳିତ ହୋଇ
କାନନ ଲତାନିଚୟ,
ନରେଶ୍ୱର ଶିରେ ଅଜାଡ଼ିଲେ ଧୀରେ
ବୃନ୍ତରୁ କୁସୁମଚୟ ।
ଦଳ ଦଳ ହୋଇ ଗ୍ରୀବା ଟେକି ଟେକି
ହରିଣ ହରିଣୀଗଣ,
ଚାହିଁ ରହୁଥିଲେ ଯଶସ୍ୱୀ ନୃପଙ୍କୁ
ଲଭି ମୃଦୁ ସମୀରଣ ।
ଠାବେ ଠାବେ ବନେ ସୁଲୁସୁଲୁ ବାଆ
ପୂରୁଣା ବାଉଁଶେ ପଶି,
କରୁଥିଲା ସ୍ୱନ କୋକିଳ ପରାଏ
ରସାଳ ଡାଳରେ ବସି ।
ଶୁଣି ଶୁଣି ତାହା ମଣୁଥିଲେ ଭୂପ
ଦେବଦେବୀମାନେ ଆସି,
ଲତା ଆଡୁ ଆଡେ ରହି ତାହାଙ୍କର
ଗାଉଛନ୍ତି ଯଶରାଶି ।
ସରସୀରେ ପଶି କାହିଁବା ବରାହ
ଲୋଟୁଥିଲେ କର୍ଦ୍ଦମରେ,
ଫୁଲାଇ ଫୁଲାଇ କଣ୍ଠ କାହିଁ କେକୀ
ଗାବୁଥିଲା ମୋଦଭରେ ।
ପାଦପ ବିରଳ ତୃଣ ପ୍ରାଙ୍ଗଣରେ
ଏଣୀକୁଳ ଧୀରେ ଧୀରେ,
ଚରୁ ଚରୁ କେବେ ଦେଉଥାନ୍ତି ଚାହିଁ
ହର୍ଷେ ବୃକ୍ଷ ବୃହାଁଣୀରେ ।

ଫେରିଲେ ମାଡ଼କୁ ଦଳ ଦଳ ପକ୍ଷୀ
ବନଶେଷେ ଉଡ଼ି ଉଡ଼ି,
ଧେନୁସହ ଭ୍ରମି ଭ୍ରମି ବନ ସାରା
ଆସିଲେ ନୃପ ବାହୁଡ଼ି ।
ଟିବାବେଳୁଁ ରାଣୀ ପଥ ଚାହିଁ ଚାହିଁ
ଥିଲେ ମହା ଉତ୍ସୁକରେ,
ଫେରିବାର ଦେଖି ପ୍ରଦକ୍ଷିଣ କରି
ପୂଜିଲେ ହରଷଭରେ ।
କ୍ଷୀର ଦୋହନାନ୍ତେ ଶୁଅନ୍ତେ ନନ୍ଦିନୀ
ପ୍ରୀତ ହୋଇ ସେ ଦମ୍ପତି,
ସାନ୍ଧ୍ୟକୃତ୍ୟ ଅନ୍ତେ ତାହାଙ୍କ ସେବାରେ
ହର୍ଷେ ବଳାଇଲେ ମତି ।
ପୂଜା ସାମଗ୍ରିସ୍ତ ଥୋଇ ନିକଟରେ
ପୂଜାକଲେ ଦୀପ ଜାଳି,
ପ୍ରଣମି ତାହାଙ୍କି ପିନ୍ଧାଇଲେ ଗଳେ
ଆଣି କର୍ପୂରେ ମାଳ ।
ବିଂଶତି ଦିବସ ହୁଅନ୍ତେ ଅତୀତ
ନିରଜନା କରି କରି,
ମନ ଜାଣିବାକୁ ବୁଲିଲା ନନ୍ଦିନୀ
ଏଣେ ତେଣେ ଚରି ଚରି ।
ଅଲକ୍ଷିତ ଭାବେ ପଶୁ ପଶୁ ଧେନୁ
ହିମାଳୟ ଗହ୍ୱରରେ,
ଲଟିରୁ ବାହାରି ସିଂହଟିଏ ତାଙ୍କୁ
ଆକ୍ରମିଲା କ୍ରୋଧଭରେ ।
ଚକିତେ ନରେନ୍ଦ୍ର ଦେଖିଲେ ହସ୍ୱନ୍ଦ୍ର
ଗାଭୀପୃଷ୍ଠେ ବସିବାର,
ନପାରିଲେ କାଢ଼ି ତୂଣୀରୁ ସାୟକ
ଟାଣିଲେହେଁ ବାରବାର ।
ତାହାଙ୍କ ଆଗରେ ଓଟାରୁଛି ସିଂହ
ଭୂତଭାବେ ତାଙ୍କୁ ଧରି,
ତଥାପି ଅକ୍ଷମ ହେଲେ ନରବର
ବନ୍ଧିବାକୁ ସେ କେଶରୀ ।
ତହୁଁ ସେ ମୃଗେନ୍ଦ୍ର ମନୁଷ୍ୟ ଭାଷାରେ
କହିଲା ଭୂପେ ଏସନ,

"ବୃଥା ଶ୍ରମ କର      ମାଡଛ କପାଇଁ
ସବୁ ହେବ ଅକାରଣ ।
ଭାବ ଦେଖ ଟିର      ଟଳିବ କି ଗାରେ
ବାତ୍ୟାଘାତେ ତରୁମୂଳ,
ଶଶାକ ବଧିବ      ହାତୀକୁ ଅଥବା
ମୃଗେନ୍ଦ୍ରକୁ ମୃଗକୁଳ ।
ଶୂଳପାଣିଙ୍କର      ଜଗୁଆଳ ହୋଇ
ରହିଅଛି ଏ କାନନେ,
ଉପବାସେ ଅଛି      ହେବ ପରିତୃପ୍ତ
ଏ ଧେନୁ ଶୋଣିତ ପାନେ ।
ନାମ କୁମ୍ଭୋଦର      ଜାଣ ମହାବୀର
ରୁଦ୍ରଙ୍କ ଅଟେ କିଙ୍କର,
ପାରେ କି ମୁ ଛୁଟି      ହାବୁଡେ ପଡ଼ିଛି
କହ ଆହେ ନରବର ?"
ବୁଝିଲେ ରାଜେନ୍ଦ୍ର      ଶିବଙ୍କ ପ୍ରସାଦେ
ନିଜ ଅସ୍ତ୍ର ପ୍ରତିହତ,
ଯାଚିଥିଲେ ତେଣୁ      ମୁନି ଧେନୁ ଛାଡ଼
ପିଇବାକୁ ସ୍ୱରକତ ।
ଶୁଣି ତା କେଶରୀ      ତହୁଁ ସିଂହହାସ୍ୟେ
କହନ୍ତି ପୁଣି ଏସନ,
ଛାର ଗାଈ ଲାଗି      ଏ ସୁନ୍ଦର ଗାତ୍ର
କରିବ କପାଁ ବର୍ଜନ ?
ପ୍ରଜାହିତ ଲାଗି      ରାଜାର ଜନମ
ଜାଣିଥିବ ନରପତି,
ତାରିବ ପ୍ରଜାଙ୍କୁ      ସ୍ୱରାଜେ ଥାଇ
ଖଣ୍ଡିବ ତାଙ୍କ ବିପତ୍ତି ।"
ଏକାଳେ ନନ୍ଦିନୀ      ଚାହାଁନ୍ତେ ଅଧୀରେ
ଫେରାଇ ଫେରାଇ ମୁଖ,
ବିକଳେ ରାଜନ      କହିଲେ ହରକ
ଅନୁଭବ ଅତି ଦୁଃଖ ।
'କିଫଳ ବା ହେବ      ଏ ରାଜ ଭୋଗରେ
କଳଙ୍କିତ ହେଲେ ଭବେ,
କହୁଛ କପର      ମହାଜ୍ଞାନୀ ହୋଇ
ପାରୁନାହିଁ ବୁଝି ଲବେ ।'

ଆତୁର କଥାଏ      ଶୁଣ ପଶୁରାଜ
କହୁଛି ହୋଇ ବିନୟୀ,
ଜନମି ଧରାରେ      କୋଟି କୋଟି ଜୀବ
ଭଜନ୍ତି ମୃତ ବଲୟ ।
ମରଣ ଭୟରେ      ଯଶ ନାଶ କଲେ
କି ବୋଲିବେ ମୋତେ ଜନେ,
ଅବଶ୍ୟ ନଶ୍ୱର      ଏ ଶରୀର ଅବା
ଆସିବ କି ପ୍ରୟୋଜନେ ?
ଘଟିଛି ବନ୍ଧୁତ୍ୱ      ଦଇବବଶରୁ
ବନେ ଆମ୍ଭ ଦୁହିଁଙ୍କର,
ତେଣୁ ହେ ମୃଗେନ୍ଦ୍ର      ବନ୍ଧୁର ପ୍ରାର୍ଥନା
ବିଫଳ କେବେ ନକର ।"
'ହେଉ ତେବେ' ବୋଲି      ବୋଲନ୍ତେ କେଶରୀ
ଖେଳିଲା ହସ ବଦନେ
କାର୍ଯ୍ୟମୁକ୍ତ ହୋଇ      ଚାହିଁଲା ବେଳକୁ
କେଶରୀ ନଥିଲା ବନେ ।
ନନ୍ଦିନୀ ଏକାକୀ      ରହି ସେହିଠାରେ
କହିଲେ ଭୂପେ ସ୍ନେହରେ,
"ପରଖୁଥିଲି ମୁଁ      ତବ ସେବାଭକ୍ତି
ମାୟାକରି ଏ ରୂପରେ ।
ଦୁଗ୍ଧଦାତ୍ରୀ ବୋଲି      ନ ଭାବ ମୋଠାରୁ
ମାଗିନିଅ ଏବେ ବର,
ମୋ ପ୍ରତି ସୁଦୟା      ପୁଣି ସେବାଭକ୍ତି
ମୋହିଛି ମନ ମୋହର ।"
ଏ ବଚନ ଶୁଣି      ମାଗିଲେ ଏ ବର
ଚିରଯଶା ଏକ ସୁତ,
'ସୁଦକ୍ଷିଣା ଗର୍ଭେ      ଜାତ ହୋଇ କରୁ
ଅଯୋଧ୍ୟା ମହୀକୁ ପୂତ ।'
ପ୍ରସନ୍ନେ 'ତଥାସ୍ତୁ'      ବୋଲି ବର ଦେଇ
ଆସିଲେ ଆଶ୍ରମେ ଫେରି,
ପଛେ ପଛେ ତାଙ୍କ      ଅଯୋଧ୍ୟା ନରେଶ
ଆସିଲେ ନକରି ଡେରି ।
ମୁଖେ ହସ ହସ      ଦେଖି ନରେଶଙ୍କ
ସୁଦକ୍ଷିଣା ମନେ ମନେ,

ସିଦ୍ଧ ମନୋରଥ ହୋଇଅଛି ବୋଲି
ଭାବ ମଣିଲେ ରାଜନେ ।
ତହୁଁ ନରପତି ସକଳ ବୃତ୍ତାନ୍ତ
ଆନନ୍ଦେ ଗଦ୍‌ଗଦ ହୋଇ,
ପାଟ ମହିଷୀଙ୍କି ବର୍ଣ୍ଣିଲେ ତକ୍ଷଣେ
ତନେ ଅନ୍ତଃସ୍ଥ ଥୋଇ ।
ସାନ୍ଧ୍ୟବିଧି ସାରି ତହୁଁ ନରେଶ୍ୱର
ଚାଳାନ୍ତେ ବସ୍ତ୍ରତସ୍କର,
ହୋମବିଧି ଶେଷେ ବଶିଷ୍ଠ ଆଦେଶେ
ପିଇଲେ ନନ୍ଦିନୀ କ୍ଷୀର ।
ମହାମନା ମୁନି ପରଦିନ ପ୍ରାତେ
ଗୋସେବା ବ୍ରତ କରାଇ,
ଆଶୀର୍ବାଦ ଦେଇ ଆପଣା ନଗରେ
ବେନିଙ୍କୁ ଦେଲେ ପଠାଇ ।
ପୂଜା କରି ବେନି ଗୁରୁ ଗୁରୁଦେବୀ
ପୁଣି ସବତ୍ସା ଧେନୁକୁ,
ବିଦା ମାଗି ତାଙ୍କୁ ଲେଉଟିଲେ ହର୍ଷେ
ଆପଣା ରାଜଧାନୀକୁ ।
ବିବିଧ ଆଲୋକେ ପଥ ଅତିକ୍ରମି
ପହଞ୍ଚିଲେ ସ୍ୱନଗରେ ।
ମନ ଦୁଃଖେ ଥିବା ପରଜାଙ୍କ ବହୁ
ପାରେଚ୍ଛି ନେଲେ ସାଦରେ ।

—**—

## ତୃତୀୟ ସର୍ଗ

ଗର୍ଭ ଧରିବାରୁ ପାଟ ମହାଦେଇ
ପୁରବାସୀ ପୁଲକିତ,
ଦିଲୀପଙ୍କ ମୁଖେ ଉଲ୍ଲାସ ଜ୍ୟୋତ୍ସ୍ନା
ଖେଳିଲା ଅନବରତ ।
କୃଶ ହୋଇ ତନୁ ଦିଶିଲା ପାଣ୍ଡୁର
ମହିଷୀଙ୍କ ଚନ୍ଦ୍ରାନନ,
ଅରୁଚି ହେବାରୁ ମାଟି ଆସ୍ୱାଦନ
ପାଇଁ ବଳାଇଲେ ମନ ।

ଏଣେ ନରପତି କହନ୍ତି ସଖୀଙ୍କି
"ଯହିଁରେ ତାହାଙ୍କ ମନ,
ଦେବର ଦେବର ଆଣି ଦେଉଥିବ
ସରଯାଉ ଯେତେ ଧନ ।
ପ୍ରେୟସୀଙ୍କ ପ୍ରତି ଗାଢ଼ ଅନୁରାଗ
ରଖି ସେହି ନରପତି,
ରକ୍ଷା ଦିବା ଲାଗି ବ୍ରାହ୍ମଣ ଦରିଦ୍ରେ
ବାଣ୍ଟିଲେ ବହୁ ସମ୍ପତ୍ତି ।
ମରମେ ମରମେ ଦେଉଅଛି ବାଧା
ଗର୍ଭଭାର ଦିନୁଦିନ,
ସମ୍ଭାଳି ନ ଅନ୍ତି ଲଜପାଇ ଅବା
ତନୁ କ୍ରମେ କ୍ରମେ କ୍ଷୀଣ ।
ଆସନ୍ନ ପ୍ରସବା ପାଟ ମହାଦେଇ
ଦିଶିଲେ ରୁଚିରତର,
ନୃପତି ଆଦେଶେ ଦାସୀଏ ସଜାଡି
ରଖିଲେ ସୂତିକା ଘର ।
ପ୍ରସବିଲେ ସୁତ ଭାଗ୍ୟବତୀ ରାଣୀ
ସର୍ବ ଶୁଭ ମୁହୂର୍ତ୍ତରେ,
ଏହି ମଧୁମୟ ବାରତା ଶ୍ରବଣେ
ନରେନ୍ଦ୍ର ଆସିଲେ ଖରେ ।
ବନ୍ଧୁଙ୍କ ଦର୍ଶନେ ଜଳନିଧି ଜଳ-
ରାଶି ଉଚ୍ଛୁଳଇ ଯଥା,
ପୁତ୍ରମୁଖ ଦେଖି ଉଚ୍ଛୁଳିଲା ହୃଦୁଁ
ଆନନ୍ଦ-ଲହରୀ ତଥା ।
ସୁତ ଜନ୍ମଲଗି ବିବିଧ ଆମୋଦ
ହେଲା ରାଜ୍ୟେ ଅନୁଷ୍ଠିତ,
ପୁଣି ସୁମଧୁର ମଙ୍ଗଳ ବାଦ୍ୟରେ
ମେଦିନୀ ହେଲା କମ୍ପିତ ।
ରମ୍ଭା ବିଳାସିନୀ ସୁରୁଚି ହାସିନୀ
ନର୍ତ୍ତକୀ ଗଣିକାଚୟ,
ଅଙ୍ଗଭଙ୍ଗୀ କରି ଗୀତ ଗାଇ ଗାଇ
ରସାଇ ଦେଲେ ହୃଦୟ,
ରଘୁନାମ ଦେଇ ପୁଅକୁ ବଶିଷ୍ଠ
ବନ୍ଧୁ ଆସି ଆନନ୍ଦରେ ।

କହିଲେ ନୋହିବ ଏହାଙ୍କ ସରି କେ
ଜଗତେ ତିନି ଭୁବନରେ ।
ସେ ଦମ୍ପତି ସଦା ଲଭନ୍ତି ଆହ୍ଲାଦ
ପୁତ୍ର ମୁଖ ଚାହିଁ ଚାହିଁ,
ଚାଲି ଶିଖିବାରୁ ଡାକନ୍ତେ ଆସନ୍ତି
ଡଗ ଡଗ ହୋଇ ଧାଇଁ ।
ସୁଖ ଦୁଃଖ ଭାଇ ଲୁଚକାଳି ଖେଳ
ଦେଖୁଛି ନିରତ ଭବେ,
ସୁଖେ ପୁଲକିତ ଦୁଃଖେ ପରିତାପ
ନକରିବ ଏଣୁ ଲବେ ।
କେତେ ବ୍ରତ କରି ପାଇଛନ୍ତି ପୁତ୍ର
ଆହା କେତେ ଯାତନାରେ,
ପୂର୍ବ କଥାକୁ ପାସୋରି ଦେଲେଣି
ଦୁହେଁ ଭବିଷ୍ୟ ଆଶାରେ ।
ଯଉବନ ଯୋଗେ ନବକାନ୍ତି ବହି
ପାରଗ ସବୁ ବିଦ୍ୟାରେ,
ହେବାରୁ ରାଜନ ତାଙ୍କ ପରିଣୟ
ସମ୍ପନ୍ନ କଲେ ଶ୍ରଦ୍ଧାରେ ।
ଯୁବରାଜ ପଦେ ଅଭିଷିକ୍ତ କରି
ଦେଲେ ରାଜ୍ୟର ଶାସନ,
ଅନେଶ୍ୱତ ବାର ଅଶ୍ୱମେଧ ଯାଗ
କଲେ ଭୂପ ସମାପନ ।
ଶତସଂଖ୍ୟା ଯାଗ ପୂରିବା ମାନସେ
ବଳାଶ୍ୱ ରଘୁ ସଂଗରେ,
ଛାଡ଼ିଲେ ଦିଲୀପ ଯାଜ୍ଞିକ ଘୋଟକ
ପ୍ରଣମି ହରିଷଭରେ ।
ସେ ପୂତ ଅଶ୍ୱକୁ ନେଉଛନ୍ତି ହରି
ବଜ୍ରୀ ଆସି ଖରତରେ,
ଏ ଅଦ୍ଭୁତ ଦୃଶ୍ୟ ଦେଖି ନୃପସୁତ
ଅନାଇଲେ ବିସ୍ମୟରେ ।
ଏ କାଳେ ନନ୍ଦିନୀ ସ୍ୱେଚ୍ଛାକ୍ରମେ ଆସି
ଦେଲେ ତାଙ୍କୁ ଦରଶନ,
ତାହାଙ୍କ ଇଙ୍ଗିତେ ପବିତ୍ର ମୂତ୍ରରେ
ନେତ୍ର କଲେ ପ୍ରକ୍ଷାଳନ ।

ସେ ଅଶ୍ୱ ଚୋରକୁ ଦେବରାଜ ବୋଲି
ରଘୁବୀର ତାଙ୍କୁ କଳି,
ଗଗନ କମ୍ପାଇ କହନ୍ତି ଗମ୍ଭୀରେ
ଚାହୁଁ ଚକ୍ଷୁ ମେଲି ମେଲି ।
ହେ ଦେବେନ୍ଦ୍ର କିପାଁ ଘଟାଉଛ ବାଧା
ମୋ ପିତାଙ୍କ ଧର୍ମ କର୍ମେ,
ତୁମ୍ଭପରି ମାନ୍ୟ ଲୋକର ଏ କାର୍ଯ୍ୟ
ବ୍ୟଥା ଲାଗେ ମର୍ମେ ମର୍ମେ ।
ଯାଗର ପ୍ରଧାନ ଅଙ୍ଗ ଏ ଅଶ୍ୱଟି
ଛାଡ଼ିଦିଅ ସୁରପତି,
ସନ୍ମାର୍ଗ ଦର୍ଶକ ହୋଇ ନୀଚକର୍ମେ
ବଳାଉଛ ତୁଚ୍ଛା ମତି ।
ରଘୁଙ୍କ ପ୍ରଗଳଭ ଗିର ଶୁଣି ଶକ୍ର
ଉତ୍ତରିଲେ ତାଙ୍କୁ ଧୀରେ,
'ଶତକ୍ରତୁ' ବୋଲି ଜାଣିଛନ୍ତି ମୋତେ
ସକଳ ଏ ମେଦିନୀରେ ।
ଏହି ଆଖ୍ୟା ମୋର ଦେବାକୁ ଲୋପାଇ
ଇଚ୍ଛନ୍ତି ଜନକ ତବ,
କିନ୍ତୁ ମୋ ପ୍ରସିଦ୍ଧି- ବିଲୋପ ସାଧନ
ନ ହେବ କେବେ ସମ୍ଭବ ।”
ଘୋଟକ ରକ୍ଷକ ରଘୁ ଉତ୍ତରିଲେ
ଉଚ୍ଚେ ମେଘମନ୍ଦ୍ର ନାଦେ,
ଉପହାସ କରି ତ୍ରିଦିବନାଥଙ୍କୁ
'ପଣନାହିଁ ଏ ବିବାଦେ ।'
“ରଘୁକୁ ନଜିଣି ଯିବ କି ପଳାଇ
ଅଭିଳାଷ ପୂର୍ଣ୍ଣ କରି ?
ନକରି ବିଳମ୍ବ ଖରତା ବରଜି
ଆସ ଶରାସନ ଧରି ।”
ଏହା କହି ରଘୁ ଊର୍ଦ୍ଧ୍ୱମୁଖ କରି
ଶର ଥୋଇ ଶରାସନେ,
ମହା ପ୍ରଭାବରେ ହେଲେ ଅବସ୍ଥିତ
ଚାହିଁ ସହସ୍ର ଲୋଚନେ ।
ଦୁହିଁଙ୍କ ମଧ୍ୟରେ ବହୁ କାଳ ଧରି
ଲାଗିଲା ଯୁଦ୍ଧ ଭୀଷଣ,

ରହିଲେ ଅନାଇ ଭୂତଳେ ସୈନିକ
ଅନ୍ତରୀକ୍ଷେ ସିଦ୍ଧଗଣ,
ଅଦ୍ଭୁତ ବୀରତ୍ୱ ଦେଖି ସୁନାସୀର
ରଘୁଙ୍କର ଏକାଳରେ ।
"ପ୍ରସନ୍ନ ହେଲି ମୁଁ" ମାଗ ବର ବୋଲି
କହିଲେ ଉଲ୍ଲାସଭରେ,
ନରେନ୍ଦ୍ର ନନ୍ଦନ ଦେବେନ୍ଦ୍ର ବଚନେ
ଶର ପୂରାଇ ତୂଣୀରେ,
ହେ ଶକ୍ର ! ଅଶ୍ୱକୁ ଛାଡ଼ିଦିଅ ବୋଲି
ନିବେଦିଲେ ମୃଦୁଗିରେ ।
"ଯାଅ ଅଶ୍ୱ ଛାଡ଼ି ଯାହା ଅଭିରୁଚି
ଇଚ୍ଛାମତେ ମାଗ ବର",
ବୋଲି କହିବାରୁ ଦିଲୀପ ନନ୍ଦନ
ବୋଇଲେ ତହିଁ ସତ୍ୱର ।
"ଅଶ୍ୱ ଫେରିବାକୁ ନଥିଲେ ହୃଦୟେ
ଜନକ ଯଜ୍ଞ ସଦନେ,
ଯାଗ ଶେଷ ଆଶେ ହୋଇଛନ୍ତି ଦୀକ୍ଷା
ପଠାନ୍ତୁ ଦୂତ ତକ୍ଷଣେ ।
ଏ ସକଳ କଥା କରିବାକୁ ଜଣା
କରି ସେଥିର ବିଧାନ,
ମୋର ମନୋରଥ ପୂରିବ ପୁନଶ୍ଚ
ବଢ଼ିବ ମୋର ସମ୍ମାନ ।
ପ୍ରତିଶ୍ରୁତ ହୋଇ ରଘୁଙ୍କ କଥାରେ
ବାହୁଡ଼ିଲେ ଶଚୀପତି,
ରଘୁ ନ ଯାଉଣୁ ଦୂତ ଏ ସନ୍ଦେଶ
ଜଣାଇଥିଲା ଝଟତି ।
ତନୟ ପ୍ରବେଶ ଦରଶନେ ପିତା
ଆଉଁଷି ତାହାଙ୍କୁ ଧୀରେ,
ପୁଲକିତ ମନେ ଆଲିଙ୍ଗନ କରି
ପ୍ରଶଂସିଲେ ମିଷ୍ଟ ଗିରେ ।
ବୀତସ୍ପୃହ ହୋଇ ବିଷୟ ଭୋଗରେ
ସୁତଙ୍କୁ ସିଂହାସନରେ,
ବସାଇ ଦିଲୀପ ସୁଦକ୍ଷିଣା ସହ
ଆଶ୍ରିଲେ ତପୋବନରେ ।

---

## ଚତୁର୍ଥ ସର୍ଗ

ଗୁପ୍ତ ଶତ୍ରୁଙ୍କର ହୃଦେ ଈର୍ଷାନଳ
କୁହୁଳୁଥିଲା ଭିତରେ,
ତପସ୍ୟା ନିମିତ୍ତ ଯିବାରୁ ଦିଲୀପ
ଜଳିଲା ତାହା ପ୍ରଖରେ ।
ରଘୁଙ୍କ ସ୍ୱରୂପ ନିଭାଇଲା ତାକୁ
କଳେ ବଳେ କଉଶଳେ,
ଗଜେନ୍ଦ୍ର ଗତିରେ ହେଲେ ସୁଶୋଭିତ
ଅପୂର୍ବ ପ୍ରଭାମଣ୍ଡଳେ ।
ନବ ବାରିବାହ ଦର୍ଶନେ କୃଷକେ
ହୁଅନ୍ତି ଆନନ୍ଦ ଯେହ୍ନେ,
ଅଯୋଧ୍ୟାବାସୀଏ ବୀରେନ୍ଦ୍ର ରଘୁଙ୍କୁ
ଦେଖି ସିଂହାସନେ ତେହ୍ନେ ।
ନବ ଗୁଣଯୁକ୍ତ ହୋଇ ନବ ନୃପ
ରାଜାନାମ ସାର୍ଥ କରି,
ଶାସିଲେ ଧରଣୀ ନ୍ୟାୟ ଅନୁଯାୟୀ
ନବ ନିୟମକୁ ଧରି ।
ନାନା କଉଶଳେ ଯେତେ ବିଶୃଙ୍ଖଳ
ଥିଲା କରି ଦୂରୀଭୂତ,
ନିରୁଦ୍‌ବେଗ ମନେ ଶାସନ କରନ୍ତି
ସାହସେ ଦିଲୀପସୁତ ।
ସମଭାବେ ଦଣ୍ଡ ସମ ଦୋଷୀଜନେ
ଦେଇ ଦିଲୀପ ନନ୍ଦନ,
ଶତ୍ରୁ ଅବା ମିତ୍ର ନ ବିଚାରି ହୃଦେ
କଲେ ଖ୍ୟାତ ଅରଜନ ।
ସୁନିର୍ମଳ ଯଶ ତାହାଙ୍କର କ୍ରମେ
ବ୍ୟାପ୍ତ ହୋଇ ଭୂମଣ୍ଡଳେ,
ସ୍ୱତେ ଅବା ତାହା ତାରାମାଳ ଛଳେ
ପ୍ରସରିଲା ନଭସ୍ଥଳେ ।

କୃଷକ ବାଳାଏ ଇକ୍ଷୁଲତା ତଳେ
ଧରି ସୁମଧୁର ତାନ,
ତାଙ୍କ ଯଶୋଗୀତ- ମାଳା ମୋଦଭରେ
କରୁଥିଲେ ସଞ୍ଜେ ଗାନ ।

ତାଙ୍କ ଅଭ୍ୟୁଦୟେ ପରାଜୟ ଭୟେ
ନଦ୍ୱଶିଲେ ଦେଶେ ଠକ,
ସରୀସୃପ ଗନ୍ଧ ପାଇ ତତକ୍ଷଣେ
ଲୁଚନ୍ତି ଯେପରି ଭେକ ।
ଶରତ ସମୟ ଉପଗତ ହୋଇ
ଶୁଖାଇଲା ମାର୍ଗ ପଙ୍କ,
ସୁଧା କିରଣରେ ଅତୀବ ଉଜ୍ଜ୍ୱଳ
ଦିଶିଲା ସୁଧାଂଶୁ ଅଙ୍କ ।
ରମ୍ୟ ସପ୍ତ ପର୍ଣ୍ଣୀ ଫୁଟି ଚଉଦବଗେ
ବସ୍ତୁଇଲା ତା ବାସନା,
ଯୁଦ୍ଧ ପାଇଁ ରଘୁ ମାନସ ବଳାଇ
କଲେ ଅଶ୍ୱ ନୀରାଜନା ।
ଶୁଭ ଅନୁକୂଳେ ଦିଗ୍‌ବିଜୟ ଆଶେ
ଆରମ୍ଭିଲେ ଅଭିଯାନ,
ନାରୀମାନଙ୍କର ଲାଜାଞ୍ଜଳି ଯୋଗେ
ଉଡ଼ିଲା ରଥେ କେତନ ।
ଜନମି ଧରାରେ ଖାଲି ହାତେ ସର୍ବେ
ଫେରନ୍ତି ଖାଲି ହାତରେ,
ନିତ ଦେଖି ଜନେ ତଥାପି ଆସକ୍ତ
ନିଜ ସ୍ୱାର୍ଥ ସାଧନରେ ।
ଦେଖି ହେଲା ମନେ ଧ୍ୱଜ ସଙ୍କେତରେ
ପୂର୍ବୁ ଚଳି ରିପୁଗଣ,
ହୋଇ ସାବଧାନ ନିଜ ସଇନଙ୍କୁ
ସଜାଇ ରଖିଲେ ରଣ ।
ବାସବ ଦିଗରେ ହେଲେ ଅଗ୍ରସର
ଚତୁରଙ୍ଗ ସେନାସହ,
ରଥର ଘର୍ଘର ନାଦେ କମ୍ପୁଥିଲା
ଅନ୍ତରୀକ୍ଷ ଅହରହ ।
ଖୋଳି ଖୋଳି କୂପ ଜଳହୀନ ପଥେ
ନିର୍ମାଣି ସେତୁ ନଦୀରେ,
ଘନବନ ଛେଦି ବିରାଟ ବାହିନୀ
ଗମୁଥିଲେ ଧୀରେ ଧୀରେ ।
ଛିନ୍ନଭିନ୍ନ କରି ମହୀରୁହରାଜି
ଗମେ ଗଜେନ୍ଦ୍ର ଯେସନ,
ବିପକ୍ଷ ନୃପଙ୍କୁ ଦଳି ପରାକ୍ରମେ
ଗଲେ ନରେନ୍ଦ୍ର ତେସନ ।
କ୍ରମେ କ୍ରମେ ବଳ- ବାନ ସେନାଗଣ
ପୂର୍ବଦିଗ ଜୟକରି,
ତାଳୀବନ ସିନ୍ଧୁ- ତୀରେ ପହଞ୍ଚିଲେ
ଅନ୍ଧାରିତ ଗଡଧରି ।
ସେଠା ଅଧିବାସୀ ସୁହ୍ମରାଜଗଣ
ପରିହରି ଯୁଦ୍ଧ ଭୟେ,
ବେତସ ପରାଏ ନତ ହୋଇ ପଦେ
ଜୁହାର କଲେ ବିନୟେ ।
ହେମନ୍ତ ଋତୁରେ ଲଇଁଥାଏ ଫଳେ
ପକ୍ୱଶାଳି ଯେଉଁପରି,
ଦେଖି ପରାକ୍ରମ ବଙ୍ଗ ବୀରଗଣ
ଅବନତ ସେହିପରି ।
ବଙ୍ଗ ଜୟକରି ନିଜ ବାହୁବଳେ
ହେଲେ ତହୁଁ ଅଗ୍ରସର,
ଜୟଲିପ୍ସୁ ରଘୁ କଳିଙ୍ଗ ଆଡକୁ
ନକରି ଡଳେ ଖାତର ।
ଗଜ ସୈନ୍ୟ ସଜ ହୋଇଣ କଳିଙ୍ଗ
କଲା ତାଙ୍କୁ ଆକ୍ରମଣ,
ଉଭୟ ପକ୍ଷରେ ଅତି ଚମତ୍କାରେ
ହେଲା ତହିଁ ଘୋର ରଣ ।
ମାତ୍ର ରଘୁ ଭାଙ୍ଗି ବିପକ୍ଷ ସୈନ୍ୟଙ୍କ
ଟାଣପଣିଆ ଅଚିରେ,
ରଖିଥିଲେ ନେଇ ସେନା ନିବାସରେ
ବହୁ ନଜର ବନ୍ଦରେ ।
ତାହାଙ୍କ ଫଉଜେ ମହା ମଉଜରେ
କେତେ ଦିବସ କଟାଇ,
ଦକ୍ଷିଣକୁ ଗଲେ ସିନ୍ଧୁ ତଟେ ତଟେ
ସ୍ୱପକ୍ଷ ରାଜ୍ୟ ଫେରାଇ ।
ପାନପତ୍ରେ ତୋଳି କରି ନାରିକେଳ
ମଧୁ ପାନ କରି କରି,
ପ୍ରସନ୍ନ ମନରେ ଯାଆନ୍ତି ସେମାନେ
ପଥକ୍ଲାନ୍ତି ତୃଷା ହରି ।

ରଣୋନ୍ମତ୍ତ ବୀର ରଘୁ ବାହିନୀଏ
ପଶୁ ପଶୁ ପାଣ୍ଡୁ ଦେଶ,
କେଳ କାମିନୀଏ ଗୁଡ଼ିଥିଲେ ଭୟେ
ଚୁଷ୍ଟ କୁନ୍ତଳର ବେଶ ।
ନଦୀ ମୁହାଣରୁ ଟାଇଥିଲେ ଯେତେ
ମୁକ୍ତା ପାଣ୍ଡୁ ଦେଶବାସୀ,
ଗୋଟିଏ ଗୋଟିଏ ଆଣି ସମର୍ପିଲେ
ରଘୁଙ୍କ ଛାମୁରେ ଆସି ।
ଚନ୍ଦନ ଆଚ୍ଛନ୍ନ ମହୋଦଧି ତଟ
ଦିଶୁଥିଲା ମନୋହର,
ଟବକ ଆମୋଦ ସୁବାସିତ ଗନ୍ଧେ
ଚହଟୁଥିଲା ଅମ୍ବର ।
ମୁରଳା ତଟିନୀ ମୃଦୁ ସମୀରଣ
କେବେ ବହୁ ଧୀରେ ଧୀରେ,
କେତକୀ ପରାଗ ହର ଦେଉଥିଲା
ବୋଳି ସଇନଙ୍କ ଶିରେ ।
ବାଜି ପୃଷ୍ଠସ୍ଥିତ ଚର୍ମ କବଚରୁ
ଉଠି ଶ୍ରୁତି ମଞ୍ଜୁସ୍ୱନ,
ତାଳୀ କାନନର ମର୍ମର ଧ୍ୱନିକୁ
ଲୁପ୍ତ କଲା ଘନ ଘନ ।
ବନ୍ଧା ହୋଇଥିଲେ ଖଜୁରୀ ଗଛରେ
ମଦସ୍ରାବୀ କରୀତତି,
ସେ ମଦ ଗନ୍ଧକୁ ଆଘ୍ରାଣି ମଧୁପେ
ତକ୍ଷଣେ କରିଲେ ଗତି ।
କେ ବା ଗଜପୃଷ୍ଠେ କିଏ ବାଜିପୃଷ୍ଠେ
କିଏ ବା ଆରୋହି ରଥେ,
ପାରସୀକ ଜୟେ ବୀର ଯୋଦ୍ଧୃବୃନ୍ଦ
ବାହାରିଲେ ସ୍ଥଳ ପଥେ ।
ଯେସନ ସଂଯମୀ ଇନ୍ଦ୍ରିୟକୁ ଦମି
ତତ୍ତ୍ୱଜ୍ଞାନ ସନ୍ଧାନରେ,
ହୁଏ ଅଗ୍ରସର ତେସନ ଯୋଦ୍ଧାଏ
ଗମିଲେ ଜୟ ଆଶାରେ ।
ରାଘବୀୟ ଚମୂ ପାରସୀକ ସଙ୍ଗ
ମାତିଲେ ତୁମୁଳ ରଣେ,

ବିପକ୍ଷଙ୍କ ଠାଣ ଧ୍ୱଂସିବା ଉଦ୍ଦେଶ୍ୟ
ରଖି ସମର ପ୍ରାଙ୍ଗଣେ ।
ଶ୍ମଶ୍ରୁଳ ଯବନ ଶିର ଶତ ଶତ
କୃପାଣେ ଦେଲେ ଗଡ଼ାଇ,
ଅବଶିଷ୍ଟ ସେନା ପଶିଲେ ଶରଣ
କିଏ ବା ଗଲେ ପଳାଇ ।
ସରସୀରୁ ଭାନୁ ନୀର ନାଶେ ଯଥା
ହୁଅନ୍ତି ଉତ୍ତରାୟଣ,
ଗଲେ ଉତ୍ତରକୁ ଦେଶ ଜୟେ ତଥା
ତହୁଁ ରଘୁ ଯୋଦ୍ଧାଗଣ ।
ଜମାଇ ଆସ୍ଥାନ ସିନ୍ଧୁନଦୀ ତଟେ
ହୂଣ ରାଜ୍ୟେ ପ୍ରବେଶିଲେ,
ଏ ସମୟେ ଆସି ହୂଣବୀରେ ବାଟ
ସେମାନଙ୍କୁ ଓଗାଳିଲେ ।
ଛିନ୍ନଭିନ୍ନ ଅବା ଅସ୍ତବ୍ୟସ୍ତ ହୋଇ
ପଳାଇଲେ ହୂଣବୀରେ,
ସଂଖ୍ୟା ନାହିଁ ତାର କେତେ ଯେ ମରିଲେ
ଏକାଳେ ଯୁଦ୍ଧ ଭୂଇଁରେ ।
ନାରୀମାନଙ୍କର ଦଳନ୍ତି ସିନ୍ଦୂର
କାନ୍ତ ଗଣ୍ଡଭାଲ ଦେଶ,
ଦେଉଥିଲା କହି ଯୁଦ୍ଧ ସମାଚାର
ନଥାଇ ସନ୍ଦେହ ଲେଶ ।
ତଦନ୍ତେ କମ୍ବୋଜ ଦେଶରେ ପ୍ରବେଶି
ଆକ୍ରମନ୍ତେ ଶ୍ରମବଳେ,
ସେ ଦୁର୍ଗବାସୀଏ ବିନମ୍ର ଭେଟିଲେ
ଧନରାଶି ପଦତଳେ ।
ଏତେ ଧନରତ୍ନ ଲଭିଲେହେଁ ରଘୁ
ନଥିଲା ଗରବ ମନେ,
ଦେଖି ତାଙ୍କ ରୀତି ହେଉଥିଲେ ଖୁସି
ସଦା ପଦାନତ ଜନେ ।
ହେଉଥାଏ ଟେକ ହୃଦୟ ଫୁଲାଇ
କ୍ଷୁଦ୍ରଲୋକ ସିନା ଭବେ,
ନଥାଏ ହୃଦୟେ ଗର୍ବ ଅଭିମାନ
ମହତ ଲୋକର ଲବେ ।

ଉଚ୍ଚ ହିମାଳୟେ ଚତୁରଙ୍ଗ ସେନା
ଆରୋହଣ ଅନନ୍ତର,
ଦେଖିଲେ ତହିଁରେ ରଘୁଙ୍କ ସମାନ
ବଳୀ କେଶରୀନିକର ।
ନତ୍ତର ସେମାନେ ବଦନ ବୁଲାଇ
ଗୃହୁଁ ଥିଲେ ଥରେ ଥରେ,
ବ୍ୟକ୍ତ କରୁଥିଲେ ଅବା ନର୍ଘ କଥା
ସେନାବାହିନୀ ଆଗରେ ।
ଭୂର୍ଜ ପତ୍ର ଦଳ ବାଉଁଶ ରନ୍ଧ୍ରରେ
ମୃଦୁଧ୍ୱନି ଉପୁଜାଇ,
କରନ୍ତି କି ସେବା କୋଶଳେଶ୍ୱରଙ୍କ
କାନନ ମାର୍ଗରେ ଥାଇ ।
ଦିବାବେଳେ ରଘୁ ଗିରି ଉଠି ଉଠି
ତାଙ୍କ ସେନା ଦଳେ ଦଳେ,
ହରୁଥିଲେ ଶ୍ରମ ମହା ହରଷରେ
ଦେବଦାରୁ ଛାୟାତଳେ ।
ଗିରି ପୃଷ୍ଠଦେଶେ 'ଗଣ' ନାମେ ଏକ
ଜାତି କରୁଥିଲେ ବାସ,
ରଘୁଙ୍କ ସହିତ ଯୁଝିଲେ ସେମାନେ
ଦେଖାଇ ଅତି ସାହସ ।
କିନ୍ତୁ ଗଣମାନେ ରଘୁ ବାହୁମାଙ୍କ
ଅନୁଭବ ବାହୁବଳ,
ଯୁଦ୍ଧ ଛାଡଦେଇ ଅର୍ପିଲେ ରଘୁଙ୍କୁ
ଯା ଥିଲା ତାଙ୍କ ସମ୍ବଳ ।
ପ୍ରାଗ ଜ୍ୟୋତିଷର ନରପତି ଶୁଣି
ରଘୁଙ୍କର ଆଗମନ,
ତାଙ୍କ ପଦ ଧୋଇ ଦେଲେ ଉପହାର
ବଡ ବଡ଼ ହସ୍ତୀମାନ ।
ବହୁସ୍ଥାନ ବୁଲି ବହୁ ରତ୍ନ ଲଭି
ସେନାବାହିନୀ ସହିତ,
ବହୁଦିନ ପରେ ଫେରିଲେ ନୃପତି
ପୁରେ ହୋଇ ପୁଲକିତ ।
ଉଷାକାଳେ ରବି ଆଗମନ ଦେଖି
ପଦ୍ମିନୀ ଆନନ୍ଦ ଯଥା,
ନରପତିଙ୍କର ପ୍ରତ୍ୟାବର୍ତ୍ତନରେ
ଅଯୋଧ୍ୟାବାସୀଏ ତଥା ।
ନଗରେ ପ୍ରବେଶ କରନ୍ତେ ନରେଶ
ପୁଲକିତ ମଣ୍ଡଳୀଏ,
ଜଣାଗଲା ଏବେ ବିଧୁ ଦରଶନେ
କୁମୁଦିନୀର ପଣ୍ଡଏ ।
ପ୍ରଜାହିତ ଲାଗି ଜଳାଶୟମାନ
ଖୋଳାଇଲେ ନୃପବର,
ରାଜ୍ୟ ସମାଗ୍ରର ଅବଗତ ପାଇଁ
ରଖିଥାନ୍ତି ଗୁପ୍ତଚର ।
ଲଭି ଭୟ କେବେ ନଥିଲା ଦେଶରେ
ରାଜାଙ୍କ ନ୍ୟାୟ ଶାସନେ,
ଯାଗ କରି କରି ସାରୁଥିଲେ ଧନ
ରାଜ୍ୟର ହିତ ସାଧନେ ।

—✱✱—

## ପଞ୍ଚମ ସର୍ଗ

ଦକ୍ଷିଣା ଦାନରେ ସର୍ବସ୍ୱାନ୍ତ ରଘୁ
ରହିଥିଲେ ଶୂନ୍ୟପୁରେ,
ହନେ କୌତ୍ସମୁନି ପ୍ରବେଶିଲେ କରି
ତାହାଙ୍କ ରାଜ ନଗରେ ।
ବେଦବିଶାରଦ ଅତିଥିଙ୍କୁ ଆସି
ଭକ୍ତିଭରେ ଅଭ୍ୟର୍ଥନା,
ମୃତ୍ତିକା ପାତ୍ରରେ ଅର୍ଘ୍ୟ ଥୋଇ ଦେଇ
କରିଲେ ତାଙ୍କୁ ଅର୍ଚ୍ଚନା ।
ଯାଗ ଦକ୍ଷିଣାରେ ଦାନ କରି କରି
ନଥିଲା କିଛି ତାଙ୍କର,
କୃତାଞ୍ଜଳିପୁଟେ ନରାଜନା କରି
ପୁଚ୍ଛିଲେ ତଦନନ୍ତର ।
ତବ ଗୁରୁଦେବ କୁଶଳେ ଆନନ୍ଦେ
ଅଛନ୍ତି ତପୋବନେ ?
କିଛି ଗୁରୁତର ବାଧାବିଘ୍ନ ଯୋଗେ
ଅଛନ୍ତି କି ଦୁଃଖ ମନେ ?

ମୃଗ ଶିଶୁମାନେ ହେଉ ନାହାନ୍ତି ତ
ଆଶ୍ରମେ ଅକାଳେ ନାଶ,
ନିତ ନିତ ଦାନ କରି ପୁଣ୍ୟାର୍ଥେ
ପୂରୁଛି କି ଅଭିଳାଷ ?
ହେ ପୁଣ୍ୟାତ୍ମାବର ଆସିଛ କିମର୍ଥେ
କୃପାକରି କହ ଥରେ ?
ଏ ରୂପ ବଚନ ଶୁଣି ନୃପଙ୍କର
କୋଇଲେ ମୁନି ମୋଦରେ ।
"ତବତୁଲ୍ୟ ନାଥ ଥାଉଁ ଥାଉଁ ରାଜ୍ୟେ
ଅଶୁଭ ହୁଏ କି କା'ର ?
ଯେ କାଳେ ଚଣ୍ଡାଂଶୁ ହୁଅନ୍ତି ଉଦିତ
ରହେ କି ତମ ଧରାର ।
ପାଉଅଛି ଶୋଭା ସତ୍ପାତ୍ରରେ ଦାନ
କରି କରି ନିରନ୍ତର,
ଯାଗ କରି ନର ଦକ୍ଷିଣା ଦାନରେ
ଶୂନ୍ୟ କି ଭଣ୍ଡାର ଘର ?
ବାଞ୍ଛିତ ପଦାର୍ଥ ମିଳିବାର ଆଶା
ଦିଶୁନାହିଁ ମୋତେ ଆଉ,
ଭଲ ଲଗୁନାହିଁ ଯାଚକ ଫେରିବା
ତୁମ୍ଭେ ରଜା ଥାଉ ଥାଉ ।
ଆଶାପ୍ରୀ ଚାତକ ଶାରଦ ନୀରଦେ
ମାଗଇ କି କେବେ ଜଳ,
ଅବା ପବନ ତରୁ ଗ୍ରୁସ୍ତାତଳେ
ପଥିକ ଆଶା ସଫଳ" ?
ଆଶୀର୍ବାଦ ଦେଇ ଉଠନ୍ତେ ଯିବାକୁ
ଏହା କହି ମୁନିବର,
ପୁଚ୍ଛିଲେ ନୃପତି ଇଚ୍ଛା କି ସମ୍ପତ୍ତି
କହ ହେ ତାପସବର !
ନିବେଦିଲେ ତହୁଁ ବ୍ରହ୍ମର୍ଷି କୌତ୍ସ-
ମୁନି ଦିଲୀପ ତନୟେ,
ଚତୁର୍ଦ୍ଦଶ କୋଟି ସ୍ୱର୍ଣ୍ଣମୁଦ୍ରା ଲୋଡ଼ା
ବୋଲି ଅତି ସବିନୟେ ।
ଯାଚକ ବ୍ରାହ୍ମଣ ରଘୁପାଶେ ଆସି
ଫେରିଗଲେ ଭଗ୍ନମନେ,
ଯଶ ହେବ ନାଶ ଯତନ କରିବି
ଭାବି ମାନି ଆଉ ଦିନେ ।
ଅବ୍ୟର୍ଥ ପ୍ରତିଜ୍ଞା ବାକ୍ୟ ରଘୁ ମୁଖୁଁ
ଶୁଣି ବିପ୍ର ମୋଦଭରେ,
"ତଥାସ୍ତୁ, ତଥାସ୍ତୁ" କହି ଆଶ୍ରାନେଲେ
ଆଉ ଦିନେ ମନ୍ଦିରରେ ।
କୁବେରଙ୍କଠାରୁ ଆଣିବାକୁ ଧନ
ଇଚ୍ଛି ଦିଲୀପ ନନ୍ଦନ,
ବଶିଷ୍ଠଙ୍କ ମନ୍ତ୍ର ପ୍ରଭାବେ ଯିବାକୁ
ସଜାଇଲେ ସ୍ୱସ୍ୟନ୍ଦନ ।
ରଘୁଙ୍କ ସଂକଳ୍ପ ଜାଣି ଧନପତି
ଯୁଦ୍ଧଯାତ୍ରା ପୂର୍ବରୁ,
ବହୁ ସ୍ୱର୍ଣ୍ଣମୁଦ୍ରା ଅଲକ୍ଷିତ ଭାବେ
ଅଜାଡ଼ିଲେ ଗନ୍ତାଘରୁ ।
ଆଚମ୍ବିତେ ଧନ ପୂରିଥିବା ଦେଖି
ରଘୁଙ୍କର ଗନ୍ତାଘର,
ଭଣ୍ଡାର ରକ୍ଷକେ ଯାଇ ନିବେଦିଲେ
ଏହି ମଙ୍ଗଳ ଖବର ।
ପ୍ରାର୍ଥନାରୁ ବଳି ଧନ ଦେବା ଲାଗି
ଯାଚିଲେ ହେଁ ନୃପବର,
ଗୁରୁ ଦକ୍ଷିଣାରୁ ଅଧିକ ନେବାକୁ
ନଥିଲା ଇଚ୍ଛା ତାଙ୍କର ।
ଅଯୋଧ୍ୟାବାସୀଏ ବିବିଧ ପ୍ରକାରେ
ପ୍ରଶଂସି ସେ ଦେନିଜନେ,
ଶତ ଶତ ଉଷ୍ଟ୍ର ଅଶ୍ୱପୃଷ୍ଠେ ଲଦି
ପଠାଇଲେ ହୃଷ୍ଟ ମନେ ।
ସୁଦାମା ରଜାଏ ଧରଣୀ ମଣ୍ଡଳୁ
ଲଭନ୍ତି ଯେତେକ ଧନ,
ବାଞ୍ଛିତ ବିଷୟେ ଇଚ୍ଛାମତେ ତାହା
କରନ୍ତି ସତତ ଦାନ ।
ମାନବର ସୁଖ ଯାହା ଯାହା ଲୋଡ଼ା
ପୂର୍ଣ୍ଣଭାବେ ତବଠାରେ,
ଅଛି ସେ ସକଳ କଳୁ ଅଭୂର୍ବିକ
ହୋଇଅଛି ବସୁଧାରେ ।

ତବ ଅନୁରୂପ ପ୍ରିୟତମ ସୁତ
ଲଭ ହେ ନୃପତିବର !
ଏହି ଆଶୀର୍ବାଦ ଦେଇ କୌତ୍ସମୁନି
ଆଶ୍ରମେ ଗଲେ ସତ୍ୱର ।
ଲଭିଲେ ମହିଷୀ ଆଶାପ୍ରଦ ଗର୍ଭ
ଯଥାକାଳେ ମୁନିବରେ,
ଦଶମାସ ଅନ୍ତେ ପ୍ରସବିଲେ ସେହି
ସୁତ ବ୍ରାହ୍ମ ମୁହୂର୍ତ୍ତରେ ।
"ଅଜ" ବୋଲି ପିତା ଦେଇଥିଲେ ନାମ
ମୋଦଭରେ ପୁତ୍ରଙ୍କର,
ନଥିଲା ଭିନ୍ନତା କିଛି ପିତାସହ
ନବ ଜାତ ଶିଶୁଟିର ।
କ୍ରମେ କ୍ରମେ ବାଲ୍ୟ- କାଳ ଅତିକ୍ରମି
ଯଥାକାଳେ ଧରି ଖଡ଼୍ଗ,
ଅଗାଧ ପାଣ୍ଡିତ୍ୟ ଲଭିଲେ ସେ ସୁତ
ଗୁରୁଦତ୍ତ ବିଦ୍ୟା ପଢ଼ି ।
ଯୌବନ ସମ୍ପନ୍ନ ହେବାରୁ ତାଙ୍କର
ଦିଶିଲେ ମଞ୍ଜୁଳତର,
ପରିଣୟ ଯୋଗ୍ୟ କନ୍ୟାଟିଏ ଲାଗି
ଖୋଜାଇଲେ ନୃପବର ।
ଏକାଳେ ବିଦର୍ଭ ପତି ଭୋଜରାଜ
ବିଶ୍ୱସ୍ତ ଦୂତ ପଠାଇ,
ତାଙ୍କ ଭଗ୍ନୀ ଇନ୍ଦୁ- ମତୀ ସ୍ୱୟମ୍ବରେ
ଅଜଙ୍କୁ ନେଲେ ଡକାଇ ।
ସମୃଦ୍ଧିଶାଳିନୀ ବିଦର୍ଭ ଦେଶକୁ
ଶୁଭ ଅନୁକୂଳ କରି,
ବାହାରିଲେ ଅଜ ସୁସଜ୍ଜିତ ସୈନ୍ୟ
ସଙ୍ଗେ ପାଞ୍ଚ ମିତ୍ର ଧରି ।
ଯିବାବେଳେ ମାର୍ଗେ ମହାଆଡ଼ମ୍ବରେ
ଆସି ଗ୍ରାମବାସୀଗଣ,
ଆଣି ଭେଟିମାନ କଲେ ସମର୍ପଣ
ଦେଖାଇ ରାଜଭକତି ।
ଅସ୍ତାଚଳେ ରବି କରନ୍ତେ ପ୍ରବେଶ
ଶିବିର କରି ସ୍ଥାପନ,

ଯୁବରାଜ ଅଜ ମହା ହୃଷ୍ଟମନେ
ରଜନୀ କଲେ ଯାପନ ।
ବିଭାବରୀ ଅନ୍ତେ ବାହାରି ସକଳ
ବିଦର୍ଭ ଅଭିମୁଖରେ,
ପ୍ରବେଶିଲେ ଯାଇ ଉତ୍ଫୁଲ୍ଲ ଆନନେ
ରେବା ତଟିନୀ ତଟରେ ।
ଶ୍ୟାମଳ କରଞ୍ଜ ବୃକ୍ଷ ଦେଖିଥିଲେ
ମନେ ଆନନ୍ଦ ଅପାର,
ଉଦ୍ୟାନ ବିହାର ପରି ମନେ ହେଲା
ଦେଖି ସୁଷମା ତାହାର ।
ଏକାଳେ ସହସା ଦେଖାଦେଲା ଆସି
ମଦମତ୍ତ ଦନ୍ତାବଳ,
ତା ମଦ ଗନ୍ଧକୁ ବାରି ଚଉଦିଗୁଁ
ଆସିଲେ ମିଳିନ୍ଦଦଳ ।
ପ୍ରବଳ ବେଗରେ ଧାଇଁଲା ସେ ହସ୍ତୀ
ଉପରକୁ ପୁଚ୍ଛ ଟେକି,
ବନ୍ଧା ହୋଇଥିଲେ ଯହିଁ ଅଶ୍ୱମାନେ
ତାଙ୍କୁ ନିରେଖି ନିରେଖି ।
ମାହୁନ୍ତର ଶୁଣି ଆଘାତ ନମାନି
ପଳାଇଲେ ସେ ବାରଣେ,
ଅସ୍ତବ୍ୟସ୍ତ ହୋଇ ଶୁଣ୍ଢ ଟେକ ଟେକ
ଛୁଣ୍ଡାଇ ଯୁତ ତକ୍ଷଣେ ।
ରାଜାମାନଙ୍କର ବଧ୍ୟ ନୁହେ ବୋଲି
ଜାଣି କାର୍ମୁକକୁ ଧରି,
ଇନ୍ଦୁଙ୍କ ତନୟ କଲେ ଶରାଘାତ
ଅଳ୍ପ ଆକର୍ଷଣ କରି ।
ନିବାରିବା ପାଇଁ ସେ ଦନ୍ତାବଳକୁ
କରନ୍ତେ ଆଘାତ ଶର,
କୁମ୍ଭୀରୂପ ଛାଡ଼ି ଜନ୍ମାଇ ଆଶ୍ଚର୍ଯ୍ୟ
ଧଇଲା ଦେବ ଶରୀର ।
କୁମାର ମସ୍ତକେ କରି ସେ ବର୍ଷଣ
କଳ୍ପଦ୍ରୁମ ପୁଷ୍ପାବଳୀ,
ନିବେଦିଲେ ହସ୍ତୀ ଗଦ୍‌ଗଦ କଣ୍ଠରେ
ବାକ୍‌ପଟୁ ପୁରୁଷ ଭଳି ।

"ଗନ୍ଧର୍ବ ପତିଙ୍କ ପ୍ରିୟ ପୁତ୍ର ମୁହିଁ
ପ୍ରିୟମ୍ବଦ ନାମେ ଖ୍ୟାତ,
ମାତଙ୍ଗ ଋଷିଙ୍କ ଅଭିଶାପ ଯୋଗେ
ହୋଇଥିଲି ମତ୍ତ ହାତୀ ।
ଏଥିରୁ ମୋଚନେ କଲେ ଗୁହାରି
ପ୍ରଣାମ କରି ବିନୟେ,
ତାହାଙ୍କ ଚରଣେ, ଶାନ୍ତ ହୋଇ ଋଷି
କହିଲେ ମୋତେ ସଦୟେ ।
ଇକ୍ଷ୍ୱାକୁ ବଂଶୀୟ ଅଜ ଆସି ଯେବେ
ବାଣେ କରିବେ ଭେଦନ,
ପାଇବ ସ୍ୱରୂପ ଏହି ଅଭିଶାପୁଁ
ସେକାଳେ ଲଭି ମୋଚନ ।
ଦରଶନ ଆଶେ ରହିଥିଲି ଟାକ
ସେହିଦିନୁ ଚନ୍ଦ୍ରାକର,
ହେଲି ଏଥୁଁ ମୁକ୍ତ ତବ ଦୟାବଶୁଁ
ପାଉଛି ମୋ ରୂପ ଧରି ।
ପ୍ରତି ଉପକାର ନକରିଲେ କିଛି
କି ବୋଲିବେ ମୋତେ ଜନେ
ତେଣୁ ସମ୍ମୋହନ ଅସ୍ତ୍ର ଏହି ନେଇ
ରଖିଥିବ ମୋତେ ମନେ ।
ଏ ଅସ୍ତ୍ର ପ୍ରୟୋଗେ ଭିନ୍ନ ଭିନ୍ନ ମନ୍ତ୍ରେ
ନ ରହିବେ ବୈରିଦଳ,
ସମର କ୍ଷେତ୍ରରେ ନମରି ବିପକ୍ଷେ
ଲଭିଥିବେ ମୂର୍ଚ୍ଛା ଭଳ ।
ଗନ୍ଧର୍ବାସ୍ତ୍ର ମନ୍ତ୍ର ତାଙ୍କଠାରୁ ଲଭି
ଗନ୍ଧର୍ବମାର୍ଗେ ସେ ଯାଇ,
ଗମିଲେ ହରଷେ ଅବଲମ୍ୱେ କରି
ଷଡ଼ୂପଦେ ନମସ୍କାର ।
ଅଜ ଆଗମନେ ଆହ୍ଲାଦିତ ମନେ
ଅଭ୍ୟର୍ଥନା ତାଙ୍କୁ କରି,
ବିଦର୍ଭ ଈଶ୍ୱର ସ୍ୱୟମ୍ବର ସ୍ଥାନେ
ନେଲେ ତାଙ୍କ ହାତ ଧରି ।
ମଙ୍ଗଳ ଗୀତରେ ମିଶି ଚହଳରେ
ଶୁଭୁଅଛି ହୁଳହୁଳି,
ବିଧୁ ଦେଖି ବଟୀ- ମାଳ ଘନ ଘନ
ପଡ଼ିଲି ଅବା ଉଚ୍ଛୁଳି ।
ରାଜେ ରାଜଧାମ ଅଟ୍ଟାଳିକା ମାନେ
ଚୁମ୍ବି ଅନ୍ତରୀକ୍ଷ ଦେଶ,
ତହିଁପରେ ବସି ସୀମନ୍ତିନୀ ଗଣ
କରୁଥିଲେ କେଶ ବେଶ ।
ଯାଇଅଛି ମିଶି ଘଣ୍ଟର ନିନାଦ
ବୃଂହିତ ହ୍ରେଷାରବରେ,
ବାରାଙ୍ଗନା ପଟଳୀ ମାତିଛନ୍ତି କାହିଁ
ଲଳିତ ନର୍ତ୍ତନରେ ।
ବେଢ଼ିହେଲେ ସୀତାର ବାଜା ବାଜବାରୁ
ଉଷ୍ଣୀଷବ୍ରଜ ଛନ୍ନ ଛନ୍ନ,
ବାର ବିଳାସିନୀ ସଙ୍ଗୀତ ରସରେ
ହରୁଥିଲେ ଜନ ମନ ।
ତାପସ ପଟଳୀ ବେଦ ପଢ଼ି ପଢ଼ି
ପୂହାଇଲେ ବିଶ୍ୱବସ୍ତ,
ସାମନ୍ତ ରାଜାଏ ମିଳିଥିଲେ ଆସି
ଉପଢ଼ୌକନ ଧରି ।
ସଜ ସୁରସିକ ରବିକର ପଡ଼ି
ହସି ଉଠଇ ଯେମନ୍ତ,
ବିଦର୍ଭ ନଗର ଅଜ ପଦ ବାଜି
ମାତିଲା ମୋଦେ ତେମନ୍ତ ।

ଃଃ—୦—ଃଃ

## ଷଷ୍ଠ ସର୍ଗ

ଛନ୍ଦମୂର୍ତ୍ତିଙ୍କର ଶୁଭ ପରଶସୁ
ଶୁଣି ସୁବରାଜ ରାଜା,
ରୁଣ୍ଡ ହୋଇଛନ୍ତି ନାନା ଦେଶୁଁ ଆସି
ବିଦର୍ଭ ନଗରେ ଆଜ ।
ପଞ୍ଚ ମଣ୍ଡପରେ ହୋଇଥିଲା ସଜ୍ଜା
ରମଣୀୟ ମଞ୍ଚଟିଏ,
ରୁଚି ବେଶ ଧରି ବସିଥିଲେ ଆସି
ତହିଁ ଗୋଟିଏ ଗୋଟିଏ ।

ହାତକୁ ହାତରେ   ମିଶାଇ ଦେବାକୁ
ପୋଷି ଆଶା ମନେ ମନେ.
ଚାହିଁଥିଲେ ଠାକ   ସେ ଶୁଭ ମୁହୂର୍ତ୍ତ
ସର୍ବେ ଆହ୍ଲାଦ ବଦନେ ।
ମନୋହର ଜରି   ହସେ ଜକ ଜକ
ପିନ୍ଧିବା ଆଭରଣରେ,
ହିମବିନ୍ଦୁ ଜାଲ   ହସୁଥାଏ ଯଥା
ପତ୍ର ନବ ପଲ୍ଲବରେ ।
ଦେବଙ୍କ ତୁଳନା   କରିବେ ଦେବଏ
ଆଜ ଏ ପୁଣ୍ୟ ବାସରେ,
ହୁଅଇ ମହୀତ   ଛଟପଟ ହିଆ
ଘଟେ ଯା ଭାଗ୍ୟ ବଶରେ ।
ରଘୁରାଜସୁତ   ଅଜ ଯୁବରାଜ
ଉଠିଲେ ମଞ୍ଚ ଉପରେ,
ଉଠଇ ଅକ୍ଳେଶେ   କଣ୍ଠୀରବ ଶିଶୁ
ଯଥା ଶିଳୋଚ୍ଚ ଶିଖରେ ।
ପଡ଼ିଲା ସହସା   ପୁରଜନଙ୍କର
ଅଜଙ୍କ ପରେ ନୟନ,
ଶୁଭିଲା ଏକାଳେ   ମଙ୍ଗଳ ସୂଚକ
ଶଙ୍ଖସ୍ୱନ ଘନ ଘନ ।
ମୃଦୁ ପବନରେ   ଚନ୍ଦନ ଧୂପର
ଧୂମ ହୋଇ ସଞ୍ଚାରିତ,
ଜନ ଗହଳର   ଦୁର୍ଗନ୍ଧ ବାୟୁକୁ
ନିବାରି ଦେଲା ତ୍ୱରିତ ।
ଦାସୀ ପରିବୃତା   ଜେମାଙ୍କୁ ଆଣନ୍ତେ
ସଭା ମଣ୍ଡପେ ରାଜନ,
ବୈତାଳିକଗଣ   ଆଶାୟୀମାନଙ୍କ
ଆରମ୍ଭିଲେ ଯଶୋଗାନ ।
ଜେମାଙ୍କର ସଖୀ   ସୁନନ୍ଦା ଏ ଅନ୍ତେ
ଜେମାମଣି ପାଶେ ଯାଇ,
ଗୋଟି ଗୋଟି କରି   ଦେଲା ପରିଚୟ
ଯୁବାମାନଙ୍କୁ ଦେଖାଇ ।
ମଗଧର ରାଜା   ଏହି ଯୁବାମଣି
ଦେଖ ଆଗୋ, ବାଳମଣି,

ପ୍ରକୃତି ରଞ୍ଜନେ   ପ୍ରକୃତ ତାଙ୍କର
ଭୂପମାନଙ୍କ ଅଗ୍ରଣୀ ।
ଶରଣାର୍ଥୀଙ୍କର   ଆଶ୍ରୟ ଦାତାଏ
ପରଂତପ ୟାଙ୍କ ନାମ,
ଦେଇଥାନ୍ତି ମନ   ପ୍ରଜାହିତ ପୂର୍ତ୍ତି
ଧର୍ମ୍ମ କର୍ମ୍ମେ ଅବିରାମ ।
କାହିଁକି ନକହି   ମୁହଁ ଲେଉଟାଇ
ଗଲେ ସେ ଦୁହେଁ ଏକାଳେ,
କୁଟିଳ ନୟନେ   କହିଲା ସୁନନ୍ଦା
ଦେଖ ଗୋ, ଅଙ୍ଗ ଭୂପାଳେ ।
ଯାହାକୁ ଇଚ୍ଛନ୍ତି   ସୁର ଅଙ୍ଗନାଏ
ସଦା ଯଉବନ ଭୋଗ,
ଗୁଣେ ସଦା ନାଶ   କରନ୍ତି ବିପକ୍ଷେ
ବରିନିଅ ଥିଲେ ଯୋଗ ।
ଲକ୍ଷ୍ମୀ ସରସ୍ୱତୀ   ଭିନ୍ନ ଭିନ୍ନ ସ୍ଥାନେ
ସ୍ୱଭାବେ କରନ୍ତି ବାସ,
ମାତ୍ର ନିର୍ବିବାଦେ   ଏକତ୍ର ଆନନ୍ଦେ
ଏଥି କରନ୍ତି ବିଳାସ ।
ସୁମଧୁର ଗିରେ   ସୁନ୍ଦର ପଣରେ
ଲକ୍ଷ୍ମୀ ସରସ୍ୱତୀ ପରି,
ତୁମ୍ଭେ ହେ କଲ୍ୟାଣି,   ଇଚ୍ଛାଥିଲେ ତବ
ନିଅହେ ଏହାଙ୍କୁ ବରି ।
ପାଲଟାଇ ଆଖି   ଅଙ୍ଗ ନୃପଠାରୁ
ଚାଲ ବୋଲି ମୃଦୁସ୍ୱରେ,
ସଖୀ ସୁନନ୍ଦାକୁ   କହିଲେ କୁମାରୀ
ଅନ୍ୟେ ଦେଖାଇ ଆଗରେ ।
କହିଲା ସୁନନ୍ଦା   ଅବନ୍ତୀ ନାୟକ
ହସନ୍ତି ରବିଙ୍କ ପରି,
ଅଖଣ୍ଡ ପ୍ରତାପ-   ଶାଳୀ ଏ ଭୂପତି
ନୋହିବ କେ ୟାଙ୍କ ସରି ।
ଯୁଦ୍ଧଯାତ୍ରା ବେଳେ   ମହାଆଡ଼ମ୍ବରେ
ଗଜବାଜିସାଜ ଧରି,
ଗମନ୍ତେ, ବିପକ୍ଷେ   ଦରଶନ କରି
ପଳାନ୍ତି ଏହାଙ୍କୁ ଡରି ।

ଆସକ୍ତ ନୋହିଲା ସୁକୁମାରୀ ମନ
କଲୁ ସେ ନୃପତି ପ୍ରତି,
ଇନ୍ଦୁପ୍ରଣୟିନୀ କୁମୁଦମାଳ କି
ରହେ ଭାନୁପରେ ମତି ?
ଏ ଅନ୍ତେ ସୁନନ୍ଦା ଅନୁପ ଦେଶର
ଭୂପ ସନ୍ନିଧିକୁ ନେଇ,
ଭାଷିଲା ଚଞ୍ଚଳ ଏହାଙ୍କ ନବରେ
ରହନ୍ତି ଅଚଳା ହୋଇ ।
ପୁନଅଁ ଚନ୍ଦ୍ରମା ହୁଏନାହିଁ ଯେହ୍ନେ
ନଳମାଳ ରୁଚିକର,
ହେଲେନାହିଁ ନୃପ ଇନ୍ଦୁମତୀଙ୍କର
ତେହ୍ନେ ନେତ୍ରାନନ୍ଦକର ।
ଏଅନ୍ତେ ସେ ଧାଇ ଲେଉଟି ସେଠାରୁ
ଜେମାଙ୍କୁ ଘେନି ସଙ୍ଗରେ,
ସୁରସେନ ନାଥ ସୁଷେଣ ନିକଟ
ପ୍ରବେଶିଲେ ଅତି ଖରେ ।
ଯେତେ ଠେକାଠେକ କଲେହେଁ ସୁନନ୍ଦା
ନଶୁଣି ତା'ର ବଚନ,
ଗତି ବନ୍ଦକରି ଭୋଜଙ୍କ ଭଗିନୀ
ଆଗକୁ କଲେ ଗମନ ।
କହେ ଉପମାତା ଜେମାଙ୍କୁ ଅନାଇଁ
ନୃପତି ଏ କଳିଙ୍ଗର,
ବରିଲେ ଏହାଙ୍କୁ ଆଗୋ ଚଳାପାଙ୍ଗି
ବଢିବ କେତେ ସୁନ୍ଦରି ।
ଦୁର୍ଲ୍ଲଭ ଶାୟକ ଲଭିଛନ୍ତି ଏହୁ
ଶିବଙ୍କୁ ତୋଷି ତପରେ,
ସକଳ ଯୋଦ୍ଧାଏ ସେ ଶର ପ୍ରଭାବେ
ଡରନ୍ତି ତାଙ୍କୁ ସମରେ ।
ରୂପସୀ ହୃଦୟେ ନ ପାରିଲା ପଶି
ଉପମାତା ଉପଦେଶ,
ପଦ୍ମିନୀ କୋରକେ ନିଶାକରକର
କରେ କି କେବେ ପ୍ରବେଶ ?
ଇନ୍ଦୁମନ ଜାଣି ଉପମାତା ତହୁଁ
ଅନ୍ୟ ଯୁବା ସମୀପରେ,
ଉପସ୍ଥିତ ହୋଇ କହିଲା ଗୋ, ସଖି
ଅନାଅଁ ଆଗକୁ ଥରେ ।
ପାଣ୍ଡ୍ୟଦେଶାଧିପ ରକ୍ତ-ଚନ୍ଦନରେ
ତନୁ କରି ସୁରଞ୍ଜିତ,
ସ୍କନ୍ଧରେ ଲମ୍ବାଇ ରମ୍ୟ ମୁକ୍ତାହାର
ଦିଶନ୍ତି ଅତି ଶୋଭିତ ।
ସୁନନ୍ଦା ଉକ୍ତିରେ ନମାନିଲା ମନ
ଜେମାମଣିଙ୍କ ଏକାନେ,
ବର୍ଷାବାରି ସେନ୍ତ୍ରି ଗୃହକ କେବେକି
ରସେ ପଦ୍ମାକର ଜଳେ ।
ପାଶେ ଉପବିଷ୍ଟ ରଘୁଙ୍କ ନନ୍ଦନ
ଅନାଇଁ ଅନୁରାଗରେ,
ପ୍ରୀତି ବୃଷ୍ଟିରଖି ବରମାଳା ନେଇ
ଲମ୍ବାଇ ଦେଲେ କଣ୍ଠରେ ।
ସ୍ୱୟମ୍ବର ସ୍ଥଳ କମ୍ପିଲା ହରଷେ
ବର କନ୍ୟାଙ୍କ ମିଳନେ,
ଉଚ୍ଛଳେ ଯେସନ ବାରିଧି ତରଙ୍ଗ
କଳାନିଧି ଆଗମନେ ।
ଦଇବ ନାଉରୀ ଏ ଜୀବନ ତରୀ
ଚଳାଉଛି ଅହରହ,
ଲଭେ କି ମଣିଷ ଧନ ଅବା ଯଶ
ନଥିଲେ ତା' ଅନୁଗ୍ରହ ।
କେବେ କାହାମୁଣ୍ଡେ କୁସୁମ ବରଷେ
ନଜାଣି ପାରେ କେ ଲକ୍ଷେ,
ନିସୃତ ଚକ୍ରରେ ଘୁରି ଘୁରି ସିନା
ଭୋଗନ୍ତି ଫଳ ସଭିବେ ।
କିଏ ବା ନିନ୍ଦିଲା ନିଜ କପାଳକୁ
କିଏ ଅବା ବେଶଭୂଷା,
ଦିଶିଲେ ପାଣ୍ଡୁର ଉଷା ତାରା ପରି
ବିଫଳ ରାଜାଙ୍କ ତୃଷା ।

## ସପ୍ତମ ସର୍ଗ

ଭଗ୍ନ ମନୋରଥ ହୋଇ ନୃପତିଏ
ନିଜ ଶିବିରେ ଗମନ୍ତେ,

ଭୋଜରାଜ ଅଜ    ଅନୁଜାଙ୍କୁ ଯେନ
ଆସିଲେ ପୁରେ ଏ ଅନ୍ତେ ।
ହୁଳହୁଳ ନାଦେ    କମ୍ପିଲା ଗଗନ
ଦେଖି ବରବଧୂ ବେନି,
ଆସିଲା ତତ୍‌କ୍ଷଣେ    ଅଳତା ସିନ୍ଦୂର
ନାପିତୁଣୀ କରେ ଘେନି ।
ଧୂଳକେ ଅଧୀର    ପୁର ରମଣୀଏ
ପଣେଣସ୍ତୁ ସଜ ଧରି,
ଆସିଲେ ସେଠାକୁ    ହୁଳହୁଳ ଦେଇ
ହଳି ହଳି ହଂସୀ ପରି ।
କେ ଦେଲା ସିନ୍ଦୂର    କେ ଦେଲା ଅଳତା
କଏ ବା କୁସୁମ ମାଳ,
ପୁରୋହିତ ବସି    କଲେ ମନ୍ତ୍ର ପାଠ
ଦେଖିଣ ବିବାହ କାଳ ।
ସାକ୍ଷୀ କରି ଶିଖୀ    ସଦ୍ୟ ଗବ୍ୟଘୃତେ
ଆହୁତି ପ୍ରଦାନ କରି,
ନବୀନ ସୂତ୍ରରେ    ବାନ୍ଧଦେଲେ ସେତୁ
ଦୁହିଁଙ୍କର କରଧରି ।
କୋମଳ କନ୍ୟାର    କରକୁ ସ୍ୱକରେ
ଧଇଲେ କୁମାରବର,
ମିଶିଗଲା କିବା    ପଦ୍ମିନୀ ସଙ୍ଗରେ
ନବ ପ୍ରଭାକର କର !
ହାତ ଧରାଧରି    ହେଉଁ ହେଉଁ ଦୁହେଁ
ଦୁହିଁଙ୍କୁ ଦେଖିବା ପାଇଁ,
ଲୋଳାୟୁତେ ତାଙ୍କ    ସତୃଷ୍ଣ ନୟନ
ଲୋଳାୟୁତେ ଗଲା ଧାଇଁ ।
ହସ୍ତଗ୍ରନ୍ଥି କାଳେ    ବିନ୍ଦୁ ବିନ୍ଦୁ ଝାଳେ
ଭିଜିଗଲା ଗଣ୍ଡଦେଶ,
ବରକନ୍ୟାଙ୍କର    ସାତ୍ତ୍ୱିକ ବିକାରେ
ଲଜ୍ଜା କି କଲା ପ୍ରବେଶ !
ପ୍ରଦକ୍ଷିଣ କରି    କିଶୋର କିଶୋରୀ
ପ୍ରଜ୍ୱଳିତ ହୋମାନଳ,
ଘରସ୍ଥଳ ମିଳି    ଲାଜା ସହିତରେ
କଲେ ବିସର୍ଜନ ଜଳ ।

ଘନ ଘନ ଶିଖା    ପାବକରୁ ଏଣେ
ଉଠି ହବି ସଂଯୋଗରେ,
କଣ୍ଠ ଭୂଷଣର    ବଢ଼ାଇଲା କାନ୍ତି
ବାଳ କୁମାରୀ ଗଣ୍ଡରେ ।
କୌତୁକ ପ୍ରଥାରେ    ବନ୍ଧିଲେ ତାମାଏ
ହଳଦିଆ ସୂତ୍ରକରେ,
ତଦନ୍ତେ ବାନ୍ଧବ    ସକ୍ଷତ ଆଶିଷ
ଦେଲେ ସ୍ନାତକ ବ୍ୟଗ୍ରରେ ।
ରଜାଘର ବିଭା    ଦିଶୁଅଛି ଶୋଭା
ବିବିଧ ସାଜ ସଜ୍ଜାରେ,
କର୍ଣ୍ଣ ରସାୟନ    ଗାନ ଶୁଣି ଶୁଣି
ମାତିଲେ ସର୍ବେ ମଜାରେ ।
ଖଞ୍ଜନ ନୟନା    ବାରାଙ୍ଗନାମାନେ
ଅଞ୍ଜନ ନେତ୍ରେ ଲଗାଇ,
ଅଙ୍ଗ ଭଙ୍ଗି ଠାଣି    ଦେଖାଇ ଦେଖାଇ
ମାନସ ଦେଲେ ଭୁଲାଇ ।
କୁତୂହଳୀ ହୋଇ    ମହିଳାଏ କେତେ
ପ୍ରାସାଦ ଉପରେ ଚଢ଼ି,
ଦେଖୁଥିଲେ କିବା    ଅତି ମୋଦଭରେ
ବାରବନିତାଙ୍କ ଛଟି ।
ଅଟ୍ଟାଳୀ ଉପରେ    ଦୀପାବଳୀ ପୁଣି
ମାର୍ଗେ ବିଦ୍ୟୁତ ଲଗାଇ-
ବାରୁ ଚଉଦିଗେ    ଆଲୋକିତ ହୋଇ
ଜ୍ୟୋସ୍ନାକୁ ଦେଲା ଭୋଜାଇ ।
ହେବାରୁ ଯାମିନୀ    ବସି ଭାମିନୀଏ
ହେଲେ କୁହାକୁହି ଧୀରେ,
"କଲେହେଁ ପ୍ରାର୍ଥନା    ରଜାଏ ପୂରୁବେ
ନ ଦେଲେ କାନ କା ଗିରେ ।
ସ୍ୱୟମ୍ବର ଲାଗି    ବସିଥିଲେ ହଟି
ଲାଜ ଛୁଡ଼ି ଜେମାମଣି,
ହେଲା ହିତ ଏବେ    ଲଭନ୍ତେ କି କେବେ
ଅନୁରୂପ ନୃପମଣି ।
ସତେ କି ବିଧାତା    ଗଢ଼ି ଶୁଭଧାରେ
ବେନିଙ୍କୁ ଦେଲା ମିଶାଇ,

ଇନ୍ଦୁ ଅଜ ଲଭି  ବିଷମ୍ଭ ଯେସନ
ଇନ୍ଦିରା ବିଷ୍ଣୁଙ୍କୁ ପାଇ ।
ହୋଇଥାନ୍ତା ଯେବେ  ଏହି ନବୀନର
ଅନୁରୂପ କାନ୍ତ ବିନା,
ପଣ୍ଡ ହୋଇଥାନ୍ତା  ଦଣ୍ଡକ ଭିତରେ
ବିଧାତା ସୃଜନ ଗିନା ।"
ଇନ୍ଦୁମତୀଙ୍କର  ପରିଣୟ ବିଧି
ଶୁଭେ କରି ସମାପନ,
ଆଦେଶିଲେ ଏଣେ  ଭୂପଙ୍କ ସତ୍କାର
ଲଗି ବିଦର୍ଭ ରାଜନ ।
ପ୍ରତ୍ୟର୍ପଣ କରି  ଉପାୟନ ଛଳେ
ଦତ୍ତପଦାର୍ଥ ନିକର,
ଅନ୍ତରେ ଈରଷା  ରଖି ନୃପତିଏ
ମେଲାଣି ନେଲେ ସତ୍ୱର ।
ବିବୁଧ ଏମାନେ  ଭୋଜ ଭଗିନୀଙ୍କୁ
ନେବାପାଇଁ ବଳେ ବଳେ,
ଫେରିବା ମାର୍ଗରେ  ରହିଥିଲେ ଲୁଚି
ଅଜଙ୍କ ପ୍ରସ୍ଥାନ କାଳେ ।
ଏଣେ ଭୋଜରାଜ  ଯଉତୁକ ଦେଇ
ନବ ଦମ୍ପତି ସଙ୍ଗରେ,
ମହା ସମାରୋହେ  ଘରୁ ବିଦା ଦେଇ
ଗଲେ ବିବାହ ଶେଷରେ ।
ତିନିରାତ ରହି  ସେମାନଙ୍କ ସହ
ଫେରିଲେ କୁଣ୍ଡିନେଶ୍ୱର,
ଯଥା ବାହୁଡ଼ନ୍ତି  ବିଧୁ ଭାନୁ ପାଶୁଁ
ଉଆଁଶ ରଜନୀ ପର ।
ପୂର୍ବୁ ରଘୁଙ୍କର  ଦିଗ୍‌ବିଜୟ କାଳେ
ନୃପତିଏ ଈର୍ଷା ବହି,
ରହିଥିଲେ ଦୁଃଖେ  ଏଣୁ କାଶ୍ୱରିକୁ
ଲଭି ନ ପାରିଲେ ସହି ।
ପୂର୍ବର ଶତ୍ରୁତା  ସ୍ମରି ନୃପତିଏ
ଦାଉ ସାଧିବା ଇଚ୍ଛାରେ,
କଲେ ଅବରୋଧ  ଅଜ ଗଲବେଳେ
ଇନ୍ଦୁଙ୍କୁ ନେବା ଆଶାରେ ।

ରାଜକାସ୍ଥ ବୀର  ବୃନ୍ଦ ସଙ୍ଗେ ଘେନି
ତକ୍ଷଣେ ଆଗକୁ ଧାଇଁ,
କଲେ ରଘୁ ସୁତ  ପ୍ରତି ଆକ୍ରମଣ
ଇନ୍ଦୁମତୀ ରକ୍ଷା ପାଇଁ ।
ଦମ୍ଭ ସହକାରେ  ଉଭୟ ପକ୍ଷର
ଲଗିଲା ଘୋର ସଂଗ୍ରାମ,
ପଦାତି ପଦାତି  ରଥୀ ସହ ରଥୀ
ନଥିଲା କାହିଁ ବିଶ୍ରାମ ।
ଆପଣା ଆପଣା  ନାମ ବଂଶାବଳୀ
ନୃପେ ଉଚ୍ଚାରି ଉଚ୍ଚାରି,
କ୍ଷେପୁଥିଲେ ଶର  ପ୍ରତିଦ୍ୱନ୍ଦ୍ୱୀ ଦେଖି
ଶ୍ରବଣ ଯାଏଁ ଓଟାରି ।
ରୋଧିଲା ଭାସ୍କର  ବିମ୍ବ ବହାୟୁସେ
ଧୂଳିରାଶି ଉଡ଼ି ଉଠି,
ଆମ୍ଭ ପର କିଛି  ହେଲା ନାହିଁ ବାଛି
ନଗଲା ଯାଏଁ ତା ତୁଟି ।
ଉତ୍କ୍ଷାରିକ କେହି  ଅଟ୍ଟହାସ କରି
ଆସନ୍ତେ ଅଜ ନିକଟ,
ମୋହନାସ୍ତ୍ର ବିନ୍ଧି  ଗଡ଼ାନ୍ତି ଭୂଇଁରେ
ସେହିମାନଙ୍କୁ ସହସା ।
ପଡ଼ିଲେ ସମରେ  କୁତ କୁତ ହୋଇ
ଗଜବାଜ ସୈନ୍ୟ ରାଜି,
ରଥରେ ଗଡ଼ିଲେ  ରଥୀ ସାରଥୀଏ
ମାଡରେ ମୂରୁଚ୍ଛା ଭଜି ।
ଲୁଣ୍ଠିକରି କଏ  ମୁଣ୍ଡ କାଟିଦେଲା
କୃପାଣରେ ମାହୁନ୍ତର,
ବିପକ୍ଷ ଶରକୁ  ରୋଧିବାକୁ ପୁଣି
ହେଲା କିଏ ଅଗ୍ରସର ।
କିଏ ବା ଲଢେଇ  କଲା ମହାଆଶେ
ପରାଣର ମାୟା ଛାଡ଼ି,
ମୂର୍ଚ୍ଛାରୁ ଉଠି କେ  ଆପଣା ଦେହରୁ
ଦେଉଥିଲା ଧୂଳି ଝାଡ଼ି ।
କେହି ଧନୁର୍ଦ୍ଧାରୀ  ହୁଁ ହୁଁ କାରେ ଗର୍ଜି
କ୍ଷଣେ କ୍ଷେପିବାରୁ ଶର,

ସ୍ୱପକ୍ଷ ବାଣରେ ଛିନ୍ନ ହୋଇ ତାହା
ପଡ଼ିଲା ଭୂଇଁ ଉପର ।
ମାଡ଼ଖାଇ କାର ହାଡ଼ ଗଲା ଭାଙ୍ଗି
କାହାର ମୁଣ୍ଡ ଦଫାକେ,
ଫ୍ଲେଟା ହୋଇ କେତେ ଗୋଟା ଗୋଟା ହୋଇ
ପଡ଼ିଲେ ସମସ୍ଥଳେ ।
ଶକୁନି ଗଧିଆ ଶୃଗାଳ ଏକାଳେ
କାହିଁ ଆସି ହେଲେ ଝୁଣ୍ଡ,
ଓଟାରେ କାଏ ସେ ଗୋଡ଼ କାଏ ପେଟ
କାଏ ବା ଫେଡ଼ିବାଏ ମୁଣ୍ଡ ।
କାକଗଣ ତହିଁ ନ ପାରଣ ପଶି
କରୁଥାନ୍ତି ଘୋର ରଡ଼ି,
ମନେ ହେଲା ଅବା ସୋଦରେ ପାରୁଶେ
କାନ୍ଦୁଛନ୍ତି ଶୋକେ ଜଡ଼ ।
କୃତାନ୍ତର ଭୋଜ ପରି ହେଲା ମନେ
ଦେଖି ଏ ଦୃଶ୍ୟ ବିକଟ,
କେହି ବା ଘାତର ତୀବ୍ର ଯନ୍ତ୍ରଣାରେ
ହେଉଥିଲା ଛଟପଟ ।
ତରୁଣ ଅରୁଣ ଉଦୟ କାଳରେ
ଦିଶେ ପ୍ରାଚୀ ଦିଶ ଯଥା.
ଶୋଣିତ ରଞ୍ଜିତ ସମର ପ୍ରାଙ୍ଗଣ
ଏକାଳେ ଦିଶଇ ତଥା ।
ଶିଳୀମୁଖ କାର ବାହୁ ଛିଡ଼ିବାରୁ
ଯୁଦ୍ଧୁଁ ଗଲା ଅପସରି,
କେହି ବା ସ୍ୟନ୍ଦନୁଁ ଓହ୍ଲାଇ ଯୁଝିଲେ
ବହୁକ୍ଷଣ ଗଦାଧରି ।
ପର୍ଯ୍ୟାପ୍ତ ସମରେ ବଢେ ଅବା ଛିଡ଼େ
ଊର୍ମ୍ମିମାଳୀ ଊର୍ମ୍ମି ଯଥା,
ହେଉଥିଲା ଜୟ କେବେ ପରାଜୟ
ଉଭୟ ପକ୍ଷର ତଥା ।
ଯୁଦ୍ଧ କରି କରି ଅବସନ୍ନ ହୋଇ
ଭଙ୍ଗ ଦେଲା ନିଜବଳ,
ମହାବୀର ଅଜ ସଜ ହୋଇ ନିଜେ
ଆସିଲେ ସଂଗ୍ରାମ ସ୍ଥଳ ।

ତାହାଙ୍କ ଦର୍ଶନେ ଶଙ୍କା କରି ମନେ
ଶତ୍ରୁପକ୍ଷ ସେନାବାହୀ,
ଇତସ୍ତତ ହୋଇ କଲେ ପଳାୟନ
ଡାକଦେଲେ ତ୍ରାହି ତ୍ରାହି ।
ପ୍ରଳୟ କାଳରେ ଧଇଲେ ମୁଦ୍ଗର
ବଳଭଦ୍ର ରୂପ ଯେସନ,
କ୍ରୋଧରେ ଦିଶିଲେ ଭୟଙ୍କର ରୂପ
ରଘୁନନ୍ଦନ ତେସନ ।
ପ୍ରସବୁ ଥିଲା କି ଅଦ୍ଭୁତେ ଶିଞ୍ଜିନୀ
ତାଙ୍କ ତୀକ୍ଷ୍ଣ ବାଣମାନ,
ବହ୍ନି ଶିଖା ପରି କ୍ଷେପି ଭୂରପଟ
ଭାଙ୍ଗିଲା ବହୁ ବିମାନ ।
ଅରି ମୁଣ୍ଡମାଳ ଭଲ୍ଲାଗ୍ରେ ଝୁଣ୍ଡାଇ
ପୂର୍ଣ୍ଣ କଲେ ମହାବୀର,
ଭଲ୍ଲ ଶୂଳ ଗଦା ଆଦି ଅସ୍ତ୍ର ବ୍ରଜ
ଆସନ୍ତେ ହେଲେ ଅସ୍ଥିର ।
ପ୍ରଦ୍ୟୁମ୍ନ ମନ୍ତ୍ର ଯୁବା ଅଜ ତହୁଁ
ପ୍ରିୟମ୍ବଦ ଦତ୍ତ ଅସ୍ତ୍ର,
ପ୍ରୟୋଗ କଲରୁ ହୋଇଗଲା ଖିନ୍ନ
ଶତ୍ରୁକୁଳ ଧ୍ୱଂସ ତନ୍ତ୍ର ।
ଆକଣ୍ଠ ଭୋଜନ ପାଇଲେ କ୍ଷୁଧାର୍ତ୍ତ
ଲଭଇ ତୃପତି ଯେହ୍ନେ,
ପେଟପୂରା ଖାଦ୍ୟ ପାଇବାରୁ ତୁଷ୍ଟ
ଶୃଗାଳ ଶକୁନି ତେହ୍ନେ ।
ଶତ୍ରୁକୁଳ ନାଶ ହେବାରୁ ବାଜିଲା
ଜୟଶଙ୍ଖ ଘନ ଘନ,
ଯାଦବୀୟ ଚମୂ ଗଜ ଦଳେ ଦଳେ
ଆସି କଲେ ତା ଦର୍ଶନ ।
ସଙ୍ଗରୁ ଯୁଦ୍ଧ ବିଜୟୀ କୁମାର
ଯାଇ ପ୍ରେୟସୀଙ୍କ ପାଶେ,
ତାହାଙ୍କୁ ଅନାଇଁ ସମର ବୃତ୍ତାନ୍ତ
କହିଲେ ମହା ଉଲ୍ଲାସେ ।
ଦେଖ ଶଶୀ ମୁଖି ! ଗଡ଼ୁଛନ୍ତି ପଡ଼ି
କେମନ୍ତେ ଶତ୍ରୁ ଏ ଠେଲେ,

ମୋ କରୁଁ ତୁମକୁ ଛଡାଇ ନେବାକୁ
ଆସିଥିଲେ ପର ବଳେ ।
ଏ ବିଜୟ ବାର୍ତ୍ତା ଶୁଣି ଭର୍ତ୍ତା ମୁଖୁଁ
ନକହି କଣ୍ଠ ଆଗରେ,
ସହଚରୀ ମୁଖେ କୁହାଇଲେ ତାଙ୍କ
ମନକଥା ସରାଗରେ ।
ବୈରୀଗଣ ଶିରେ ବାମପଦ ଦେଇ
ବିଜେ କଲେ ସ୍ୱନଗରେ,
ଜାୟା ସହ ଅଜ ପ୍ରବେଶନ୍ତେ ପୁରେ
ନେଲେ ରଘୁ ସମାଦରେ ।
ପଶୁ ପଶୁ ଦୁହେଁ ନଗରେ ଶୁଭିଲ
ହୁଳହୁଳି ବାର ବାର,
ଜନନୀ ବୋହୂକୁ ନେଲେ ଭିତରକୁ
ଧରି ତାହାଙ୍କର କର ।

—**—

## ଅଷ୍ଟମ ସର୍ଗ

ଧୂଷ୍ଣ ତନୟ ଅଜଙ୍କୁ ଏଅନ୍ତେ
ସମରପି ରାଜ୍ୟଭାର,
ବାନପ୍ରସ୍ଥାଶ୍ରମେ ବାହାରିଲେ ରଘୁ
ଅନୁସରି କୁଳାଚାର ।
ଅର୍କ ବଂଶୀ ନୃପେ ତର୍କ କରିବାକୁ
ଲୋଡ଼ନ୍ତି ସକଳ କଥା,
କରନ୍ତି କର୍ମ ଉପଦେଶ ମାନି
ନଚ୍ଛାଡ଼ି କୌଳିକ ପ୍ରଥା ।
ବନେ ଯିବା ଲାଗି ଜନକଙ୍କୁ ଅଜ
ବ୍ୟଗ୍ର ଦେଖି ଆଗ୍ରହରେ,
ମସ୍ତକ ଲୋଟାଇ ତାଙ୍କ ପଦତଳେ
ଅଳିକଲେ ଆତୁରରେ ।
ଯାଅ ନାହିଁ ବୋଲି ମୋତେ ଛାଡ଼ିଦେଇ
ବାଷ୍ପ ଗଦ୍‌ଗଦ କଣ୍ଠରେ,
କହିବାରୁ ରଘୁ କ୍ଷାନ୍ତ ହୋଇ ତହୁଁ
ରହିଲେ ପୁର ଶେଷରେ ।

ବୀରେନ୍ଦ୍ର, ନରେନ୍ଦ୍ର ରଘୁ ଏ ସମୟେ
ଶାନ୍ତ ମାର୍ଗ ଅନୁସରି,
ଜିତେନ୍ଦ୍ରିୟ ହୋଇ ସଂସାର ଜଞ୍ଜାଳୁଁ
ଗଲେ ଧୀରେ ଅପସରି ।
ଯୁବରାଜ ଅଜ ରାଜ୍ୟଭାର ବହି
ନୋହି ଭୋଗ ତୃଷ୍ଣାବଶ,
ନିରତ ଜାଗ୍ରତ ମେଣ୍ଟାଇବା ଲାଗି
ପ୍ରଜାପୁଞ୍ଜ ଅଭିଳାଷ ।
କ୍ଷାତ୍ର ତେଜେ ବ୍ରହ୍ମ ତେଜ ମିଶି ହେଲା
ବାୟୁ ଯୋଗେ ବାୟୁସଖା,
ତାହାଙ୍କ ସୁନ୍ଦର ଶାସନ ରାଜ୍ୟରେ
ନଥିଲା ପୂର୍ବେ ଦେଖା ।
ନବ ପରିଣୀତା ହେଲେ ହେଁ ରାଜନ
ଯୌବନର ଚପଳତା,
ନ ପରଶି ହୃଦେ ତାଙ୍କର ସତତ
ରାଜୁଥିଲା ସରଳତା ।
ଅନାଦର ନେବେ ନକରି କାପ୍ରତି
ଚିତ୍ତେ ରଖି ସମଭାବ,
ଶାସିବାରୁ ଧରି ନ୍ୟାୟ ତୁଳାଦଣ୍ଡେ
ବଢ଼ିଲା ତାଙ୍କ ପ୍ରଭାବ ।
ରଖିବା ପାଇଁକି ଅବାଧ ନୃପଙ୍କୁ
ସଦା ନିଜ ଆୟତ୍ତରେ,
ଭସ୍ମ କଲେ ତାଙ୍କ ଗର୍ବ ଅଭିମାନ
ଜ୍ଞାନମୟ ପାବକରେ ।
ସତ୍ତ୍ୱ-ରଜ-ତମ ତ୍ରିବିଧ ଗୁଣକୁ
ଅବଲମ୍ବି ଦୃଢମନ,
ସମାଧି ବଳରେ କଲେ ପ୍ରକୃତିସ୍ଥ
ଏ କାଳେ ବୃଦ୍ଧ ରାଜନ ।
ଫଳ ସିଦ୍ଧି ଯାଏ ନୋହିଲେ ବିରତ
ସ୍ୱୀୟ ଏକାଗ୍ର ଯୋଗରୁ,
ଅପବର୍ଗ ଆଶେ ରହିଥାନ୍ତି ସଦା
ନିବର୍ତ୍ତି ଭବଭୋଗରୁ ।
ମନୋହର ରଘୁ ଯୋଗ ସମାଧିରେ
କଟାଇ କେତେକ ବର୍ଷ,

ଲଭିଲେ ଶେଷରେ ଅନାମୟ ଧାମ
ସଭିଙ୍କ ମନ ବିମର୍ଷ ।
ପିତୃଦେବଙ୍କର ଦେହ ବିସର୍ଜନ
ଶୁଣି ଅଜ ନରପତି,
ଶୋକରେ ଅନ୍ତ୍ୟେଷ୍ଟି କ୍ରିୟା ସମ୍ପାଦିଲେ
ଲୋତକ ଗଡ଼ାଇ ଅତି ।
ଏ ଅନ୍ତେ ମୃତାହ- କରମ ଗୌରବେ
କଲେ ନୃପ ସମ୍ପାଦନ,
ପିତା ମୃତ୍ୟୁ ଦୁଃଖ କାଳର ପ୍ରଭାବେ
କ୍ରମେ କ୍ରମେ ହେଲା ଲୀନ ।
ଅଂଶୁମାଳୀ ଅଂଶୁ ବିସ୍ତାରିଲା ପରି
ବଢ଼ାଇଲେ ଅଜ ଯଶ,
ଧୀରେ ଧୀରେ ବହୁ ଭୂପତିମାନଙ୍କୁ
କରି ଆପଣାର ବଶ ।
ଏ କାଳେ ମହିଷୀ ଇନ୍ଦୁମତୀ ଗର୍ଭୁଁ
ହେଲା ଜାତ ପୁଅଟିଏ,
ଦେଖିବାକୁ ତାକୁ କୁତୂହଳୀ ହୋଇ
ଜମିଲେ ବହୁ ନାରୀଏ ।
କେତେକାଳ ପରେ ହୋଇଅଛି ପୁଅ
ବୋଲି ପଡ଼ିଲା ଚହଳ,
ପୁରବାସୀ ସବୁ ସେ ରାଜ ଦମ୍ପତି
ହେଲେ ଆନନ୍ଦ ବିହ୍ୱଳ ।
ମେଘମୁକ୍ତ ସୂର୍ଯ୍ୟ ଦିନମଣି ପରି
ଦିଶୁଥିଲେ ସେ ତନୟ,
ବହୁଦିନ ପରେ ପୁତ୍ରଲାଭ ମୋଦେ
ନ ନାଚିବ କା ହୃଦୟ !
ନାମ ଦେଇଥିଲେ ଦଶରଥ ବୋଲି
ନବଜାତ ଶିଶୁଟିର,
ହିମାଂଶୁ ପରି ସେ ବଢ଼ି ଦିନୁଦିନ
ଭବେ ହେଲେ ଶ୍ରେଷ୍ଠ ବୀର ।
ସଚିବ ହସ୍ତରେ ଦେଇ ରାଜ୍ୟଭାର
ରାଣୀସହ ସେ ରାଜନ,
ଉପକଣ୍ଠ ବନେ ବାସନ୍ତୀ ବିହାର
ଲାଗି ବଳାଇଲେ ମନ ।

ଦେବର୍ଷି ନାରଦ ଗୋକର୍ଣ୍ଣ ତୀର୍ଥକୁ
ଯାଉଥିଲେ ସେହିକାଳେ,
ବୀଣାଯନ୍ତ୍ର ତାଙ୍କ ହୋଇଥିଲା ମଣ୍ଡି
ସ୍ୱର୍ଗୀୟ କୁସୁମମାଳେ ।
ସେ ସୁନ୍ଦର ମାଳ ନେଲା ହରି ଅବା
ବାୟୁ ସୁବାସ ଲୋଭରେ,
ଉଡ଼ି ଉଡ଼ି ଖରେ ପଡ଼ିଲା ସେ ଯାଇ
ରାଣୀଙ୍କ ଉରଜ ପରେ ।
ପାଟ ମହାଦେଇ ଦେଖି ସେ ମାଳକୁ
ବିହ୍ୱଳ ହୋଇ ଅଧୀରେ,
ରାହୁ କବଳିତ ଇନ୍ଦୁଙ୍କ ପରାଏ
ନିମୀଳିତ ହେଲେ ଧୀରେ ।
ଚିରକାଳ ପାଇଁ ଇନ୍ଦୁମତୀ ପରି
ରାଜା ହତ ଚେତନାରେ,
ପଡ଼ିଲା କି ସାଥୁଁ ଦୀପଶିଖା ଚୈଳ
ବିନ୍ଦୁସହ ଭୂତଳରେ ।
ପାଖେଥିବା ଲୋକ ହାହାକାର ରବେ
କାନ୍ଦି କାନ୍ଦି ଆର୍ତ୍ତସ୍ୱରେ,
କିଏ ବା ବିଞ୍ଚିଲା କିଏ ବା ସିଞ୍ଚିଲା
ମୁଖ ଶୀତଳ ଜଳରେ ।
କିଛିକ୍ଷଣ ପରେ ଉଠିଲେ ନୃପତି
ଚେତା ପାଇ ଉପଚାରେ,
ମାତ୍ର ରାଣୀଙ୍କର ମହାନିଦ୍ରା ଭଙ୍ଗ
ହେଲା ନାହିଁ ଆଉ ବାରେ ।
ପ୍ରତ୍ୟଙ୍ଗ ଶିଥିଳ ହୋଇଥିଲା ପୁଣି
ନିଷ୍ପନ୍ଦ ସକଳ ସ୍ନାୟୁ,
ବୃଥା ହୁଏ ସିନା ପ୍ରତିକାର ବିଧି
ନଥିଲେ କା ପରମାୟୁ ।
ପ୍ରେୟସୀ ବିହ୍ୱଳ ଭୂତଳୁ ଉଠାଇ
ନିଜେ ପ୍ରେୟସୀଙ୍କୁ ନେଇ,
ସ୍ୱୀୟ କୋଡ଼ଦେଶେ ଥୋଇଲେ ଯତନେ
ନୟନ ଲୋତକେ ଧୋଇ ।
ମୁହଁକୁ ଅନାଇଁ ଅଯୋଧ୍ୟାର ସାଇଁ
ଆଉଁଷି ଆଉଁଷି ଦେହ,

ଝୁରିଲେ ବକନେ ପତିବ୍ରତ ତାଙ୍କ
ଭକତି-ମମତା-ନେହ ।
"ଆଗୋ ଚନ୍ଦ୍ରାନନ ! କପାଁ ଅନାଥକୁ
ନରହି ଫେଡ଼ ନୟନ,
ତୁମ୍ଭ ଆଗେ ବସି କାନ୍ଦୁଛି କ ଲଗି
ନକହ ପଦେ ବଚନ ।
ଭାବଲଣି ମୋତେ କପଟ ପ୍ରଣୟୀ
ବୋଲି ଜାଣୁଛି ନିଶ୍ଚୟ,
ନୋହିଲେ କ କେବେ ଯାଆନ୍ତି ସେ ଦେଶେ
ନକହ ଖୋଲ ହୃଦୟ ।
ଯେ ଦେଶୁ ବାହୁଡ଼ି ନ ଆସନ୍ତି କେହି
କେବେ ଆଗୋ ସୁଧାହାସି,
ନେଇଁନାହିଁ କପାଁ ତବ ସଙ୍ଗେ ମୋତେ
ଯାଏ ଶୋକଜଳେ ଭାସି ।
ରେ କୁତ୍ସିତ ପ୍ରାଣ, ଯାଇଥିଲୁ ଯେବେ
ଶଶୀମୁଖୀ ପ୍ରିୟା ସହି,
ଫେରିଲୁ ଯେବେଠି ନ ଆଣି ତାହାଙ୍କୁ
କପାଁ ଲେଉଟିଲୁ କହ ।
ଭୋଗିବୁରେ ଘୋର ବିରହ ବେଦନା
ଥିବାଯାଏଁ ଧରାତଳେ,
ବାଞ୍ଛାଇବ କିଏ ସଢ଼ିବୁ ଯେବେ
ଆତ୍ମକୃତ ପାପଫଳେ ?
ଧିକ ଶତବାର ଦେହି-ମାନଙ୍କର
ଏରୂପ ଅସାର ତାକୁ,
ହୃଦୟ ବଦ୍ଧ ହେଉଅଛି ଛାଡ
ପ୍ରିୟତମା ବନିତାକୁ ।
ତୁମ୍ଭର ଅପ୍ରିୟ କାର୍ଯ୍ୟ କରିନାହିଁ
କେତେବେଳେ ଏ ଜୀବନେ,
ତେବେ କାହିଁ ପାଇଁ ଯାଉଅଛ ଛାଡ
ଏତେ ରୋଷ ବହି ମନେ ?
ତୁମ୍ଭଠାରେ ଆଖି ରହିଥିଲ ଲଖି
ଅବିରତ ଜୀବନରେ,
ଭୁଲାଇ କପରି ତୁମ ଗାଢ ପ୍ରୀତି
କହ ପ୍ରିୟସହ ଥରେ !

କୁସୁମ-ଖଚିତ ଅଳକା ତୁମର
ଦୋହଲାଇ ପ୍ରଭଞ୍ଜନ,
ଉଠୁଅଛ ବୋଲି ଦେଉଛି ଜଣାଇ
ମୋର ମନେ ପ୍ରିୟଧନ !
ବିଷାଦ କାଳିମା ଧୁଅ ମୋ ହୃଦୟୁଁ
କହି ସୁକୋମଳ କଥା,
ତୁମ୍ଭ ବିନା ସହି ! ନ ଜାଣିବ କେହି
ମୋର ମାନସର ବ୍ୟଥା ।
ଲେଉଥିଲ ଯିନା 'ତୁମେ ମୋର ସଙ୍ଗ
ସ୍ୱପ୍ନମ୍ବର ସଭାସ୍ଥଳେ,
ଜାଣି ମୁଁ ନଥିଲି ଭୁଲାଯିବ ବୋଲି
ଭସାଇ ଶୋକ-ସଲିଳେ ।
ମୋର ମନ ଜାଣି ତୋଷୁଥିଲ ପରା
ନିରତ ମୃଦୁ ବଚନେ,
ଉଠୁଅଛି କୋହ ମୋହଲଗି ଯିନା
ଏବେ ଏ ପାପୀର ମନେ ।
ପୂର୍ବ ସୁକୃତରୁ ଯାଉଛ ବାହାର
ନଛୁଇଁ ଟିକିଏ ରୋଗ,
ଅବା ଭବଜାଲୁଁ ମୁକୁଳିବା ଲଗି
ତେଜିଲ ସକଳ ଭୋଗ !
ଜନମି ଧରାରେ ଦୁଃଖବୋଲି ଦିନେ
ଜାଣିଛ ନଥିଲ ସହି ?
ଏ ବିରହ ବାଧା ଦେଉଅଛି ଏବେ
ମରମେ ମରମେ ଦହି ।
ଫାଟିଯାଏ ହିଆ ଦେଖି ଶିଶୁ ପୁତ୍ର
ତୁମ ସୁକୋମଳ କୋଳେ,
ସନ୍ତାନ ମମତା ଛାଡ଼ିଲ କ ଅବା
ସ୍ୱର୍ଗ ସୁଖରାଭ ଭୋଳେ ।
ଗୋଲି ଚନ୍ଦନକୁ ବୋଳ ହେଉଥିଲ
ନିଦାଘ ତାପ ନସହି,
ଏବେ କେଉଁପରି ଶିଖୀ ଶିଖାପରେ
ଲୋଡୁଛ ଶୟନ ସହି ?
ଉଷୀରବ୍ୟଜନ ତୁଳିକା ନିରତ
ହେଉଥିଲା ଲୋଡା ଯାର,

ହାୟରେ ଦଇବ !　　ମୃତ୍ତିକା ଆବୋରି
ପଡ଼ିଛି ତନୁ ତାହାର ।
ଚକୋର ଚକୋରୀ　　ବିରହ ଯାତନା
ରହେ ସିନା ଅଳ୍ପ କାଳ,
କାନ୍ତ ତୋ ବିରହ　　ଶରଦାନ ବୋଲି
ଜାଣିଲଣି ନରପାଳ ।
ହା ଦଇବ କହ　　କପରି ସହିବ
ସେହି ଚିତାନଳ କ୍ଳେଶ ?
ଯେ ଶୁଏ ନିରତ　　ତୁଳତଳ୍ପ ଶେଯେ
ନଜାଣି ଯାତନା ଲେଶ ।
ହୃଦେ ଯେଉଁ ବ୍ୟଥା　　ଉପୁଜଇ ଏବେ
ଚାହୁଁନାହିଁ ଧୈର୍ଯ୍ୟ ଧରି,
ଆଗୋ, କଳକଣ୍ଠି !　　ତୋର ପିକସ୍ୱନ
କହ, ଭୁଲାବ କପରେ ?
ରୋପିଥିଲ ପଣ　　ଏ ରସାଳ ତରୁ
ପ୍ରିୟଙ୍ଗୁ ଲତିକା ସହ,
ଯାଉଛ ବାହାରି　　ନସାରି ତାଙ୍କର
ଶୁଭଲଗ୍ନ ପରିଣୟ ।
କେତେକି ଶରଧାରେ　　କେତକୀ ପାଖୁଡ଼ା
ଯୁଡ଼ା ବାନ୍ଧିଥିଲ ଆଣି,
ଯାଇଛି ମଉଳା　　ତୁମ୍ଭ ସଙ୍ଗେ ସଖି !
ଅଞ୍ଜନ ଲଗା ବୃହାଣି ।
ରାଜହଂସ ପରି　　ସୁମନ୍ଥର ଗତି
ନୟନ ଭଙ୍ଗି ଚଞ୍ଚଳ,
କାତର ଏ ହୃଦ　　ତୁମ୍ଭ ବିରହରେ
ବହୁଅଛି ନେତ୍ରୁଁ ଜଳ ।
ଦେଖ ପ୍ରିୟସହି !　　ଥୋପା ଥୋପା ହୋଇ
ଅଶୋକୁ କୁସୁମ କଢ଼ି,
ଏଦୁଃଖ ନସହି　　ଅଶ୍ରୁ ଛଳେ ଅବା
ପଡ଼ି ଅଛି ଗଳେ ଝଡ଼ି ।
ଦରଗୁନ୍ଥା କରି　　ଥୋଇଅଛ ପାଶେ
ମୁକୁଳ ବକୁଳ-ମାଳ,
ଏତେବେଗେ କପାଁ　　ଶୋଇଲ ନିଦରେ
ହୋଇ ସରି ସରି ଝାଳ ।

ଉତ୍ସବ ବର୍ଦ୍ଧନ　　ବସନ୍ତାଦି ଋତୁ
ତୁମ୍ଭଲଗି ପ୍ରିୟସହି !
ମହାଶୂନ୍ୟ ହୋଇ　　ରହିବ କପରି
ଏ ଘୋର ଯାତନା ସହି ?
ଏହି ସଖୀଗଣ　　କରନ୍ତି ରୋଦନ
ମୁହିଁ ଅଛି ପାଶେ ପୁଣି,
ଶୋଇଛି କୋଳରେ　　ପ୍ରିୟତମ ସୁତ
ଯାଉଛ ଗୁଡ଼ି ନଶୁଣି ।
ମୋ କଥା ପଡ଼ିଲେ　　ଡେରୁଥିଲ କାନ
ହେଲ କି ଏବେ ବଧିର,
ଅବା ନିଷ୍ଠୁରତା　　ପ୍ରବେଶି ହୃଦୟେ
କଲଣି ଅବୋଲକରା ।
ସଙ୍ଗୀତେ ବିରତି　　ଭୂଷଣେ ଅପ୍ରୀତି
ଭୋଗସ୍ପୃହା ବି ନିବୃତ୍ତି,
ହେବ ସିନା ମୋର　　ତୁମକୁ ନଦେଖି
ଆଜଠାରୁ ଧୈର୍ଯ୍ୟଚ୍ୟୁତି ।
ସୁଦକ୍ଷାଗୃହିଣୀ　　ରହସ୍ୟେ ସଙ୍ଗିନୀ
ବୁଦ୍ଧିଦାନେ ମନ୍ତ୍ରୀବତ,
ପ୍ରିୟ ଶିଷ୍ୟା ପୁଣି　　ପ୍ରିୟତମା ରାଣୀ
ଥିଲ ତୁମ୍ଭେ ଅବିରତ ।
ନିଷ୍ଠୁର କୃତାନ୍ତ　　କେବଳ ତୁମ୍ଭଙ୍କୁ
ନେଉଅଛି ଟାଣି ବଳେ,
ଛଡ଼ାଇ ନେବାକୁ　　ଯା କରୁଁ କାହାରି
ସାଧନାହିଁ ମହୀତଳେ ।
ଅଖିଳ ସମ୍ପଦ　　ଥିଲେହେଁ ମୋହର
ସରିଲ ସକଳ ସୁଖ,
ଆଜଠାରୁ ମୋର　　ନସରିବ ଦାନ
ନଦେଖି ପଙ୍କଜ ମୁଖ ।
ଆହାରେ ବିହାରେ　　ବିଳାସେ ବ୍ୟସନେ
ରଞ୍ଜାଉଥିଲ ମାନସ,
ଲିଭି ଯାଇଛି ତ　　ଲାବଣ୍ୟ ମୁହଁରୁ
ଦିଶୁନାହିଁ ଟିକେ ହସ ।
ଅନ୍ୟ ପ୍ରଲୋଭନ　　ନପାରିବ ଟାଣି
ତୁମ୍ଭଛଡ଼ା ଏ ଜୀବନେ,

ତୁମ୍ଭଲାଗି ସିନା ସକଳ ସୌଭାଗ୍ୟ
ଭଣ୍ଡାରେ ଥିଲା ଯତନେ,
ଭବମାୟା ଛାଡ଼ି ଯାଉଛ ବାହାର
ସ୍ୱର୍ଗସୁଖ ଲଭ ଆଶେ ।
କିନ୍ତୁ ସବୁକଥା ହୁଅନ୍ତା ସୁଖ ବା
ମୁହିଁ ଥିଲେ ତୁମ୍ଭ ପାଶେ,
ଅଳତା ରଞ୍ଜିତ କୋମଳ ଚରଣ
ଦିଶୁଛି ବିବର୍ଣ୍ଣ ଛବି,
କହ କେଉଁପରି ଟିକ ଚୂଳା ଚୂଳି
ନରକର ଦୁଃଖାନୁଭବ ।
ଅଗୁରୁ ମିଶ୍ରିତ ସୁଗନ୍ଧ ସଳିଳ
କରୁଥିଲ ସଦା ପାନ,
ଲଭିବ କି ସୁଖ ଦୂଷିତ ଉତପ୍ତ
ପ୍ରେତ ଜଳାଞ୍ଜଳି ଦାନ ।
ଆଗୋ, ସୁଧାହାସି କରୁଥିଲ ନିତ
କେତେ ରଙ୍ଗ ପରିହାସ.
ଭ୍ରମେ ଭ୍ରମି ଭ୍ରମି ପଙ୍କଜମା କୋଳ
ଶେଷରେ ହେଲା ନିରାଶ ।
ଏରୂପେ ରାଜନ ବିଳପନ୍ତେ ସ୍ମରି
ମହିଷୀଙ୍କ ଗୁଣାବଳୀ,
କାନ୍ଦିଲେ କି ଅବା ତରୁଲତାମାନେ
ପୁଷ୍ପରସ ଅଶ୍ରୁ ଢାଳି ।
ବାହୁନି ବାହୁନି କାନ୍ଦିଲେ କି ହେବ
ଦଇବ ହୃଦ ପଥର,
ସ୍ୱକାର୍ଯ୍ୟ ସାଧନେ ଉଚ୍ଚନୀଚ ଭାବ
କରିଛି ମନୁଁ ଅନ୍ତର ।
ନଥିଲେ ନିୟତି ଭୋଗନ୍ତେ କି ଏହା
ଅଜଙ୍କର ପ୍ରଣୟିନୀ,
ହୁଅନ୍ତା କି ନାଶ ତୁଷାର ପତନେ
ସୁକୁମାରୀ କମଳିନୀ ।
ଈଶ୍ୱର ଇଚ୍ଛାରେ ଅମୃତ କାହିଁ ବା
ହୁଏ ପ୍ରାଣନାଶକାରୀ,
କାହିଁ ବା ଗରଳ ସୁଧା ହୋଇ ହୁଏ
ପ୍ରାଣୀଙ୍କର ହିତକାରୀ ।

ଯମଦୂତ ପରି ବନ୍ଧୁବର୍ଗ ଆସି
ଏଥନ୍ତେ ବିଷ୍ଣଣ ମନେ,
ବିଶ୍ୱବନ୍ଦମାୟା ମହିଷୀଙ୍କି ନେଲେ
ଅଜଙ୍କ କୋଡ଼ୁଁ ଶ୍ମଶାନେ,
ଯହିଁ ଭସ୍ମୀଭୂତ ହୁଅନ୍ତି ସକଳେ
ଚିତାନଳ ମୁଖେ ପାଇ,
କଲେ ବିସର୍ଜନ ନେତ୍ରୁଁ ଅଶ୍ରୁ ଢାଳି
ଚନ୍ଦନେ ଅଗ୍ନି ଲଗାଇ ।
ପ୍ରିୟାଙ୍କ ଉଦ୍ଦେଶ୍ୟେ ମହା ସମାରୋହେ
ଶ୍ରାଦ୍ଧକ୍ରିୟା ତପୋବନେ,
ମହାରାଜା ଅଜ ପୁରେ ବାହୁଡ଼ିଲେ
ଶେଷ କରି ଦଶଦିନେ ।
ନେତ୍ରୀଶୂନ୍ୟ ହୋଇ ପଶନ୍ତେ ନଗରେ
କାନ୍ଦିଲେ ଦୁଃଖେ ସକଳ,
ଧୋଇଦେଲା କିରେ ନଗର ଭିତର
ଲଳନାଙ୍କ ଅଶ୍ରୁଜଳ !
ବଶିଷ୍ଠ ମହର୍ଷି ଯୋଗବଳେ ଜାଣି
ଇନ୍ଦୁଙ୍କ ଦେହାବସାନ,
ଶିଷ୍ୟଟିଏ ବନୁଁ ପ୍ରେରିଲେ ଅଯୋଧ୍ୟା
କରିବାକୁ ଅନୁଧ୍ୟାନ ।
ରାଜାଙ୍କ ସମୀପେ ପ୍ରବେଶି ସେ ଶିଷ୍ୟ
ନିବେଦିଲେ ଏହିପରି,
"ମୁନିବର ଯାହା କହିଛନ୍ତି ମୋତେ
ଶୁଣନ୍ତୁ ଧଇର୍ଯ୍ୟ ଧରି ।
"ତୃଣ ବିନ୍ଦୁଙ୍କର ଘୋର ତପ ଦେଖି
ଭୀତ ହୋଇ ମଘବାନ,
ହରିଣୀ ଅପ୍ସରା ତପୋନାଶେ ତାଙ୍କ
ପଠାଇଲେ ସନ୍ନିଧାନ ।
ସେ ଅପ୍ସରା ଆସି ତାହାଙ୍କ ସନ୍ନିଧେ
କେତେ ଭଙ୍ଗି ବିଳାସରେ,
ପ୍ରକାଶିଲା କିନ୍ତୁ ନୋହି ବିଚଳିତ
ତା ଛଳନେ ମୁନିବର ।
ଦେଲେ ଅଭିଶାପ ରୋଷ ବହ୍ନିମନେ
'ନାରୀଜନ୍ମ ଲଭ ମର୍ତ୍ତ୍ୟେ',

ଶାପ ଭସ୍ମେ ସଦ୍ୟ ହୋଇ ବର୍ଷବେଦା
କହିଲେ ତାହାଙ୍କୁ ଆର୍ତ୍ତେ" ।
"କ୍ଷମାକର ବାରେ କୃପାବନ୍ତ ମନେ
ଦୋଷ ଏ ପରାଧୀନାର,
କହନ୍ତୁ ସଦୟେ କିପରି ଏ ଶାପ
ଦୂର ହେବ ଅବଳାର" ?
"ବାସକର ଯାଇ ସ୍ୱର୍ଗୀୟ ସୁମନ
ସ୍ପର୍ଶ ଯାଏ ମର୍ତ୍ତ୍ୟତଳେ",
କହନ୍ତେ ସେ ଋଷି ଜନ୍ମିଥିଲେ ସେହି
ସୀମନ୍ତନୀ ଭୋଜ କୁଳେ ।
ସ୍ପର୍ଶ କରିବାରୁ ଇନ୍ଦୁମତୀ ଦେହେ
ସ୍ୱର୍ଗଚ୍ୟୁତ ପୁଷ୍ପହାର,
ଅଭିଶାପ ମୁକ୍ତ ହୋଇ ଏଣୁକଲେ
ମର୍ତ୍ତ୍ୟତନୁ ପରିହାର ।
ତେବେ ତାଙ୍କ ପାଇଁ ଅମଣ କାନ୍ଦିବା
ନୁହେ କେବେଁ ସମୀଚୀନ,
ଜନ୍ମିଲେ ସଂସାରେ ମରିବାକୁ ହେବ
ଦେଖୁଛନ୍ତ ପ୍ରତିଦିନ ।
ଶରୀର ଲାଗି ଯାଇଛି ସେ ପାଶୁଁ
ଖୋଜିଲେ ବା କେତେ ତାକୁ,
ମିଳିବ କି ଆଉ କାନ୍ଦିଲେହେଁ ଅବା
ଆରାଧିଲେ ଦେବତାକୁ ।
ଦେହୀ-ଜୀବନ ବୋଲି ମଣିବ ହୃଦୟେ
କର ଏ ମନ୍ତ୍ର ପାଳନ,
ଅଭ୍ୟୁଦୟ କାଳେ ନଶ୍ୱର ଗରବ
କର ଯଶ ଉପାର୍ଜ୍ଜନ ।
ନ ଫେରିବ ଆଉ ଯେଣୁ ଧରେ ଜୀବ
ଭିନ୍ନଗତ ଲୋକାନ୍ତରେ,
ଯାଇ ଅବିରତ ନିଜ ନିଜ କୃତ
କର୍ମଫଳ ଅନୁସାରେ ।
ବସୁନ୍ଧରା ତଳେ ଶରୀରୀମାନଙ୍କ
ସ୍ୱଭାବସିଦ୍ଧ ମରଣ,
ଜୀଇଁବାର ସିନା ଅଟଇ ବିକୃତ
କହିଥାନ୍ତି ବୁଧଗଣ ।

ଯଦ୍ୟପି ଅଛି ଭବେ ନିଜ ଦେହ ସହ
ବିଚ୍ଛେଦ ନିଜ ଆତ୍ମାର,
ତେବେ କି ଆଶ୍ଚର୍ଯ୍ୟ ପୁତ୍ର-ପତ୍ନୀ-ଭର୍ତ୍ତା
ଆଦି ବିରହ ବେଦନାର ।
ଉପଦେଶ ବାଣୀ ଗୁରୁଙ୍କର ଶୁଣି
ଶିଷ୍ୟମୁଖରୁ ନରପତି,
ପ୍ରଣମି ବିନୟେ ତାଙ୍କୁ ବିଦାକରି
ଧର୍ମେ ବଳାଇଲେ ମତି ।
ସତ୍ୟଭାଷୀ ଅଜ ବାଳ୍ୟାବସ୍ଥା ଦେଖି
ମାତୃହୀନ ବାଳକର,
ଯତନେ ତାହାଙ୍କୁ ଆଠବର୍ଷ ଯାଏଁ
ପାଳିଲେ କରି ଆଦର ।
ନାଭ ବଳମ୍ବରେ ଯଥା ତଟରେ
ଭେଦଇ ସଉଧତଳ,
ପ୍ରବଳ ଆବେଗେ ନୃପତିଙ୍କ ଶୋକ
ଭାଙ୍ଗିଲା ମାନସ ବଳ ।
ତହୁଁ ସବମତ କୁମାରଙ୍କୁ ଦେଖି
କର୍ମ ଧାରଣେ ସୁକ୍ଷମ,
ରାଜ୍ୟଭାର ଦେଇ ସ୍ୱର୍ଗ ଯିବା ଲାଗି
କଲେ ସେହୁ ଉପକ୍ରମ ।
ସରଯୂ ଜାହ୍ନବୀ ସଙ୍ଗମ ତୀର୍ଥରେ
ଉପବାସ କରି କରି,
ନନ୍ଦନ କାନନେ ବିହରିଲେ ମୋଦେ
କଳେବର ପରିହରି ।

## ନବମ ସର୍ଗ

ପିତାଙ୍କର ମୃତ୍ୟୁ ପରେ ଦଶରଥ
ଆରୋହି ସିଂହାସନରେ,
ଅରଜିଲେ ଖ୍ୟାତି ବସୁନ୍ଧରା ତଳେ
ପ୍ରଜାପାଳ ଯତନରେ ।
ସେ ମିତ୍ର ବଂଶଜ ମିତ୍ରତା ସୂତ୍ରରେ
ମନାଇଁ ବହୁ ନୃପଙ୍କୁ,
ଆପଣାର କର- ଗତ କରିଥିଲେ
ଧୀରେ ଧୀରେ ସେମାନଙ୍କୁ ।

ବାନ୍ଧୁଥିଲେ ଧନ ପ୍ରଜାହିତ ଲଗି
ସେମାନଙ୍କ ଲୋଡ଼ା ବେଳେ,
ବଶୁଥିଲ ବସୁ କମନୀୟ ଅତି
ଥିଲବେଳେ ନୃପମେନେ ।
ଶସ୍ୟ ଲଗି ଜଳ ନଥିଲ ଅଭାବ
କେତେବେଳେ ଏ ଦେଶରେ,
ସୁନାସୀର ଅବା କରୁଥିଲେ ଭରି
ଜଳ ବୃଷ୍ଟି ନିୟମରେ ।
ନଥିଲ ଦେଶରେ ଶତ୍ରୁ ଆକ୍ରମଣ
ନ ପାରଇ ବ୍ୟାଧି ପଶି,
ବିଟପୀ ନିକର ବିଟପୀ ପରାଏ
ସଦା ଉଠୁଥିଲେ ହସି ।
କେତେବେଳେ ହେଲେ କହୁନଥିଲ କେ
ମିଥ୍ୟା ପରିହାସ ଛଳେ,
ବିପକ୍ଷ ଦେଖିଲେ ସଜ ଉଣ୍ଡି ଉଣ୍ଡି
ଟାଣି ଆଣୁଥିଲେ ବଳେ ।
ଚଣ୍ଡ ସେନାପତି ଦଣ୍ଡଧର ପରି
ସଦା ନ୍ୟାୟ ପରାୟଣ.
ନରପତିଙ୍କର ପରାକ୍ରମ ଦେଖି
ଡରିଥାନ୍ତି ବୈରିଗଣ ।
କର୍କଶ ହୃଦୟ ଥିଲେହେଁ ତାଙ୍କର
କେବେ ଅମର୍ଷ ବଚନ,
କହୁ ନଥିଲେ ସେ ବିପକ୍ଷଙ୍କୁ ସୁଦ୍ଧା
ଯେଣୁ ସେ ଶାନ୍ତଭଜନ ।
ତନ୍ତ୍ରୁ ନଥିଲେ ସେ ମନ୍ତ୍ରୁଥିଲ ଯିଏ
ତାଙ୍କୁ ବିନୀତ ଭାଷାରେ,
କରୁଥିଲେ ପୁଣି ଅର୍ଯ୍ୟମା ପ୍ରାର୍ଥନା
ନିତି ପ୍ରଦୋଷ ଉଷାରେ ।
ବାହାରିଲେ ଥରେ ପିତାମହ ପରି
ଜିଣିବାକୁ ବସୁନ୍ଧରା,
ଗଜବାଜୀ ଯୁକ୍ତ ଚଣ୍ଡ ସେନାସହ
ନମାନି ବରଷା ଖରା ।
ସୈନ୍ୟଧ୍ୱଜ ତାଙ୍କ ପାଇଲେ ଆଦେଶ
କାହାକୁ ମସ୍ତକ ଘେନ,
ଖଣ୍ଡ କରିଥାନ୍ତି ଗଣ୍ଡଦେଶ କାର
କଏ ବା ଧୂଳିରେ ଲୀନ ।
ଚୂର୍ଣ୍ଣ କରିଥାନ୍ତି ବିପକ୍ଷର ବଳ
ପୂରିବା ଯାଏ କାମନା,
ସେନାପତି ହୋଇ ଆଦେଶୁ ଥାଆନ୍ତି
କେବେହେଁ ନୋହି ବିମନା ।
ଶୌର୍ଯ୍ୟ ଦେଖି ତାଙ୍କ ଧୈର୍ଯ୍ୟ ହରାଇଲେ
ଶତ ଶତ ନରପତି,
ଅନନ୍ୟ ଉପାୟ ନ ଦେଖି ସେମାନେ
ତାହାଙ୍କୁ କଲେ ପ୍ରଣତି ।
ମାଗିବାରୁ ଭିକ୍ଷା ରକ୍ଷା କରିବାକୁ
ବଇରି ରାଶି ଅଥୟେ,
ଅରଜି ଥିଲେ ଯା ବିପକ୍ଷ ହଟାଇ
ବରଜି ଦେଲେ ସଦୟେ ।
ଜିଣି ମହୀତଳ ପ୍ରବେଶିଲେ ନୃପ
ଅଯୋଧ୍ୟା ନଗରେ ଆସି,
ଜମା ହେଲ କରେ ଭଣ୍ଡାରେ ତାଙ୍କର
ଅତୁଳ ସମ୍ପଦ ରାଶି !
ରାଜ ଚକ୍ରବର୍ତ୍ତୀ ହେବାରୁ ରାଜନ
ଅନୁବର୍ତ୍ତୀ ନୃପେ ହୋଇ,
ଲଗାନ୍ତି ମସ୍ତକ ପଦତଳେ ତାଙ୍କ
ଉପହାର ମାନ ଥୋଇ ।
ଶାସିଲେ ଧରଣୀ ତରଣି ବଂଶଜ
ଦଶରଥ ନରପତି,
ମହା କଉଶଳେ ଅବା ଚରକରେ
ଚଞ୍ଚଳ ନକରି ମତି ।
କୋଶଳ କାଶ୍ମୀର ମଗଧ ଯେମାଏ
ଧଇଲେ ନୃପଙ୍କ କଭି,
ତରଙ୍ଗିଣୀ ଗଣ ଛାଡ଼ି ଜନ୍ମସ୍ଥାନ
ଲଭନ୍ତି ଯଥା ସାଗର ।
ଈଶ୍ୱର ପ୍ରଭାବରେ ଶୋଭା ପାଉଥିଲେ
ମଧ୍ୟମା ରାଣି ତାଙ୍କର,
ପୁଣି ପତିଭକ୍ତି ଥିବାରୁ ତା ପ୍ରତି
ବଢିଲ ନୃପ ଆଦର ।

ଦିଗ ବିଦିଗରୁ ଆଣି ଏଥୁ ଅନନ୍ତ
ଅର୍ଥ ବିଶି ବାହୁ ବଳେ,
କଲେ ବନଯୋଗ ତାହାକୁ ସାନନ୍ଦେ
ଯାଗ କରି ବହୁ ସ୍ଥଳେ ।
ଦାନବ ବିଜେତା ମଦବାଙ୍କୁ ସିନା
ନମୁଥିଲେ ଭକ୍ତିଭରେ,
ଅନ୍ୟ ଭୂପତିଏ ନୁଆଁଇ ମସ୍ତକ
ତାଙ୍କ ଚରଣ ତଳରେ ।
କୁସୁମ ସମ୍ଭାର ଧରି ମଧୁକାଳ
ଏବେ ହେଲା ଉପସ୍ଥିତ,
ପାଦପ ମଣ୍ଡଳ ନବ କିଶଳୟେ
ହୋଇଲେଣି ବିଭୂଷିତ ।
ଆମ୍ର ବଉଳବା ଗନ୍ଧ ପାଇ ପିକ
ଲୁଚି ରସାଳ ଡ଼ାଳରେ,
ରହି ରହି କୁହୁ- କୁହୁ ସ୍ୱନ କରି
ପ୍ରାଣୀଙ୍କ ମାନସ ହରେ ।
ମୁକୁଳ ବକୁଳ ସୁବାସ ଲଭିଣ
ମଧୁ ମକ୍ଷିକା ନିଚୟ,
ଯାଇ ତା ଭିତରୁ ମକରନ୍ଦ ଆଣି
ଜନନ୍ତି ମଧୁ ସଞ୍ଚୟ ।
ମଧୁପାୟୀ ମଧୁ ପାନ ଲାଳସାରେ
ଗୁଞ୍ଜୁ ଗୁଞ୍ଜୁ ନାଦ କରି,
ଉଡ଼ି ଉଡ଼ି ଯାଇ ନଳିନୀ କୋଷରୁ
ମକରନ୍ଦ ନେଲା ହରି ।
ରମଣୀୟ ଆଭା ହେଲେହେଁ ଶଶୀଙ୍କ
ସନ୍ତାପର ପରିଚୟ,
ଦେଇ କମଳିନୀ ମୁଖ ମୋଡ଼ିଲାକି
ଦେଖି ତାହାଙ୍କ ଉଦୟ !
ସୁଲୁ ସୁଲୁ ବାତ ଦକ୍ଷିଣ ଦିଗରୁ
ବହି ହୁଏ ରୁଚିକର,
ବିଶୁଷ୍କ ଶରୀର ଦିଶିଲା ସୁନ୍ଦର
ଏବେ ପ୍ରାଣୀମାନଙ୍କର ।
ସୁରଭି ସମୟେ ସୁରଭି ତରୁଏ
ବିଶନ୍ତି ସୁରଭି ଅତି,
ସୌରଭେ ମୋହିତ ପଥିକ ପଟଳୀ
ଧରନ୍ତି ମନ୍ଥର ଗତି ।
ପୁଷ୍ପେ ବିମଣ୍ଡିତ କିଂଶୁକ ପାଦପେ
ବନେ ଉଭା ଧାଡ଼ି ଧାଡ଼ି,
ନବବଧୂ ପରି ପିନ୍ଧିଛନ୍ତି ଅବା
ଲୋହିତ ବରଣ ଶାଢ଼ୀ ।
କେଳି କରୁଛନ୍ତି ଜଳପକ୍ଷୀମାନେ
ଠାବେ ଠାବେ ସରୋବରେ,
ଫଗୁ ଖେଳେ ମାତି ବାଳକ କଳାପ
ଡେଇଁଛନ୍ତି ହରଷରେ ।
ଧାନ-ମୁଗ-ମନ୍ଥି ମନ୍ଥି ଚଷାପୁଏ
ସ୍ୱେଦକଶୋଷେ ଘାରି ବ୍ୟସ୍ତ,
ଉଦର ଦାଉକୁ ସମ୍ଭାଳି ନେବାକୁ
ଯେ ତିଏ ସିନା ଅଭ୍ୟସ୍ତ ।
ମକରନ୍ଦ ଆଶେ ଅନ୍ଧ ହୋଇ ଅବା
ମଧୁକର ଦଳେ ଦଳେ,
ଗୁଞ୍ଜରି ମଧୁରେ କୁରୁବକ ପାଶେ
ଉଡ଼ୁଛନ୍ତି କୁତୂହଳେ ।
ବକଚ ବକୁଳ ପୁଷ୍ପ ଗୃହପଟେ
ମଧୁଲୋଭୀ ଭୃଙ୍ଗତତି,
କାନ୍ଦୁଛନ୍ତି କରେ ଗୁଞ୍ଜୁ ଗୁଞ୍ଜୁ ସ୍ୱନେ
ଦେଖି ମଧୁକର ପନ୍ତି ।
ଉଦ୍ୟାନ ଭିତରେ ଫୁଟି ମଲ୍ଲିକାଏ
ରଞ୍ଜନ୍ତି ଦର୍ଶକ ମନ,
ଚନ୍ଦ୍ରମା କାନ୍ତିକି ଧିକ୍‌କାରିଲା କିରେ
ତାର ଧବଳ ବରଣ ?
ବସନ୍ତ ଉତ୍ସବେ ହାସ୍ୟ ରହସ୍ୟରେ
ମାତନ୍ତେ ସକଳ ସିନା,
ନ ମିଳିବ ମୁକ୍ତି ଏ ଭବ ସାଗରୁ
ପରମେଶ ପୂଜା ବିନା ।
ଯାଉଛି ଫେରୁଛି ଏ ବସନ୍ତ କାଳ
ବିଧାତାଙ୍କ ବିଧିବଶେ,
କିନ୍ତୁ ଏ ଯୌବନ ଫେରିବ ନାହିଁଟି
କେବେହେଁ କାଭ ପ୍ରୟାସେ ।

ଅନୁଭବ ସୁଖ ଏ ସୁରଭି କାଳେ
ଦଶରଥ ନରପତି,
ପାରଧି ପ୍ରୟାସୀ ମୃଗୟା ବିହାରେ
ବଳାଇଲେ ଏବେ ମତି ।
ସୁସଜ୍ଜିତ ହୋଇ ପାରଧି ବେଶରେ
ଧରି ଶ୍ରମ ଶରାସନ,
ବାହାରିଲେ ବୀର ନଗର ମଧ୍ୟରୁ
ଆରୋହି ଦିବ୍ୟସ୍ୟନ୍ଦନ ।
ଶୋଭୁଅଛି ଗଳେ ବନ ପୁଷ୍ପମାଳ
ତନୁ ମୃଦୁ ପଲ୍ଲବରେ,
ପଶୁ ସମାକୀର୍ଣ୍ଣ ବିପିନେ ପ୍ରବେଶି
ଭ୍ରମିଲେ ହରଷଭରେ ।
ମାର୍ଗେ ମାର୍ଗେ ତାଙ୍କ ଅନୁଚରବର୍ଗ
ପାରଧି ବେଶ ପକାଇ,
ସରମା ନିକର ପୁଣି ଜାଲ ସେନା
ଯାନ୍ତି ଗୋଡ଼ାଇ ଗୋଡ଼ାଇ ।
ସପ୍ତବର୍ଣ୍ଣ ଯୁକ୍ତ ରମ୍ୟ ଇନ୍ଦ୍ରଧନୁ
ଧରେ ସିଂହମାସ ଯଥା,
ବିଚିତ୍ର ଚରିତ ସୁରଭି କୋଦଣ୍ଡ
ବହିଲେ ନୃପତି ତଥା ।
ତହିଁ ଗୁଣ ଯୋଗି ଦିଅନ୍ତେ ଟଙ୍କାର
ଘୋର ଘୋଷ ହେଲା ଜାତ,
ତା ଶୁଣି ଆବେଗେ ଗ୍ରୀବା ଟେକି ଟେକି
ଦେଖାଦେଲେ ମୃଗବ୍ରାତ !
କ୍ଷିପ୍ର ଗତି ଧରି କୃଷ୍ଣସାରଟିଏ
ଆସୁଥିଲା ଆଗେ ଆଗେ,
ଲକ୍ଷ୍ୟକରି ତାକୁ ତୂଣୀରୁ କାଢ଼ି
ବିନ୍ଧିଲେ କାଣ୍ଡ ସବେଗ ।
ପଡ଼ନ୍ତେ ତଳେ ସେ ଅନ୍ୟ ମୃଗ ଆଶେ
କାଢ଼ିଲେ ତୂଣୀରୁ ଶର,
କିନ୍ତୁ ଭୟତ୍ରସ୍ତ ଦେଖି ତା ଚକ୍ଷୁହାଁଣି
ଥକିଲେ ଅଜ କୁମର ।
ନିକଟରେ ଥିବା ପ୍ରେମିକ ଦାରୁଣ
ଭୂଣେ ହୋଇଥିଲା ଭର,

ବସୁଥିଲ ଯହିଁ କର୍ଦ୍ଦମରେ ସିକ୍ତ
ଖୁରଚିହ୍ନ ବରାହର ।
ଖଣ୍ଡ ଖଣ୍ଡ ହୋଇ ମୁଖମଧ୍ୟୁଁ ତାର
କବଳିତ ମୁଥାଘାସ,
ଦେଖିଲେ ସହସା ଖସି ପଡ଼ୁଥିବା
ଅନ୍ତଃଶୂନ୍ୟ ପାଇ ନାସ ।
ଶୂକରମଣ୍ଡଳ ଚରୁଥିବା ଦେଖି
ସୁକରେ ଶାୟକ ମାରି,
ଟାଳିଲେ ତକ୍ଷଣେ ସେଥିରୁ ଗୋଟିଏ
ଆନନ୍ଦିତ ହୋଇ ଘାରି ।
ବାଟେ ଯାଉଁ ଯାଉଁ ଅରଣ୍ୟ ମହିଷ
ଝପଟିଲା ଭୁଷିବାକୁ,
କିନ୍ତୁ ତାଙ୍କ ଶର ଗାତ୍ରଭେଦ ତାର
ପକାଇଲା ତଳେ ତାକୁ ।
ତଦନ୍ତେ ଶାର୍ଦ୍ଦୂଳ କେଶରୀ ବାରଣ (୧)
ସେହି ସାୟକ ଘୋଷରେ,
ବାହାରନ୍ତେ ବନୁଁ ସଂହାରିଲେ ଜବେ
ସୁତୀକ୍ଷ୍ଣ ଇଷୁ ମୁନରେ ।
ରଜନୀ ହେବାରୁ ପହୁଡ଼ିଲେ ଭୂପ
ରମ୍ୟ ପଲ୍ଲବ ଶେଯରେ,
ପ୍ରଦୀପ ପରିଏ ପ୍ରଜ୍ଜ୍ୱଳିତ ହେଲେ
ପୂର୍ଣ୍ଣଚନ୍ଦ୍ର ଏକାଳରେ ।
ଶ୍ରମଜାତ ଝାଳ ହରି ନେଉଥିଲା
ମୃଦୁ ସମୀରଣ ବହି,
ମୃଗେନ୍ଦ୍ର ଗର୍ଜନ ଘନ ବନମଧ୍ୟେ
ଶୁଭୁଥିଲା ରହି ରହି ।
ପ୍ରଭାତିଲା ନିଶି ଉଠିଲେ ନରେଶ
ଶୁଣି ବିହଙ୍ଗ କୂଜନ,
ସାରି ନିତ୍ୟକର୍ମ ଘେନି ତୁରଙ୍ଗମ
ବୁଲିଲେ ଗହନ ବନ ।
ଖାବ୍ରଗତ ବଶେ ବୁଲି ବୁଲି ଶେଷେ
ସହସା କଲେ ପ୍ରବେଶ,
ତମସା ତଟରେ ନଥିଲା ଯହିଁରେ
ଦିନକର କର ଲେଶ ।

(୧) ହାତୀ

ସେ ତଟିନୀ ଜଳେ          କୁମ୍ଭ ପୂରଣର
ଧ୍ୱନି ଶୁଣି ନରମଣି,
ନିକ୍ଷେପିଲେ ଶଲ୍ୟ          କର୍ଣ୍ଣେ ଯାଏ ଟାଣି
ବାରଣ ବୃଂହିତ ମଣି ।
ବଧ ନୁହେ ବୋଲି          ଦନ୍ତାବଳ କେବେ
ରାଜାଙ୍କର ମହୀତଳେ,
ଜାଣିଲେହେଁ ସେହି          ଏ ଅବଧ୍ୟ କର୍ମ
କରିଲେ ମୃଗୟାବେଳେ ।
ରାଜସ ଗୁଣରେ          ପ୍ରାଣିଏ ଯେତବଟି
ହୋନ୍ତି ବଶୀଭୂତ ଭବେ,
ସେତେବେଳେ କେଭେ          ନରହେ ତାଙ୍କର
ହିତାହିତ ଜ୍ଞାନ ଲବେ ।
ସୁଭିଲା ଏକାଳେ          ତରଙ୍ଗିଣୀ ତୀରୁ
ବିକଳ ବିଳାପ ନାଦ,
ସେହି ଆର୍ତ୍ତ ସ୍ୱର          ଶୁଣି ଶବ୍ଦଭେଦୀ (୧)
ଗଣିଲେ ବଡ଼ ପ୍ରମାଦ ।
ଚଞ୍ଚଳିତ ହୋଇ          ନଦୀ ସମୀପକୁ
ବିଲୋକିଲେ ସେଠୁ ଯାଇ,
"ତପସ୍ୱୀ ତନୟ          ରକ୍ତାକ୍ତ ଶରୀରେ
ହୋଇଛନ୍ତି ଭୂମିଶାୟୀ" ।
ଏ ଦାରୁଣ ଦୃଶ୍ୟ          ପୁଚ୍ଛନ୍ତେ ସେ ନମ୍ରେ
ତାଙ୍କ କୁଳ ପରିଚୟ,
ନିଜ ବଂଶ କଥା          କହିଲେ ଅସ୍ପଷ୍ଟେ
ସେହି ତପସ୍ୱୀ ତନୟ ।
"ଶୂଦ୍ର ମୁନିଙ୍କର          ଅଟଇ କୁମର
ଆସିଥିଲି ଜଳପାଇଁ,
ଅଳ୍ପ ଦୂରେ ଛନ୍ତି          ଅନ୍ଧ ପିତାମାତା
ନେଇଯାଅ ମୋତେ ଧାଇଁ ।
ପ୍ରାଣହାରୀ ଶର          ନ କାଢ଼ ଶରୀରୁ
ତାହାଙ୍କୁ ନେଲେ ବିକଳେ,
ପିତାମାତା ଆଗେ          କହିଲେ ସେ ଧୀରେ
ନେତ୍ରଭରି ଅଶ୍ରୁଜଳେ ।

"କଷ୍ଟ ବୋଲି ତୁମେ          କରିଛ ଘାତକ
ପଡ଼ି ମହା ଅଜ୍ଞାନରେ,
ଦିଅ ଦଣ୍ଡ ମୋତେ          ଯେହେତୁ ମୁଁ ଦୋଷୀ
ଆଜି ଏ ହତ୍ୟା ଦୋଷରେ ।
କାତ୍ କାତ୍ ଶଲ୍ୟ          ଲଭନ୍ତେ ପଞ୍ଚତ୍ୱ
ଶୂଦ୍ର ମୁନିଙ୍କ ନନ୍ଦନ,
ଶୋକାନଳେ ଦଗ୍ଧ          ହୋଇ ସେ ତପସ୍ୱୀ
କଲେ ଅଭିଶାପ ଦାନ ।
"ମୋ ଭଳି ତୁମର          ହେବ ଦେହାନ୍ତର"
ବୋଲି କହନ୍ତେ ସେ ମୁନି,
ଅପୁତ୍ରିକ ବୋଲି          କହି ଦଶରଥ
କିଛିକ୍ଷଣ ହେଲେ ତୁନି ।
ତହୁଁ ସେ ଦମ୍ପତି          ବୋଇଲେ ତାହାଙ୍କୁ
"କାଷ୍ଠ ଆହରଣ କରି,
କର ଅଗ୍ନିଦାନ          ପୁତ୍ର ସଙ୍ଗେ ଯିବୁ
ନ ରହିବୁ ପ୍ରାଣ ଧରି" ।
କହନ୍ତେ ଏକଥା          ମୁନି ଇଚ୍ଛାମତେ
ଯତନେ ସବୁ ସଜାଡ଼ି,
ଥୋଇ ସେ ଚିତାରେ          ତିନିଙ୍କୁ ଏକାଠି
ପାବକ ଦେଲେ ଅଜାଡ଼ି ।
ପତିପତ୍ନୀ ଗଲେ          ତନୟର ସହ
ତହୁଁ (୨) ଅନାମୟ ଧାମ,
ଲେଉଟିଲେ ଭୂପ          ଅଭିଶାପ ପାଇ
ପୁରେ ନ କରି ବିଶ୍ରାମ ।

## ଦଶମ ସର୍ଗ

ଅଯୁତରୁ ଊଣା          କଣ୍ଟିତ ବରଷ
ପାଳିଲେହେଁ ଏ ମେଦିନୀ,
ତନୟର ମୁଖ          ନ ଦେଖି ନୃପତି
ଯାପନ୍ତି ଦୁଃଖେ ଯାମିନୀ ।
ଋଷ୍ୟଶୃଙ୍ଗ ଆଦି          ପୌରହିତ୍ୟ କାର୍ଯ୍ୟେ
ଯଥାକାଳେ ଶୁଦ୍ଧ ହୋଇ,
ପୁତ୍ରେଷ୍ଟି ଯାଗକୁ          କରିଲେ ଆରମ୍ଭ
ସକଳ ସାମଗ୍ରୀ ଥୋଇ ।

(୧) ଦଶରଥ

(୨) ସ୍ୱର୍ଗ

ବଂକ୍ତ କରିଥିଲେ ତ୍ୟକ୍ତ କରି ଭୟ
ଏଣେ ସୁରଗଣେ ଯାଇ,
ବିଷ୍ଣୁଙ୍କ ସମ୍ମୁଖେ ଦଶାସ୍ୟ ଔଦ୍ଧତ୍ୟ
ବ୍ରହ୍ମାଠାରୁ ବରପାଇ ।
ସେକାଳେ ଶ୍ରୀପତି ଯୋଗନିଦ୍ରା ତେଜି
ବସିଥିଲେ ଆନନ୍ଦରେ,
ପଦ୍ମାଳୟା ସହ ଉଦ୍ଭାସିତ ହୋଇ
ଫଣୀମଣିର ଜ୍ୟୋତିରେ ।
ଶୁଣି ନାରାୟଣ ୧. ଅଜରଙ୍କ କଥା
କହିଲେ ହେ ସୁରଗଣ,
ଅଛୁ ମୁଁ ବିଦିତ କରୁଅଛୁ ଯାହା
ରାକ୍ଷସପତି ରାବଣ ।
ଅଚିରେ ମରତେ ହେବି ଆବିର୍ଭୂତ
ନ ଭାବ କିଛି ମନରେ,
ହେଲେ ପ୍ରଭଞ୍ଜନ ଅଗ୍ରସର କରେ
ହୁତାଶନ ସାହାଯ୍ୟରେ !
ପୂର୍ବେ ଦଶାନନ ନଅଟି ମସ୍ତକ
ଛିନ୍ନ କରି ସ୍ୱହସ୍ତରେ,
ମୋ ତୃପତି ଲାଗି ଆନନ୍ଦ ଆହୁତି
ଦେଇଥିଲା ଅକାତରେ ।
ବ୍ରହ୍ମାଙ୍କ ବରର ମର୍ଯ୍ୟାଦା ନିମନ୍ତେ
ସହିଅଛୁ ଏତେକାଳ,
ଦୁଷ୍ଟ ନିଶାଚର ପାଇବ ନିକଟେ
ଦୌରାତ୍ମ୍ୟର ପ୍ରତିଫଳ ।
ଅଯୋଧ୍ୟା ନଗରେ ଦଶରଥ ଗୃହେ
ଜନମି ନର ରୂପରେ,
ଦେବି ଉପହାର ବଳୀରୂପେ ତାକୁ
ରଣଚଣ୍ଡିକା ମୁଖରେ ।
ଏ ଆଶ୍ୱସ୍ତ ବାଣୀ ଦେବତାଏ ଶୁଣି
୨. ଋକ୍ଷଶାଖାମୃଗ କୁଳେ,
ଜନ୍ମିଲେ ମର୍ତ୍ତ୍ୟରେ ନିଜ ନିଜ ଅଂଶେ
ରାବଣର ପ୍ରତିକୂଳେ ।

ଏଣେ ଦଶରଥ ପୁତ୍ର ଲଭ ଯାଗ
କଲବେଳେ ସମାପନ,
ହେମମୟ ପାତ୍ରେ ସ୍ୱର୍ଗୀୟ ପୁରୁଷ
ଜଣେ ଧରି ପାୟସାନ୍ନ ।
ସହସା ଉଠିଲେ ସେହି ଯାଗ କୁଣ୍ଡୁଁ
ଅତି ବିସ୍ମୟ ଜନ୍ମାଇ,
'ପ୍ରଦତ୍ତ ଏ ଅନ୍ନ' ବିଧାତାଙ୍କ କହି
ନୃପଙ୍କୁ ଦେଲେ ବଢାଇ ।
ନେଇ ଦଶରଥ ମହା ଆନନ୍ଦରେ
ଦ୍ୱିଭାଗେ କରି ବଣ୍ଟନ,
କୌଶଲ୍ୟା କୈକେୟୀ ମହିଷୀଙ୍କୁ କଲେ
ସମଭାଗେ ଅରପଣ ।
ଜାଣି ବେନି ରାଣୀ ସ୍ୱାମୀ ମନୋଭାବ
ନିଜେ ଭାଗ ଭାଗ କରି,
ସୁମିତ୍ରାଙ୍କୁ ଦେଲେ ଅଧେ ଅଧେ ଦୁହେଁ
ପ୍ରଭୁଙ୍କ ନାମ ସୁମରି ।
ଫଳେ ବିମଣ୍ଡିତ ହୋଇ ଯଥାକାଳେ
ପାଦପ ଶୋଭଇ ଯଥା,
ସମକାଳେ ଗର୍ଭ ଧରି ତିନି ରାଣୀ
ଦିଶିଲେ ସୁନ୍ଦର ତଥା ।
ନିଶି ଅନ୍ତେ ଧରେ ତମିସ୍ର ନାଶକ
ଜ୍ୟୋତି ଉଷାକାଳ ଯଥା,
ନୃପ ପାଟରାଣୀ କଉଶଲ୍ୟା ଏବେ
ପ୍ରସବିଲେ ପୁତ୍ର ତଥା ।
ମଞ୍ଜୁ ତେଜ ପୁଞ୍ଜ ଯୁକ୍ତ ନବଜାତ
ଶିଶୁ ପଡ଼ିବାରୁ ତଳେ,
ସଙ୍ଗେ ସଙ୍ଗେ ଧାଈ ନାଭି କାଟି ଦେଇ
ଧୋଇଦେଲା ଦେହ ଜଳେ ।
ପୁତ୍ର ହେବା ଜାଣି ଆସି ନରମଣି
ଫିଟାଇ ବ୍ୟୟେ ଭଣ୍ଡାର,
ଦାନ ଅକାତରେ ମୁକ୍ତ କରେ ଆଣି
ବାଣ୍ଟିଲେ ଧନ ଅପାର ।
ଜନନୀ କୋଳରୁ ଶିଶୁଟିକୁ ଆଣି
ଦେଖାନ୍ତେ ଜଣେ ବନିତା,

(୧.) ଦେବତା (୨.) ଭାଲୁ ବାନର

ଦେହର ତାଙ୍କର ଥିବାରୁ ସୁନ୍ଦର
ରାମ ନାମ ଦେଲେ ପିତା ।
କୈକେୟୀ ଭରତ, ସୁମିତ୍ରା ଲକ୍ଷ୍ମଣ,
ଶତ୍ରୁଘ୍ନ ମନୋରମ,
ସନ୍ତାନମାନଙ୍କୁ ଏକ ସମୟରେ
ଦୁହେଁ କରିଲେ ଜନମ ।
ଅଭିରାମ ମୂର୍ତ୍ତି ସେମାନଙ୍କ ଦେହ
ଦେଖି ସକଳ ଆନନ୍ଦ,
ହେଲେ କି ଉଦିତ ପ୍ରସୂତି ଭବନେ
ଶାରଦ ପୂନେଇଁ ଚନ୍ଦ୍ର !
ଏ ଖବର ଖରେ ପ୍ରଭଞ୍ଜନ ବେଗେ
ପ୍ରସରନ୍ତେ ଭୂମଣ୍ଡଳେ,
ଶଙ୍କା କରି ଲଙ୍କା ଭୂପତି କିରୀଟ
ଖସି ପଡ଼ିଲା କି ତଳେ !
ଭୂମିଷ୍ଠ ହେବାରୁ ଦଶରଥ ଘରେ
ଚାରି ତନୟ ରତନ,
ଧରଣୀବାସୀଏ ତଥା ଦେବତାଏ
ହରଷେ ହେଲେ ମଗନ ।
ଗୋଟି ଗୋଟି ହୋଇ କୋଟି କୋଟି ଲୋକ
ରୁଣ୍ଡ ହୋଇ ନଗରରେ,
ବିଜୟି ଖଣ୍ଡନେ ମଣ୍ଡନ କଲେ କି
ରମ୍ୟ କୁସୁମ ମାଳରେ !
ମହା ହର୍ଷ ମନେ ଦେବଲୋକେ ଦେବେ
ଦୁନ୍ଦୁଭି ଶଙ୍ଖ ବଜାଇ,
କାମନା ପୂରଣ ହେବାରୁ ତାଙ୍କର
ତ୍ରିପୁର ଦେଲେ କମ୍ପାଇ ।
ସ୍ତନ୍ୟପାୟୀ ପୁତେ ବଢ଼ିଲେ ଆଦରେ
ଦିନୁଦିନ ଶଶୀପରି,
ଏଣେ ଧରାତଳୁ ବ୍ୟାଧି ଦୁର୍ଭିକ୍ଷାଦି
ଧୀରେ ଗଲା ଅପସରି ।
ଡଗ ଡଗ ହୋଇ ଚାଲିବା ବେଳରେ
କେବେ ଯାଉଥାନ୍ତି ପଡ଼ି,
ଦଣ୍ଡେକି ବଚନ କହି କେବେ କେବେ
ଯାଉଥିଲେ ହସେ ଗଡ଼ି ।

ସୁଶିକ୍ଷା ପ୍ରଭାବେ ବିମଳ ସ୍ୱଭାବ
ଅଧିକ ହେଲା ଉନ୍ନତ,
ପରସ୍ପର ସ୍ନେହ ଭାଇଙ୍କ ମଧ୍ୟରେ
ତେଣୁ ଥିଲା ଅବିରତ ।
ଶ୍ରୀରାମ ଲକ୍ଷ୍ମଣେ ଭରତ ଶତ୍ରୁଘ୍ନେ
ସମଧିକ ଥିଲା ପ୍ରୀତି,
ନଥିଲା ଅନ୍ତର କିଛି ଭେଦ ମଧ୍ୟେ
ସଙ୍ଗ ଲୋଡ଼ୁଥିଲେ ନିତି ।
କିଶୋର ବୟସେ ହୁଅନ୍ତେ ସେମାନେ
ସାରି ବିଦ୍ୟା ଅଧ୍ୟୟନ,
ଲକ୍ଷ ମାରି ମାରି ଶିଖି ଧନୁର୍ବିଦ୍ୟା
କଲେ ଯଶ ଉପାର୍ଜନ ।
ଦେବ ଅଂଶେ ଜାତ ନିତି ଦରଶନ
କରି ତନୟଙ୍କ ମୁଖ,
ଏ ବୁଢ଼ା ବୟସେ ଲଭିଲେ କି ନୃପ
ଅମରି ଧାମର ସୁଖ ?

*★*

## ଏକାଦଶ ସର୍ଗ

ଏଥିଅନ୍ତେ ଦିନେ ବିଶ୍ୱାମିତ୍ର ମୁନି
ଆସି ଅଯୋଧ୍ୟା ନଗରେ,
ବିନ୍ତିଲେ ଦୁଃଖରେ ଦଶରଥ ଆଗେ
କରନ୍ତି ଯା ନିଶାଚରେ ।
"ଯଜ୍ଞ ମାନଙ୍କର ବିନାଶ ନିମନ୍ତେ
ରାମଙ୍କ ବିନା ଜନମ,
ନ କରନ୍ତୁ ମନା ତାଙ୍କୁ ନେବା ଲାଗି
ବ୍ୟର୍ଥ ନହେଉ ମୋ ଶ୍ରମ ।
କାର୍ଯ୍ୟ ସିଦ୍ଧି ପାଇଁ ନାହିଁ ଟା ସନ୍ଦେହ
ହେଲେହେଁ କିଶୋର ରାମ" ।
ସଙ୍ଗେ ସଙ୍ଗେ ତାଙ୍କୁ ଛାଡ଼ି ଦେବ ଆଣି
ଯୁଦ୍ଧରେ ହେଲେ ବିରାମ,
ସେ ତାପସ ବାଣୀ ଶୁଣି ନରମଣି
ଅର୍ପିଲେ ରାମ ଲକ୍ଷ୍ମଣ ।

କଲେ ଧନ୍ୟ ଧନ୍ୟ ନୃପତିଙ୍କି ଏଣେ
ସ୍ୱର୍ଗରେ ଦେବତାଗଣ ।
କିନ୍ତୁ ନୃପ ହୃଦେ ଘାରି ହେଉଥାଏ
ଅନ୍ଧମୁନି ଅଭିଶାପ,
ଘୁଞ୍ଚିଲେ ହେଁ ଋଷି ସଙ୍ଗେ ସେମାନଙ୍କୁ
କଲେ ପରେ ମନସ୍ତାପ ।
ନାନା ଶୁଭଚିହ୍ନ ଦିଶିଲା ସେକ୍ଷଣି
ପଥ ଯାତ୍ରାର ଉତ୍ସବରେ,
ବାଟ ଧୂଳି ରାଶି ନାଶି ଦେଲି କରେ
ବାରିଦ ବାରି ଧାରାରେ ।
ବ୍ୟଗ୍ରେ ରାଜମାର୍ଗେ ବିଞ୍ଚି ଦେଇଥିଲି
ଚାମ୍ପୁ ଗୋଟି ଗୋଟି କରି,
ପୁଷ୍ପିତ ପାଦପୁଁ ଫୁଲତୋଳି ଆଣି
ଅବା ପରିଚାରୀ ପରି ।
ଶ୍ରୀରାମ ଲକ୍ଷ୍ମଣ ଜନକ ଚରଣେ
ପ୍ରଣମି ଭକତିଭରେ,
ବିଶ୍ୱାମିତ୍ର ସଙ୍ଗେ ବାହାରିଲେ ବେନି
ଧରି କାର୍ମ୍ମୁକ ହସ୍ତରେ ।
ଥପ ଥପ ହୋଇ ନୟନୁ ଲୋତକ
ପଡ଼ିଲା ବିଦା କାଳରେ,
ତନୟବତ୍ସଳ ଦଶରଥଙ୍କର
ଅଧିକ ସ୍ନେହ ବଶରେ ।
ଜନନୀଙ୍କ ପଦେ ନୁଆଁଇଁ ମସ୍ତକ
ନଗରୁଁ ହୋଇ ବାହାରି,
ମୁନିଙ୍କ ପଛରେ ଗଲେ ହର୍ଷଭରେ
ସେ ବେନି ରାଜକୁମାର ।
ବିଶ୍ୱାମିତ୍ରଙ୍କର ମୁଖୁଁ ଶୁଣି ଶୁଣି
ପ୍ରାଚୀନ କାହାଣୀମାନ,
ଶୈଶବ ଚପଳ ଗତିରେ ସେ ଦୁହେଁ
କଲେ ପଥ ପର୍ଯ୍ୟଟନ ।
ଗଲାବେଳେ ପଥେ ମେଘମାଳ ନଭେ
ଭାନୁଙ୍କୁ ଦେଲେ ଘୋଡ଼ାଇ,
ମନେ ହେଲା ଅବା କଲା ଛାୟା ଦାନ
ରାମଙ୍କୁ ଦେଖି ବାଟୋଇ ।

ମଧୁର ଧ୍ୱନିରେ ବିହଙ୍ଗମଗଣ
କୂଜୁଥିଲେ ଡାଳେ ବସି,
ସ୍ତୁତି କଲାପରି ଭକତମନକର
ଦେବାଳୟ ମଧ୍ୟ ପଶି ।
ଯାଉଁ ଯାଉଁ ବାଟେ ତାଡ଼କା ଅସୁରୀ
ଭୟଙ୍କର ରଡ଼ି ଛାଡ଼ି,
ଆସନ୍ତେ ଶ୍ରୀରାମ ବିନ୍ଧିବାରୁ ଶର
ବକ୍ଷ ଗଲା ତାର ଛିଡ଼ି ।
ବିଶ୍ୱାମିତ୍ର ମୁନି ଏମାନଙ୍କୁ ଘେନି
ଏଥନ୍ତେ ସ୍ୱୀୟ ମଠରେ,
ପ୍ରବେଶନ୍ତେ ଆସି ଶିଷ୍ୟମାନେ ତାଙ୍କୁ
ପୂଜିଲେ ହରଷଭରେ ।
ପୁରୋହିତ ଯାଗ ଆରମ୍ଭ କରନ୍ତେ
ବେଦ ମନ୍ତ୍ରପାଠ କରି,
ସ୍ଥୂଳ ରକ୍ତ ବିନ୍ଦୁ ପଡ଼ିଲା ଗଗନୁଁ
ବନ୍ଧୁକ ସୁମନ ପରି ।
ପୂଜା ସାମଗ୍ରୀ ପଡ଼ିଗଲା କରୁଁ
ପୁରୋହିତ ମାନଙ୍କର,
ଏଦୃଶ୍ୟ ଦର୍ଶନେ କୋପେ ରଘୁମଣି
ତୂଣୀରୁ କାଢ଼ିଲେ ଶର ।
ଚାହାଁନ୍ତେ ଊର୍ଦ୍ଧ୍ୱକୁ ଦେଖିଲେ ଶ୍ରୀରାମ
ବୁଲାବାର ଗଗନରେ,
ଏପଟେ ସେପଟେ ଯାଗ ବିଘ୍ନକାରୀ
ସୁବାହୁ ମାୟା ବେଶରେ ।
ରିପୁ କୁଳାନ୍ତକ ରାମ ତା ଦର୍ଶନେ
ତାକୁ କରି ଖଣ୍ଡ ଖଣ୍ଡ,
ଶକୁନି ମାନଙ୍କୁ ବାଣ୍ଟି ଦେଲେ ଯବେ
କାମନା କଲେ ତା ପଣ୍ଡ ।
ଯାଗ ସମାପନ କରି ଗାଧିସୁନୁ
ଶୁଭ ଆଶୀର୍ବାଦ ଦେଇ,
ସେ ଦୁଇ ଭାଇଙ୍କି ମିଥିଳା ଯିବାକୁ
ବାହାରିଲେ ସଙ୍ଗେ ନେଇ ।
ବିଦେହାଧିପତି ରାଜର୍ଷି ଜନକ
ତାଙ୍କ ଧନୁ ଭଙ୍ଗ ଯାଗେ,

ଯୋଗ ଦେବା ପାଇଁ  ଗାଧି ତନୟଙ୍କୁ
ନେଉଥିଲେ ଅନୁରାଗେ ।
ପ୍ରଦୋଷ ସମୟ  ହେବାରୁ ସେମାନେ
ପ୍ରବେଶି ଗୌତମାଶ୍ରମେ,
ଗୁମ୍ଫା ତରୁ ତଳେ  ଯାପିଲେ ଯାମିନୀ
କ୍ଳାନ୍ତ ହୋଇ ପଥଶ୍ରମେ ।
ଗୌତମ ପ୍ରେୟସୀ  ଅହଲ୍ୟା ସୁନ୍ଦରୀ
ସ୍ୱାମୀ ଅଭିଶାପ ଫଳେ,
ପାଷାଣ ରୂପରେ  ପଡ଼ିଥିଲେ ତହିଁ
ବହୁଦିନୁଁ ଗୁଳ୍ମ ତଳେ ।
ଋଷିଙ୍କ ଆଦେଶେ  ପାଷାଣ ଉପରେ
ଦଅନ୍ତେ ରାମ ଚରଣ,
ସେ ପଦ କମଳ  ବାଜିବାରୁ କଲେ
ଅହଲ୍ୟା ରୂପ ଧାରଣ ।
ଗୌତମ ପ୍ରେୟସୀ  ଅନୁରୋଧ ବଶେ
ସେ ଆଶ୍ରମେ କିଛି କାଳ,
ରହି ପ୍ରବେଶିଲେ  ମିଥିଳା ନଗରେ
ମୁନି ସଙ୍ଗେ ଦୋନି ବାଳ ।
ବିଦେହ ନଗର  ବାସୀବାସିନୀଏ
ତାଙ୍କ ଲାବଣ୍ୟ ମୂରତି,
ନିର୍ନିମେଷ ନେତ୍ରେ  ଚାହିଁ ଚାହିଁ ତାଙ୍କୁ
ଲଭିଲେ ବଡ଼ ତୃପତି ।
ରାଜର୍ଷି ଜନକ  ସେମାନଙ୍କୁ ଦେଖି
ନେଲେ ଅଭ୍ୟର୍ଥନା କରି,
ମନେ ହେଲା ଦୁହେଁ  ଅବା ସ୍ୱର୍ଗ ଭ୍ରଷ୍ଟ
ପୁନର୍ବସୁ ତାରା ପରି ।
ଯାଗ ଶେଷ ଅନ୍ତେ  ମିଥିଳାପତିଙ୍କୁ
ନିବେଦିଲେ ଋଷିବର,
'ଭବ ହରଧନୁ'  ଦର୍ଶନ ଲାଳସେ
ଆସିଛନ୍ତି ରଘୁବର ।
ଶ୍ରବଣ ଅନ୍ତରେ  ଉତ୍ତରିଲେ ତହିଁ
ବିଦେହ ରାଜ ଜନକ,
ଏ ଦୁଇ ଶିଶୁଙ୍କ  ନିଷ୍ଫଳ ସାହସେ
ମନେ ଲାଗେ ଦକ ଦକ ।

ନୁଆଇଁ ନପାରି  ଭୀଷଣ ଧନୁକୁ
ଆଗେ ବହୁ ଧନୁର୍ଦ୍ଧର,
ଲଜ୍ଜାରେ ବାହୁଡ଼ି  ଯାଇଛନ୍ତି ଫେରି
ନିଜକୁ କରି ଧିକ୍କାର" ।
ଜନକ ବଚନ  ଶୁଣି ଗାଧିସୂନୁ
ପ୍ରଶଂସନ୍ତେ ରାମବଳ,
ଆଦେଶିଲେ ସେହୁ  ପରିଚରେ ଧନୁ
ଆଣିବାକୁ ସଭାସ୍ଥଳ ।
ଦେବରାଜ ଯଥା  ଗଗନ ମଣ୍ଡଳେ
ଆଦେଶନ୍ତି ଜଳଦକୁ,
ବିଚିତ୍ର ଚିତ୍ରିତ  ତେଜୋମୟ ଚାପ
ଆବିଷ୍କାର କରିବାକୁ ।
ଭୁଜଙ୍ଗମ ରାଜ  ସମାନ ଭୀଷଣ
ସେ କୋଦଣ୍ଡ ଧରି ରାମ,
ବିସ୍ମୟ ଜନ୍ମାଇ  ସଭାସ୍ଥ ରାଜନେ
ଦେଖାଇଲେ ସ୍ୱବିକ୍ରମ ।
ଅତିଶୟ ଗୁରୁ  ହେଲେ ହେଁ କୋଦଣ୍ଡ
ନୁଆଁନ୍ତେ ଅବଲୀଳରେ (୧)
ଏରଣ୍ଡ ଦଣ୍ଡକ  ଖଣ୍ଡ ଖଣ୍ଡ ହୋଇ
ପଡ଼ିଲା ଭୂଖଣ୍ଡପରେ !
ରାମଶକ୍ତି ଦେଖି  ଅଯୋନି ସମ୍ଭୂତା
ଜାନକୀଙ୍କି ରାମ କରେ,
'ସମର୍ପିଲି ବୋଲି'  କହିଲେ ତପୀଙ୍କି
ଜନକ ହରଷଭରେ ।
ତହୁଁ ଏ ରୂପରେ  ଲେଖି ପଠାଇଲେ
କରି ବହୁ ନମସ୍କାର,
ଅଯୋଧ୍ୟା ରାଜାଙ୍କ  ନିକଟ (୨) ଜନକ
ରାମ ଧନୁ ଭଙ୍ଗ ବାର ।
"ବିଜେ ହୋଇ ପୁରେ  ପୁତ୍ରବଧୂ ରୂପେ
ପରିଗ୍ରହ ମୋ ସୁତାକୁ,
ସେବକ ପରାଏ  ରାଘବ ଯଶସ୍ୱୀ
ସଦା ଏ ନେମି ବଂଶକୁ ।

(୧) ଅନାୟାସରେ  (୨) ନିକଟକୁ

ବାର୍ତ୍ତାବହ ରୂପେ ଗଲେ ସତାନନ୍ଦ
ଅଯୋଧ୍ୟା ଏ ସମୟରେ,
ଜଣାନ୍ତେ ଭୂପଙ୍କୁ ଅର୍ଚ୍ଚିଲେ ସେ ତାଙ୍କୁ
ଆନନ୍ଦିତ ହୃଦୟରେ ।
ମିଥିଳାଭିମୁଖେ ବାହାରିଲେ ନୃପ
ଭରତ ଶତ୍ରୁଘ୍ନ ସହ,
ମହା ସମାରୋହେ ଗଜବାଜୀ ଧରି
ଜାଣି ଏ ଶୁଭ ବିବାହ ।
ପ୍ରବେଶି ବିଦେହ ଅଯୋଧ୍ୟାଧୀଶ୍ୱର
ବିଶ୍ୱାମିତ୍ର ସଙ୍ଗେ ଆଗେ,
କଥାବାର୍ତ୍ତା ହୋଇ ଜନକ ସଙ୍ଗରେ
ସମ୍ଭାଷଣ ଅନୁରାଗେ ।
ମହୀପାଳ ବେନି ଚରଣରୁ ବିଧି
ସମାହିଲେ ଯଥା କାଳେ,
ଅଯୋନି ସମ୍ଭୂତା ବରମାଳ ଆଣି
ଦେଲେ ରଘୁମଣି ଗଳେ ।
ଜାନକୀ ଭଗିନୀ ଊର୍ମିଳାଙ୍କ ସଙ୍ଗେ
ଲକ୍ଷ୍ମଣଙ୍କ ପରିଣୟ,
ଜ୍ୟୋତିଷୀ ଗଣନା ଅନ୍ତେ ନିର୍ବିଘ୍ନରେ
କଲେ ନରପତି ଦ୍ୱୟ ।
ଜନକଙ୍କ ଭାଇ କୁଶଧ୍ୱଜ କନ୍ୟା
ମାଣ୍ଡବୀ ଶ୍ରୁତକୀର୍ତ୍ତି,
ଦୁହେଁ ଯଥାକ୍ରମେ ବରିଲେ ସାଗ୍ରହେ
ଶତ୍ରୁଘ୍ନ ଭରତ ପ୍ରତି ।
ନବ ବଧୂଙ୍କର ମଧୁର ମିଳନେ
କୃତାର୍ଥ ହେଲେ ସକଳ,
ରାଜଧାନୀ ମୁଖେ ବାହାରିବା ଲାଗି
ବ୍ୟଗ୍ର ବରଯାତ୍ରୀ ଦଳ ।
ଲଭିଣ ନେଲଣି ବଧୂ ସହ ଘରେ
ବାହାରିଲେ ଦଶରଥ,
ପ୍ରତିକୂଳ ବାତ ଭୀମ ବେଗେ ବହି
ଓଗାଳିଲା ତାଙ୍କ ପଥ ।
ବ୍ୟାପ୍ତ ହୋଇଗଲା ଦିଗ୍‌ମଣ୍ଡଳ ଜବେ
ଘନଧୂଳି ପଟଳରେ,
ଜମ୍ବୁକ ରଡ଼ିଲେ ଭୟଙ୍କର କର୍ଣ୍ଣ-
କଟୁ ବିକୃତ ସ୍ୱରରେ ।
ଦେଖନ୍ତେ ସହସା ଯମଦଗ୍ନି ପୁତ୍ର
ବୀର ପରଶୁରାମଙ୍କୁ,
ଦଶରଥ ଭୂପ 'ଏହି ଅର୍ଘ୍ୟ' ବୋଲି
ସମ୍ଭାଷଣ କଲେ ତାଙ୍କୁ ।
ସେ ଅଭ୍ୟର୍ଥନାରେ ନକରି ଭ୍ରୂକ୍ଷେପ
କଲେ ତୀବ୍ର ଦୃଷ୍ଟିପାତ,
ମଣିଲେ ନୃପତି ବିନା ନୀରଦରେ
କୁଳିଶ ହେଲା କି ଜାତ !
କମାନକା ଟେକି ହୋଇ ଉଗ୍ର ଆଗେ
ଧରି ନିଜ ଧନୁବର,
ଅବଜ୍ଞା କରିଲେ ରଘୁନନ୍ଦନଙ୍କୁ
ଉଚ୍ଚାରିଲ କର୍କଶ-ସ୍ୱର ।
ନିଃଶଙ୍କ ହୃଦୟେ ମଣ୍ଡିତ ଶାୟକ
ରଖି ଅଙ୍ଗୁଳି ସନ୍ଧିରେ,
"କ୍ଷତ୍ରିୟ ସମାଜ ମୋର ଶତ୍ରୁ" ବୋଲି
ବୋଇଲେ ରକ୍ତ ଦୃଷ୍ଟିରେ ।
"ନିର୍ବାପିତ ବହ୍ନି ଉଠିଲଣି ଜଳି
ଶୁଣି ତୋହର ବିକ୍ରମ,
ବିଳର ଭିତରେ ଯଷ୍ଟି ଆଘାତରେ
ଯଥା ସୁପ୍ତ ଭୁଜଙ୍ଗମ ।
ବସୁନ୍ଧରା ତଳେ ରାମ ଆଖ୍ୟା ମୋର
ଅଦ୍ୟାପି ଥିଲା ବିରାଜି,
ହର ଶରାସନ ଭାଙ୍ଗି ଅଛୁ ବୋଲି
ବାଧୁଅଛୁ ମୋତେ ଆଜି ।
ଏ ଶିବ ଧନୁର ସାର ଭାଗ ପୂର୍ବେ
ବିଷ୍ଣୁ ନେଇଥିଲେ ହରି,
ପକାଇଲୁ ଭାଙ୍ଗି ମହ ଆଣ୍ଠ ପଣେ
ଦଦରା ଧନୁକୁ ଧରି ।
ଯେ ବୃକ୍ଷ ମୂଳର ମୃତ୍ତିକା ସକଳ
ଯାଇଥାଏ ଧୋଇ ହୋଇ,
ମୃଦୁଳ ପବନ କରେ ଭୂମିସାତ
ଏହା ଅନ୍ୟଥା ନୁହଇ ।

କରିବ ସ୍ୱୀକାର ପରାଜୟ ଆଜ
ମୋ କୋଦଣ୍ଡେ ଦେଲେ ଗୁଣ,
ସୁରେନ୍ଦ୍ର ସମାଜେ ବଢିବ ତୋ ନାମ
ବାଢିବ ତୋ ପଦେ ଘୃଣ" ।
ଭାର୍ଗବ ମୁଖରୁ ଶୁଣି ଦାଶରଥି
ମନ୍ଦ ମନ୍ଦ ହାସ୍ୟକରି,
ଚଢାଇଲେ ଗୁଣ ଅବଲୀଳା କ୍ରମେ
ଭାର୍ଗବ କାର୍ମୁକ ଧରି ।
ଦୁଃଖେ ବିପ୍ରବର ମ୍ଳାନପ୍ରଭ ହୋଇ
ମଳିନ ମୁଖ ଲଜ୍ଜାରେ,
ପଚାରିଲେ ରାମ ଗର୍ବୀ ଭାର୍ଗବଙ୍କୁ
ଅତି ମର୍ଯ୍ୟାଦ ଭାବରେ ।
ମାରିବାକୁ ମୋତେ କରିଥିଲେ ଇଚ୍ଛା
ଦେବି କି ତା ପ୍ରତିଫଳ,
ଅବା ରୋଧିବକି ତବ ଗତିପଥ
କହ ହେ ବିପ୍ର ଚଞ୍ଚଳ ?"
ଓଠଶୁଖା ସ୍ୱରେ ଉତ୍ତରିଲେ ବିପ୍ର
"ଜାଣେ ମୁଁ ତୁମ୍ଭଙ୍କୁ ହରି,
ପରମ ପୁରୁଷ ଚରାଚର ବୋଲି
ଖୁସି ମୁଁ ହୋଇଲି ହାରି ।
କହୁଛି ଜଣାଣ ଏ ଘେନ ମାନସ
ଲୁବ୍ଧ ହୋଇ ସୁଖେ ରତ,
ପବିତ୍ର ତୀର୍ଥରେ ଭ୍ରମିବାକୁ ସଦା
ନରୋଧ ମୋ ଗତିପଥ" ।
"ତଥାସ୍ତୁ" ଉଚ୍ଚାରି ତାଡକାରି ରାମ
ନିକ୍ଷେପ କରନ୍ତେ ଶର,
ଚିରଦିନ ଲାଗି ଭୃଗୁନନ୍ଦନଙ୍କ
ରୋଧିଲା ସରଗ ଦ୍ୱାର ।
ନସହେ ଦଇବ କାହାର ଗରବ
କେତେବେଳେ ଧରାତଳେ,
ଜାଣି ଶୁଣି ଶୁଣି ଦେଖାଏ ଗାରିମା
ମଣିଷ ପ୍ରକୃତି ଛଳେ ।
"ମାଗୁଛି ମେଲାଣି" କହି ଭୃଗୁସୁତ
ଗଲେ ଗନ୍ତବ୍ୟ ମାର୍ଗରେ,
ରାଜା ଦଶରଥ ରାମଙ୍କୁ କୋଳରେ
ଧଇଲେ ଅତି ଆଦରେ ।
"ଦୂନନ୍ଦନ ହେଲି" ବୋଲି ନରପତି
ଅଳିଙ୍ଗି ଥରକୁ ଥର,
ମହା ଆଡମ୍ବରେ ପୁତ୍ରବଧୂ ସହ
ପ୍ରବେଶିଲେ ସ୍ୱନଗର ।

—ଃ★ଃ—

## ଦ୍ୱାଦଶ ସର୍ଗ

ଆସନ୍ନ ନିର୍ବାଣ କାଳ କ୍ରମେ କ୍ରମେ
ଦଶରଥ ନୃପବର,
ଚିନ୍ତିଲେ ମନେ ରାମଙ୍କୁ ଦେବାକୁ
ରାଜ୍ୟର ଶାସନ ଭାର ।
କୁଳ ପୁରୋହିତ ବଶିଷ୍ଠଙ୍କୁ ଡାକି
ବାଛିଲେ ଯୋଗ ମଙ୍ଗଳ,
ରାମ ଅଭିଷେକ ସମାରୋହ ବ୍ୟାପି
ପଡିଲା ଦେଶେ ଦେଶେ ହେଲା ।
ତୋରଣ ମାଳରେ ପୂରଣ ହୋଇଲା
ଅଯୋଧ୍ୟା ରାଜ ସରଣୀ,
ପଥ ପାର୍ଶ୍ୱରେ ଠୁଳ ହେଲା ଆସି
କ୍ରମେ ବିବିଧ ବିପଣୀ ।
ନାନା ପରିକର ଆଣି ପରିକର
ମଣ୍ଡିଲେ ରାଜ ପ୍ରାସାଦ,
ଏହା ଦରଶନେ ମନ୍ଥରା ମନରେ
ଜନ୍ମିଲା ଘୋର ବିଷାଦ ।
ଛଳ ଦାମ୍ଭମନେ ଗୋଳ ଲଗାଇଲା
ଯାଇ କୈକେୟୀ କକ୍ଷା,
ତେଣୁ ତା କଥାରେ ଦଶରଥ ନୃପଙ୍କୁ
ମାଗିଲେ ବର ସହସା ।
ରାମ ବନବାସ ଚଉଦ ବରଷ
କରିବେ ପ୍ରଥମ ବରେ,
ତନୟ ତାଙ୍କର ଦ୍ୱିତୀୟ ବରରେ
ବସିବେ ସିଂହାସନରେ ।

ଶୁଣୁ ଶୁଣୁ ଭୂପ ପଡ଼ିଲେ ଭୂତଳେ
ମୂର୍ଚ୍ଛା ଭଜି ବାର ବାର,

ପାଖେ ଥିବା ଲୋକେ ଏହା ଶୁଣି କଲେ
କଇକେୟୀଙ୍କୁ ଧିକ୍କାର ।

କି ହେଲା କି ହେବ ବଜ୍ର କି ପଡ଼ିଲା
ନିର୍ମଳ ନଭୋମଣ୍ଡଳେ,

ମେରୁ ମହୀଧର ଉପୁଡ଼ି ପଡ଼ିଲା
ଆଜି କେଉଁ ପାପଫଳେ ।

ଗହଳ ଭିତରେ ଚହଳ ପଡ଼ିଲା
ରାମଙ୍କର ବନବାସ,

କ୍ଷଣକ ଭିତରେ ଚୂର୍ଣ୍ଣ ହେଲା କରେ
ସମସ୍ତଙ୍କ ଅଭିଳାଷ !

ଘୋଟିଗଲା ପୁରେ ପୁରେ ଏ ବାରତା
ଝଡ଼ ବେଗରେ ସହସା,

ଭରତ ଜନନୀ ଆଣିଲେ ହକାରି
ନିଜର ବୈଧବ୍ୟ ଦଶା ।

ରଘୁକୁଳ ମଣି ବଲ୍କଳ ବସନ
ପିନ୍ଧି ବାହାରିଲେ ବନେ,

ତାଙ୍କ ସଙ୍ଗେ ସୀତା ପଛରେ ଲକ୍ଷ୍ମଣ
ଗଲେ ପ୍ରସନ୍ନ ବଦନେ ।

କନ୍ଦାଇ ପରଜା ପିତୃ ମାତୃବର୍ଗ
କନ୍ଦାଇ ଆତ୍ମୀୟ ଜନେ,

ପିତୃ ସତ୍ୟ ଲାଗି ପ୍ରବେଶିଲେ ଯାଇ
ଘୋର ଦଣ୍ଡକା ଅରଣ୍ୟେ ।

ଗୋଡ଼ାଇ ଗୋଡ଼ାଇ ଯାଇଥିଲେ ଯେତେ
ବାହୁଡ଼ାଇ ଦେଲେ ରାମ,

କୁଶ ଘାସ ପାରି ତରୁ ତଳେ ରାତି
ତହିଁରେ ନେଲେ ବିଶ୍ରାମ ।

ବୃଦ୍ଧ ଦଶରଥ ଅଚିରେ ଏ ମର
ତନୁ କଲେ ବିସର୍ଜନ,

ଭରତ ଶତ୍ରୁଘ୍ନ ମାମୁଁ ଘରୁ ଆସି
କଲେ ଏ ଦଶା ଦର୍ଶନ ।

ବନ ଅଭିମୁଖେ ସସୈନ୍ୟ ସେ ଦୁହେଁ
ଗଲେ ବିକଳ ହୃଦରେ,

ଖୋଜି ଖୋଜି ଯାଇ ଭେଟିଲେ ରାମଙ୍କୁ
ଚିତ୍ରକୂଟ ଗହନରେ ।

ଅଗ୍ରଜ ଦର୍ଶନ ପୟରେ ପ୍ରଣମି
ସଖେଦେ ସାନ ଭ୍ରାତାକୁ,

ମହାରାଜା ବାର୍ତ୍ତା ପିତାଙ୍କର ଦେଇ
କହିଲେ ଲେଉଟିବାକୁ ।

ଅଗ୍ରଜ ଛାମୁରେ କାତରେ ବିନତି
କରିଥିଲେହେଁ ଭରତ,

ସତ୍ୟପ୍ରିୟ ରାମ ଫେରିବାକୁ ବନୁଁ
ନୋହିଲେ କେବେ ସମ୍ମତ ।

ବୁଝାଇ ନପାରି ରାମଙ୍କୁ ଭରତ
ତାଙ୍କ ପାଦୁକା ଯୁଗଳ,

ଧରି ବାହୁଡ଼ିଲେ ନନ୍ଦିଗ୍ରାମେ ପହିଁ
ଦୁଃଖେ କଟାଇଲେ କାଳ ।

ଏଣେ ଭ୍ରମି ଭ୍ରମି ଫଳମୂଳ ଖାଇ
ତଳେ ଶୋଇ ଅବିରତ,

ରଘୁକୁଳମଣି ଜାୟାଭ୍ରାତା ସହ
ଆଚରିଲେ ଯତି ବ୍ରତ ।

ଧନ୍ୟରେ ଦଇବ ଦେଖା ଖଣ୍ଡ ତୋର
ଗଲା ନାହିଁ କାଳେ କାଳେ,

ଯେ ଭୁଞ୍ଜିଲେ ନିତି ଘୃତ ପକ୍ୱ ଅନ୍ନ
ଆଜି ସେ ବଞ୍ଚିଲେ ଫଳେ ।

କିଛୁକାଳ ଅନ୍ତେ ପଞ୍ଚବଟୀ ମୁଖେ
ଯାଉଁ ଯାଉଁ ସଞ୍ଜକାଳେ,

ବୀକ୍ଷଣେ ସହସା ବିରାଧ ରକ୍ଷକୁ
ସଂହାରିଲେ ଶରଜାଳେ ।

ଉଟଜ ବିରଚି ପଞ୍ଚବଟି ବନେ
ତହିଁ ରହିଲେ ସୁଖରେ,

ଦଶାସ୍ୟ ଭଗିନୀ ସୂର୍ପଣଖା ବନେ
ଆକୁଳ ହୋଇ କାମରେ ।

ଆସି ହେଲା ଉଭା ରାମଙ୍କ ଆଗରେ
ଦେଇ ଆତ୍ମ ପରିଚୟ,

ଚରିତାର୍ଥ ଲାଗି ଆପଣାର ସ୍ୱାର୍ଥ
କହିଲା ଖୋଲି ହୃଦୟ ।

ଶୁଣି ତାହାଠାରୁ ଉତ୍ତରିଲେ ରାମ
"କଇ ଗୋ ଯାଇ ବରଣ,
ହୋଇ ବ୍ରତୀ ହୀନ ଲତା ଚାରୁଣରେ
ଅଛନ୍ତି ବୀର ଲକ୍ଷ୍ମଣ"।
ନାନା ଅଙ୍ଗ ଭଙ୍ଗି ଦେଖାଇ ଭାଇଙ୍କୁ
କହନ୍ତେ ଏହା ଉଲ୍ଲାସେ,
କୌତୁକେ ଲକ୍ଷ୍ମଣ ଘଷିଲେ ବାଳକୁ
"ଯାଅ ଏଥୁ" ମୃଦୁ ହାସେ।
"ଅଗ୍ରଜଙ୍କୁ ତୁମେ ବରିଅଛ ଆଗେ
ଏଣୁ ମାନମାପ୍ୟା ମୋର,
ବଳଉଛ ମନ ବୃଥା ଦାସ ଜନେ
ଯଥାର୍ଥ ପତି ସେ ତୋର।
ଦୁଇ ଭାଇ ପାଶେ ଯାଇ ଆସି ସେହି
ହେଲା ଏଣେ ଅନାପୂର୍ଣ୍ଣ,
ସମ୍ଭାଳି ନପାରି ଜାନକୀ ହସନ୍ତେ
କ୍ରୋଧେ ସେ ହେଲା ଉନ୍ମତ୍ତା।
ମହାକୋପେ ଦୁଷ୍ଟା କହିଲା ସୀତାଙ୍କୁ
"ଦେଖିବୁ ମୋର ପ୍ରଭାବ,
ଯୋଗ୍ୟ ଫଳ ତାର ପାଇବୁ ଅଚିରେ
ପୁଣି କେତେ ଗରବ।
ଏକଥା ଶ୍ରବଣେ ଲକ୍ଷ୍ମଣ କ୍ରୋଧରେ
କାଟି ତାର ନାକ କାନ,
କରନ୍ତେ ବିକୃତା ଖରେ ଯାଇ ଖରେ
କହିଲା ଯା ଅପମାନ।
ସେ ଦାନବ ସଙ୍ଗେ ଶତ ଶତ ରକ୍ଷ
ଧରି ଆସନ୍ତେ ତକ୍ଷଣେ,
ଦେଖି ସୀତାପତି ଶରବୃଷ୍ଟି କରି
ନାଶିଲେ ସକଳ ରଣେ।
ଅନନ୍ତ ନିଦ୍ରାରେ କରନ୍ତେ ଶୟନ
ଲକ୍ଷ ଲକ୍ଷ ରକ୍ଷ ଗଣ,
ଅଲକ୍ଷଣୀ ଦୁଷ୍ଟ ସୁର୍ପଣଖା ଖରେ
ଭେଟିଲା ଯାଇ ରାବଣ।
ଦାନବ ନିଧନ ଶୁଣି ଲଙ୍କାପତି
ପୁଣି ଭଗିନୀର ଦୁଃଖ,

ମାୟାବୀ ମାରୀଚ ସମୀପେ ଚଳିଲା
ହୋଇଣ ବିଷଣ୍ଣ ମୁଖ।
ତା ସାହାଯ୍ୟ ପାଇ ମାୟା ମୃଗ ଯୋଗେ
ଛଳି ରାମ ରାମାନୁଜ,
ହରି ଜାନକୀଙ୍କି ଫେରିଲା ଲଙ୍କାକୁ
ବ୍ୟଗ୍ର ଦଶାସ୍ୟ ଦନୁଜ।
ଏଣେ ଖୋଜି ଖୋଜି ଜାନକୀଙ୍କି ବନେ
ମହାଶୋକେ ଦୁଇ ଭାଇ,
ଶୁଣିଲେ ଶେଷରେ ଜଟାୟୁଙ୍କ ଠାରୁ
ରାବଣ ନେବା ଚୋରାଇ।
ପ୍ରାଣ ଛାଡ଼ିବାରୁ ପକ୍ଷୀନ୍ଦ୍ର ଜଟାୟୁ
ସଂସ୍କାରାଦି କାର୍ଯ୍ୟ ସାରି,
ବାଟରେ କବନ୍ଧ ଶାପୁଁ ମୁକ୍ତ ଦେଇ
ସେଠାରୁ ଗଲେ ବାହାରି।
ଲଭିଲେ ବନ୍ଧୁତ୍ୱ ସୁଗ୍ରୀବ ସହିତ
ନାଶି ତା ଅଗ୍ରଜ ବାଳି,
କିଷ୍କିନ୍ଧ୍ୟାରେ ରାଜା କରାଇ ସୁଗ୍ରୀବ
ପଠାଇଲେ ଦୂତମାଳି।
ଜାନକୀ ସନ୍ଧାନେ ଗଲେ ଯେଉଁମାନେ
ଚଉଦିଗେ ଭ୍ରମି ଭ୍ରମି,
ଶେଷରେ ସମ୍ପାତି ସନ୍ଦେଶ ଦେବାରୁ
ପାରାବାର ଅତିକ୍ରମି।
ଗଲା ହନୁମାନ ପ୍ରବେଶି ଲଙ୍କାରେ
ଦେଖିଲା ଦୁଃଖରେ ତହିଁ,
ମୈଥିଳୀଙ୍କୁ ଘେରି ରାକ୍ଷସୀଏ ଛନ୍ତି
ବିଷ ବଲ୍ଲୀ ପରି ଯହିଁ।
(୧) ଚେଡ଼ୀଙ୍କ ଅଜ୍ଞାତେ ବୈଦେହୀ କରରେ
ମୁଦ୍ରିକା ରାଘବଙ୍କର,
ଦେବାରୁ ଦେଖି ସେ ରାମ ଦୂତ ମଣି
ଗଡ଼ାଇଲେ ନେତ୍ରନୀର।
ରତ୍ନ ମଥାମଣି ଦେଇ ମାରୁତିକି
ମେଲାଣି ଦେଲେ ତାହାକୁ,

(୧) ଅସୁରୁଣୀ

ସ୍ୱର୍ଣ୍ଣ ଲଙ୍କା ପୁରୀ ଜାଳି ବାହୁଡ଼ିଲ
ଭେଟିଲେ ରାଘବେଶଙ୍କୁ ।
ସେହି ମଥାମଣି ଦେବାରୁ ତାହାଙ୍କୁ
ଶୋକେ ସେ ହେଲେ ଅଧୀର,
ବର୍ତ୍ତିଲେ ଏ ଅନ୍ତେ ପବନ ନନ୍ଦନ
ସମାଚାର ଜାନକୀର ।
ଶାଖାମୃଗ ସଙ୍ଗେ ଅନନ୍ତବଳମ୍ୱେ
ପ୍ରବେଶି ସିନ୍ଧୁ ଉପରେ,
ନିର୍ମାଣିଲେ ସେତୁ ରସାତଳ ଭେଦ
ସେମାନଙ୍କ ସାହାଯ୍ୟରେ ।
ଏ ସମୟେ ଆସି ଦଶାସ୍ୟ ଅନୁଜ
ବିଭୀଷଣ ଭକ୍ତିଭରେ,
ନେବାରୁ ଶରଣ ଶ୍ରୀରାମ ପାଶରେ
ଆଶ୍ୱାସିଲେ ସମାଦରେ ।
ସିନ୍ଧୁ ପାର ହୋଇ ସକଳ ଏ କାଳେ
ପ୍ରବେଶିଲେ ଲଙ୍କାପୁରେ,
ଫିଙ୍ଗି ଶିଳାମାନ ଭଙ୍ଗିଲେ ପ୍ରାଚୀର
ତଟସ୍ଥ ହେଲେ ଅସୁରେ ।
ରାବଣ ଆଜ୍ଞାରେ ମାଂସାଶୀ ଦନୁଜେ
ଆସି ସମର ଅଙ୍ଗନ,
ଗୋଟି ଗୋଟି ହୋଇ ଯୁଝିଲେହେଁ କେତେ
ଗଲେ ଶମନ ସଦନେ ।
ଇନ୍ଦ୍ରଜିତ ହନେ ରାମ ଲକ୍ଷ୍ମଣଙ୍କୁ
କଲ ବଦ୍ଧ ନାଗ ପାଶ,
ଗରୁଡ଼ କୃପାରୁ ମୁକ୍ତି ଲଭିବାରୁ
ମାତିଲେ ସର୍ବେ ଉଲ୍ଲାସେ ।
ହନେ ଦଶାନନ କରନ୍ତେ ଶକ୍ତାସ୍ତ୍ର
ଲକ୍ଷ୍ମଣଙ୍କ ବକ୍ଷସ୍ଥଳ,
ବିଶଲ୍ୟ କରଣୀ ଆଣି ହନୁମାନ
ବଞ୍ଚନ୍ତେ ହେଲେ ସବଳ ।
ପୂଜା କରିବାର ଯାଗ ଗୃହେ ପଶି
ମେଘନାଦ ଗୋପନରେ,
ଜାଣି ପାରି ଏହା ସୁମିତ୍ରା ନନ୍ଦନ
ଭଙ୍ଗିଲେ ତା ଯାଗ ଘରେ ।

"ମେଣ୍ଢଉଡ ଠୋକାଠା" ବୋଲି ଉଚ୍ଚା କରି
ଆସିଲ ତାଙ୍କୁ ଗୋଡ଼ାଇ,
ଦର୍ଦ୍ଦୁର ଦର୍ଶନେ ଭୁଜଙ୍ଗ କେବେ କି
ବଳକୁ ଯାଏ ପଳାଇ !
ଲାଗିଲ ସମର ଦୁହିଁଙ୍କର ଘୋର
ଶେଷେ ଦଶାସ୍ୟ ସୁତର,
ଗଲା ପ୍ରାଣବାୟୁ ଅବଳମ୍ୱେ ହୋଇ
ଖଣ୍ଡ ଖଣ୍ଡ କଳେବର ।
ମଘବାରି ବଧ ଶୁଣି ଦଶଶିର
ନକରି ହେଲେ ଖାତର,
ସମର ଭୂଇଁକି ବୀର କୁମ୍ଭକର୍ଣ୍ଣ
ପଠାଇ ଦେଲା ସତ୍ୱର ।
ନିଦ୍ରାପ୍ରିୟ ବୋଲି କହି ରଘୁନାଥ
ଗୁଣରେ ଚଢ଼ାଇ ଶର,
ଦେଲେ ଉଡ଼ାଇ ମୃତ୍ତିକା ଉପରେ
ବାଣରେ ହତ ଶେଷଭରେ ।
ଏ ଖବର ପାଇ ଦଶାନନ ସ୍ୱୟଂ
ହୋଇ ଆସିଲା ଯୁଦ୍ଧକୁ,
ଜଗି ବସିଥିଲେ କୌଶଲ୍ୟା ନନ୍ଦନ
ଠାବରା କରିଲେ ତାକୁ ।
ବସି ରଥୋପରେ କହୁଥିଲା କଥା
ଦେଖାଇ ନିଜ ବଡ଼ାଇ,
ମନେ ହେଲା ଅବା ବରଡ଼ି ଲେଉଡ଼ିଲା
ହାଣ୍ଡି ସଙ୍ଗରେ ଲଢ଼ାଇ ।
ରାମ ରାବଣର ଯୁଦ୍ଧ ବହୁକ୍ଷଣ
ଲାଗିଲା ରଣ ଭୂଇଁରେ,
ଦେବପୁରେ ସୁରେ କୁତୂହଳ ହୋଇ
ଚାହିଁଥିଲେ ନଭଶିରେ ।
ଶେଷରେ ଅବ୍ୟର୍ଥ ବ୍ରହ୍ମାସ୍ତ୍ର ପ୍ରୟୋଗେ
ଦଶାସ୍ୟର ଦଶ ଶିରେ,
କଦଳୀର କାଣ୍ଡ ପରି ଖଣ୍ଡ ଖଣ୍ଡ
ହୋଇ ପଡ଼ିଲା ଭୂଇଁରେ ।
କଲେ ପୁଷ୍ପ ବୃଷ୍ଟି ଦେବତାଏ ସ୍ୱର୍ଗୁ
ଦେଖି ରାବଣ ମରଣ,

ସେ ପୁଷ୍ପ ସୌରଭ ପାଇ ଚଉଦିଗୁଁ
ଆସିଲେ ଭ୍ରମର ଗଣ ।
ସୀତାଙ୍କୁ ଅଗ୍ନିରେ ପରୀକ୍ଷା କରାଇ
ବିଭୀଷଣେ ରାଜ୍ୟ ଦାନ,
କରି ବାହୁଡ଼ିଲେ ଚତୁର୍ଦ୍ଦଶ ବର୍ଷ
ଅନ୍ତେ ଅଯୋଧ୍ୟା ଭୁବନ ।

—*—

## ତ୍ରୟୋଦଶ ସର୍ଗ

ରଘୁକୁଳପତି ରାମ ବସି ମୋଦଭରେ
ପୁଷ୍ପକ ବିମାନ ବରେ,
ନିଜ ରାଜଧାନୀ ଅଭିମୁଖେ ଗଲେ
ସୁଖେ ପ୍ରିୟା ସହିତରେ ।
ଦୂରରୁ ଆଗରେ ଦର୍ଶିବାରୁ ସିନ୍ଧୁ
କହିଲେ ଶ୍ରୀରଘୁନନ୍ଦନ,
"ଦେଖ ପ୍ରିୟସଖି ! ଦୁଇଭାଗ ହୋଇ
ବିଶାଳ ସିନ୍ଧୁ କେମନ୍ତ ।
"ସଗର ନାମରେ ପ୍ରତାପୀ ନରେଶ
ଜନ୍ମିଥିଲେ ଆମ୍ଭ କୁଳେ,
ଇନ୍ଦ୍ରରେ ମଘବା ତାଙ୍କ ଯାଗ ଅଶ୍ୱ
ରଖିଲେ ନେଇ ପାତାଳେ ।
ଖୋଜି ଖୋଜି ତାଙ୍କୁ ସଗରଙ୍କ ସୁତେ
ବିଦାରିଲେ ମହୀତଳ,
ତେଣୁ ଗୋ ସୁନ୍ଦରି ! ହୋଇଛି ସିନ୍ଧୁର
ଏହି ଆକାର ବିଶାଳ ।
ସୁଗ୍ରୀବ ସଙ୍ଗେ ସାହାଯ୍ୟେ ଶଇନ୍ଦୁଁ
ଶିଳାରାଶି ବହି ଆଣି,
ଏ ସିନ୍ଧୁ ମଧ୍ୟରେ ଅଛିରେ ଲଙ୍କାରେ
ପଶିଲୁ ସେତୁ ନିର୍ମାଣି ।
ସଗରଙ୍କ ପୋଏ ଯେଣୁ ଖୋଳିଥିଲେ
ତେଣୁ ବୋଲିଏ ସାଗର,
ବିବିଧ ରତନ ଥିବାରୁ ଗରଭେ
ବୋଲିଏ ଏ ରତ୍ନାକର ।

ବିମଳ ଚନ୍ଦ୍ରମା ଏହି ଜଳଧିରୁ
ପୂର୍ବେ ହୋଇଛନ୍ତି ଜାତ,
ଅତଳ ସ୍ପର୍ଶୀ ହୋଇ ଥିବାରୁ ଏ
ପାଉନାହିଁ କାର ହାତ ।
ଧରଣୀ ଦେବୀଙ୍କ ଓଢ଼ଣୀ ପରି ଏ
ସିନ୍ଧୁ ରସିକ ଶେଖର,
ପାନ କରେ ସୁଖେ ତରଙ୍ଗିଣୀଙ୍କର
ଆପେ ତରଙ୍ଗ ଅଧର ।
ମୁହାଣ ମୁହଁରେ ଦେଖ ତିମି ମତ୍ସ୍ୟ
ବଳେ ନେଉଅଛି ଟାଣି,
ପାଟିକୁ ବିସ୍ତାରି ଜଳଜନ୍ତୁ ସହ
ନଦୀ ମୁହାଣର ପାଣି ।
ଅନାଅ ପଛକୁ ଜଳ ହସ୍ତୀ କୁଳ
ସହସା ସକଳୁ ଆସି,
ଦୁଇ ଭାଗ କରି ଦେଉଛନ୍ତି ହର୍ଷେ
ଉତ୍ତାଳ ତରଙ୍ଗରାଶି ।
ଦେଖ ଅଜଗରେ ବିମଳ ପବନ
ଘର ଦେଇ ପିଇବାକୁ,
ବାହାରି ଅଛନ୍ତି ମନ ମଉଜରେ
ପାଟି କରି ଟାକୁଟାକୁ ।
ମୃଦୁ ସମୀରଣ ଧୀରେ ଧୀରେ ବହି
ତଟବନୁ ହୃଦ କରି,
କେତକୀର ରେଣୁ ତୁମ୍ଭର ବଦନେ
ବିଶେ ବୋଳି ଦେଲା ପରି ।
ଫଳ ଭରେ ନତ ଗୁବାକପଙ୍କତ
କେମନ୍ତେ ନୟନ ମନ,
କରୁଛି ହରଣ ସୁନୀଳ ତମାଳ
ସହ ଘର ତାଳୀବନ ।
ଇତସ୍ତତ କ୍ଷିପ୍ତ ମୁକୁତା ନିକର
ମହାସିନ୍ଧୁ ତରଙ୍ଗରେ,
ଶୁକ୍ତିରୁ ବାହାରି ବିମଳ କାନ୍ତିରେ
ବେଳା ସମୁଜ୍ଜ୍ୱଳ କରେ ।
ଦେଖ ଶଶୀମୁଖି ! କେମନ୍ତେ ବିମାନ
ଯାଉଛି ମୋ ଇଚ୍ଛାମତେ,

ବିବିଧ ଗତିରେ          କେବେ ଦେବମାର୍ଗେ
କେବେ ବା ନୀରଦ ପଥେ ।
ଅନାଅଁ ପଛକୁ          ଯେତିକି ଏ ରଥ
କରୁଛି ଆଗକୁ ଗତି,
ତେତିକି ବେଗରେ          ଗୋଡ଼ାଇଲେ ପରି
ଦିଶୁଛି ବିଟପୀତତି ।
ତବ ବଦନରେ          ଦେଉଥିଲି ଦେଖା
ବିନ୍ଦୁ ବିନ୍ଦୁ ଝାଳ ଯାହା,
ଅନ୍ତରୀକ୍ଷ ବାୟୁ          କରଙ୍ଗେ ସଧୀରେ
ପୋଛି ଦେଉଅଛି ତାହା ।
ପଟେବୃସ୍ତ ପରି          କେତେ ଯତନରେ
ପିନ୍ଧାଇ ଦେଉଛି ଘନ,
ତୁମ୍ଭର ହାତରେ          ସୌଦାମିନୀ ରୂପ
ନବ କଳସ୍ପାଭରଣ ।
୧- ରକ୍ଷ ଭୟ ଶୂନ୍ୟ          ଜନସ୍ଥାନ ଜାଣି
ନିଜ ନିଜ ଆଶ୍ରମରେ,
ରହିଲେଣି ରଚି          ନୂତନ କୁଟୀର
ଆସି ଋଷିଏ ସୁଖରେ ।
ସେହି ସ୍ଥାନ ଏହି          ପଡ଼ିଥିଲି ଯହିଁ
ତବ ଚରଣରୁ ଖସି,
ବାଜେଣି ନୂପୁର          ବିଚ୍ଛେଦ ଦୁଃଖେକ
ମଗ୍ନରେ ମୌନେ ରୂପସି !
ଏ ବ୍ରତତୀ ବ୍ରାତ          ଦୟାକରି ମୋତେ
ନତ ଶାଖାକୁ ହଲାଇ,
ଦେଖାଇ ଥିଲେ ତା          ଯେ ପଥେ ରାବଣ
ତୁମକୁ ନେଲା ଘେରାଇ ।
ମୃଗ ମୃଗୀ ମାନେ          ଦକ୍ଷିଣ ଆଡ଼କୁ
ଏକ ଦୃଷ୍ଟିରେ ଅନାଇଁ,
ମୋ ଦୁଃଖରେ ଦୁଃଖୀ          ହୋଇ ତୁମେ ଯିବା
ସରଣୀ ଦେଲେ ବତାଇ ।
ଦେଖ ବିଶାଳାକ୍ଷି ?          ମାଲ୍ୟବାନ ଗିରି
ଯହିଁ ତାଳ ଅଶ୍ରୁଜଳ,

୧—ଅସୁର

ତୁମ୍ଭର ବିରହେ          ଥିଲି ବର୍ଷାକାଳ
ଚାରିମାସେ ଅବିରଳ ।
ବାନ୍ଧିଲି ବନ୍ଧୁତ୍ୱ          ସୁଗ୍ରୀବ ସହିତ
ଯାର ଦୂତ ହନୁମାନ,
ଭ୍ରମି ଭ୍ରମି ଶେଷେ          ପ୍ରବେଶି ଲଙ୍କାରେ
କଲେ ତୁମକୁ ସନ୍ଧାନ ।
ମେଘ ଗରଜନ          ଶୁଣି ଘନ ଘନ
ଘାରି ହେଉଥିଲି ମନ,
ଶିଖରୀ ଶିଖରେ          ରହି ବିଚ୍ଛେଦରେ
ଦିଶିଲି ମ୍ଲାନ ବଦନ ।
ଝଡ଼ ବରଷାରେ          କୁଡ଼ିଆ ଭିତରେ
ତୁମକୁ ମନେ ପକାଇ,
ନୟଣ ହୃଦୟେ          ଉଜାଗରେ ରହି
ରଜନୀ ହୁଏ ପୁହାଇ ।
ଝିଙ୍କାରି ଝଙ୍କାର          ନିଶୀଥରେ ସହି ?
ଶୁଣୁଥିଲା ରହି ରହି,
ନିଶି ପାହିବାର          ପତତ୍ରିନିକର
ରବେ ଦେଉଥିଲେ କହି ।
ଗୁଞ୍ଜରି ଗୁଞ୍ଜରି          ଭ୍ରମର ଭ୍ରମରୀ
ବସି ସୁମନ କଳାପେ,
ମଧୁପାନ କାଳେ          ହେଉଥିଲା ମନେ
ମଜ୍ଜିଛନ୍ତି ପ୍ରେମାଳାପେ ।
କଦମ୍ବ ଫୁଲର          ନବ ଅଙ୍କୁରିତ
ମୃଦୁ କେଶରକୁ ଲକ୍ଷି,
ତବ ଶରୀରର          ଯଉବନ ଶୋଭା
ମନେ ପଡ଼ୁଥିଲା ସଖି !
ଏ ଗିରି ଶୃଙ୍ଗରେ          ପ୍ରାବୃଟ କାଳରେ
ନାଚି ନାଚି କେକୀକୁଳ,
କେକା ଧ୍ୱନି କରି          ପୁଚ୍ଛ ଟେକି ଟେକି
ହେଉଥିଲେ ମୋଦେ ଠୁଳ ।
କେଦାରନିକରେ          ଦର୍ଦ୍ଦୁରି ରବରେ
ଚମକିତ ହେଲା ମହୀ,
ଦୂରୁଁ ହେଲା ମନେ          କରୁଥିଲେ ସ୍ତୁତି
ଭାଟଗଣ ରହି ରହି ।

ମାଳତୀ ଫୁଲର ସୁରମ୍ୟ ଗନ୍ଧରେ
ସୁରଭିତ ହୋଇ ବନ,
ବିରହ ବଧୂର ପ୍ରବାସୀ ହୃଦରେ
କରିଲା ଦୁଃଖ ବର୍ଦ୍ଧନ ।
କାଦମ୍ବିନୀ କୋଳେ ସୌଦାମିନୀ ଦେଖା
ଦେଉଥିଲା ବାରି ବାର,
ଏ ଛବି ସେକାଳେ ଅନ୍ତରେ ଅନ୍ତରେ
ସନ୍ତାପ ଦେଲା ଅପାର ।
ସାଧବ ବୋହୂଏ କାହିଁ ଆସି ଏବେ
ଜମିଗଲେ ଦୂର୍ବାଦଳେ,
ନାଶିକେ ତୁମକୁ ବୁହାଇଛି ରକ୍ତ
ବୋଲି ଭ୍ରମିଲି ବିକଳେ ।
ନବ ମେଘମାନେ ସୁନାସୀର ଚାପ
ଦଶିବାରୁ ଚନ୍ଦ୍ରମୁଖି,
ବିବାହ କାଳୀନ ତୁମ ଶାଢ଼ୀ ବୋଲି
ମନ ଭାରି ହେଲା ଦୁଃଖେ ।
ସେ ପୂର୍ବର କଥା ପଡ଼ୁଅଛି ମନେ
ଅଧୀରେ ଚମକ ପଡ଼ି,
ଘଡଘଡ଼ ଭୟେ ଯେବେ ଥରି ଥରି
ଧରିଥିଲ ମୋତେ ଭିଡ଼ି ।
ଦେଖ ପମ୍ପାସର ଦିଶଇ ଦୂରରୁ
କେମନ୍ତ ନିର୍ମଳ ଜଳ,
ଜଳ ପକ୍ଷୀକୁଳ ଯହିଁ କେଳି କରି
ଚରୁଛନ୍ତି ଅବିରଳ ।
ଯୋଡ଼ ଯୋଡ଼ ହୋଇ ରଥାଙ୍ଗଦମ୍ପତି
ବିବିଧ ରଙ୍ଗ ଭିଆଇ,
ପଦ୍ମନାଡ଼ ଭାଙ୍ଗି ଦେଉଛନ୍ତି ସୁଖେ
ଦୁହେଁ ଦୁହିଁଙ୍କୁ ଖୁଆଇ ।
ଏ ଛବି ପ୍ରେୟସି ! ସସ୍ପୃହ ଲୋଚନେ
ତୁମ୍ଭ ବିରହ କାଳରେ,
ଚାହିଁଥିଲା ରହିଁ ମହାଶୋକେ ଅଶ୍ରୁ
ସିକ୍ତ ଦୀନ ନୟନରେ ।
ତୁମ୍ଭ ବିରହରେ ଅଥଚ ସେକାଳେ
ଅଶୋକ ଲତାକୁ ଆରେ,

ପାଇଲି ତୁମ୍ଭଙ୍କୁ ବୋଲି ଆଲିଙ୍ଗିଲି
ତା ପାଖେ ଯାଇ ସବେଗେ ।
"ନୁହନ୍ତି ଏ ସୀତା" ବୋଲି ସଉମିତ୍ର
ନିବାରନ୍ତେ ମୋତେ କହି,
ଫେରିଲି ସେଠାରୁ ଅନୁଭବି କ୍ଳେଶ
ମନେ ପଡ଼ୁଅଛି ସହି !
ଧାଡ଼ି ଧାଡ଼ି ହୋଇ ଆକାଶରେ ଉଡ଼ି
ମରାଳକୁଳ ମୋଦରେ,
ବିମୁଗ୍ଧ ହୁଅନ୍ତି ପୁଷ୍ପକ ରଥର
ରମ୍ୟ କିଙ୍କିଣୀ ନାଦରେ ।
ବଡ଼ କୁତୂହଳେ ବହି ବହି ନିଜେ
ଜଳ ଆଣି ଝରଣରୁ,
ବଢାଇ ଥିଲନ୍ତି ଏହି ପଞ୍ଚବଟି
ବନେ ବାଳ ଚୂତତରୁ !
କେମନ୍ତ ସୁନ୍ଦର ତୁମ୍ଭର ପାଳିତ
ଏହି କୃଷ୍ଣସାରଗଣ,
ଆମ୍ଭଙ୍କୁ ଅନାଇଁ ଊର୍ଦ୍ଧ୍ୱମୁଖଛନ୍ତି
ହୁଏ କି ପ୍ରିୟେ ! ସ୍ମରଣ ?
ପବିତ୍ର ଆଶ୍ରମ ଅଗସ୍ତି ଋଷିଙ୍କ
ଦେଖ ଏହି ପ୍ରିୟ ସହି,
ଯହିଁରୁ ଅନଳ ହୋମ ହର୍ଷ ଗନ୍ଧ
ଆଣୁଅଛି ଧୀରେ ବହି ।
ଦିଶିଲାଣି ଆଗେ ଶାତକର୍ଣ୍ଣିଙ୍କର
ପଞ୍ଚାପର କେଳିସର,
ଶ୍ୟାମଳ କାନନ ବେଢ଼ି ରହିବାରୁ
ଦିଶଇ କେଡ଼େ ସୁନ୍ଦର ।
ସୁତୀକ୍ଷ୍ଣ ନାମରେ ଦେଖ ଆଉଜଣେ
ମୁନି ବସି ଏକଧ୍ୟାନେ,
ଶୂନ୍ୟକୁ ଅନାଇଁ କରୁଛନ୍ତି ତପ
ବହ୍ନି ଜାଳ ସନ୍ନିଧାନେ ।
ଏହାଙ୍କ କଠୋର ତପ ଦେଖି ଇନ୍ଦ୍ର
କେଳିପ୍ରିୟା ଅପ୍ସରାଙ୍କୁ,
ଅତି ଗୋପନରେ ପ୍ରେରିଥିଲେ ପୂର୍ବେ
ତାଙ୍କ ତପ ଭାଙ୍ଗିବାକୁ ।

ମୂରକ ମୂରକ ହସି ଗଲ ହୋଇ
କରନ୍ତେ ଅଙ୍ଗଭଙ୍ଗିକ,
ନୋହିଲା ବିକାର ମୁନିଙ୍କ ମାନସେ
ଦେଖି ତାହାର ଠାଣିକ ।
ଦେଖ ପ୍ରିୟତମେ ! ମନ ମୁଗ୍‌ଧକର
ଚିତ୍ରକୂଟ ଗିରିବର,
ଯାର ପାଦଦେଶେ ମନ୍ଦାକିନୀ ବହି
ବହୁଅଛି ମନୋହର ।
ଗିରିପାଦ ଦେଶେ ଅନାଅ ଏ ସେହି
ଶ୍ୟାମଳ ତମାଳ ଆଗେ,
ଯାର ପତ୍ର ତୋଳି ଦେଉଥିଲି ଖଞ୍ଜି
ତୁମ ଶ୍ରବଣେ ସରାଗେ ।
ଦେଖ ତପୋବନ ଅତ୍ରି ଋଷିଙ୍କର
ଯହିଁ ପ୍ରାଣିଏ ସକଳ,
ବୈରିପର ମିଳି ଶାନ୍ତଭାବେ ରହି
ସୁଖରେ ଯାପନ୍ତି କାଳ ।
ଆଗୋ ବନଜାକ୍ଷି ! ସମାଧି ବେଦୀରେ
ସ୍ଥିତ ପାଦପସକଳ,
ଧ୍ୟାନ ମଗ୍ନ ପ୍ରାୟ ରହିଛନ୍ତି ଦେଖ
ହୋଇ ଏକାନ୍ତ ନିଶ୍ଚଳ ।
ଅନାଅଁ ମନାଅଁ ଆଗୋ ଚନ୍ଦ୍ରାନନ
ଗଙ୍ଗା ଯମୁନା ସଙ୍ଗମ,
ଯହିଁ ସ୍ନାନ କରି ମୋକ୍ଷ ଲଭି ଲୋକେ
ନପାନ୍ତି ପୁଣି ଜନମ ।
ଗୁହକ ନଗର । ଦେଖ ପ୍ରିୟ ସହି !
ଯହିଁ କନକ ମୁକୁଟ,
ଖୋଲି ମୋ ଶିରରୁ ରଚିଲି ତାପସ
ଯୋଗ୍ୟ ନବ ଜଟାଜୂଟ ।
ଯାହା ଦେଖି ଦୁଃଖେ "କୈକେୟୀ ପୂରିଲା
ଏବେ ତୁମ୍ଭ ମନୋରଥ",
ବୋଲି କାନ୍ଦି କାନ୍ଦି ସୁମନ୍ତ ସାରଥି
ଏଥୁଁ ଫେରାଇଲେ ରଥ ।
ସହି ! ଏହି ସେହି ସରଯୂ ତଟିନୀ
ବହେ କଳକଳ ସ୍ୱରେ,
ରଘୁବଂଶ ନୃପେ କରନ୍ତି ମାର୍ଜନା
ସଦା ଯାହାର ଜଳରେ ।
କୌଶଲ୍ୟା ସମାନ ମୋର ଏହି ମାତା
ଦେଖି ମୋତେ ଆସିବାର,
ଆଲିଙ୍ଗନ ଆଶେ ଧବଳ ତରଙ୍ଗ-
କର ତୋଳୁଅଛି ତାର ।
ମାତା କୋଳ ପରି ଲାଗେ ମୋତେ ସଦା
ଏହାଙ୍କ ପୁଳିନ ଦେଶ,
ପବିତ୍ର ସଲିଳ ଏହି ଗୋ ତଟିନୀ
ନାହିଁଟି କଳୁଷ ଲେଶ ।
ଅଯୋଧ୍ୟାବାସୀଏ ପିଇ ବଢ଼ିଛନ୍ତି
ଯାର କ୍ଷୀରସମ ଜଳ,
ଜନନୀ ପରାଏ ଅତି ପୂଜନୀୟା
ସମର ଏ ଅବଳେ ।
ଦେଖ ଧୂଳିବର୍ଣ୍ଣି ଗୋଧୂଳି ଗଗନ
ପରି ଉଡ଼ୁଛି କେତନ,
ସଙ୍ଖୋଳି ନେବାକୁ ଆସୁଛନ୍ତି ମୋତେ
ଏବେ ଅଯୋଧ୍ୟା ସଜନ ।
କୁଳ ପୁରୋହିତ ଆସନ୍ତି ଆଗରେ
ପିନ୍ଧି ବକଳ ବସନ,
ତାଙ୍କ ପଛେ ପଛେ ଆସୁଛନ୍ତି ହର୍ଷେ
ଦେଖ କୈକେୟୀନନ୍ଦନ ।
ଜଟାଧାରୀ ହୋଇ ଧାର୍ମିକ ଭରତ
ଅବଲମ୍ବି ଶୁଦ୍ଧାଚାର,
ରାଜଶ୍ରୀକୁ ପାଇ ନ କଲେ ଭୋଗ
କରୁଛନ୍ତି ଫଳାହାର ।
ରାମ ମନୋଭାବ ପୁଷ୍ପକ ବିମାନ
ବୁଝି ଅବନୀ ତଳକୁ,
ଖସନ୍ତେ ରହିଲେ ସକଳ ଅନାଇଁ
ଶ୍ରୀରାମ ଆଗମନକୁ ।
ସୁଗ୍ରୀବର କରେ କର ଦେଇ ଧୀରେ
ସ୍ଫଟିକ ସୋପାନପଥ,
ଅତିକ୍ରମ କରି ପୁଷ୍ପକ ବିମାନୁ
ଓହ୍ଲାଇଲେ ସୀତାପତି ।

ତାଙ୍କ ସଙ୍ଗେ ସୀତା ପଛରେ ଲକ୍ଷ୍ମଣ
ରଥୁଁ ଆସନ୍ତେ ଓହ୍ଲାଇ,
ବିଶ୍ରବାଙ୍କ ସୁତ ବିଭୀଷଣ ତାଙ୍କୁ
ଦେଲେ ସରଣୀ ଦେଖାଇ ।
ସବାଗ୍ରେ ପ୍ରଣମି କୁଳ ପୁରୋହିତ
ଦେଲେ ଅର୍ଘ୍ୟ ସାଦରେ,
ସୋଦର ବେନିଙ୍କୁ ଆଲିଙ୍ଗନ କରି
ଚୁମ୍ବିଲେ ଶିର ସ୍ନେହରେ ।
ପାଚିଲା ଦାଢ଼ିଆ ବୃଦ୍ଧ ମନ୍ତ୍ରୀମାନେ
ଭକ୍ତି ଗଦ୍‌ଗଦ ଚିତ୍ତରେ,
ପ୍ରଣାମ କରନ୍ତେ କୁଶଳ ପଚାରି
ଭାଷିଲେ ରାମ ମୋଦରେ ।
ବିପଦ କାଳରେ ବନ୍ଧୁ ଏ ଅଟନ୍ତି
ସୁଗ୍ରୀବ ନାମ ଯାଙ୍କର,
ମହାମିତ୍ର ମୋର ଏହି ବିଭୀଷଣ
ସମରେ ଏ ଧୁରନ୍ଧର ।
ଏମନ୍ତ କହନ୍ତେ ରାମ, ସଙ୍ଗୋଳିଲେ
ଭରତ ତାଙ୍କୁ ଆଗରେ,
ତଦନ୍ତେ ଅନୁଜ ଲକ୍ଷ୍ମଣଙ୍କ ପାଶେ
ହେଲେ ଉପନୀତ ଶୀଘ୍ରେ ।
ନୁଆଁଇ ମସ୍ତକ ସୁମିତ୍ରାନନ୍ଦନ
ବନ୍ଦନ୍ତେ ତାଙ୍କ ପୟରେ,
ଭରତ ତାହାଙ୍କୁ କଲେ ଆଲିଙ୍ଗନ
ଅତିଶୟ ପ୍ରେମଭରେ ।
ହର୍ଷେ କୁତୂହଳେ କପି ସେନାମାଏ
ଧରନ୍ତେ ମନୁଷ୍ୟ ବେଶ,
କଲେ ଆରୋହଣ ମଦସ୍ରାବୀ ଗଜେ
ଲଭି ଶ୍ରୀରାମ ଆଦେଶ ।
ଝରୋଦ୍‌ଗତ ଗିରି ଆରୋହଣ ପରି
ମଣିଲେ ସୁଖ ବାନରେ,
ବୀର ବିଭୀଷଣ ପରିଜନ ସହ
ଆରୋହିଲେ ରଥୋପରେ ।
ଧ୍ୱଜ ବିମଣ୍ଡିତ କାମଗତି ରଥେ
ଚଢ଼ି ନିଷାଦ ସଙ୍ଗରେ,

ବାହାରି ଶ୍ରୀରାମ ଓହ୍ଲାଇଲେ ଯାଇ
ରାଜପ୍ରାସାଦ ପାଶରେ ।
ଚୁଣ୍ଡ ହେବା ବେଳକେ ମୁଣ୍ଡ ପରଶିଲେ
ଚରଣ ତଳେ ତାଙ୍କର,
ଲଳନାମାନଙ୍କ ହୁଳହୁଳି ନାଦେ
କମ୍ପିଲା ପୁରବର ।
ବାଳକ ବାଳିକା ମଞ୍ଜୁ ଅଟ୍ଟାଳିକା
ପରେ କରି ଆରୋହଣ,
ସାକେତପୁରର ରମଣୀଏ ଶୋଭା
ଉଲ୍ଲାସେ କଲେ ଈକ୍ଷଣ ।
ମୃଦଙ୍ଗ ଝାଞ୍ଜର ମୁହୁର୍ମୁହୁ ତାନ
ରୋଧିଲା ଶ୍ରୁତିବିବର,
ଗୁରୁଙ୍କ ଆଶିଷ ଲଭି ନଗରରେ
ପ୍ରବେଶିଲେ ଅନନ୍ତର ।

## ଚତୁର୍ଦ୍ଦଶ ସର୍ଗ

ଶ୍ରୀରାମ ଲକ୍ଷ୍ମଣ ମହଞ୍ଜ ଦେଖିଲେ
ସ୍ୱାମୀ ବିୟୋଗ ଦୁଃଖରେ,
ବିଧବା ଜନନୀ କୌଶଲ୍ୟା ସୁମିତ୍ରା
ଯାଆନ୍ତି କାଳ କାତରେ ।
ଜନନୀଙ୍କ ପାଶେ ଗମି ଭକ୍ତିଭରେ
ଲଗାଇ ଶିର ପଦ୍ମରେ,
ପ୍ରଣମନ୍ତେ ବେନି ବେନି ଜନନୀଏ
ଆଶିଷିଲେ ସମାଦରେ ।
ଅଲକ୍ଷଣୀ ବୋଲି କହି ବଇଦେହୀ
କାନ୍ଦି କାନ୍ଦି ଆର୍ତ୍ତସ୍ୱରେ,
ସ୍ନେହମୟୀ ଶାଶୁ ଦୁହିଁଙ୍କର ପଦେ
ପ୍ରଣମିଲେ ଭକ୍ତିଭରେ ।
ବଧୂ ଜନନୀଙ୍କ ଉଠ ଉଠ ବୋଲି
ସମ୍ବୋଧି ମଧୁର ସ୍ୱରେ,
ଏ ମହା ସଙ୍କଟୁଁ ଉଦ୍ଧରିଛ ବୋଲି
ଭାଷିଲେ ଶାଶୁଏ ଖେଦେ ।
ଶାସ୍ତ୍ର ବିଧିମତେ ଅଭିଷେକ ବିଧି
କରିବାକୁ ସମ୍ପାଦନ,

ନଦୀ ଜଳଧିରୁ ଠୁଳାଇ ସଳିଳ
କଲେ ସବୁ ଆୟୋଜନ ।
ବୃଦ୍ଧ ମନ୍ତ୍ରୀଗଣ ଘେନି ରମ୍ୟରଥେ
ନେଲେ ରାଜଧାନୀ ମୁଖେ,
ମହିଳାଏ ଆସି ଅଞ୍ଜଳି ଅଞ୍ଜଳି
ଲାଜା ଫିଙ୍ଗାଇଲେ ସୁଖେ ।
ବିବିଧ ବାଦ୍ୟରେ କମ୍ପନ୍ତେ ମେଦିନୀ
ରୋଧିଲା କର୍ଣ୍ଣ ବିବର,
ଧରିଲେ ଭରତ ଶିରେ ଶ୍ୱେତଛତ୍ର
ସୁମିତ୍ରା ସୁତେ ଚାମର ।
ଦେଖି ମନେ ହେଲା ସାମଦାନ ଭେଦ
ଦଣ୍ଡ ଏ ଚାରି ଉପାୟେ,
ଆବିର୍ଭୂତ ହେଲେ ଧରଣୀ କୋଳରେ
କି ଅବା ଶ୍ରୀରାମରାୟେ ।
ଶାଶୁଙ୍କର ଯୋଗେ ଦିବ୍ୟ ବେଶ ରଚି
ଚନ୍ଦ୍ର ବିମାନରେ ବସି,
ଯିବାବେଳେ ସୀତା ଜୁହାରିଲେ ତାଙ୍କୁ
ଲଳନାଏ ହସି ହସି ।
ପିତାଙ୍କ ଗୃହରେ ପ୍ରବେଶି ଶ୍ରୀରାମ
କରଯୋଡ଼ି ଭକ୍ତିଭରେ,
ଜୁହାରି ଜନନୀ କୈକେୟୀଙ୍କି ତହୁଁ
ପ୍ରବୋଧିଲେ ଆଳାପରେ ।
ସନ୍ତୋଷିବା ଲାଗି ଆସିଥିଲେ ଯେତେ
ପୁଣ୍ୟାତ୍ମା ମହର୍ଷିମାନେ,
ସତ୍କାର ଲଭିଣ ମହା ଆନନ୍ଦରେ
ଗଲେ ନିଜ ନିଜ ସ୍ଥାନେ ।
ରାକ୍ଷସ କପିଏ ବିଦେଶରେ ଅଛୁ
ବୋଲି ନ ପାରିଲେ ଜାଣି,
ବହୁ ଉପହାର ସହ ସେମାନଙ୍କୁ
ଜାନକୀ ଦେଲେ ମେଲାଣି ।
ଜନନୀଭ୍ରାତାଙ୍କ ପ୍ରତି ସମରୂପେ
କରୁଥିଲେ ବ୍ୟବହାର,
ସ୍ନେହ ଛାଡ଼ିଦେଇ ପାଳିଲେ ଧରଣୀ
ରାମ ଘେନି ରାଜ୍ୟଭାର,

ପ୍ରଜାପୁ ପଢ଼ାଏ ଶାସି ପାତକୀଙ୍କୁ
ହରି ତାହାଙ୍କ ସନ୍ତାପ,
ଭୁଲି କରିଦେଲେ ଭୁଲ ସେ କହନ୍ତି
ସଦା କରି ଅନୁତାପ ।
ଏ ରୂପେ ରାଜ୍ୟର ଶାସନ ଦାୟିତ୍ୱ
ତୁଲାଇ ବିନା ବାଧାରେ,
କଟାଇଲେ ଦିନ କୌଶଲ୍ୟା ନନ୍ଦନ
ସୀତା ସହ ସରଧାରେ ।
ମନେ ହେଲା ନିଜେ ରାଜଲକ୍ଷ୍ମୀ ଅବା
ବିଦେହ ନନ୍ଦିନୀଙ୍କର,
ରୂପରୂପ ଧରି ମିଳନ୍ତି ବେଗରେ
ରାମ ସହ ନିରନ୍ତର ।
କତିପୟ ପରେ ମୈଥିଳୀଙ୍କର
ବଢ଼ିଲା ଅଙ୍ଗ ଯୁଗଳ,
ବଦନ ମଣ୍ଡଳ ସହାଧିକତର
କ୍ରମେ ଚକ୍ଚକ ଉଜ୍ଜ୍ୱଳ ।
ଗର୍ଭଚିହ୍ନ ବୋଲି ପଢ଼ିବାରୁ ଜଣା
ରାମ କରି ପରିହାସ,
ପୁଚ୍ଛିଲେ ତାହାଙ୍କୁ କେଉଁ ଦ୍ରବ୍ୟ ପ୍ରତି
ହୁଏ ତବ ଅଭିଳାଷ ?
କୁଶ ସମାକୀର୍ଣ୍ଣ ଜାହ୍ନବୀ ତୀରର
ତପୋବନ ଦରଶନ,
ବଳୁଛି ମୋ ମନ ବୋଲି ଉତ୍ତରିଲେ
ଦେବୀ ଆନତ ବଦନେ" ।
କୋଳାହଳ ପୂର୍ଣ୍ଣ ଅଯୋଧ୍ୟା ନଗର
ଦରଶନ ମାନସରେ,
ପାର୍ଶ୍ୱରେ ସହ ଆରୋହିଲେ ରାମ
(୧) ଅଭ୍ରଂଳିହ ହର୍ମ୍ୟପରେ ।
ତରଣୀ ମାଳରେ ସରଯୂ ତଟିନୀ
ହରୁଥିଲା ଜନମନ,
କେହି ବା ଆମୋଦ କରନ୍ତି ଆଳାପ
ଖାଇ ଦକ୍ଷିଣା ପବନ ।

(୧) ଅତି ଉଚ୍ଚ

ଏକାଳେ ଶ୍ରୀରାମ ସମ୍ବୋଧନ କରି
ପଚାରିଲେ ଅନୁଚର,
"କି କହି ଥାଆନ୍ତି ମୋ ବିଷୟ ନେଇ
ଅଯୋଧ୍ୟା ପ୍ରଜାନିକର ।
ଲୁହାଇ ଲୁହାଇ ପୁଚ୍ଛନ୍ତେ ଶ୍ରୀରାମ
କହିଲା ସେ ଅନୁଚର,
ରାକ୍ଷସ ଗୃହରେ ଥିବାରୁ ଜାନକୀ
ମନେ ଖେଦ-ପ୍ରଜାଙ୍କର ।
ହାତୁଡ଼ି ଘାତରେ ଫାଟିଥାଏ ଯଥା
ତପ୍ତ ଲୌହ ଅନଳରେ,
ବିଦାରିତ ହେଲା ତାହାଙ୍କ ହୃଦୟ
ପତ୍ନୀଙ୍କ ଅପବାଦରେ ।
ଚିନ୍ତା କରି କରି ବହୁକ୍ଷଣ ଯାଏ
ଭ୍ରମିଲା ମନ ଦୁଃଖରେ,
ଦ୍ୱୈଧ ଦୂରକରି ତେଜିବାକୁ ସୀତା
ସିଦ୍ଧାନ୍ତ କଲେ ଶେଷରେ ।
ପତ୍ନୀଙ୍କୁ ଛାଡ଼ିବା କଠିନ ହେଲେହେଁ
ଯଶରଙ୍କ ପକ୍ଷେ ଭବେ,
ନୁହଇ ଆଶ୍ଚର୍ଯ୍ୟ ଯେଣୁ ତାଙ୍କ ହୃଦ
ଥାଏ ସଦା ଗଉରବେ ।
ଏଣୁ ଡାକି ରାମ ଦୁଃଖେ ସୋଦରଙ୍କୁ
କହିଲେ କଥା ଏସନ,
ହେ ଭାଇ ! ମଳିନ ଦିଶଇ ଯେମନ୍ତ
ସଲିଳ-ସିକ୍ତ ପବନ ।
ରାଜ ଦରପଣେ ତେମନ୍ତ ଏ ବଂଶେ
କଳଙ୍କ କାଳିମା ଲାଗି,
ପ୍ରସରୁଛି ଖରେ ଅଲକ୍ଷିତ ଭାବେ
ହେଉଛି ମୁଁ ଦୋଷେ ଭାଗୀ ।
ଦେଖ ଏ କଳଙ୍କ ଜଳେ ତୈଳବିନ୍ଦୁ
ପରି ଜନପଦେ ବ୍ୟାପି,
ଗଲାଣି କରଣ ହେଉଛି ହୃଦୟ
ଶୁଣି ନଥିଲ ଅଦ୍ୟାପି ।
ସତୀ ପତିବ୍ରତା ହେଲେହେଁ ଜାନକୀ
ଏଥିଁ ମୁକୁଳିବା ପାଇଁ,
ବିଳମ୍ବ ନକରି ଛାଡ଼ିବାକୁ ତାଙ୍କୁ
ଗଲାଣି ମୋ ମନ ଧାଇଁ ।
ନାଶି ଦଶାନନ ରଖିଅଛି ଟେକ
ପୁଣି କୁଳର ଗୌରବ,
ରାମ ବିନା ଅନ୍ୟ ମାରିବାକୁ ତାକୁ
ନୁହନ୍ତା କେବେ ସମ୍ଭବ ।
ଓଲଟି କ୍ରୋଧରେ ଭୀଷଣ ଭୁଜଙ୍ଗ
ଚରଣ ପ୍ରହାର ଖାଇ,
କରଇ ଦଂଶନ ଯାହା ସେ କେବଳ
ପ୍ରତିହିଂସା ବୃତ୍ତି ପାଇଁ ।
ନକର ବାରଣ ମୋର ଏ କାର୍ଯ୍ୟରେ
ଦୟାର୍ଦ୍ର ଚିତ୍ତେ ଯେବେ,
ନିନ୍ଦା-ଶଲ୍ୟ-ହୃଦୁଁ କାଢ଼ି ଏ ଜୀବନ
ରାମର ରଖ ଏ ଭବେ ।
ନିବାରି ସେକାଳେ ନ ପାରିଲେ କେହି
ଅବା ସମର୍ଥନ ପାଇଁ,
ସତ୍ୟବାଦୀ ରାମ ଲକ୍ଷ୍ମଣଙ୍କୁ ଡାକି
କହିଲେ ତହୁଁ ଅନାଇଁ ।
ଗର୍ଭବତୀ ସୀତା ରହିଛନ୍ତି ସ୍ପୃହିଁ
ଆଶ୍ରମ ଦେଖିବା ଆଶେ,
ସଙ୍ଗେ ତାଙ୍କୁ ନେଇ ଛାଡ଼ି ଆସ ଯାଇ
ବାଲ୍ମୀକଙ୍କ ମଠ ପାଶେ ।
ପର୍ଶୁରାମ ଯଥା ପିତାଦେଶ ଲଭି
କାଟିଥିଲେ ମାତା ଶିର,
ଭ୍ରାତାଦେଶେ ତାଙ୍କୁ ନେବା ଲାଗି ମଠେ
ମଙ୍ଗିଲେ ସୌମିତ୍ର ବୀର ।
ମୈଥିଳୀ ପାଶରେ ପ୍ରବେଶି ବିଷାଦେ
କହିଲେ ଲକ୍ଷ୍ମଣ ତାଙ୍କୁ,
ମହାମୁନିଙ୍କର ଶାନ୍ତ ନିକେତନ
ଆଶ୍ରମ ଦେଖି ଯିବାକୁ ।
ପରିତୁଷ୍ଟ ସତୀ ଶିରୋମଣି ସୀତା
ଶୁଣି ତାଙ୍କର ବଚନ,
ବେନି ଅଶ୍ୱ ଯୋଡ଼ି ଥୋଇଲେ ତକ୍ଷଣେ
ସୁମନ୍ତ୍ର ଆଣି ସ୍ୟନ୍ଦନ ।

ସୁମିତ୍ରା ନନ୍ଦନ ସହ ମଇଥିଳୀ
ତାଙ୍କ ଆଦେଶ ଅନୁସାରେ,
ଦେଖି ଦେଖି ବାଟେ ମନୋଜ୍ଞ ଦୃଶ୍ୟ
ଗଲେ ମଠମୁଖେ ଧୀରେ ।
ନୋହିଲା ପରାଏ କଷଣ ସାରଥି
ନେଲେ ସ୍ୟନ୍ଦନ ଚଳାଇ,
ଭାଗୀରଥୀ ତୀର ହେବାରୁ ତାହାଙ୍କୁ
ତହୁଁରୁ ଦେଲେ ଓହ୍ଲାଇ,
କଳ୍ପଦ୍ରୁମ ନୋହି ବିଷବୃକ୍ଷ ବୋଲି
ସ୍ୱାମୀଙ୍କୁ ନଜାଣି ଦେବୀ,
ମଙ୍ଗଳ କାମନା କରି ଅବିରତ
ରହୁଥିଲେ ତାଙ୍କୁ ସେବି ।
ଦକ୍ଷିଣ ନୟନ ନାଚି ଘନ ଘନ
ଦେଲା କି ଆଗୁଁ ସୂଚନା,
ରାମ ରମଣୀର ଘଟାଇବ ବିଧି
ଆଣି ଦୁଃସହ ଯାତନା ।
ବନେ ବିସର୍ଜିବ ଜାନକୀଙ୍କି ବୋଲି
ଜାହ୍ନବୀ ବୀଚିଛଳରେ,
କି ବିଭୋଳ ବ୍ୟଗ୍ରେ ଉଭା ହେଲା ତୀରେ
ଲକ୍ଷ୍ମଣଙ୍କ ସମ୍ମୁଖରେ ?
କ୍ଷୁଦ୍ର ତରଣୀରେ ତରଙ୍ଗିଣୀ ହେଲେ
ଭ୍ରାତୃଜାୟା ସହ ପାରି,
ଦେବର ନୟନୁଁ ଗଡ଼ିଲେ ହେ ଲୁହ
ନ ପାରିଲେ ସତୀ ବାରି ।
ଅଗ୍ରଜ ଆଦେଶ ହେଲେହେଁ ଦାରୁଣ
ବାଷ୍ପ ଗଦ୍‌ଗଦ କଣ୍ଠରେ,
ଲକ୍ଷ୍ମଣ ସତୀଙ୍କୁ ଜଣାଇଲେ ତାହା
ଲୁହ ପୋଛୁ ପଣନ୍ତରେ ।
ଅକାଳ ଜଳଦ ଶିଳାବୃଷ୍ଟି କରି
ନାଶଇ ଶସ୍ୟକୁ ଯଥା,
ସେହି କଠୋର ବାକ୍ୟ ଜାନକୀ ଅଧୀରେ
ପଡ଼ିଲେ ଭୂମିରେ ତଥା ।
ଅଳକା ମାନ ଖସି ଖୋସାରୁ
ବିକ୍ଷିପ୍ତ କୁସୁମ ସମ,

ହୋଇଗଲା ବିଚ୍ଛିନ୍ନ ତାଙ୍କ ଉରପଟେ
ଶୁଣି ଏ ବାର୍ତ୍ତା ମର୍ମମ ।
ବଜ୍ରାଘାତ ପାଏ ମୂର୍ଚ୍ଛାଭିଭୂତ ସତୀ
ପଡ଼ି ରହିଲେ ଭୂତଳେ,
ମାତ୍ର କ୍ରମେ କ୍ରମେ ଲଭିଲେ ଚେତନା
ଦେବର ଯତନ ଫଳେ ।
ଅନ୍ତରେ ଅନ୍ତରେ ଦଗ୍‌ଧ ହୋଇ ଦେବୀ
ଜ୍ଞାନଶୂନ୍ୟ ହେବାଠାରୁ,
ଅତିଶୟ ଦୁଃଖ ଜାତ ହେଲା ହୃଦେ
ଚେତନା ଲାଭ କଲାରୁ ।
୧-ବୃଜିନ ବର୍ଜିତ ହେଲେହେଁ ସେ ସତୀ
ଟେକି ନ ଲେବେ,
ଭାଗ୍ୟ ହୀନା ବୋଲି ନିଜ କପାଳକୁ
କାନ୍ଦିଲେ ବିକଳ ରବେ ।
ହାତ ଯୋଡ଼ି ତଳେ ରକ୍ଷିଲେ ସୌମିତ୍ରି
ତାଙ୍କୁ ବାଷ୍ପରୁଦ୍ଧ ସ୍ୱରେ,
"ଦାଶରଥି ପରାଏ ଆଚରୁଛି ଯାହା
କ୍ଷମାକର ସତୀ ! ଥରେ ।
ରାଜାଜ୍ଞା ଅବଜ୍ଞା କରିବାକୁ କେବେ
ନବଳେ ଲକ୍ଷ୍ମଣ ମନ,
କିନ୍ତୁ କରିଅଛି ଦୋଷ ତବ ପାଶେ
କହି ଏ କଟୁ ବଚନ" ।
ତହୁଁ ଦେବରଙ୍କୁ କହିଲେ ଆଦରେ
ସଧୀରେ ତାଙ୍କୁ ଉଠାଇ,
"ଶ୍ୱଶୁର ଚରଣଙ୍କୁ କହିବ ଶାଶୁଙ୍କୁ
ପ୍ରଣାମ ମୋର ଜଣାଇ ।
ଏ ଅଭାଗିନୀର ଗର୍ଭସ୍ଥ ସନ୍ତାନେ
ହେଉନ୍ତୁ ସଦା ମଙ୍ଗଳ,
କହିବ ରାଜାଙ୍କୁ ଜନ୍ମାନ୍ତରେ ଏକି
ଅଗ୍ନି ପରୀକ୍ଷାର ଫଳ ?
ହୋଇଛି କି ଏହା ଯଥାର୍ଥ କର୍ମ
ଶୁଣି ଲୋକ ଅପବାଦ ?

୧—ପାପ

ଅବା ଅବସରେ ଘଟାଇଲ ବନ୍ଧ
ଭୁଞ୍ଜାଇବେ ଆଣି ପ୍ରମାଦ,
ଘଟିଛି କି ଅବା ବିଷମ ବିପାକ
ପୂର୍ବଜନ୍ମ ପାତକରୁ,
ନୁହନ୍ତା କି ସୁଖ ଘୁଞ୍ଚିଥିଲେ ପୂର୍ବେ
ବନବାସ ସମୟରୁ ?
ମଧୁର ମିଳନେ ଯାପୁଥିଲି କାଳ
ତା ଦେଖି ଲକ୍ଷ୍ମୀ ନ ସହି,
ଈର୍ଷା ପରବଶେ ସଜ ଉଣ୍ଡି ଅବା
ଘଟାଇଲେ ଛଳ ବନ୍ଧ ।
କି ରୂପେ ଶରଣ ଯେନିବ ମୁଁ ଅବା
ବନବାସୀ ଯତିଙ୍କର,
ନେଉଥିଲେ ଆଶ୍ରା ଯେଉଁମାନେ ମୋତେ
ବନବାସେ ନିରନ୍ତର ।
ଏ ବିରହ ବ୍ୟାଧି କାଳାନଳ ପରି
ଦହୁଅଛି ସଦାବେଳେ,
ଏ ଜୀବନ ଥିବା ଯାଏ ମୋ ମାନସୁଁ
ନହିବ ପାଶୋର ହେଲେ ।
ଏ ଉଦରେ ଯେଉଁ ଦିବ୍ୟ ତେଜ ତାଙ୍କ
ରହିଅଛି ବିଦ୍ୟମାନ,
ରକ୍ଷଣେ ତାହାର ମୋ କର୍ତ୍ତବ୍ୟ ବୋଲି
ଧରିଛି ସିନା ଜୀବନ ।
ରବିଙ୍କି ଅନାଇଁ ଏକଧ୍ୟାନେ ରହି
ସନ୍ତାନ ଜନମ ପରେ,
ଜପିବି ଏପରି ଯେପରି ସନ୍ତତ
ସଙ୍ଗୀହେବୁ ପରପରେ ।
ମନୁଙ୍କ ମତରେ ବର୍ଣ୍ଣାଶ୍ରମ ଧର୍ମ
ରାଜାଙ୍କର ସିନା ଭବେ,
ନିର୍ବାସନ ମୋର ହେବନାହିଁ କେବେ
ଉପକାର ତାଙ୍କ ଲବେ ।
କରୁଣ ବଚନ ଶୁଣି ସୀତାଙ୍କର
ସୁମିତ୍ରାନନ୍ଦନ ଖରେ,
ତାଙ୍କ ଦୃଷ୍ଟିପଥୁଁ ହୋଇଲେ ଅନ୍ତର
ଯେ ଆଜ୍ଞା ! କହି ଲଜରେ ।

କୁରଙ୍ଗୀ ପରାଏ ଭୟାତୁର ସୀତା
କାନ୍ଦିଲେ ଭୂତଳେ ପଡ଼ି,
ତରୁଡ଼ାଳେ ବସି କୁଜିଲେ କି ଦୁଃଖେ
ତରୁଶାୟୀ ଶୁଣି ରଡ଼ି ।
ଦଇବ ଇଛାରେ ଏ ବିଶ୍ୱ ସୃଜିତ
ମଣିଷ ତା କ୍ରୀଡ଼ନକ,
କାନ୍ଦିଲେ କି ହେବ ଯେତେ ମଥାକୋଡ଼ି
ହେଲେ ଅବା ବକବକ ।
ସମୀରଣ ଯୋଗେ କୁସୁମ ବରଷି
କି ଅବା ଲୋତକ ଛଳେ,
ବୃକ୍ଷଲତାମାନ ଦୁଃଖିନୀ ଦୁଃଖରେ
କାନ୍ଦିଲେ ଆହା ! ବିକଳେ ।
ମୟୂର ମୟୂରୀ ନୃତ୍ୟାମୋଦ ଛାଡ଼ି
ଶୁଣି ବିଳାପ ସହସା,
କେକାଧ୍ୱନି ଛଳେ ବୋଧିଲେ କି ଅବା
ଆସି ଜାନକୀ ନିକଟା ।
ଗ୍ରୀବାଟେକି ମୃଗେ ମ୍ରିୟମାଣ ଅବା
ଗମ୍ଭୀର ବିଷାଦଭରେ !
ବଇଦେହୀଙ୍କର ବନମଧ୍ୟେ ଶୁଣି
କାନ୍ଦିବାର ଆର୍ତ୍ତସ୍ୱରେ ।
ଏକାଳେ ବାଲ୍ମୀକି କୁଶ ହୋମକାଠ
ଲାଗି ଆସିଥିଲେ ବନ,
ସତୀଙ୍କ ସମୀପେ ଆସିଲେ ସେକ୍ଷଣି
ଶୁଣି ବିକଳ କ୍ରନ୍ଦନ ।
କାନ୍ଦି ପଣନ୍ତରେ ପୋଛିଦେଇ ଲୁହ
ବନ୍ଦନ୍ତେ ତାଙ୍କ ପଦରେ,
ଗର୍ଭଚିହ୍ନ ଦେଖି ତାପସ ଏମନ୍ତ
ଭାଷିଲେ ତାଙ୍କୁ ଆଦରେ ।
ସୁପୁତ୍ରର ମାତା ହୁଅ ବୋଲି ଦେଇ
ଆଶୀର୍ବାଦ ଘନ ଘନ,
ବୋଧିଲେ ତାହାଙ୍କୁ ନାନା କଥା କହି
ନିନ୍ଦି କୌଶଲ୍ୟାନନ୍ଦନ ।
ଏ କୁତ୍ସିତ ଘଟି ନିଠୁର ବ୍ୟବହାର
ଦେଖି ରଘୁମଣିଙ୍କର,

ହୋଇଛୁ ମୁଁ ତୁଷ୍ଟ ଏଣୁ ଗୋ ଜାନକୀ !
ତଳେ ଶୋଚନା ନକର ।
କର ନାହିଁ ସତ ! ଦୁଃଖ କଛୁ ମନେ
ଆସି ମୋ ଆଶ୍ରମେ ରହ,
ତାପସ କୁମାରୀ ନକର ତୁମ୍ଭଙ୍କୁ
ଦେଖାଇବେ ଅନୁଗ୍ରହ ।
ତମସା ତଟିନୀ ତୀର ଦେଶେ ପୂର୍ଣ୍ଣ
ମୁନି-କୁଟୀରନିକରେ,
ଯହିଁ ଜାତ କର୍ମ ହେବ ଯଥାକାଳେ
ସମ୍ପାଦିତ ସନ୍ତାନର ।
ସୁଖେ ସ୍ନାନ କରି ସ୍ୱରୁ ପୁଲିନରେ
ଈଶ୍ୱରଙ୍କୁ ପୂଜା କରି,
ହୋଇ ସୁପ୍ରସନ୍ନ ମାନସ ପ୍ରବୃତ୍ତି
ତୁମ୍ଭ ଦୁଃଖ ନେବ ହରି ।
ନିବାରର ଧାନ ଋତୁ ଜାତଫଳ
ପୂଜା ଯୋଗ୍ୟ ଉପହାର,
ଯୋଗାଇ ଦେବେ ସେ ଋଷି କୁମାରଏ
ସଦାସରଳ ଉଦାର ।
ଶକ୍ତ ଅନୁଯାୟୀ ପାଣି ବଳ୍କ କାଖେ
ବଡାଅ ପାଦପମାନ ।
ମାନସ ସନ୍ତାପ ଘୁଞ୍ଚିଯିବ ଧୀରେ
ଜନ୍ମିବା ଆଗୁଁ ସନ୍ତାନ" ।
ତପୋଧନଙ୍କର ଦୟାର୍ଦ୍ର ହୃଦୟ
ଜାଣି ସତୀ ଶିରୋମଣି,
ବୋଲିଲେ ମନରେ ମହର୍ଷି ପଣ୍ଡାରେ
"ଉପକୃତ ହେଲି" ମଣି ।
ବଭଦ୍ର ବଧୂର ଜାନକୀଙ୍କ ଘେନି
ଆଶ୍ରମେ ବାଲ୍ମୀକ ଯାଇ,
ତାଙ୍କ ପରିଚୟ ଦେଇ ତାପସୀଙ୍କୁ
କହିଲେ ସବୁ ବୁଝାଇ ।
ରହିଥିଲେ ବେଢ଼ି ମହା ଆନନ୍ଦରେ
ଦେଖି ସନ୍ଧ୍ୟା ଆଗମନ,
କୁରଙ୍ଗନୟେ ହୋମବେଦୀ ପାଶେ
କରି ଘୃତ ବସର୍ଜନ ।

ଅବସ୍ଥାନ କଲେ ପତର କୁଟୀରେ
ମୃଗଚର୍ମ ଶେଯେ ଶୋଇ,
ରକ୍ଷାକଲେ ତନୁ କନ୍ଦମୂଳ ଖାଇ
ନିତ ଧୂଆଧୋଇ ହୋଇ ।
ବୁଝିବାକୁ ଲବେ ନିସ୍ପୃତର ଗତ
ଶକତ ନାହିଁ କାହାର,
ଋତୁପଲଙ୍କରେ ବଢ଼ିରେ ଯେ ଆଜ
କାଲି ସେ ଦାଣ୍ଡ ଭିକାରି ।
ଝଟି ପ୍ରଭାତରୁ ତମସାକୁ ଯାଇ
କାଖରେ କଳସ ଧରି,
ବହି ଆଣି ନୀର ବଅଳି ଗଛରେ
ନିତ ତାପସୀଙ୍କ ପରି ।
ନାହିଥିଲା ବଳ ଏ କପାଳେ ପୁଣି
ବୋହିବାକୁ ନଳେ ଜଳ.
ଯାଉ ଦେବତଳେ ଖଟୁଥିଲେ ନିତ
ପରିବୃତ୍ତ ଦଳଦଳ ।
ଇନ୍ଦ୍ରଜିତ ଜେତା ସୁମିତ୍ରାନନ୍ଦନ
ଅଯୋଧ୍ୟା ନଗରେ ଫେରି,
ଯିବାରୁ ସକଳେ ଜାନକୀ ସମ୍ବାଦ
ପୁଚ୍ଛିଲେ ତାହାଙ୍କୁ ଘେରି ।
ଲକ୍ଷ୍ମଣ ନିକଟୁ ସକଳ ବୃତ୍ତାନ୍ତ
ଶୁଣି ରାଜବଳେ ତେନ,
ଦୁଃଖରେ ଅଧୀର ହୋଇ ଅବରତ
କଲେ ଅଶ୍ରୁ ବିସର୍ଜନ ।
ପରକଥା ଶୁଣି ଅବମୃଷ୍ୟ ଭାବେ
କରେ ଯେ କରମ ଭବେ,
ଅନବରତ ସେ ଅସହ୍ୟ ଯାତନା
ମର୍ମେ ମର୍ମେ ଅନୁଭବେ ।
କୋପ ପର ଶୂନ୍ୟ ଶାନ୍ତଶିଷ୍ଟ ରାମ
ଧୀରେ ଶୋକ ପରିହରି,
ସକଳ କଲ୍ୟାଣ କଲେ ପ୍ରଜାଙ୍କର
ରାଜଧର୍ମ ଅନୁସରି ।
ଗୃହଧନ୍ଦା ଛାଡ଼ି ରାଜକାର୍ଯ୍ୟେ ବ୍ୟସ୍ତ
ରହିଲେ ଯୋଦର ସହ,

ବଢାଇ ପୌରୁଷ ଅନ୍ୟ ପତ୍ନୀ ଆଉ
କଲେ ନାହିଁ ପରିଗ୍ରହ ।
ସୀତା ପ୍ରତିମୂର୍ତ୍ତି ସୁବର୍ଣ୍ଣେ ରଚିତ
କଲେ ଅଶ୍ୱମେଧ ଯାଗ,
ସମ୍ଭବ ଥିଲେହେଁ ଜାନକୀଙ୍କ ବନେ
ହୃଦେ ଥିଲା ଅନୁରାଗ ।
ଜନରବୁଁ ଶୁଣି ଜନକନନ୍ଦିନୀ
ପତିଙ୍କ ସ୍ନେହ ମହିମା,
ଅନତି ବିଳମ୍ବେ ନେଲେ ପରିହରି
ମାନସୁଁ ଦୁଃଖ କାଳିମା ।

— ★ —

## ପଞ୍ଚଦଶ ସର୍ଗ

ପୁନର୍ବିବାହରେ ନ ବଳାନ୍ତେ ମନ
ଶାସିଲେ ଧରଣୀ ରାମ,
ସଙ୍ଗେ ପତିବ୍ରତା ଜନକସୁତାଙ୍କୁ
ହୃଦେ ରଖି ଅବିରାମ ।
ଯମୁନା ତଟିନୀ ତୀରବାସୀ ମୁନି
ଲବଣ ଉପଦ୍ରବରେ,
ଯାଗରକ୍ଷା ପାଇଁ ରାମଙ୍କୁ କହିଲେ
ଆସି ଆର୍ତ୍ତଙ୍କ ମନରେ ।
ସେମାନଙ୍କ ଆଗେ ଧର୍ମ୍ମ ରକ୍ଷା ଲାଗି
ରାମ କରି ଅଙ୍ଗୀକାର,
କହିଲେ ଆଦେଶ ଶତ୍ରୁଘ୍ନଙ୍କୁ ଡାକି
କରିବାକୁ ପ୍ରତିକାର ।
ଆଶୀର୍ବାଦ ନେଇ ବଡ଼ ଭାଇଙ୍କର
ବାହାରିଲେ ଶତ୍ରୁଘ୍ନ,
ହୋଇ ଆୟୋଜିତ ସୁସଜ୍ଜିତ ସୈନ୍ୟ
ପଛରେ କଲେ ଗମନ ।
ଆଗେ ଆଗେ ଚାଲି ମୁନିଏ ଚଞ୍ଚଳେ
ନିଅନ୍ତି ବାଟ ଦେଖାଇ,
ରବି ଅସ୍ତ ଦେଖି ବାଲ୍ମୀକି ଆଶ୍ରମେ
ରହିଲେ ସକଳେ ଯାଇ ।

ସର୍ବାଙ୍ଗ ସୁନ୍ଦର ଯୁଗଳ ତନୟ
ପ୍ରସବନ୍ତେ ରାମ ଭାର୍ଯ୍ୟା,
ସେ ବନ ଆଶ୍ରମେ କଲେ ତାହାଙ୍କର
ତାପସୀଏ ପରିଚର୍ଯ୍ୟା ।
ଏ କୁଶଳ ବାର୍ତ୍ତା ଶୁଣି ଶତ୍ରୁଘ୍ନ
ହେଲେ ଖୁସି ଅତିଶୟ,
ତହିଁ ଆରଦିନ ଗଲେ ସେ ହରଷେ
ଘେନି ସ୍ୱଜନନିଚୟ ।
ବାଟେ ଯାଉଁ ଯାଉଁ ଲବଣ ଦୈତ୍ୟକୁ
ଆସୁଥିବା ଦେଖି ଖରେ,
ଶତ୍ରୁଘ୍ନ ସୁମତି ଛେଦିଲେ ତାହାକୁ
ସଜ ଉଣ୍ଡି ତୀକ୍ଷ୍ଣଶରେ ।
ସେ ଆଘାତେ ଦୈତ୍ୟ ଗର୍ଜ୍ଜି ବାରବାର
ଭାଷିଲା ଏମନ୍ତ ଗିର,
ଆଜିରେ ବିଧାତା ଆହାର ରୂପରେ
ଖଞ୍ଜିଲା ସୁନ୍ଦର ବୀର ।
କ୍ଷୁଧାର୍ତ୍ତ ଅଛି ମୁଁ ଭକ୍ଷିବି ଏକ୍ଷଣି
ତୋତେ ପ୍ରେରି ଯମାଳୟେ",
ଏହା କହି ଶାଳ ତରୁଟିଏ ଆଣି
ଛେଚିଲା ତାଙ୍କ ହୃଦୟେ ।
ସମ୍ଭାଳି ଶତ୍ରୁଘ୍ନ ଐନ୍ଦ୍ର ଅସ୍ତ୍ର କାଢି
କରନ୍ତେ ତାକୁ କ୍ଷେପଣ,
ଦୁଇଖଣ୍ଡ ହୋଇ ରୁଧିରରେ ବୁଡି
ପଡ଼ିଲା ଦୈତ୍ୟ ଲବଣ ।
ବଧିବାରୁ ତାକୁ ତପସ୍ୱୀନିକର
ସ୍ତୁତି କଲେ ଶତ୍ରୁଘ୍ନଙ୍କୁ,
ଲଜ୍ଜାଭରେ ସେହି କଲେ ଅବନତ
ବ୍ୟଗ୍ରେ ଆପଣା ଶିରକୁ ।
ଘୁଞ୍ଚାଇ ଶତ୍ରୁଘ୍ନ ଉପଦ୍ରବ ଯାହା
ଥିଲା ଋଷିମାନଙ୍କର,
ରଚିଲେ କୌଶଳେ କାଳିନ୍ଦୀ ତଟରେ
ମଥୁରା ନାମେ ନଗର ।
ନଥିଲା ଧନରେ ତିଳେ ମାତ୍ର ତ୍ରୁଟି
ମହାର୍ଘ ଭୂଷଣ ଯଶ,

ନ୍ୟାସ୍ତ ପରିବେଶ ହୋଇ ସୁକୌଶଳେ
କଲେ ପରଜାଙ୍କୁ ବଶ ।
ମହର୍ଷି ବାଲ୍ମୀକି ଏଣେ ତନୟଙ୍କ
ନାମ ଦେଇ କୁଶଲବ,
ଶିକ୍ଷା କଲେ ସଦା ବଢ଼ିବ କିପରି
ସେମାନଙ୍କ ଗଉରବ ।
ଶୈଶବ ସମସ୍ତ ଅତୀତ ହେବାରୁ
ନିଜକୃତ ରାମାୟଣ,
ବେଦ ସହ ଶିକ୍ଷା ଦେଲେ ସେମାନଙ୍କୁ
କରିବାକୁ ପାରାୟଣ ।
ଜନନୀ ମୁଖରେ ହରଷ ନଥିବା
କାଳରେ ସେ ଦୁଇଭାଇ,
ମନକୁ ଭୁଲାଇ ଦିଅନ୍ତି ତାଙ୍କର
ଶ୍ରୀରାମ ଚରିତଗାଇ ।
ଦୁଇ ଦୁଇ ସୁତ ଜନ୍ମିଲେ ଏକାଳେ
ଅନ୍ୟ ତିନି ଭାଇଙ୍କର,
ବିରହ ବେଦନା କଲୁ ଉପଶମନ
ଯାଣ୍ଟୁଥିଲା ନିରନ୍ତର ।
ନିଜସୁତ ଶତ୍ରୁ ଦାନ୍ତ ସୁବାହୁଙ୍କୁ
ବିଦିଶା ମଥୁରାପୁରେ,
ନୃପତି କରଇ ଫେରିଲେ ଶତ୍ରୁଘ୍ନ
ମାରି ଲବଣ କଟ୍ଟୁରେ ।
ତୋରଣମାଳିନୀ ଅଯୋଧ୍ୟା ନଗରୀ
ପ୍ରବେଶନ୍ତେ ଆଡ଼ମ୍ବରେ,
ପୁରବାସୀ ବୃନ୍ଦ ମହିଳାଙ୍କ ସହ
ଅଭ୍ୟର୍ଥିଲେ ଭକ୍ତିଭରେ ।
ଏ ଅନ୍ତେ ନଗରେ ପ୍ରବେଶି ପ୍ରଥମେ
ବନ୍ଦି ଅଗ୍ରଜ ଚରଣେ,
ପ୍ରଣମିଲେ ଯାଇ ଭକତି ମାନସେ
ସେ ତ୍ରୟମୟୀ ମାତାଗଣେ ।
ଏକାଳେ ଜନୈକ ଶ୍ରୋତ୍ରିୟ ବ୍ରାହ୍ମଣ
ମୃତ ଶିଶୁଟିଏ ଧରି,
ଉଭାହେଲେ ଆସି ରାଜସିଂହଦ୍ୱାରେ
ନେତ୍ରେ ଅଶ୍ରୁ ପୂର୍ଣ୍ଣକରି ।

ଭାଷିଲା ଏମନ୍ତ ଅତି ଉଚ୍ଚସ୍ୱରେ
"ହେ ବସୁଧେ ! ଲୋକମାତା
ଦଶରଥଙ୍କର କରିଭ୍ରଷ୍ଟ ହୋଇ
ଦେଖୁଛ କି ଜଣେ ଦାତା ।
କଷ୍ଟୁଁ କଷ୍ଟତର ଶୋଚନୀୟ ଦଶା
କରୁଛ ଏବେ ଧାରଣ
ରାମଙ୍କ ଶାସନେ ସମର୍ଥ କେ ଅଛି
କଟିବାକୁ ତା ବାରଣ ।
ହୋଇ ମ୍ରିୟମାଣ ଶୁଣି ସେ ଧିକ୍କାର
କହିଲେ ଶ୍ରୀରାମ ଯାଇ,
ସେ ବିପ୍ରବରଙ୍କୁ କ୍ଷମାକର ବୋଲି
ସଦୟେ ଆଶ୍ୱାସ ଦେଇ ।
ଦ୍ୱିଜ ତନୟଙ୍କୁ ଯମଠୁ କଢ଼ନ୍ତି
ଫେରାଇବା ଆଶାକରି,
ପୁଷ୍ପକ ରଥରେ ଆରୋହି ଶ୍ରୀରାମ
ବାହାରିଲେ ଧନୁ ଧରି ।
ଏକାଳେ ଏରୂପେ ଶୁଭିଲା ଶୂନ୍ୟରୁ
ପ୍ରଜା ଛାଡ଼ି ନିଜ ଧର୍ମ,
ଅନ୍ୟ ବ୍ୟବହାର କରୁଛନ୍ତି ତେଣୁ
ଅଟଇ ଏହା କୁକର୍ମ ।
ସବିଶେଷ ହେଉ ଖୋଜ ପୃଥ୍ୱୀରୂପେ
ବାସନା କରି ପୂରଣ,"
ଚଳିଲା ବିମାନ ଦଶଦିଗେ ବେଗେ
ଏକଥା କରି ଶ୍ରବଣ ।
ଦେଖିଲେ ଦୂରରୁ ଦୁଇପାଦ ଛନ୍ଦି
ଉଚ୍ଚବୃକ୍ଷ ଶାଖା ତଳେ,
କରୁଛି ତପସ୍ୟା ଜନଏକ ଶୂଦ୍ର
ଭିନ୍ନ ଏକାଗ୍ର ଚିତ୍ତରେ ।
ପଚାରନ୍ତେ ରାମ କହିଲା ସେ ତପି
"ଶମ୍ବୁକ ନାମ ମୋହର,
ଜାତିରେ ମୁଁ ଶୂଦ୍ର ସ୍ୱର୍ଗ କାମନାରେ
କରୁଛି ତପସ୍ୟା ଘୋର ।"
ଭାବିଲେ ଶ୍ରୀରାମ, "ନାହିଁଟି ଏହାର
ତପସ୍ୟାରେ ଅଧିକାର,

ଧର୍ମଶାସ୍ତ୍ରମତେ ଶିରଚ୍ଛେଦ ଦଣ୍ଡ
'ଅଟଇ ଏ ଦୁରାତ୍ମାର ।"
ତେଣୁ ତାର ଶିର ଶରରେ ଛିଣ୍ଡାଇ
ପକାଇଲେ ସେହୁ ତଳେ,
ବ୍ରାହ୍ମଣ୍ୟ ଧର୍ମର ମୂଳମନ୍ତ୍ର ବୋଲି
ଯଶ ରଖି ଭୂମଣ୍ଡଳେ ।
ଫେରି ଅଯୋଧ୍ୟାକୁ ଶୁଣିଲେ ଶ୍ରୀରାମ
ମୃତ ବ୍ରାହ୍ମଣ କୁମର,
ପାଇଛି ଜୀବନ ତେଣୁ ସ୍ତୁତି ଗାନ
କରେ ବିପ୍ର ରାମଙ୍କର ।
କିଛି ଦିନ ପରେ ଅଶ୍ୱମେଧ ଯାଗ
ସମ୍ପୂର୍ଣ୍ଣ କରିବା ପାଇଁ,
ମହା ଆଡ଼ମ୍ବରେ ଅଶ୍ୱକୁ ମୋଚନ
କଲେ ଅଯୋଧ୍ୟାର ସାଇଁ ।
ନାନା ଉପାୟନ ରାକ୍ଷସ ବାନର
ନର ନରପତି ଗଣ,
ନାନା ଦେଶୁଁ ଆସି ଦେଲେ ମୋଦଭରେ
ଧୋଇ ଶ୍ରୀରାମ ଚରଣ
ଏହି ମହାଯାଗେ ଯୋଗ ଦେବାପାଇଁ
ଆସି ମହାଋଷିମାନେ,
ଜ୍ୟୋତିର୍ମୟ ଲୋକୁଁ ସୁନ୍ଦା ଦଳେ ଦଳେ
ପହଞ୍ଚିଲେ ଯାଗସ୍ଥାନେ ।
ଜଳସ୍ରୋତ ପରି ଗୃହଦେଶୁଁ ଏଣେ
ଆସି ନିମନ୍ତ୍ରିତ ଦଳ,
ନିର୍ବିଘ୍ନରେ ସମା- ପନ କରିବାକୁ
ଯତନ କଲେ ସକଳ ।
ପତ୍ନୀରୂପେ ସେନି ସୁବର୍ଣ୍ଣ ପ୍ରତିମା
ବଇଦେହି ନନ୍ଦିନୀଙ୍କର,
ଅନୁଷ୍ଠିଲେ ଯାଗ ରକ୍ଷକ କରାଇ
ତହିଁ ରାକ୍ଷସ ନିକର ।
ବାଲ୍ମୀକି ରଚିତ ରାମାୟଣ ଗୀତ
ଗାଇଲେ ମଧୁର ସ୍ୱରେ,
ଲବକୁଶ ବେନି ଋଷିଙ୍କ ପ୍ରସାଦୁଁ
ଆସି ଯାଗ ମଣ୍ଡପରେ ।
କଣ୍ଠର ପରାଏ ଲବକୁଶ ବେନି
ଥାଇ ଅତ୍ୟନ୍ତ ଗାୟକ,
ଶୁଣି କବିଗୁରୁ ମହର୍ଷି ବାଲ୍ମୀକି
ନିଜେ ଗୀତିବିରଚକ ।
ଶ୍ରୋତାଏ ସକଳ ହୋଇ ବିମୋହିତ
ହେଲେ ପଚରାଉଚରି,
ମଧୁର ମୂରତି ଦେଖି ତାହାଙ୍କର
ହେଲେ ସର୍ବେ ଠାରାଠାରି ।
ବୟସ ବେଶକୁ ସ୍ଥିତ ସବୁ ଅଂଶେ
ରାମ ସଙ୍ଗେ ଦୁହିଁଙ୍କର,
ନଥିଲା ପ୍ରଭେଦ ତେଣୁ ଲୋକମାନେ
ଦେଖୁଥିଲେ ଥରେ ଥର ।
ପଚାରିଲେ ରାମ କେଉଁ କୃତିବନ୍ତ
ଶିକ୍ଷକ ବାବୁ କୁମର,
ଶିଖାଇଲେ କଏ କହ କେଉଁ କବି
ପ୍ରଣେତା ଏ ସୁଗ୍ରନ୍ଥର ।
ଦୁହେଁଯାକ ତହୁଁ ଉତ୍ତରିଲେ ତାଙ୍କୁ
ବାଲ୍ମୀକି ଗୁରୁ ଆମର,
ଏହି ଉପାଖ୍ୟାନ ରଚିଛନ୍ତି ସେହି
ଶୁଣିବାକୁ ସୁଧୀବର" ।
ନାନା ଲୋଭନୀୟ ପଦାର୍ଥ ଦେଲେହେଁ
ନ ନେବାରୁ ବେନିଯାକ,
ଦର୍ଶକ ମଣ୍ଡଳ ପଚାରିଲେ ତହୁଁ
ବାଲ୍ମୀକି ସମୀପେ ଯାଇ ।
ଗମନ୍ତେ ଶ୍ରୀରାମ ମହର୍ଷିଙ୍କ ପାଶେ
ଭାଷିଲେ ସେ ମୁନିବର,
ଲବକୁଶ ବେନି ଅଟନ୍ତି ଯମଜ
ବଇଦେହୀଙ୍କ କୁମର ।
ମୋ ଆଶ୍ରମେ ରହି କରନ୍ତି ଉଜ୍ଜ୍ୱଳ
ଅବିରତ ତପୋବନ,
ନେନ ତାଙ୍କୁ ଏବେ ମାତାସହ ମୋଦେ
ଏହା ମୋର ନିବେଦନ ।
ଏ ବଚନ ଶୁଣି ଦୁଃଖେ ରଘୁମଣି
କହିଲେ ତାଙ୍କୁ ଏପରି,

'ଇଚ୍ଛିଲେ ପ୍ରଜାଏ ଗ୍ରହିବ ତାହାଙ୍କୁ
ତବ ଅଙ୍କ ନୀରେ ଧର ।'
ଆଣିଲେ ଡକାଇ ସୀତାଙ୍କୁ ଆଶ୍ରମୁଁ
ଅଚିରେ ସେ ମୁନିବର,
ଏଣେ ରଘୁମଣି ଜମାଇଲେ ଆଣି
ତାହାଙ୍କ ପ୍ରଜାନିକର ।
କଷାୟ ବସନ ପିନ୍ଧି ସୀତାଦେବୀ
ସ୍ୱାମୀ ଚରଣଯୁଗଳେ ,
ନିବେଶି ନୟନ ଧୀରେ ଧୀରେ ଝଳେ
ହେଲେ ସେହି ସଭାସ୍ଥଳେ ।
ଫଳେ ଅବନତ ପକ୍ୱ ଶାଳୀ ପରି
ନତମୁଖେ ସୀତା ରହି
ନିଜ ଚରିତର ପବିତ୍ରତା ନେଇ
କହିଲେ ଅନାଇଁ ମହୀ ।
"ହେ ଧରଣୀ ଦେବୀ ! କରିନାହିଁ କେବେ
ସ୍ୱାମୀପ୍ରତି ଅବିଶ୍ୱାସ,
ଏଣୁ ତୋ କଠରେ ସ୍ଥାନଦେଇ ମତେ
ପୂରାଅ ମୋ ଅଭିଳାଷ ।"
କହିବା ମାତ୍ରକେ ଏକଥା ଜାନକୀ
ଦରିଗଲା ମେଦିନୀଏ,
ତହିଁରୁ ଧରଣୀ ଦେବୀ ବାହାରନ୍ତେ
ତଟସ୍ଥ ହେଲେ ସଭିଏଁ ।
ସ୍ୱାମୀଙ୍କ ଆଡକୁ ଅନାଇଁ ଏକାନ୍ତେ
ରହିଥିଲେ ସୀତାସତୀ
ପଶିଲେ ପାତାଳେ ତାଙ୍କୁ କୋଳେଧରି
ଆସି ଦେବୀ ବସୁମତୀ ।
କେଡ଼େ ଅଭାଗିନୀ ଜନକ ଦୁହିତା
ବିବାହ ବାସି ଦିନରୁ,
ସୁଖବୋଲି ଦିନେ ଜାଣିଲେ ନାହିଁ ଲୋ
ନିଜ କପାଳ ଦୋଷରୁ ।
ଶାଶୁ ଘରେ ଯାଇ ରହି କିଛି ଦିନ
ଗଲେ ପତିସଙ୍ଗେ ବନ ,
ସକଳ ସୌଭାଗ୍ୟ ତେଜି ପାଟବଣୀ
ପିନ୍ଧି ବକଳ ବସନ ।

ମଣିଥିଲେ ସିନା ପତିସଙ୍ଗେ ସୁଖେ
ଯାପିବେ କାନନେ କାଳ,
ଦଶା ବଶାକରୁ ଥିବା ପୂର୍ବ କର୍ମୁଁ
ଦଶାନନ ହେଲା କାଳ ।
ଅଶୋକ ବନରେ ବନ୍ଦୀଭାବେ ରହି
ଭୋଗିଲେ କେତେ ଯାତନା,
ପତି ପତି ବୋଲି ଝୁରି ଝୁରି ସଦା
ହେଲା ସଫଳ କାମନା ।
ନରସରେ ତାଙ୍କ ସନ୍ଦେହ କରଣ
ରାମ ସର୍ବ ସମକ୍ଷରେ
ଅଗ୍ନିରେ ତାହାଙ୍କୁ ପରୀକ୍ଷା କରାଇ
ଗ୍ରହିଲେ ହରଷଭରେ ।
ଅଯୋଧ୍ୟାନାଥଙ୍କ ପାଟରାଣୀ ହୋଇ
ଦିନ ଗଲା ନାହିଁ ସୁଖେ
ଲୋକ ଅପବାଦ ହୋଏ ରାମଚନ୍ଦ୍ର
ପଠାଇଲେ ବନମୁଖେ ।
ଦେବର ଲକ୍ଷ୍ମଣ ସଙ୍ଗେ ତାଙ୍କୁ ନେଇ
ଭାଗୀରଥୀକୂଳ ତ୍ରୁଡ
ଆସନ୍ତେ ବାହୁଡ଼ି ଏକାକିନୀ ହୋଇ
କରିଲେଟି ବିକଳେ ରଡ଼ି ।
ଏକାଳେ ବାଲ୍ମୀକି ଶୁଣି ସେ କ୍ରନ୍ଦନ
ପାଖକୁ ଆସିଲେ ଧାଇଁ,
ରାମ ବ୍ୟବହାରେ ରୋଷବନ୍ତ ମନେ
କହିଲେ ସୀତାଙ୍କୁ ଚାହିଁ ।
"ଅଛ ଗର୍ଭବତୀ ମୋର ମଠେ ସୁଖେ
ରହ ତାପସୀଙ୍କ ସହ,
ହସ କଉତୁକେ ଦିନ ପସାରିବ
ମାନସେ ଦୁଃଖ ନବହ ।"
ଏହା କହି ମୁନି ତାଙ୍କୁ ସଙ୍ଗେନେଇ
ଗଲେ ଆପଣା ମଠକୁ,
ରଖିଲେ ଯେପରି ସୁଖେ ଦିନ ଯିବ
ତେଜି ବିରହ ଦୁଃଖକୁ ।
କିଛି ଦିନ ଗଲେ ଯମଜ ତନୟ
ପ୍ରସବିଲେ ସୀତା ସତୀ,

ଜାତକର୍ମ ତାଙ୍କ    ସାର ମହାମୁନି
ପାଳିଲେ ଯତନେ ଅତି ।
ଲବକୁଶ ବୋଲି    ତାଙ୍କ ନାମ ଦେଇ
ସ୍ୱରଚିତ ରାମାୟଣ,
ଶିଖାନ୍ତେ ଦୁହିଁଙ୍କୁ    ଲଳିତ କଣ୍ଠରେ
ନିତି କଲେ ପାରାୟଣ ।
ଅଶ୍ୱମେଧ ଯାଗ    କରିବାରୁ ରାମ
ବାଲ୍ମୀକି ଧରି ସଙ୍ଗରେ,
ସେ ଭାଇ ଦୁହିଁଙ୍କୁ    ବୋଲାଇଲେ ଗୀତ
ଆସି ଯାଗ ମଣ୍ଡପରେ ।
ରାମାୟଣ ଗାନେ    ଚହ୍ନାଇଁ ଦୁହିଁଙ୍କୁ
ରାମଙ୍କ ବୋଲି କୁମର
ଗ୍ରହିବାକୁ ସୀତା    କୋଶଳନାଥଙ୍କୁ
ନିବେଦିଲେ ମୁନିବର ।
ପ୍ରଜାଙ୍କ ସମକ୍ଷେ    ସୀତାଙ୍କ ଚରିତ
ପରୀକ୍ଷା କରିବା ପାଇଁ,
ଡକାଇ ଆଣନ୍ତୁ    ବୋଲି ମହର୍ଷିଙ୍କୁ
ବୋଇଲେ କୋଶଳ ସାଇଁ ।
ଏ ଆଦେଶ ଲଭି    ମହାଋଷି ଯାଇ
ସୀତାଙ୍କୁ ସେ ସଭାସ୍ଥଳ,
ଆଣନ୍ତେ ତକ୍ଷଣେ    ଲୋକଙ୍କ ମଧ୍ୟରେ
ଉଠିଲା ଘୋର ଚହଳ ।
ନତ ମୁଖେ ସୀତା    ଧରଣୀ ଦେବୀଙ୍କୁ
ଆଖି କରି ଛଳଛଳ,
ଡାକନ୍ତେ ସେ ଦେବୀ    ବାହାରି ରନ୍ଧ୍ରରୁ
ତାଟକା କଲେ ସକଳ ।
କୋଳେ ଘେନି ତାଙ୍କୁ    ହୁଅନ୍ତେ ଅଦୃଶ୍ୟ
ନମାନି ରାମ ବଚନ,
ଉଦ୍ୟତ ହେଲେ ସେ    କରିବାକୁ ବ୍ୟଗ୍ରେ
ତାର ମସ୍ତକ ଛେଦନ ।
ଏକାଳେ ସହସା    ବ୍ରହ୍ମା ଆସି ତହିଁ
କରନ୍ତେ ତାଙ୍କୁ ବାରଣ,
ଉପଦେଶ ତାଙ୍କ    ଘେନିଣ ଶ୍ରୀରାମ
କ୍ରୋଧ କଲେ ସମ୍ବରଣ ।

ଯାଗଶେଷେ ତୋଷି    ବନ୍ଧୁବାନ୍ଧବଙ୍କୁ
ସଭିଙ୍କି ଦେଇ ମେଲାଣି,
ସମର୍ପିଲେ ରାମ    ସମୁଦାୟ ରାଜ୍ୟ
ଲବକୁଶ ଡାକି ଆଣି ।
ଭରତଙ୍କୁ ଦେଲେ    ସିନ୍ଧୁଦେଶ ତାଙ୍କ
ମାତୁଳ ଅନୁରୋଧରେ,
କଲେ ରାଜପୁତ୍ର    ତକ୍ଷ ପୁଷ୍କଳଙ୍କୁ
ଦେଲେ ସେ ହରିଷ ଭରେ ।
କାରାପଥ ପୁରେ    ଲକ୍ଷ୍ମଣଙ୍କ ପୁତ୍ର
ଅଙ୍ଗଦ ଚନ୍ଦ୍ର କେତୁଙ୍କୁ,
ରାଜପଥ ଦେଇ    ଯାପିଲେ ସମୟ
ମାନି ରାମ ଆଦେଶକୁ ।
କିଛୁଦିନ ଅନ୍ତେ    ରାମଙ୍କ ସମୀପେ
ଶମନ କରି ପ୍ରବେଶ,
ନିବେଦିଲେ ତାଙ୍କୁ    ବୈକୁଣ୍ଠେ ଫିରିବାକୁ
ଘେନି ବ୍ରହ୍ମାଙ୍କ ଆଦେଶ ।
ସମାପନ କରି    ମର୍ତ୍ତ୍ୟଲୀଳା ରାମ
ଭୁଲିଲେ ସଭିଙ୍କ ସଙ୍ଗ,
ଗଲେ ତାଙ୍କ ସଙ୍ଗେ    ଯେତେ ପ୍ରିୟଭୃତ୍ୟ
ରାକ୍ଷସ କପି ନିବହ ।
ବୈକୁଣ୍ଠୁଁ ଆଗତ    ରଥରେ ଆରୋହି
ଗଲେ ଯମ କଥାଶୁଣି,
ଭବମାୟା ଛାଡ଼ି    ଦେବ ରାବଣାରି
ଧଇଲେ ସ୍ୱମୂର୍ତ୍ତି ପୁଣି !



## ଷୋଡ଼ଶ ସର୍ଗ

ବୟସରେ ବଡ଼    ଗୁଣରେ ଗରିଷ୍ଠ
କୁଶ ବସି ସିଂହାସନେ,
କୃଷିର ଉନ୍ନତି    ଲାଗି ସେତୁ ବାନ୍ଧ
ପାଳିଲେ ପ୍ରଜା ଯତନେ ।
ବିବିଧ ସତ୍କାର୍ଯ୍ୟ    କରି ପ୍ରଜାଲାଗି
ରଞ୍ଜିଲେ ତାଙ୍କ ମାନସ,

ଦାନ ଧର୍ମେ ମନ          ଦେବାରୁ ସତତ
  ବଢ଼ିଲ ତାଙ୍କର ଯଶ ।
ଏଥୁଅନ୍ତେ ଦିନେ          ନିଶୀଥ ସମୟେ
  କୁଶ ଶୟନାଗାରରେ,
ଅଚିହ୍ନା ରମଣୀ          ଗୋଟିଏ ପ୍ରବେଶି
  କହିଲା ଉଚ୍ଚ ସ୍ୱରରେ ।
"ଜୟ ହେଉ ବୋଲି"          ଶୁଣି ଚମକିତ
  କୁଶ ପୁଚ୍ଛିଲେ ତାହାଙ୍କୁ,
କେମନ୍ତେ ପଶିଲ          ଗୃହେ ନ ଫିଟାଇ
  ଅର୍ଗଳିତ କବାଟଙ୍କୁ ।
ନବ କମଳିନୀ          ହିମବିନ୍ଦୁ ଖାଲେ
  ଲଭଇ ବିବର୍ଣ୍ଣ ଯଥା,
ହୁଏ ଅନୁମାନ          ଦୁଃଖେ ମ୍ଳାନ ତବ
  ବଦନ ଦିଶଇ ତଥା ।
କିଏ ତୁମ୍ଭେ କହ          କାହାର ବନିତା
  ଆସିଛ କପାଁ ବାସରେ ?
ଇନ୍ଦ୍ରପୁ ଦାସ ତ          ନୁହନ୍ତି କଦାପି
  ଇକ୍ଷ୍ୱାକୁବଂଶ କୁମରେ ।
ବୀଣାଜିଣା ସ୍ୱରେ          ଭାଷିଲେ ଦୁଃଖିନୀ
  ଶୁଣ ହେ ନରେନ୍ଦ୍ରମଣି,
"ଭାରତ ମଧ୍ୟରେ          ଯଶ ଗଉରବେ
  ସଦା ଅଯୋଧ୍ୟା ଧରଣୀ ।
ଟେକିଥିଲା ତାର          ଉଜ୍ଜ୍ୱଳ ମସ୍ତକ
  ସେହି ମହାନଗରୀର,
ସକଳ କାଳରେ          ଅଧିସ୍ୱାମୀ ମୁହିଁ
  ଅର୍କବଂଶ ଅଧୀଶ୍ୱର ।
ତବ ପିତାସଙ୍ଗେ          ଗଲେ ଅଧିବାସୀ
  ମଜ୍ଜି ବାତ୍ସଲ୍ୟ ପ୍ରେମରେ,
ଅନାଥିନୀ ହୋଇ          ରହିଲା ଏ ପୁରେ
  ଏବେ ଏକାକୀ ଦୁଃଖରେ ।
ତୁମ୍ଭେ ଶକ୍ତିଶାଳୀ          ନ୍ୟାୟପରାୟଣ
  ଜନ୍ମିଛ ସେହି ବଂଶରେ,
ଥାଉଁ ଥାଉଁ ତୁମ୍ଭେ          ଲଭୁଛି କି ଦଶା
  କାନ ଡେରି ଶୁଣ ଥରେ ।

ମୋର ନୃପଙ୍କର          ଅତୁଳ ଐଶ୍ୱର୍ଯ୍ୟେ
  ପୁଣି ଗୌରବ ପ୍ରଭାବେ,
ଏ ସାକେତପୁର          ସତତ ପ୍ରସିଦ୍ଧି
  କରିଥିଲା ଲଭ ଭବେ ।
ପଣ୍ଡିତ ମଣ୍ଡିତ          ଏ ମହାନଗରୀ
  ହୋଇଛି ଶ୍ମଶାନ ଆଜ.
ମିଶିଛି ମାଟିରେ          ଅଟ୍ଟାଳିକା ପୁଣି
  ରମ୍ୟ ଦେବାଳୟ ରାଜ ।
ପଶି ସରସୀରେ          ଅରଣା ମହିଷ
  ଦେଖାଇ ଆପଣା ବଳ,
ସଞ୍ଚାଳି ଗୋଡଙ୍କୁ          ଅଥବା ଥୋଡଙ୍କୁ
  ପଙ୍କିଳ କରୁଛି ଜଳ ।
ବଇଷା ପାଣିରେ          ଭିଜ କାନ୍ଥଶ୍ରେଣୀ
  ଭୁଷୁଡ଼ି ପଡୁଛି କାହିଁ,
ଜମି ହୁଡ ଟରି          ଧସୁଛି ତା ଦୁଇଁ
  କିଏ ସେ ପଚାରୁ ନାହିଁ ।
ଯେ ରାଜମାର୍ଗରେ          ୧- ଅଭିସାରିକାଏ
  ବିଚରୁ ଥିଲେ ନିର୍ଭୟେ,
ଭ୍ରମୁଛନ୍ତି ତହିଁ          ସାରମେୟଚୟ
  ଏବେ ଶର୍ବରୀ ସମୟେ ।
ଦୁରନ୍ତ ଶୃଗାଳ          ଏଣେ ତେଣେ ବୁଲି
  କରି ବିକଟ ଚିତ୍କାର,
ନିଜ ମୁଖ ବହ୍ନି          ତେଜେ ଖୋଜି ଖୋଜି
  କରନ୍ତି ଶବ ଆହାର ।
ଗୃହ କେକୀ କୁଳ          କାମିନୀମାନଙ୍କ
  ଶୁଣି ମୃଦୁ କରତାଳ,
ଦିଶନ୍ତି ବିବର୍ଣ୍ଣ          ଯେହ୍ନେ ବର୍ହିତୋଳ
  ନାଚୁଥିଲେ ତଳ ତଳ ।
ଅଳକ୍ତ ରସ          ରଞ୍ଜିତ ଚରଣେ
  ଭ୍ରମୁଥିଲେ ଆନନ୍ଦରେ,
ଯହିଁ ରମଣୀଏ          ଏବେ ବୁଲୁଛନ୍ତି
  ତହିଁ ଭଲ୍ଲୁକ ସୂକରେ ।

୧ — ନାୟକ ଆଶାରେ ନାୟିକା ସଙ୍କେତ ସ୍ଥାନକୁ ଯିବା

ଶୁଭୁ ନାହିଁ କାହିଁ   ନବ ନବ ତାନେ
ମୃଦଙ୍ଗର ଧ୍ୱନି ଆଉ,
ଆନନ୍ଦ ବର୍ଦ୍ଧନ   ସାକେତ ନଗରେ
ବଢ଼ୁଲଣି ଖଣ୍ଡ ଦାଉ ।
କମଳ କାନନେ   ମୃଣାଳ ଖଣ୍ଡକୁ
ନିଜ ଥୋଉ ହସ୍ତେ ଧରି,
ଖାଉଥିଲେ ଯାହା   ପ୍ରମତ୍ତ ମାତଙ୍ଗ
ଏବେ କୁପିତ କେଶରୀ ।
ହାବୋଡ଼ ତା ଆଗେ   କାମୋଡ଼ ଦନ୍ତରେ
କମନୀୟ କୁମ୍ଭମାନ,
ବିଦାରି ନଖରେ   ଅବିରତ ଖରେ
କରୁଅଛି ଛିନ୍ନଭିନ୍ନ ।
ବାରନାମାନଙ୍କ   ଧାଡ଼ି ଧାଡ଼ି ସ୍ତମ୍ଭେ
ଅପରୂପ ନାରୀରୂପ,
ଶୋଭୁଥିଲେ ଯାହା   ଧୂଳିରେ ମିଶି ତା
ହୋଇଅଛି ଭଗ୍ନସ୍ତୂପ ।
ଆଗେ ଯେଉଁ ହର୍ମ୍ୟ   ବିମଳ କାନ୍ତିରେ
ତୁଷାର ଖଣ୍ଡରି ପରି,
ଦିଶୁଥିଲେ ଦୂରୁଁ   ହୋଇଅଛି ତାହା
ଏବେ ତୃଣାଙ୍କୁରେ ଭରି ।
ଏବେ ହେ ବୀରେନ୍ଦ୍ର   ଉପବନ ଲତା
ଦେଖିଲେଣି ଦଳ ବାନରେ,
ସେ ଦଶା ଦର୍ଶନେ   କହିବା ନିମିତ୍ତ
ନୟନୁ ଲୋତକ ଝରେ ।
ପୁଷ୍ପିତ ଲତାରୁ   ଫୁଲ ତୋଳି ତୋଳି
ଲଳନାଏ ଯହିଁ ସୁଖୀ,
ହେଉଥିଲେ ସଦା   ୧- ପୁଳିନ୍ଦଙ୍କ ଯୋଗେ
ଗଲେ ସମେ ତାହା ଶୁଖି ।
ପ୍ରଦୀପମାଳରେ   ଯେ ରମ୍ୟ ଗବାକ୍ଷ
ହେଉଥିଲେ ଆଲୋକିତ,
ସେ ଗୁଡ଼ିକ ଏବେ   ୨- ଊର୍ଣ୍ଣନାଭଜାଲେ
ହୋଇଛି ଆହା ଭରିତ !

ଧାର୍ମିକ ନିବହ   ଗୁଣୁ ଗୁଣୁ ସ୍ୱରେ
ଜପି ଜପି ହରିନାମ,
ନଯାନ୍ତି ପ୍ରଭାତୁଁ   ସରଯୂକୁ ଆଉ
ନେଇ ପୂଜା (୩) ପୁଷ୍ପଦାମ ।
ନାହିଁ ସେ ସୌନ୍ଦର୍ଯ୍ୟ   ଅବା ଜନଚିହ୍ନ
ଇଚ୍ଛନ୍ତି ଏ ସବୁ ସହି,
କୁଶାବତୀ ଛାଡ଼ି   ଆସ ମୋର ପୁରେ
ମୋ ପ୍ରତି ସଦୟ ବହି ।
"ତଥାସ୍ତୁ" ଉଚ୍ଚାରି   ରଘୁଶ୍ରେଷ୍ଠ କୁଶ
ନେଲେ ତାଙ୍କ ପ୍ରାର୍ଥନା,
ହେଲେ ଅନ୍ତର୍ହିତା   ଲକ୍ଷ୍ମୀ ସେହିକ୍ଷଣି
ପୂରିଲା ଭାବ କାମନା ।
ନୃପତି ପ୍ରଭାତୁ   ଉଠି ଶୟନରୁ
କହି ମନ୍ତ୍ରୀଙ୍କ ଆଗରେ,
ଶୁଭ ଅନୁକୂଳେ   ଅଯୋଧ୍ୟାଭିମୁଖେ
ଗମିଲେ ହରଷଭରେ ।
ପ୍ରଭଞ୍ଜନ ଯୋଗେ   ଦୋହଲି ଦୋହଲି
ଶୋଭୁଥିଲା ଧ୍ୱଜତତି,
ବିପୁଳବାହିନୀ   ଚଳି ପଛେ ପଛେ
ଟେକିଥିଲେ ଶିରେ ଛତି ।
ଉଡ଼ୁଥିଲେ ନଭେ   ଚଞ୍ଚଳ ପକ୍ଷରେ
ହଂସେ କଳରବ କରି,
ବିସ୍ମୟେ ଦେଲା କରେ   ନୃପଙ୍କୁ ଗଗନ
ଧବଳ ଚାମର ଧରି ?
ଅଶ୍ୱଙ୍କର ହ୍ରେଷା   ହସ୍ତୀର ଗର୍ଜନ
ଭୀମ ନାଦୀ ତୋଳି ସ୍ୱରେ,
ଗିରିବାସୀ ପ୍ରାଣୀ   ନିକର କେଉଁଠି
ଲୁଚିଗଲେ ଅତି ଡରେ ।
ଆସି ଅଯୋଧ୍ୟାକୁ   ସୁପବିତ୍ର ମନେ
ଚିନ୍ମୟ ରାଜଭବନରେ,
ପ୍ରବେଶିଲେ କୁଶ   ବେଦୋକ୍ତ ମତରେ
ଆମ୍ଭୀୟଙ୍କ ସହିତରେ ।

୧ —ମ୍ଳେଚ୍ଛ ଜାତି ବିଶେଷ   ୨—ବୁଢ଼ିଆଣୀ

(୩) ସମୂହ

ରାଜଶ୍ରୀ ହରାଇ ଥିଲା ଯେ ନଗରୀ
ଗଢ଼ି ତା ନୂଆରୂପରେ,
ବଂଶର ମର୍ଯ୍ୟାଦା ବଢାଇଲେ ସେହୁ
ନୋହି ମତ୍ତ ପ୍ରମାଦରେ ।
କିଛି ଦିନ ଅନ୍ତେ ଭୁଜଙ୍ଗରାଜଙ୍କ
ଭଗିନୀ କୁମୁଦ୍ୱତୀଙ୍କୁ,
କରିଲେ ବିବାହ ଭୁଜଙ୍ଗିନୀ ଭୟୁଁ
ମୁକ୍ତ କରି ଧରଣୀକୁ ।



## ସପ୍ତଦଶ ସର୍ଗ

ଭୁବନ ଭୂଷଣ ତନୟ ରତନ
ପ୍ରସବନ୍ତେ କୁମୁଦ୍ୱତୀ,
ରଖିଲେ ଅତିଥି ନାମ ତାହାଙ୍କର
ସାନନ୍ଦେ ଅଯୋଧ୍ୟାପତି ।
ଦକ୍ଷିଣ ଉତ୍ତର ଦିଗକୁ ଉଜ୍ଜ୍ୱଳ
ରଖାଇ ରବି ଯେସନ,
ପିତୃମାତୃ ବେନି କୁଳକୁ ରଖିଲେ
କୁଶ କୁମର ତେସନ ।
ଯୋଗ୍ୟ ପାଣି ସହ ଯଥା ସମ୍ପତ୍ତିରେ
ପୁତ୍ରକୁ ବିଭା କରାଇ,
ଦୁର୍ଜୟ ଦନୋତେଶ ଗଲେ ସ୍ୱର୍ଗ କୁଶ
ଇନ୍ଦ୍ରଙ୍କ ଉପକାର ପାଇ ।
ସେ ଦୈତ୍ୟକୁ ମାରି ହୋଇଲେ ନିହତ
ନିଜେ ତାହାରି ହସ୍ତରେ,
କୁମୁଦ୍ୱତୀ ଏହା ଶୁଣି ଦେହତ୍ୟାଗ
କରିଲେ ପତି ପ୍ରେମରେ ।
ବୃଦ୍ଧ ମନ୍ତ୍ରୀଗଣ ଅତିଥିଙ୍କୁ କଲେ
ପ୍ରତିଷ୍ଠିତ ରାଜପଦେ,
ମୁକୁଳି ବନ୍ଧରୁ ବନ୍ଧିଏ ଏକାଳେ
ହୁତକଲେ ତାଙ୍କ ପଦେ ।
ସକଳ କାର୍ଯ୍ୟରେ ସହଜ ବିଶ୍ୱାସୀ
ଥିଲେ ସଦା ନବ ଭୂପ,
ଜଣେ ହେଲେ କେହିଁ ନଥିଲେ ଯେକାଳେ
ତାହାଙ୍କର ଅନୁରୂପ ।
ବିଶୁଦ୍ଧ ଚରିତ ଥିଲା ସଦା ତାଙ୍କ
କହୁଥିଲେ ହସି କଥା,
କୌଣସି କର୍ମେ କରୁ ନଥିଲେ ସେ
ଦେଇ କାହାମନେ ବ୍ୟଥା ।
ଅଳସ୍ୟ ଉପେକ୍ଷି ମନ୍ତ୍ରୀଙ୍କ ସଙ୍ଗରେ
ମିଶି ନବୀନ ରାଜନ,
ପ୍ରକୃତ ତଥ୍ୟକୁ ଆଣୁଥିଲେ ଟାଣି
ନଥି ଦେଖି ତନ୍ନ ତନ୍ନ ।
ସକଳ ବିଷୟେ ନିୟମକୁ ଲକ୍ଷି
ଚଳୁଥିଲେ ନୃପ ନବ,
ଶତ୍ରୁ ଉତ୍ପାଟନେ ନିରତ ଆନନ୍ଦ
କରୁଥିଲେ ଅନୁଭବ ।
ମଣିଷକୁ ମତ୍ତ କରନ୍ତି ସତତ
ସ୍ୱରୂପ ଯୌବନ ଧନ,
ତିନିହେଁ ଥିଲେହେଁ ଏକତ୍ର ଆପ୍ତରେ
ରଖୁଥିଲେ ଭୂପ ମନ ।
ଷଡ଼୍‌ରିପୁମାନଙ୍କୁ ପରାଭବ ଦେଇ
କଲେ ଆପଣାର ବଶ,
ମାତ୍ର ନିୟମକୁ ନଲଙ୍ଘିବା ଲାଗି
ଅଟଳ ଥିଲା ମାନସ ।
ଶତ୍ରୁଙ୍କ ଅଜ୍ଞାତେ ରଖି ଗୁପ୍ତଚରେ
ଜାଣୁଥିଲେ ସନ୍ଦେଶ,
ସୁନୀତି ସହିତ ମିଶାଇ ଶୌର୍ଯ୍ୟକୁ
ଗଢ଼ିଲେ ଅଯୋଧ୍ୟାଦେଶ ।
କୌଶଳେ ମନ୍ତ୍ରଣା କରି ମନ୍ତ୍ରୀ ସହ
କରୁଥିଲେ କାର୍ଯ୍ୟମାନ,
ଶୟନେ ସ୍ୱପନେ ପ୍ରଜାଙ୍କ କଲ୍ୟାଣ
ଥିଲା ଏକମାତ୍ର ଧ୍ୟାନ ।
ଦୁର୍ଭାଗ୍ୟ ବଶରୁ ଜନ୍ମିଲେ ବିରାଗ
କେବେ ପ୍ରଜାଙ୍କ ମନରେ,
ସତତ ଚେଷ୍ଟିତ ହେଉଥିଲେ ନୃପ
ଆଣିବାକୁ ଶାନ୍ତ ଖରେ ।

ଧର୍ମ ଅର୍ଥ କାମ ତିନେଙ୍କୁ ସମାନ
ଭାବେ ରଖୁଥିଲେ ପାଶେ,
ବଳହୀନ ହେଲେ ବିପକ୍ଷ ତାହାଙ୍କୁ
ରଖୁଥିଲେ ନିଜ ବଶେ ।
ନଜାଣେ କେ ଏହା ଜଗତେ ହୁଅନ୍ତି
ସକଳେ ଧନର ବଶ,
କିନ୍ତୁ ନରପତି କୋହ୍ଣେ ଲୋଭ ଯୁକ୍ତ
ବଡାଉ ଥିଲେ ସ୍ୱଯଶ ।
ବିଜୟ ଆଶାରେ ଧରମ ରାହାକୁ
ଲଙ୍ଘୁ ନଥିଲେ ସେ କଦା,
ତେଣୁ ନୃପଙ୍କର ରହୁଥିଲେ ପାଶେ
ରଣେ ଜୟଲକ୍ଷ୍ମୀ ସଦା ।
ଏରୂପେ ନୃପତି ହୋଇଲେ ଉଦ୍‌ଯୋଗୀ
ମନୁ ଶାସ୍ତ୍ର ଅନୁସରି ।
ଶୌର୍ଯ୍ୟେ ଅବା ଯଶେ ବସୁନ୍ଧରା ତଳେ
ନଥିଲି କେ ତାଙ୍କ ସରି ।
ତାଙ୍କ ରାଜତ୍ୱରେ ମେଘ ଯଥାକାଳେ
ବର୍ଷୁଥିଲା ଘନରସ (୧)
ତେଣୁ ଅହରହ କୃଷକ ମୁହଁରେ
ଫୁଟି ଉଠୁଥିଲା ହସ ।

— ★ —

## ଅଷ୍ଟାଦଶ ସର୍ଗ

ଅତିଥିଙ୍କ ରାଣୀ ନିଷଧ ପତିରେ
କନ୍ୟା ଗର୍ଭୁଁ ହେଲେ ଜାତ,
ସୁପୁତ୍ର ଗୋଟିଏ ନିଷଧ ଆନନ୍ଦେ
ଯା ନାମ ରଖିଲେ ତାତ ।
ଯୌବନେ ପ୍ରବିଷ୍ଟ ହୁଅନ୍ତେ ତନୟ
ରାଜପଦରେ ବସାଇ,
ତପସ୍ୟା ଆଚରି ଗଲେ ସ୍ୱର୍ଗ କୁ
ପ୍ରଜାମାନଙ୍କୁ କନ୍ଦାଇ ।

ଅଭିଥିପ୍ର ବୀର କୁଶ ନରେଶଙ୍କ
ନାତି ନିଷଧ ରାଜନ,
ନିଜ ବାହୁବଳେ ପିତା ଅନ୍ତେ ଯତ୍ନେ
ପାଳିଥିଲେ ଏ ଭୁବନ ।
ଏହାଙ୍କର ସୁତ ମହାବଳବନ୍ତ
ନଳ ସିଂହାସନେ ବସି,
ବିକ୍ରମ ଦେଖାଇ ଅଚିରେ ସଦମ୍ଭେ
ହେଲେ ଶତ୍ରୁଙ୍କୁ ଧର୍ଷି ।
ତାହାଙ୍କ ଉତ୍ତାରେ ନଭଶବ୍ଦ ହେଲେ
ଅଯୋଧ୍ୟାର ଦଣ୍ଡଧର,
୨ ନଭ ମାସ ପରେ ହେଲେ ସେ ଆନନ୍ଦ
ବର୍ଦ୍ଧକ ପରଜାଙ୍କର ।
ଲଭନ୍ତେ ନିର୍ବାଣ ନଭ, ପୁଣ୍ଡରୀକ
ବସିଥିଲେ ସିଂହାସନେ,
ସୁହାସିନୀ ଲକ୍ଷ୍ମୀ ଆସି ଅହରହ
ରହିଲେ ତାଙ୍କ ସଦନେ ।
ପୁତ୍ର କ୍ଷେମଧନ୍ୱା ହସ୍ତେ ସମର୍ପିଣ
ଶାସନ ଭାର ରାଜ୍ୟର,
ଗଲେ ବନେ ବହି କ୍ଷମାଶୀଳ ନାମ
ପୁଣ୍ଡରୀକ ନରବର ।
ତାହାଙ୍କ ଔରସେ ଜନ୍ମି ଦେବାନୀକ
ହେଲେ ଅହିଂସ୍ର ନାଥ,
ପିତା କ୍ଷେମଧନ୍ୱା ହେଉଥିଲେ ଖୁସି
ଦେଖି ତାଙ୍କୁ ଧୀରସ୍ଥିର ।
ଗମନ୍ତେ ଅମର- ପୁରେ କ୍ଷେମଧନ୍ୱା
ଦେବାନୀକ ନରନାଥ,
ପଦେ ଅଧିଷ୍ଠିତ ହୋଇ ଅଯୋଧ୍ୟାର
ଲଭିଲେ ଅନ୍ତିମ ଗତି ।
ତାହାଙ୍କ ତନୟ ସ୍ୱକୁଳ ପ୍ରଦୀପ
ଅହୀନଗୁ ଗୁଣମଣି,
ମଧୁର ବଚନେ ତୋଷିଲେ ଅଚିରେ
ସାକେତପୁର ଧରଣୀ ।

(୧) ଜଳ (୨) ଶ୍ରାବଣ

ଆତ୍ମୀୟମାନଙ୍କ ପର ଶତ୍ରୁଙ୍କର
ହୋଇ ସେ ପ୍ରିୟଭାଜନ,
ତାଙ୍କ ଅମାୟିକ ବ୍ୟବହାର ଯୋଗେ
କରିଲେ ରାଜ୍ୟ ପାଳନ ।
ଗମନ୍ତେ ସ୍ୱର୍ଗକୁ ଶାସି ବହୁକାଳ
ଅହୀନଗୁ ନୃପବର,
ତାହାଙ୍କ ତନୟ ପରିଯାତ୍ର ଏବେ
ହେଲେ ରାଜ୍ୟ ଅଧୀଶ୍ୱର ।
କିନ୍ତୁ ଅଳ୍ପ କାଳେ ତନୟ ଶୀଳକୁ
ସମର୍ପି ରାଜ୍ୟ ଶାସନ,
ବନ୍ଦୀରୁ ମୁକୁଳ ବିଷୟ ସମ୍ଭୋଗ
ସୁଖେ ବଳାଇଲେ ମନ ।
ତ୍ରାସି ଜରା କ୍ରମେ ଭୋଗୀ ନରେଶଙ୍କୁ
ମର୍ତ୍ତ୍ୟୁଁ କରନ୍ତେ ଅନ୍ତର,
ବଜ୍ରଧର ପର ବଜ୍ରନାଭ ହେଲେ
ଅଯୋଧ୍ୟାର ଦଣ୍ଡଧର ।
ସହସା ତାହାଙ୍କୁ ଗ୍ରାସିବାରୁ କାଳ
ଶଙ୍ଖଣ ଶତ୍ରୁଙ୍କୁ ନେଇ,
ପିନ୍ଧାଇଲେ ରାଜ ମୁକୁଟ ପ୍ରଜାଏ
ଉପାୟନମାନ ଦେଇ ।
ଗମନ୍ତେ ସ୍ୱର୍ଗକୁ ଶଙ୍ଖଣ ନୃପତି
ପୈତୃକ ଆସନ ପରେ,
ତାଙ୍କ ପୁତ୍ର ବୀର ବ୍ୟୁଷିତାଶ୍ୱ ରାଜା
ହେଲେ ସାକେତ ପୁରେରେ ।
ସେ ବିଶ୍ୱେଶ ତୋଷି ତପସ୍ୟାରେ ଶିବ
ଲଭିଲେ ସୁତ ରତନ,
ବିଶ୍ୱସହ ନାମ ବହି ଭୂମଣ୍ଡଳେ
ହେଲେ ପ୍ରତାପୀ ରାଜନ ।
ହିରଣ୍ୟାଭ ବୋଲି ତନୟ ଗୋଟିଏ
ଜନମି ତାଙ୍କ ଔରସେ,
ବୈଶ୍ୱାନର ସମ ହେଲେ ତେଜଶାଳୀ
ବିନାଶି ଶତ୍ରୁ ଉରସେ (୧)।

(୧) ଶୀଘ୍ର

ଅନ୍ତିମ ବୟସେ ବିଶ୍ୱସହ ଦେଇ
ଅଯୋଧ୍ୟାର ସିଂହାସନ,
ହିରଣ୍ୟ ପୁତ୍ରକୁ ଗଲେ ବନେ ମୋଦେ
ପିନ୍ଧି ବକଳ ବସନ ।
ଧର୍ମ୍ମେ ପାଳି ଧରା ସେ ହିରଣ୍ୟ ନାଭ
ସୂର୍ଯ୍ୟବଂଶ ଅବତଂସ,
କୌଶଲ୍ୟଙ୍କୁ ରାଜ୍ୟ ଦେଇ ସୁରଧାମେ
ଗଲେ ଲଭି ମହାଯଶ ।
ବ୍ରହ୍ମନିଷ୍ଠ ସୁତ କୌଶଲ୍ୟ ବାର୍ଦ୍ଧକ୍ୟେ
ତେଜି ସୁଶାସିତା ଧରା,
ଅମର ପୁରକୁ ଆଶ୍ରିଲେ ବୁହାଇ
ପ୍ରଜାନେତ୍ରୁ ଅଶ୍ରୁଧାରା ।
ତାହାଙ୍କ କୁମର କମଳ ଲୋଚନ
ସାକ୍ଷାତ ବିଷ୍ଣୁଙ୍କ ପରି,
ଦିଶୁଥିଲେ ପୁତ୍ର ବିନୟ ଗୁଣରେ
ନଥିଲ କେ ତାଙ୍କ ସରି ।
ଦେବରାଜଙ୍କର ସଖା ହେବା ଆଶେ
ତେଜି ବିଷୟ ବାସନା,
ତୀର୍ଥ ପର୍ଯ୍ୟଟନ କରି କରି ଶେଷେ
ପୁରିଲା ତାଙ୍କ କାମନା ।
ପୁଷ୍ୟ ନାମଧାରୀ ତାହାଙ୍କ ଆତ୍ମଜ
ଅଯୋଧ୍ୟାର ସିଂହାସନ,
ପିତୃଅନ୍ତେ ଲଭି ଧର୍ମ୍ମେ ଆଶ୍ରୟି
ଚଳାଇଲେ ସୁଶାସନ ।
ସଂସାର ବନ୍ଧନେ ବୀତସ୍ପୃହ ହୋଇ
ରାଜତ୍ୱକୁ ପରିହରି,
ଲଭିଲେ ମୁକତି ଋଷି ଧୁରନ୍ଧର
ଜୈମିନିଙ୍କୁ ଗୁରୁକରି ।
ତାହାଙ୍କ ଆତ୍ମଜ ବୀର ଧ୍ରୁବସନ୍ଧି
ତହୁଁ ହେଲେ ଅଧିପତି,
ସତ୍ୟରେ ଅଟଳ ରହି ଅହରହ
ଲଭିଲେ ପରମ ଗତି ।
ସୁଦର୍ଶନ ବୋଲି ତନୟ ତାଙ୍କର
ଶିଶୁଥିଲେ ଏ ସମୟେ,

ମୋହନ ମୂରତି ଥିବାରୁ ଦିଶିଲେ
କୁମୁଦବନ୍ଧୁ ପରିଏ ।
ନୃପଙ୍କ ବିୟୋଗ ଦେଖି ମନ୍ତ୍ରୀମାନେ
ଶୋକ ନେଲ୍ ପରିହରି,
ଅଭିଷେକୋତ୍ସବ ପାଳଲେ ଶିଶୁଙ୍କ
ବିହିତ ବିଧାନ କରି ।
କିଶୋର ଚନ୍ଦ୍ରଙ୍କୁ ଧରି ନଭସ୍ଥଳ
ଶୋଭା ପାଉଥାଏ ଯଥା,
ରାଜଶିଶୁ ବସି- ଥିବାରୁ ସିଂହାସନେ
ଶୋଭିଲ୍ ଅଯୋଧ୍ୟା ତଥା ।
ସେ ରାଜମୁକୁଟ ବହିଥିବା ଯୋଗୁଁ
ହେଲେହେଁ ବୟସେ ସାନ,
ନଗର ବାସୀଏ ଭାବ ପ୍ରଭୁ ତାଙ୍କୁ
ଦେଖାଉଥିଲେ ସମ୍ମାନ ।
ସାମନ୍ତ ରଜାଏ ସେ ପଦକୁ ଛୁଇଁ
ଜୁହାରୁଥିଲେ ଭକ୍ତିରେ,
ଜ୍ଞାନ ବୃଦ୍ଧ ଲୋକ ମକଷା ଶିକ୍ଷାରେ
ଶିଖିଲେ ବିଦ୍ୟା ଅଚିରେ ।
କାଳକ୍ରମେ ତାଙ୍କ ଅଙ୍ଗଦେଶେ ଆସି
ପ୍ରବେଶନ୍ତେ ଯଉବନ,
ମନ୍ତ୍ରୀମାନେ ରାଜ- କନ୍ୟା ଦେଶାନ୍ତରୁ
ଆଣି କଲେ ମଣ୍ଡନ ।

— ✳ —

## ଉନବିଂଶ ସର୍ଗ

ଗୁଣୀ ଶିରୋମଣି ବାଣୀ ବରପୁତ୍ର
ନୃପବର ସୁଦର୍ଶନ,
ଗ୍ରାସିବାରୁ ଜରା ତେଜିବାକୁ ଧରା
ବଳାଇଲେ ଏବେ ମନ ।
ଅଗ୍ନିବର୍ଣ୍ଣ ପୁତ୍ରେ ଦେଇ ରାଜପଦ
ଯାଇ ନୈମିଷ କାନନ,
ଭୂମିପରେ ଶୋଇ ଅଟ୍ଟାଳିକା ଛାଡ଼ି
କଲେ ଉଟଜ ସଦନ ।
ଏଣେ ଅଗ୍ନିବର୍ଣ୍ଣ ଦେଇ ମନ୍ତ୍ରୀଗଣ
କରେ ରାଜ୍ୟର ଶାସନ,
ଏକାନ୍ତରେ ବଶ ହୋଇ କାନ୍ତା ସଙ୍ଗେ
ବ୍ୟସନେ ବଳଲ୍ ମନ ।
ନାଗମଣ୍ଡଳୀରେ ବସି କେଳିପୁରେ
କଟାଇଲେ ଦିବାନିଶି,
ରାଜକାର୍ଯ୍ୟ ଲାଗି ଇଚ୍ଛୁ ନଥିଲେ ସେ
କେବେ ମନ୍ତ୍ରୀସହ ମିଶି ।
ପ୍ରଜାପୁଞ୍ଜ ଆସି ଯାଉଥିଲେ ଫେରି
ପ୍ରଭୁଙ୍କ ଦେଖା ନପାଇ,
ମାତି ବିଳାସରେ ହାସ୍ୟ ରହସ୍ୟରେ
ବିଅନ୍ତ ଦିନ ପୁହାଇ ।
ପ୍ରମତ୍ତ ବାରଣ କରିଣୀ ସଙ୍ଗରେ
ପଶେ ପଦ୍ମାକରେ ଯଥା,
ପଶନ୍ତି ନୃପତି ରମଣୀଙ୍କ ସହ
କେଳି ସଦନରେ ତଥା ।
ବ୍ୟସନେ ଆସକ୍ତ ହେବାରୁ ସତତ
ଜନ୍ମି କ୍ଷୟ କାସ ରୋଗ,
ଆହମନ୍ତେ ଭୂପ ଦ୍ରୁତ ବେଗେ ଆସି
ଗ୍ରାସିଲେ ସକଳ ଭୋଗ ।
ନିର୍ବାଣ ଉନ୍ମୁଖ ହେଲେ ଦୀପ ଯାହା
ଦିଶଇ ସେ କାଳେ ଯଥା,
ନିତମ କଳେବର ହୋଇ ଅସମର୍ଥ
ଦିଶିଲେ ନୃପତି ତଥା ।
ଔଷଧକୁ ପରି- ଭବି ବୈଦ୍ୟଙ୍କର
ରୋଗ ହେଲ୍ ଅସମ୍ଭାଳ,
ପ୍ରଦୀପ ପଛନେ ହୁଏ ଯେସନ୍ତ ନାଶ
ଦେହଲେ ତେସନ୍ତ ଭୂପାଳ ।
ନ ଥିବାରୁ ପୁତ୍ର ମନ୍ତ୍ରୀମାନେ ମିଳି
ଦେବଦାହ ଯୋଗେ ହେଲେ,
କରି ତାହାଙ୍କର କଲେ ସମାପନେ
ଦଶାହ କରମ ଗରେ ।
ପାଟ ମହିଷୀଙ୍କ ଗର୍ଭ ଚିହ୍ନ ଲକ୍ଷି
ତାଙ୍କୁ ବସାଇ ଗାଦିରେ,
ପରଜା ନିବହ ହେଲେ ପୁଲକିତ
ଦୁଃଖ ପରିହରି ଧୀରେ ।

# ଦ୍ରୌପଦୀ ସ୍ୱୟମ୍ବର

ଦ୍ୱାପର ଯୁଗରେ    ପାଞ୍ଚାଳ ଦେଶରେ
ଦ୍ରୁପଦ ନାମେ ନୃପତି,
ଶାସୁଥିଲେ ରାଜ୍ୟ    ନ୍ୟାୟ ଅବଲମ୍ବି
ପ୍ରଜାହିତେ ଦେଇ ମତି ।
ପାଞ୍ଚାଳେଶ୍ୱରଙ୍କ    ପୂର୍ବରୁ ଥିବାରୁ
ଧର୍ମ ପ୍ରତି ଅନୁରାଗ,
ବ୍ୟାସଙ୍କୁ ଡକାଇ    ନିଜ ରାଜଧାନୀ
ଆରମ୍ଭିଲେ ମହାଯାଗ ।
ତହିଁରୁ ଅଚିରେ    ହେବାରୁ ଉତ୍ପନ୍ନ
ସୁନ୍ଦରୀ କନ୍ୟା ରତନ,
ଯାଜ୍ଞସେନୀ ବୋଲି    ଦେଇ ନାମ ତାକୁ
ଦ୍ରୁପଦଙ୍କୁ ଦେଲେ ଦାନ ।
ତାର ପରେ ଶନ୍ତୁ    ବୟସ ହେବାରୁ
ପାଞ୍ଚାଳ ଦେଶ ରାଜନ,
ଦ୍ରୁପଦ ସତ୍ୱର    ସ୍ୱୟମ୍ବର ଲାଗି
କଲେ ସବୁ ଆୟୋଜନ ।
ଶୁଭଦିନ ଦେଖି    ବାର୍ତ୍ତାମାନ ଲେଖି
ଚଉଦିଗେ ବାର୍ତ୍ତାବହ,
ପଠାଇ ଲାଗିଲେ    ମଣ୍ଡପ ନିର୍ମାଣେ
ଡାକି ବର୍ଦ୍ଧକିନିବହ ।

ଏଣେ ଦ୍ୱାରକାରୁ    ରାମକୃଷ୍ଣ ବେନି
ଧୃତରାଷ୍ଟ୍ର ଦରଶନେ,
ଯିବାରୁ ହସ୍ତିନା    ଦୁହିଁଙ୍କ ଦେଖି ସେ
ପୂଜିଲେ ଆନନ୍ଦ ମନେ ।
କିଛି କ୍ଷଣ ପରେ    ସେଠାରୁ କେଶବ
ଯାଇ ବିଦୁର ସଦନେ,
ପୁଚ୍ଛିଲେ ତାହାଙ୍କୁ    କୁଶଳ ବାରତା
ଅତି ପୁଲକିତ ମନେ ।
ଦରଶନ ଲଭି    ବାସୁଦେବଙ୍କର
ପ୍ରଣମି ତାହାଙ୍କ ପାଦେ,
ପଚାରିଲେ ତାଙ୍କୁ    ପାଣ୍ଡବଙ୍କ କଥା
ବିଦୁର ଅତି ବିଷାଦେ ।
କଥା ହେଉ ହେଉ    ବିଦୁର ସହିତ
ଯୋଗ ଧ୍ୟାନେ ଲିପ୍ତ କରି,
ବ୍ୟାସଙ୍କୁ ସ୍ମରନ୍ତେ    ପ୍ରବେଶିଲେ ସେହି
ଦଣ୍ଡ କମଣ୍ଡଳୁ ଧରି ।
ତାଙ୍କ ଦରଶନ    ଲଭିଣ ବିଦୁର
ପ୍ରଣମିଲେ ବହୁବାର,
କେଶବ ଏ ଅନ୍ତେ    ପୁଚ୍ଛିଲେ ତାହାଙ୍କୁ
ପାଣ୍ଡବଙ୍କ ସମାଚାର ।

କୁମ୍ଭୀର କନ୍ଦର ହିଡ଼ମ୍ବକ ବକ
ସଂହାର ଦୈତ୍ୟ ବହୁତ,
ପଞ୍ଚବଟୀ ବନେ ରହିଛନ୍ତି ବୋଲି
ଭାଷେ ବ୍ୟାସ ମହାମତି ।
ତହୁଁ ବ୍ରଜନାଥ କହିଲେ ତାହାଙ୍କୁ
ପାଞ୍ଚାଳକୁ ଯାଇ ଖରେ,
ଦୋଡ଼ବ ଯତନେ ମହା ଲକ୍ଷ ତହିଁ
ଯାଜ୍ଞସେନୀ ସ୍ୱୟମ୍ବରେ ।
ଜିଷ୍ଣୁ ଲାଗି ପୁଣି ମନଭେଦୀ ଶର
ପ୍ରେରି ତାପସ କରରେ,
ଯାଉଛୁ ପାଞ୍ଚାଳ ନୋଳା ବୋଇଲେ ସେ
ଉଗ୍ରସେନ ସହିତରେ ।
ଏଥୁଅନ୍ତେ ବ୍ୟାସ ପାଞ୍ଚାଳ ଦେଶକୁ
ଯାଇ ଭେଟନ୍ତେ ଦ୍ରୁପଦ,
ଆସନରୁ ଉଠି ପ୍ରଣମିଲେ ନୃପ
ଧରି ମହାମୁନି ପଦ ।
ସ୍ୱୟମ୍ବର ଲାଗି ସାଜସଜ୍ଜା ଯେତେ
ଯୋଗାଡ଼ ଥିଲେ ନୃପତି,
ଦେଖାନ୍ତେ ଯତିଙ୍କି ଦର୍ଶନ କରି ତା
ହେଲେ ଆହ୍ଲାଦିତ ଅତି ।
କନକ ଖଚିତ ସିଂହାସନଚୟ
ବସିବା ଲାଗି ରାଜନେ,
ମଣ୍ଡପ ପାରୁଶେ ନାପିତଜନକର
ଥୋଇଲେ ନେଇ ଯତନେ ।
ରଜତ ଖଚିତ ସ୍ତମ୍ଭମାନଙ୍କରେ
ହଳଦୀ ଚୂଡ଼ା କେତନ,
ଫଡ଼ ଫଡ଼ ହୋଇ ଉଡୁଥିଲା କେତେ
ହରୁଥିଲା ଜନମନ ।
ରାଜାଦେଶ ଘେନି ବ୍ୟାସ ମହାମୁନି
ଲକ୍ଷ ସ୍ଥାପି କଉଶଳେ,
ରମ୍ୟ ସ୍ୱର୍ଣ୍ଣ ମତ୍ସ୍ୟ ଉପରେ ଝୁଲାଇ
ଥୋଇ ଦେଲେ ଧନୁ ତଳେ ।
ଜଳପୂର୍ଣ୍ଣ ଘଟ ତା ପାରୁଶେ ସ୍ଥାପି
ଭାଷିଲେ ମୁନି ଏସନ,

"ପ୍ରତିବିମ୍ବ ଚାହିଁ ବାମାକ୍ଷି ବିନ୍ଧିଲେ
ସେ ନେବ କନ୍ୟା ରତନ ।
ଯୋଗାଡ଼ ଏମନ୍ତ ବିଦା ମାଗି ତହୁଁ
ମୁନି ହେଲେ ଅନ୍ତର୍ଦ୍ଧାନ,
ଛଦନ୍ତେ କୁରୂପ ଧରି ପହଞ୍ଚିଲେ
ପାଣ୍ଡବଙ୍କ ସନ୍ନିଧାନ ।
ମରୁତ କୁମାର ମାରି କରତାଳ
ଆସିବାରୁ ତାଙ୍କ ପାଶେ,
ପୁଚ୍ଛିଲେ ଯୁଧିଷ୍ଠି କନିଷ୍ଠ ଭାଇଙ୍କି
"ଏ କିଏ ସେ ବୋଲି ହାସେ" ?
"ବଡ଼ବା ନିମନ୍ତେ କେଶବ ବନ୍ଧୁର
ବ୍ୟାସଙ୍କୁ ଦେଲେ ପଠାଇ",
ବୋଲି ଉତ୍ତରିଲେ ଆସିଛନ୍ତି ସେହି
ନିଜ ରୂପ ବଦଳାଇ ।
ପାଣ୍ଡବଙ୍କ ସଙ୍ଗେ କୁନ୍ତୀ ମହାଦେଇ
ଜୁହାରି ତାଙ୍କ ପୟରେ,
ଗୁଳଟିଏ ଆଣି ଥୋଇଦେଲେ ପାଶେ
ବସିବାକୁ ଆସନରେ ।
କାନ୍ଦି କାନ୍ଦି ସେହି ବନବାସ ଦୁଃଖ
ବଖାଣନ୍ତି ମୁନିବରେ,
"ଦୁଃଖପରେ ସୁଖ ବିଧାତା ଭିଆଣ"
ବୋଲି ଉତ୍ତରିଲେ ଖରେ ।
ଆପଣା ନନ୍ଦିନୀ ସ୍ୱୟମ୍ବର ଲାଗି
ଦ୍ରୁପଦ ଯୋଗାଡ଼ କରି,
ଲକ୍ଷେ ନରପତି ସମାବେଶ ପାଇଁ
ସାଜିଲେ ତାଙ୍କ ନଗରୀ ।
ସେ କୂଟ ଲକ୍ଷକୁ ସବ୍ୟସାଚୀ ବିନା
ବିନ୍ଧିବାକୁ କେ ସମର୍ଥ,
ଜମା ହୋଇଥିବା ନୃପତିମାନଙ୍କ
ହେବ ମନୋରଥ ବ୍ୟର୍ଥ,
କୃଷ୍ଣ ବଳରାମ ଆସିବେ ସେଠାକୁ
ଭେଟିବ ସକଳ ଭାଇ,
କୌରବଙ୍କ ଦର୍ପ ଭାଙ୍ଗିବ ମାରୁତି
ଦେଖିବେ ସେ ବେନି ଭାଇ ।

ଉଣାଶ ପଚାଶ ଯୋଜନ ସେ ପୁର
ଷୋଳଦିନ ଅଛି ବାଟ",
କୃଷ୍ଣ ଦେବା ଶର ବତାଇ ଦେଲେ ସେ
ଅର୍ଜୁନଙ୍କୁ ତହିଁ ଡାକ ।
ଜିବାକୁ ଚଞ୍ଚଳ ପାଦୁକା ମନ୍ତ୍ର
ମହାମୁନି ଦେଲେ କହି,
"ସ୍ନାନ ସାରି ପ୍ରାତେ ପଢୁଥିଲେ ମନ୍ତ୍ର
ପଥଶ୍ରମ ଜିବ ସହି" ।
ସେଠାରୁ ଅଦୃଶ୍ୟ ହେଲେ ବ୍ୟାସଦେବ
କହି ଗୁପ୍ତ କଥାମାନ,
ପାଣ୍ଡବେ ଚଳିଲେ ଜିବାକୁ ପାଞ୍ଚାଳ
ହେବାରୁ ଦିବାବସାନ ।
ପାଇଲେ ଶକତି ପ୍ରାତଃ ସ୍ନାନ ସାରି
ପଢି ଚରଣ ମନ୍ତର,
ଜନନୀ ସଙ୍ଗରେ ଚଳିଲେ ପାଣ୍ଡବେ
ଦେଖିବାକୁ ସ୍ୱୟମ୍ବର ।
ଭେଟିଲେ ବାଟରେ କାମିନୀ ନିକର
କରୁଥିବା ଜଳକ୍ରୀଡ଼ା,
ଏମାନଙ୍କୁ ଦେଖି ଟଳିଇଲେ ଭୟେ
ମନେ ବହି ଅତି ବ୍ରୀଡ଼ା ।
ଏ ଦଶା ଦର୍ଶନେ ଅଙ୍ଗାରପର୍ଣ୍ଣଗ
ପୁଛନ୍ତେ ତାର କାରଣ,
କହିଲେ ନାରୀଏ ଘଟିଥିଲା ଯାହା
କରି ଲୋତକ ବର୍ଷଣ ।
ଶୁଣୁ ଶୁଣୁ ତାହା ଆସିଲେ ବାସବ
କମ୍ପାଇ ଅବନୀ ତଳ,
ଦେଖିଲେ କିରୀଟୀ ଉଦ୍ୟାନରେ ପଶି
ତୋଳୁଥିବା ପକ୍ୱଫଳ ।
ଗୁଣକୁ ଟଙ୍କାରି ଅଙ୍ଗାରପର୍ଣ୍ଣଗ
ମହାଧନୁ ହାତେ ଧରି,
ପେଷିଲେ ନାରାଚ ମହା କୋପଭରେ
ଫାଲ୍‌ଗୁନିଙ୍କୁ ଲକ୍ଷ କରି ।
ଜାଣି ସବ୍ୟସାଚୀ କୋଦଣ୍ଡ ଟଙ୍କାରି
ନିକ୍ଷେପନ୍ତେ [illegible] ଶର,

ଅଙ୍ଗାରପର୍ଣ୍ଣଗ ପଡ଼ିଗଲେ ଏଣେ
ମୋହେ ମେଦିନୀ ଉପର ।
ଧାଇଁ ଆସି କୁମ୍ଭୀ ମହା କ୍ରୋଧଭରେ
ଦେଉଛନ୍ତେ ପରିଚୟ,
ଅର୍ଜୁନଙ୍କ ଆଗେ ବୋଲି କହିବାରୁ
ତୁଟିଲା ତାଙ୍କ ସଂଶୟ ।
ଏ କଥା ଶ୍ରବଣେ ଅର୍ଜୁନ ବୋଲି ସେ
କହି ପ୍ରଣମନ୍ତେ ପଦେ,
ଅଙ୍ଗାରପର୍ଣ୍ଣଗ ଆଶିଷିଲେ ତହିଁ
"ହୋଇବ ସାହା ବିପଦେ" ।
ଗନ୍ଧର୍ବ ନାରାଚ ଦେଖାଇ କୁମ୍ଭୀଙ୍କୁ
କହନ୍ତି ସେ ହର୍ଷଭରେ,
"ସ୍ୱକାର୍ଯ୍ୟ ସାଧନେ ସୁମରିବା କ୍ଷଣି
ହେବ ପ୍ରାପ୍ତ ତୋର କରେ" ।
ତହିଁ ବିଦ୍ୟାଧର ଗଲେ ଅନ୍ତରୀକ୍ଷ
ଅର୍ଜୁନ ମାତା ନିକଷା,
ଫେରି ମୋଦଭରେ କହିଲେ ସକଳ
ଗୁରୁ ଭାଇଙ୍କି ସହସା ।
ଏ ଅନ୍ତେ ପାଣ୍ଡବେ ଯାପି ବିଭାବରୀ
ସକାଳୁ ସ୍ନାହାନ ସାରି,
ନଖାଇ ନପିଇ ଦିନଯାକ ଚାଲି
ହେଲେ ଘୋରବନ ପାରି ।
ସଞ୍ଜବେଳ ଦେଖି ବାସସ୍ଥାନ ଖୋଜି
ପାଇଲେ କୁମ୍ଭାର ଶାଳ,
ସେ ସ୍ଥାନକୁ ଯାଇ ଆଶ୍ରମିଲେ ତହିଁ
ଟେକାଇ ଗୋଛିଏ ପାଳ ।
ଧନ୍ୟରେ ଦଇବ ବ୍ରହ୍ମାମଣି ତୋର
ଜାଣିବ କିଏ ଏ ସଂସାରେ,
ଭିକ୍ଷାକୁ ମଣିଷ ହୁଏ ଧନ୍ଦ ସିନା
ଶତମାଖି ତୋ ଇଚ୍ଛାରେ ।
ପ୍ରଭାତଲେ ନିଶି କୁନ୍ତୀଦେବୀ ଡାକି
ପଞ୍ଚକୁମାର ପାଶକୁ,
ବ୍ରାହ୍ମଣ ବେଶରେ କହିଲେ ଯିବାକୁ
ଦ୍ରୁପଦ ସଭାସ୍ଥଳକୁ ।

ତହୁଁ ବ୍ରାହ୍ମଣ ଜନନୀ ବଚନେ
ଗଲେ ଦ୍ୱିଜବେଶ ସାଜି,
ବସିଲେ ଏକାନ୍ତେ ଥାନଟିଏ ବାଛି
ଯହିଁଥିଲେ ବିପ୍ରରାଜ ।
ସିଂହାସନେ ଆସି ବସିଲେ ରାଜାଏ
ଯେତ୍କା ଆଟୋପ ଦେଖାଇ,
ପାଞ୍ଚାଳୀକି ଆଣି ବସାଇଲେ ମଞ୍ଚେ
ଶଙ୍ଖ ମୃଦଙ୍ଗ ବଜାଇ ।
ହୁଳହୁଳି ନାଦ ନଗର ଭିତରେ
ଶୁଭୁଥାଏ ଘନ ଘନ,
ଉଲ୍ଲାସରେ ପୁର ଯାଇଅଛି ପୂରି
କେ କରେ ଗୀତ ଗାୟନ ।
ପଟେଶଯ୍ୟୋତ୍ସବ ଦର୍ଶନ ଆଶାରେ
ଯେ ଯାହା ପ୍ରାସାଦେ ବସି,
ନାନା ରଙ୍ଗ ମେଲି ଗଡ଼ି ଯାଉଥାନ୍ତି
କଉତୁକେ ହସି ହସି ।
ବ୍ରାହ୍ମଣ ସଭାରେ ବସିଲେ ପାଣ୍ଡବେ
ପଞ୍ଚ ଦିଗପାଳ ଭଳି,
ଚାହୁଁଥିଲେ ଭୀମ ନୃପତିମାନଙ୍କୁ
ବେଳେ ବେଳେ ଆଖି ମଳି ।
ଦ୍ରୁପଦ ଏ ଅନ୍ତେ ଆସିଲେ ସଭାକୁ
ଅର୍ଘ୍ୟଥାଳୀ ଧରି କରେ,
ଥୋଇଦେଇ ତାହା କହିଲେ ଏସନ
ସମ୍ବୋଧି ନୃପତିବରେ ।
"ସୁନା ମାଛଟିଏ ବୁଲୁଅଛି ଦେଖ
ଯନ୍ତ୍ରଚକ୍ରର ଉପରେ,
ଭୂମିତଳେ ଥୁଆ ହୋଇଅଛି ଧନୁ
ଜଳ କଳସ ଭିତରେ ।
ବିନ୍ଧିବ ଯେ ଲଖି ମାଛ ବାମ ଆଖି
ସଳିଳେ ଦୃଷ୍ଟି ପକେଇ,
ଦେବି ତାଙ୍କୁ ଦାନ ମୋ କନ୍ୟା ରତନ
ଯଉତୁକ ଭାରି ଦେଇ" ।
ସତ୍ୟ ସତ୍ୟ ବୋଲି ବୋଲନ୍ତେ ନୃପତି
ଧୃଷ୍ଟଦ୍ୟୁମ୍ନ ସଭାସ୍ଥଳେ,
ଯେ ଲଙ୍ଘିବ ଏହା ଶିରଚ୍ଛେଦ ତାର
ବୋଲି ବୋଇଲେ ସକଳେ ।
ଦ୍ରୁପଦ କାମନା ଶୁଣି ନୃପତିଏ
କରନ୍ତି ହୃଦେ ବିଚାର,
ମଳିନ ଦିଶିଲା ବଦନ କାହାର
ହସ ହସ ଅବା କାର ।
ଓଢଣା ପକାଇ ବସିଅଛି ବାଳୀ
ତଳକୁ ନୁଆଇଁ ଶିର,
ଏସନ ବଚନ ଶୁଣି ଜନକଙ୍କ
ଶଙ୍କିଲା ହୋଇ ଅଧୀର ।
ବରଣ ବିଧାନ ସଜ କଲେ ଆଣି
ପୁରୋହିତ ଯତନରେ,
ପାଞ୍ଚାଳୀର ଭାଇ ଶୁଣୁଥିଲେ ସବୁ
ସ୍ୱୟମ୍ବର ମଣ୍ଡପରେ ।
ଡାକି ଧୃଷ୍ଟଦ୍ୟୁମ୍ନ ଜରାସନ୍ଧ କହେ
ଭଗିନୀ ବଦନ କାନ୍ତି,
ଦର୍ଶନ ଇଚ୍ଛାରେ ଉତ୍କଣ୍ଠନ୍ତି ଭୂପେ
ଛୁଟିବାକୁ ମନୁ ଭ୍ରାନ୍ତି" ।
ଶୁଣି ଏ ବଚନ ଦ୍ରୁପଦ ରାଜନ
ମଣ୍ଡପେ ଠିଆ କରାଇ,
ମନୋହର ରୂପ ଦେଖାଇଲେ ଜବେ
ଓଢଣୀ ତାର ମେଲାଇ ।
ସୌମ୍ୟ ବଦନର କମନୀୟ ତୋଳ
ଦେଖି ଭାବିଲେ ସକଳ,
ଅମରାବତୀରୁ ଅପ୍ସରାଟିଏ କି
ଖସି ପଡ଼ିଗଲା ତଳ ।
କେଶିନୀ ନାମରେ ମୁହଁସୁଲି ଗୋଟି
ଥିଲା ଯାଜ୍ଞସେନୀ ପାଶେ,
କାନପାଖେ ଯାଇ ସଧୀରେ ତାହାକୁ
ପଚାରିଲା ଉପହାସେ ।
କହିଲା ସଙ୍ଗିନୀ କେଉଁ ରାଜା ପ୍ରତି
ବଳିଅଛି ତୋର ମନ, ?
"ଦେଖିନି କା ରୂପ" ବୋଲି ବୋଇଲା ସେ
ଶୁଣି ଦାସୀର ବଚନ ।

ଓଳଟି ପାଞ୍ଚାଳୀ ଦୂରରେ ଦାସୀକି
"ନୃପତିଙ୍କ ଗୁଣ ତତି,
ଜାଣିଥିଲେ କହ ଆଲୋ ସଖି ମୋତେ
ହେବ ଥିୟ ମୋର ମତି"।
ଛନ୍ଦି ମୃଦୁସ୍ମିତ କୋମଳ ବଚନେ
ଦେଲା କୃଷ୍ଣାକୁ ଉତ୍ତର,
"କହୁଛନ୍ତି ତାତ ଯେ ବିନ୍ଧିବ ଲକ୍ଷ
ସେ ହେବ ବର ତୋହର।
ଭୂପତିମାନଙ୍କ ଗୁଣ ଅବା ଯଶ
ଅଯଥା ଲୋଡ଼ୁ କପାଇଁ
ପଣ ଯା ହୋଇଛି ସମ୍ପାଦିଲେ କେହି
ପୂଲକେ ବରିବୁ ଯାଇ"।
ପାଞ୍ଚାଳୀର ମନ ବୁଝିବା ନିମନ୍ତେ
ବୋଇଲା ଦାସୀ ଏପରି,
"ଧୃତରାଷ୍ଟ୍ର ପୁତ୍ର ଏହି ଦୁର୍ଯ୍ୟୋଧନ
ଗର୍ବେ କେ ନୁହେ ତା ସରି।
ଅକଳନା ଧନ ରଖିଛି ଭଣ୍ଡାରେ
କୁଞ୍ଜରଗଣେ ଏ ନୃପତି,
ମନ୍ଦରେ କାହାକୁ ନ କରେ ଖାତିର
ସଦା ଅଭିମାନ ମତି।
ଥାଆନ୍ତି ଏ ଯୋଷ୍ଟ ସେନାପତି ଭାବେ
ସଂଗ୍ରାମେ ଅତି କୁଶଳ,
ପାଇଛନ୍ତି ବର ସ୍ୱଇଚ୍ଛା ମରଣ
ବଚନେ ସଦା ଅଟଳ।
ତାଙ୍କପାଶେ ଗୁରୁ ଦ୍ରୋଣ ବସିଛନ୍ତି
ଭରଦ୍ୱାଜଙ୍କ ନନ୍ଦନ,
ଶସ୍ତ୍ର ଥିଲେ ହସ୍ତେ ନପାରେ କେ ଜିଣି
ଉତ୍ଥିତ ସଦା ଭୁବନ।
ମଦ୍ରଦେଶ ଭୂପ ମହାରଥୀ ଶଲ୍ୟ
ଏହି ପାଣ୍ଡବ ମାତୁଳ,
ଧନୁ ଧରି ବୀର ପଶିଲେ ସମରେ
ହୁଅନ୍ତି ରିପୁ ଆକୁଳ।
ଦେଖ ଜରାସନ୍ଧ ବସିଛି ମଣ୍ଡପେ
ଶିଶୁପାଳ ସୁତ ପାଶେ,

ପଳାଇ ଆସିଲେ କୃଷ୍ଣ ଦ୍ୱାରକାରୁ
ଯେତେକଣ ମଥୁରା ବାସେ।
ଦୁର୍ଯ୍ୟୋଧନ ମିତ୍ର କର୍ଣ୍ଣ ମହାବୀର
କୁନ୍ତୀ ଗର୍ଭେ ହେଲେ ଜାତ,
ସଂଗ୍ରାମେ କୁଶଳ ପାଣ୍ଡବଙ୍କ ଭଳି
ସର୍ବତା ଏହାଙ୍କ ତାତ।
ଧନୁ ଥରହର ହୁଏ ନିରନ୍ତର
ଦର୍ଶନେ ଏହାଙ୍କ ବଳ,
ଦାନକର୍ଣ୍ଣ ବୋଲି ଲଭିଛନ୍ତି ଖ୍ୟାତି
ସଦା ପ୍ରତିଜ୍ଞା ଅଟଳ।
ଦେଉଛନ୍ତି ଭୟେ ଭୂପତି ନିଚୟେ
ନିତି ଲକ୍ଷ ସ୍ୱର୍ଣ୍ଣ ଭାର,
ଗରିମା ଏହାଙ୍କ କହିଲେ ନସରେ
ଧନରେ ଭରା ଭଣ୍ଡାର।
ନର୍ତ୍ତର କଳିଙ୍ଗ ଉତ୍କଳ ଦେଶର
ବଳଶାଳୀ ଭୂପ ଆସି,
ସ୍ୱର୍ଣ୍ଣ ସିଂହାସନେ ବସିଛନ୍ତି ଦେଖ
ସଙ୍ଗେ ଧରି ଗଜରାଶି।
ଲକ୍ଷେ ନରସାଇଁ ନିମନ୍ତ୍ରଣ ପାଇ
ଆସି ଅଛନ୍ତି ପାଞ୍ଚାଳେ,
ଆଜୀବନ ସଙ୍ଗୀ ହେବ ସେ ତୋହର
ଅଛି ଲେଖା ଯା କପାଳେ"।
ତଦନ୍ତେ କେଶିନୀ ଯାଜ୍ଞସେନୀ ଦେହୀ
ବସାଇଲା ତା ସ୍ଥାନରେ
ଏଣେ ଧୃଷ୍ଟଦ୍ୟୁମ୍ନ କରତାଳି ଦେଇ
କହିଲେ ପୁଲକଭରେ।
"ପାଞ୍ଚାଳୀ ଲଭିବ ଯେ ଲକ୍ଷ ବିନ୍ଧିବ
କରନ୍ତି ଜନକ ପଣ,
ଗୋଟି ଗୋଟି ହୋଇ ଲକ୍ଷ ବିନ୍ଧିବାକୁ
ଆସନ୍ତୁ ନୃପତିଗଣ।
ଏମନ୍ତ ସମୟେ କୃଷ୍ଣ ବଳରାମ
ପ୍ରବେଶନ୍ତେ ସଭାସ୍ଥଳେ,
ଆସନୁ ସକଳ ଉଠି ମୋଦଭରେ
ପ୍ରଣମିଲେ ପଦତଳେ।

ବାସୁଦେବ ହଳୀ ଅସିବାର ଜାଣି
ସ୍ୱର୍ଗରୁ ସୁରନକର,
ଆସି ପ୍ରବେଶିଲେ ସେ ସଭା ସ୍ଥାନରେ
ଦେଖିବାକୁ ସ୍ୱୟମ୍ବର ।
କେତେ ମହାଋଷି ଶିଷ୍ୟ ସଙ୍ଗେ ଘେନ
ଆସନ୍ତେ ସେ ସ୍ୱୟମ୍ବରେ,
ଦ୍ରୁପଦ ଆସନୁ ଉଠି ଆସି ଜବେ
ଅଭ୍ୟର୍ଥିଲେ ସମାଦରେ ।
ଧୌମ୍ୟ ପୁରୋହିତ ଗଗନୁ ଓହ୍ଲାଇ
ଶିଷ୍ୟମାନଙ୍କ ସଙ୍ଗରେ,
ପ୍ରବେଶନ୍ତେ ତହିଁ ଚରଣ ଧଉତ
କଲେ ପାଞ୍ଚାଳେଶ ଖରେ ।
ପୁଛନ୍ତେ କେଶବ ହଳୀଙ୍କୁ ଏକାଳେ
ବିନ୍ଧିବ କିଏ ଏ ଲକ୍ଷ ?
ଉତ୍ତରିଲେ ସେହି "କର୍ଣ୍ଣ ବିନା କାର
ନଟିବ ଶର ତା ପାଖ" ।
ତାହାଙ୍କ ବଚନ ଶୁଣି ବାସୁଦେବ
କରିଲେ କୁଣ୍ଠ ସେକାଳେ,
ସୁଦର୍ଶନ ଚକ୍ର ପଠାଇଲେ ନଭେ
ଭ୍ରମିବାକୁ ଅନ୍ତରାଳେ ।



## ଲକ୍ଷବିନ୍ଧା

ବେଦମନ୍ତ୍ର ପାଠ ସାରି ତାପସୀଏ
ଆଦେଶନ୍ତେ ଲକ୍ଷ ପାଇଁ,
ଧୃଷ୍ଟଦ୍ୟୁମ୍ନ ଉଠି କହନ୍ତି ସଭାରେ
ଦୁର୍ଯ୍ୟୋଧନଙ୍କୁ ଅନାଇଁ ।
"ନୃପମଧ୍ୟେ ତୁମେ ମହା ପରାକ୍ରମୀ
ପୁଣି ଅତି ଧନଶାଳୀ,
ପଣ ପୂରଣରେ ସମର୍ଥ ହୋଇଲେ
ଲଭିବ ହସ୍ତେ ପାଞ୍ଚାଳୀ ।
ଏସନ ବଚନ ଶୁଣି ଦୁର୍ଯ୍ୟୋଧନ
ଚୁହାଁନ୍ତେ କର୍ଣ୍ଣ ବଦନ,
ଯାଅ ବୋଲିବାରୁ କର୍ଣ୍ଣ ମହାରଥୀ
ଗଲେ ରାଧାନନ୍ଦନ ।
ବାନ୍ଧିଅଛି ବୀର ମସ୍ତକେ ପଗଡ଼ି
ଜରି ପକା ବସନରେ,
ଦିଶେ ଝଲମଲ ଅଙ୍ଗ ଆଭରଣ
ଖଞ୍ଜା କନକ ପଟରେ ।
ଆଟୋପ ଦେଖାଇ ଗଲାବେଳେ ସେହି
ପଡ଼ନ୍ତେ କୃଷ୍ଣା ନୟନେ,
ଏ କିଏ ବୋଲି ସେ ପୁଚ୍ଛନ୍ତି କେଶିନୀକି
ସହସା ମୃଦୁ ବଚନେ ।
ତହୁଁ ଉତ୍ତରିଲ କେଶିନୀ ତାହାକୁ
ହସ୍ତିନାର ଏ ସୂତ,
ଜତୁଘରେ ଭରି ପାଣ୍ଡୁଙ୍କି ମାରନ୍ତି
ଅହରହ ପାପମତି ।
କେଶିନୀର ବାଣୀ ଯାଜ୍ଞସେନୀ ଶୁଣି
ବୋଇଲେ ଦୋଷୀ ଏ ଜନ,
ନରହତ୍ୟା କରି ବସିଛି ସଭାରେ
ଧିକ ଧିକ ତା ଜୀବନ" ।
କଥୋପକଥନ ହେଉଁ ହେଉଁ ତହିଁ
ପ୍ରବେଶିଲା ଲକ୍ଷ ତଳେ,
ଧନୁ ଦେଖି ଛନ ହୋଇ ନରପତି
ପଡ଼ିଲା ମେଦିନୀ ତଳେ ।
ଶିଖଣ୍ଡୀ ତହିଁରେ କଲା ଉପହାସ
ନାନା କଟୁ କଥା କହି,
ଲାଜ ପାଇ ରଜା ବାହୁଡ଼ି ଆସିଲା
କ୍ଷଣେ ସେଠାରେ ନରହି ।
ଏ ଅନ୍ତେ ସେଠାକୁ ଗଲା ଜରାସନ୍ଧ
ମଗଧର ନରପତି,
ଗୁଣ ଦେବା ଲାଗି ନୋହିଲା ସମର୍ଥ
ଲଭିଲା ଅପକୀରତି ।
ଲଭି ଅପମାନ ମଗଧ ନରେଶ
ଫେରିବାରୁ ଶିଶୁପାଳ,
ସେ ଅପୂର୍ବ ଧନୁ ବୀକ୍ଷଣେ ତାହାର
ଶରୀରୁ ବୋହିଲା ଝାଳ ।

'ପଳା ଯା ପଳା ଯା' ବୋଲନ୍ତେ ଶିଖଣ୍ଡୀ
ବାହୁଡ଼ିଲ ପୋଡ ମୁଖ,
ତାଳି ମାରି ମାରି ହସନ୍ତି ସରବେ
ଉପୁଜିଲ ମନେ ଦୁଃଖ ।
ତହୁଁ କାଶୀଶ୍ୱର ହୋଇଲ ବାହାର
ସଭାରୁ ପ୍ରତିଜ୍ଞା କରି,
ପ୍ରବେଶି ସେଠାରେ ପ୍ରତାପୀ ନରେଶ
ଧନୁକୁ ଟେକିଲା ଧରି ।
ଆକର୍ଷନ୍ତେ ତାକୁ ନ ପାରିଲା ଟାଣି
ନାସାରୁ ବହେ ଶୋଣିତ
ପୋଛୁ ପୋଛୁ ହାତେ ଧୀରେ ଧୀରେ ଦୁଃଖେ
ଫେରିଲା ହୋଇ ଲଜ୍ଜିତ ।
ନକଲେ ଭରସା ଆଉ ଯେତେ ରଜା
ଥିଲେ ସେ ସଭାସ୍ଥଳରେ
ଦେଖି ତା ଦ୍ରୁପଦ ସଭା ମଝେ ଉଠି
ଝିଙ୍କିଲେ ଅତି ଦୁଃଖରେ ।
"ଯେ ପାରିବ ବିନ୍ଧି ରକ୍ଷିବ ମୋ ପଣ
ଏଥିରେ ନାହିଁ ସଂଶୟ,
ନକରି କେ ଶଙ୍କା ଆସୁ ଲକ୍ଷ୍ୟ ସ୍ଥାନେ
ମୋ ପ୍ରତି ହୋଇ ସଦୟ ।
ଏକଥା ଶ୍ରବଣେ ସୂର୍ଯ୍ୟସୁତ କର୍ଣ୍ଣ
ନଜାଣି ଲକ୍ଷ୍ୟର କୂଟ,
କୁଣ୍ଡଳ ହଲାଇ ବାହାରିଲା ଗର୍ବେ
ଲଗାଇ ମୁଣ୍ଡେ ମୁକୁଟ ।
ଟହଲି ଟହଲି ଚାଲୁଥାଏ ବୀର
ଗୁମ୍ଫକୁ ପୁଣି ଫୁଲାଇ,
କାର୍ଯ୍ୟସିଦ୍ଧି ଲାଗି ପ୍ରବେଶି ସେ ସ୍ଥାନେ
ଧନୁ ଦେଲା ଦୋହଲାଇ ।
ଲାଖିରି ବିଧିଥୁ ଧନଞ୍ଜୟ ଚରିତ
ଧନୁରେ ଗୁଣ ଚଢ଼ାଇ,
ବିନ୍ଧନ୍ତେ ନାହିଁ ବ୍ୟର୍ଥ ହେବାରୁ
ଲେଉଟିଲା ଲାଜ ପାଇ ।
କର୍ଣ୍ଣ ଫେରିବାରୁ ଦ୍ରୋଣ ମହାରଥୀ
ପ୍ରବେଶି ଲକ୍ଷ୍ୟ ସ୍ଥାନରେ,
ଅସମର୍ଥ ହୋଇ ଫେରିଲେ ଏକାଳେ
ଅବନତ ବଦନରେ ।
ନପାଇ ସମ୍ମାନ ପିତା ଅପମାନ
ତହୁଁ ଅଶ୍ୱତ୍ଥାମା ବୀର,
ଉଠି ସଭାସ୍ଥଳୁ ଗମିଲେ ହରଷି
ବିନ୍ଧିବାକୁ ଲକ୍ଷ୍ୟ ଶର ।
କରିଅଛି ପଣ ବିନ୍ଧିବାକୁ ବାଣ
ଟେକିଲା ଧନୁ ଆୟାସେ,
ଜଳଘଟ ଗୃହୀଁ ନଭସ୍ଥ ମତ୍ସ୍ୟକୁ
ମାରିଲା ଶର ଉଲ୍ଲାସେ ।
ନ ବାଜି ସେ ଶର ମାଛର ଆଖିରେ
ବାଜିଲା ଚକ୍ରରେ ଖରେ,
ଖଣ୍ଡ ଖଣ୍ଡ ହୋଇ ଗୁଣ୍ଡ ହେବା ପରେ
ପଡ଼ିଲା ଭୂମି ଉପରେ ।
ଦ୍ରୋଣ ପୁତ୍ର ଫେରି ଆସିବାରୁ ଝଟ୍
ଯାଇ ମଞ୍ଚ ଉପରକୁ,
ଶିଖଣ୍ଡୀ ବଦନ ଦର୍ଶନ କରନ୍ତେ
ଲେଉଟିଲେ ସ୍ୱସ୍ଥାନକୁ ।
ଶଲ୍ୟ ଜୟଦ୍ରଥ ପୁଣି କୃପାଚାର୍ଯ୍ୟ
ଆପଣା ଆପଣା ବଳ,
ଦେଖାଇ ଦେବାକୁ ଗଲେ ସଭାସ୍ଥଳୁ
ଘଟିଲା ବିଷମ ଫଳ ।
ମଉନ ହେବାରୁ ସଭାରେ ରାଜାଏ
ପୁଚ୍ଛିଲେ କୃଷ୍ଣା ଏମନ୍ତ,
"ଆଗୋ ସଖି, କହ ନୃପତି ମଧ୍ୟରେ
ଅଛି କି କେ ରୂପବନ୍ତ ?
ଅସମ୍ଭବ ଲାଖ ଭିଆଇ ବାପାଏ
ସାରିଲେ ବହୁତ ଧନ,
ସ୍ୱୟମ୍ବର ଲାଗି ନଜାଣି ବୁଦ୍ଧିରେ
କଲେ ଏତେ ଆୟୋଜନ" ।
ଏ ବଚନ ଶୁଣି କହିଲା କେଶିନୀ
"ଭାବିଲେ କି ହେବ ଏବେ,
ତୁଟିବ ତୋ ବ୍ୟଥା ଦେଖ ବରିଟିଏ
ବାଛିବୁ ଇଚ୍ଛାରେ ଯେବେ" ।

କେଶିନୀ କଥାରେ ଉତ୍ତରିଲେ କୃଷ୍ଣା
ଯାହା ତୁ କହିଲୁ ସହି !
"କାହାକୁ ମୋହର ମନ ବଳୁନାହିଁ
ପାରୁନାହିଁ କିଛି କହି ।"
କହିଲେ ଦ୍ରୁପଦ ଏସନ ସମୟେ
ଅଛି କେ ସଭାରେ ଆଉ ?
ବିପ୍ର ବା ଚଣ୍ଡାଳ ଯେ ପାରିବ ଲକ୍ଷ
ବିନ୍ଧି ପାଞ୍ଚାଳୀକି ପାଉ ।"
ରାଜାର ବଚନ ଶ୍ରବଣେ ଅର୍ଜୁନ
ଯୁଧିଷ୍ଠିର ଇଙ୍ଗିତରେ
ସଭାମଧ୍ୟୁ ଉଠି ବିନ୍ଧିବାକୁ ଲକ୍ଷ
ଚଳିଲେ ପୁଲକ ଭରେ ।
ବାଞ୍ଛିଲେ କଲ୍ୟାଣ ସଭାସ୍ଥ ବ୍ରାହ୍ମଣ
ଗଲାବେଳେ ଧନଞ୍ଜୟ,
ତାଙ୍କ ପଦଗତି ଦେଖି କୃଷ୍ଣମନୁଁ
ଛୁଟିଲା ଖରେ ସଂଶୟ ।
ବ୍ୟାସ ମହାମୁନି ଦେଖି ଫାଲଗୁନି
ପୁଲକିତ ହୋଇ ଅତି
ଆଶିଷ ଅର୍ପି ଇଚ୍ଛିଲେ ହୃଦୟେ
ଟାଉଯାଙ୍କସେମା ସଖା ।
ରବିସୁତ କର୍ଣ୍ଣ ବଦନ ଅନାଇଁ
ବୋଲେ ଦୁଃଶାସନ ବୀର,
"ରଜାଏ ଲଭିବେ ମହା ଅପମାନ
ବ୍ରାହ୍ମଣ ବିନ୍ଧିଲେ ଶର ।"
ଦ୍ରୋଣଙ୍କୁ ଅନାଇଁ ବୋଲନ୍ତି ଗାଙ୍ଗେୟ
ଉପୁଜେ ପ୍ରଶାନ୍ତି ମନେ
ଧନଞ୍ଜୟ ଗତି ପରାଏ ଦିଶୁଛି
ସତେ କି ଅଛି ଜୀବନେ ।"
ମୁହୂର୍ତ୍ତେ ରହିଲୁ ବୋଲି ଗୁରୁ ଦ୍ରୋଣ
ଝଟେଂଖନ୍ତେ ବାରମ୍ବାର,
ଗାଣ୍ଡୀବୀ ବୋଲାସେ ଜନ୍ମିଲା ପ୍ରଶାନ୍ତି
ସୌମ୍ୟ ରୂପ ଦେଖି ତାର ।
ବାସବ ନନ୍ଦନ ତଦନ୍ତେ ପ୍ରବେଶି
ଉଠିଲେ ମଞ୍ଚଉପରେ

ଧନୁକୁ ଆଡ଼େଇ ଧନକୁ ବଡାଇ
ଦେଲେ ଜବେ ବାମକରେ ।
ଏକାଳେ ପାଞ୍ଚାଳୀ ବୋଲେ କେଶିନୀକି
ଦେଖିଲେ ଲକ୍ଷ ବ୍ରାହ୍ମଣ
ଉଲ୍ଲାସ ମାନସେ ମାଳ ଦେଇ ଗଳେ
ପଶିବି ତାର ଶରଣ ।"
ବ୍ରାହ୍ମଣ ରୂପରେ ମୁଗ୍ଧ ହୋଇ ବାଳା
ଭଜିଲା ଅନାଦି ଶକ୍ତି,
ଏ ବିପ୍ରର କରେ ବିଜେ ହେବାଲଗି
ହୃଦେ ରଖି ଦୃଢ଼ ଭକ୍ତି ।
ସୁନ୍ଦର କାମନା କରୁଥାଏ ସିନା
ସୁନ୍ଦରଙ୍କୁ ସଦା ଭବେ
ନଥିଲେ ସୁରୂପ ଧନବନ୍ତ ପ୍ରଭୁ
ନଥାଏ ତା ଇଚ୍ଛା ଲବେ ।
ଜାତି ପ୍ରୀତି କେବେ ନଥାଏ ପ୍ରେମରେ
ସୁନ୍ଦର ଜଣକୁ ନେଉଡ଼ି,
ଚକ୍ଷୁ ମଣି ଧନ କୁରୂପକୁ ସଦା
ଆଡ଼େଇ ଦିଏ ସେ ଗୋଡେ ।
ସମବେତ ନୃପ ଧନାଢ୍ୟ ହେଲେହେଁ
ତଳେ ନ ବଳଇ ମନ,
ବସିଥିଲା ବାଳା ସମସ୍ତଙ୍କୁ ଜଗି
ତଳକୁ ପୋତିବଦନ ।
ଏ ଅନ୍ତେ ଅର୍ଜୁନ ଲକ୍ଷର ବିଧାନ
ପୁଛନ୍ତେ ଧୃଷ୍ଟଦ୍ୟୁମ୍ନଙ୍କୁ
ବୋଇଲେ ସେତହିଁ ଏ ଲକ୍ଷ ବିନ୍ଧିଲେ
ଲଭିବ କନ୍ୟାରତ୍ନକୁ
ପ୍ରଣମି ଦ୍ରୋଣଙ୍କୁ ପୁଣି ଦେବତାଙ୍କୁ
ଆଉଥିଲେ ଯେତେ ଋଷି,
ଲକ୍ଷ ବିନ୍ଧିବାରେ ହେବାରୁ ସମର୍ଥ
ସକଳେ ହୋଇଲେ ଖୁସି ।
ବାଜିଲା ଏ ଲକ୍ଷ ବ୍ରାହ୍ମଣର ବୋଲି
କେଶବ ଏକାଳେ କହି
ବଜାଇଲେ ଶଙ୍ଖ ହରଷ ମନରେ
ବାର ବାର ଉହି ରହି ।

ଜବେ ଯାଜ୍ଞସେନୀ କରେ ମାଳା ଘେନି
ଗମନ୍ତେ କର୍ଣ୍ଣଙ୍କ ପାଶେ,
ଦୁଷ୍ଟ ଦୁର୍ଯ୍ୟୋଧନ ଦେଲା ଅଟକାଇ
ଅବଳାକୁ ନେବା ଆଶେ ।
ଲଗିଗଲା କଳି ଘଡ଼ିକ ଭିତରେ
ଖଣ୍ଡାଖଣ୍ଡି ହୋଇ ସର୍ବେ
ଉଠିଲେ ସର୍ବାରୁ ଅର୍କସୁତ କର୍ଣ୍ଣ
ଦୁର୍ଯ୍ୟୋଧନ ଅତି ଗର୍ବେ ।
ଏସମୟେ ହଳୀ ନାଶିକେ ଅଙ୍ଗୁଳି
ଦେଇ କଲେ ଉପହାସ
ଦ୍ରୁପଦ ଠାରୁକ ପାଇଲେ ଉକ୍ରୋଚ
ନକରୁ କର୍ମ ପ୍ରକାଶ ।
ସତ୍ୟତା ନ ଜାଣି ବଜାଇଲୁ ଶଙ୍ଖ
ଉପୁଜବ ଏବେ ଦ୍ୱନ୍ଦ
ବୋଲି ବୋଇଲେ ସେ କୃଷ୍ଣଙ୍କୁ ଏକାନ୍ତେ
ଭିଆଇ ଚକ୍ରୀଙ୍କୁ ଛନ୍ଦ ।
ବଳରାମ ଉକ୍ତି ଶୁଣି ବ୍ରଜନାଥ
ଭାଷନ୍ତି ବାଣୀ ଏସନ
"ଅଜଥରେ ଲଖ ବନ୍ଧ ଏ ବ୍ରାହ୍ମଣ
ଦେଖାନ୍ତୁ ସର୍ବସ୍ୱଜନ ।"
ଏ ଅନ୍ତେ କର୍ଣ୍ଣଙ୍କ ପ୍ରବେଶି ସେଠାରେ
ପୁନରପି ବନ୍ଧଶର,
ଖସାଇଲେ ମାଛ ଫୁଟାଇ ଆଖିକି
ଚାଟକା ସକଳ ନର ।
ପକାଇଲେ ପୁଷ୍ପ ଦେବତାଏ ସ୍ୱର୍ଗୁଁ
ବ୍ରାହ୍ମଣ ଶିର ଉପରେ,
ବାହାବା ବାହାବା ବୋଲି ବାସୁଦେବ
ହର୍ଷିଲେ ହରଷଭରେ ।
ଧୃଷ୍ଟଦ୍ୟୁମ୍ନ ତହୁଁ ନେଇ ସ୍ୱର୍ଣ୍ଣ ମହୀ
ଜରାସନ୍ଧ ନିକଟରେ
ଦେଖାନ୍ତେ ବଚନ ନଫୁଟିଲା ତାର
ପୋତିଲେ ମୁଣ୍ଡ ଲଜରେ ।
ପାଞ୍ଚଜନ୍ୟ ଶଙ୍ଖ ବଜାନ୍ତେ କେଶବ
କରେଧରି ରତ୍ନମାଳ

ଧନଞ୍ଜୟ ଗଳେ ଅତି ମୋଦଭରେ
ପିନ୍ଧାଇ ଦେଲା ସେ ବାଳା ।
ଶକୁନିକି ଘେଇ ପାପୀ ଦୁର୍ଯ୍ୟୋଧନ
କହେ,"ଯାଇ ବିପ୍ର ପାଶ ,
ଯାହା ଧନ ନେଇ ଦେଉ ଦ୍ରୌପଦୀକ
ନକରୁ ମୋତେ ନିରାଶ ।"
ଶକୁନି ଏଅନ୍ତେ ବୋଲନ୍ତେ ବିପ୍ରକୁ
ଦୁର୍ଯ୍ୟୋଧନର ବାରତା
ବୋଇଲେ ସେ ରୋଷେ ଯାହା ନେଉ ପଛେ
ଦେଉ ମୋତେ ତା ବନିତା ।"
ଉଠିଲା କନ୍ଦଳ ଉଭୟ ପକ୍ଷରୁ
ଅସ୍ତ୍ର ଶସ୍ତ୍ର କରେ ଧରି
କହିଲେ ଦ୍ରୁପଦ ଦୁଃଶାସନ ବୋଧି
"ଯାଅ ଗୋଳରୁଁ ଅପସରି ।"
ଲଣ୍ଡ ଭଣ୍ଡ ଗୁଡ଼ି ଆଗରେ ନିରତ
ବସୁନ୍ଧରା ତଳେ ଖଳ,
ନପାଇଲେ ବାଟ ସଜ ଉଣ୍ଡି ଉଣ୍ଡି
ଶେଷରେ ଦେଖାଏ ବଳ
ଦୁଃଶାସନ କଥା ସେକଥା ଶୁଣିବ
ଘୁଞ୍ଚୁ ଦେଇ ଦେଲା ଓଲଟି,
ରାଜନଭୂଇଁରେ ଗଡ଼ ଚଡ଼ ବାରୁ
ପଡ଼ିଲା ଆକାଶେ ପାଟି ।
ଆସିଧୃଷ୍ଟଦ୍ୟୁମ୍ନ ଓଗାଳନ୍ତେ ପଥ
ଧରି ଦୁଃଶାସନ କର,
ଚେତାପାଇଭୂପ ପ୍ରବେଶିଲେ ତହୁଁ
କ୍ରୋଧେହୋଇ ଜର ଜର ।
ଦୁଃଶାସନ ବୀର ପଡ଼ିବାରୁ ବେଗେ
ଦେଖି ପାପୀ କୁରୁପତି,
ଅମାତ୍ୟମାନଙ୍କୁ ଚଢ଼ାଇ ରଥରେ
ଆସିଲା ରଣେ ତଡ଼ିତ
ଶିଶୁପାଳ ତହୁଁ ଜରାସନ୍ଧ ସହ
ସର୍ବାରୁ ଉଠିଣ ଖରେ,
ରେ ରେ କାରକରି ମାରି ମାରି ବୋଲି
ଉଚାରିଲେ ଉଚ୍ଚ ସ୍ୱରେ

ବିବେକୀ ଧାର୍ମିକ ଥିଲେ ଯେତେ ଜଣେଁ
କଲେ ମନା ଘନ ଘନ,
ରାଜା ଦୁର୍ଯ୍ୟୋଧନ ଅହଙ୍କାରେ ମାତି
ନ ଶୁଣିଲା କା ବଚନ ।
କେଶରୀ ଆଗରୁ ଶୃଗାଳ ନେବାକୁ
ହେବ କି ଶଶା ସକ୍ଷମ ,
ବ୍ରାହ୍ମଣ ପିଲାକୁ ରାଜକନ୍ୟା ଦେବା
ନୁହଇ ରାଜଧରମ ।
କହି ଏହିପରି ପାପୀ ଦୁର୍ଯ୍ୟୋଧନ
ପଶିଲା ଘୋର ସମରେ,
ଧର ଧରବୋଲି ଡାକ ପଡ଼ିବାରୁ
ପାବନ ଉଠିଲା ଖରେ ।
ମାର ମାରବୋଲି କ୍ଷତ୍ରିୟଙ୍କୁ ମାରି
ଏବେ ଉପରୋଧ ଛାଡ଼ି
ରଡ଼ି କରି କରି ସବୁରୁ ଉଠିଲେ
ଧରି ବପ୍ରେ ଛଡ଼ାବାଡ଼ି ।
ରାଜାଏ କେତେକ ରହିଲେ ମଉନେ
ଦେଖିବାକୁ କଉତୁକ
ଏ କନ୍ଦଳ ଦେଖି ମହାଭୟ ପାଇ
ଯୁଧିଷ୍ଠିର ହେଲେ ମୂକ ।
ଦୁଃଶାସନ ଭୀମ ହେଲେ କୋଡ଼ାକୋଡ଼ି
ପହିଲେ ହାତକୁ ହାତେ
ପରେ ଗଦାଧରି ହେଲେ ପିଟାପିଟି
ପଡ଼ିଲା ପାବନ ଖାତେ ।
ଖାତୁଁ ଉଠି ପୁଣି ଗରଜି ଦୁଃଶାର
କେଶ ଓଟାରି ଓଟାରି,
ପକାଇ ତଳକୁ ଗଡ଼ାଇ ଗଡ଼ାଇ
ବକ୍ଷକୁ ଦେଲା ବିଦାରି ।
ପାଞ୍ଚାଳିକ ଦୁଃଶା ଟାଣି ନେବାଲାଗି
ତ ମୂଳ କାଣ୍ଡ ଭିଆଇ
ଦଣ୍ଡ ହେଲାଶେଷେ ପାଷାଣ୍ଡ ଉଦ୍ୟମ
ଫେରିଲା ମୁହଁ ଶୁଖାଇ ।
ପଳାଇଲା ଦୁଃଶା ଭୟେ ଭୀମପାଶୁଁ
ବୁଡ଼ିଛି ଦେହ ରୁଧିରେ

ଦରଶନ କରି ଏ ଦଶା ତାହାର
ପୁଚ୍ଛିଲେ କୃଷ୍ଣ ଅଧୀରେ ।
ସାଗର କେବେ କି ପୋଡ଼ି ହୁଏ ଧୂଳି
ମକାଇଲେ ତା ଗରଭେ,
ମାଇଲେ କି ଠେଲା ଠେଲା ଯାଏ ଗିରି
ଦେଖିଛ କି କଏ ଭବେ ।
ଯାବତ ଘଟଣା ଘଟିଥିଲା ଯାହା
ବଖାଣି ତାଙ୍କ ଆଗରେ,
ହାତେ ଗଦା ଧରି ପୁଣି ପ୍ରବେଶିଲା
ବ୍ରାହ୍ମଣ ପାଶେ ରଗରେ ।
କହଇ କଷଟୀ ଖାଇଛୁ ଯାମାଡ଼
ଛାଡ଼ ନାହିଁ ତା ପରଶ ,
ମାଡ଼ ନାହିଁ ଲାଜ ଆସୁ ପୁନରପି
ଅନଳେ ଦେବାକୁ ଝାସ ।
କଏ କେତେ ଦିନ ରହିବ ସଂସାରେ
କାହାକୁତ ନାହିଁ ଜଣା,
ରାଗ ହିଂସା ହୃଦେ ବହ୍ନି ଅବିରତ
ହେଉଛୁ ମଣିଷ ବଣା ।
ଏହା ଦେଖି ଭୀମ ଧାଇଁ ଧାଇଁ ଆସି
ଦୁଇଟି ଗଛ ଉପାଡ଼ି,
ପଛ ଆଡ଼ୁ ଆସି କୋପାନଳେ ଜଳି
ଶିରେ ତା ଦେଲା କଚାଡ଼ି ।
ଛଟ ପଟ ହୋଇ ଭୂମି ତଳେ ପଡ଼ି
ଗର୍ଜିଲା ଦୁଃଶାସନ,
ଏକାଳେ ତାହାର ନାସାରୁ ରୁଧିର
ଧାରି ବହେ ଘନ ଘନ ।
ରାଗରେ ଶକୁନି ଦୁର୍ଯ୍ୟୋଧନ ପାଶେ
ଗମି ବୃତାନ୍ତ ସକଳ,
କହନ୍ତେ, ସେ ରାଜ ଉପରେ ଆରୋହି
ଆସିଲା ଧରି ତା ବଳ ।
ବୋଲେ ଦୁର୍ଯ୍ୟୋଧନ ବ୍ରାହ୍ମଣ ବୋଲିମୁଁ
ଛାଡ଼ିଥିଲି ଦୟା ବହି,
ଦୁଃଶା ଅପମାନ ଦେଖିବାରୁ କାଳେ
ନପାରିଲି କ୍ଷଣେ ସହି

ଏହା କହି ଗଦା    ହସ୍ତିନାଧିପତି
ବୁଲାନ୍ତେ ଗାଣ୍ଡୀବୀ ଆଗେ,
ଧାଇଁ ଆସି ପଛୁ    ମରୁତ କୁମର
ଘର୍ଷିଲା ଗଦାକୁ ବେଗେ ।
ତା ଦେଖି ଶକୁନି    ଆସିବାରୁ ତହିଁ
ଭୀମ ଗୋଡ଼ାଇ ଗୋଡ଼ାଇ
ତେନ୍ତୁଳ ଗଛରେ    ପିଟି ଚାପିଠିକି
ଦେଲା ତାକୁ ଘଉଡ଼ାଇ ।
ଗଦାଶୂନ୍ୟ ହୋଇ    ରାଜା ଦୁର୍ଯ୍ୟୋଧନ
କାଢ଼ି ନାରାଚ ମୁନିଆଁ,
ନିକ୍ଷେପନ୍ତେ ତାହା    କିରୀଟିକି ଲକ୍ଷି
ସକଳେ ହେଲେ ଚୁନିଆଁ ।
ବ୍ରାହ୍ମଣ ସହସା    ପ୍ରତିଶର ବର୍ଷି
ଦ୍ୟନ୍ତେ ଜାଳ ଖଣ୍ଡେ ଦୂରୁ
ଧନ୍ୟ ଧନ୍ୟ ବୋଲି    ପ୍ରଶଂସିଲେ ଅତି
ତାହା ଦେଖି ଦ୍ରୋଣ ଗୁରୁ ।
ଏସମୟେ କର୍ଣ୍ଣ    କୁଣ୍ଡଳ ହଲାଇ
ଝପଟି ରଣେ ଆସନ୍ତେ
ସତର୍କ କରାଇ    ମାରୁତିକି ଜିଷ୍ଣୁ
ପ୍ରତିରୋଧିଲେ ଏଅନ୍ତେ ।
ଆଣିଥିଲା ବଳୁ    ଗଦା ବୃକୋଦର
ରଣେ ଜିଣି ଦୁଃଶାସନ,
ସେ ଗୁଡ଼ିକ ଧରି    ଧାଅନ୍ତେ ସେ ଠିଆ
ଦେଖିଲା ଭାନୁ ନନ୍ଦନ ।
ଏଅନ୍ତେ ନକୁଳ    ପୁଣି ସହଦେବ
ପ୍ରବେଶି ଯୁଦ୍ଧ ସ୍ଥାନରେ
ମାର ମାର ବୋଲି    ରବଦ କରନ୍ତେ
ଘୁଞ୍ଚିଲେ କର୍ଣ୍ଣ ଶରରେ ।
ପାଣ୍ଡବଙ୍କ ଟେକ    ରଖିବା ନିମନ୍ତେ
କୋପେ ପବନ କୁମାର,
ଗଦା ପିଟି ପିଟି    ରବିସୁତ ରଥ
କଲା ଗୁଣ୍ଡ ଅନନ୍ତର ।
ଏ କାଳେ ନାରଦ    ଅନ୍ତରୀକ୍ଷେ ଥାଇ
ବୋଇଲେ ମାଡ଼ୁଛି ଲାଜ,
କ୍ଷତ୍ରିୟ କନ୍ୟାକୁ    ଭିକାରୀ ନେଉଛି
କ୍ଷମା ହୋଇ ଏବେ ରାଜ ।
ଏଣେ ପାଣ୍ଡବଙ୍କୁ    ଗୁପ୍ତନାମ ଧରି
କହନ୍ତି ଦେଖ ଏଗାତ,
ଦେଖିଲ ବ୍ରାହ୍ମଣ    ବଢ଼ିଲା ଲାଖକୁ
ଉପୁଜେ ତୁଷ୍ଟ ଅପ୍ରୀତି ।
ଶୂନ୍ୟରୁ ଏ ବାଣୀ    ଶୁଣିନୃପତିଏ
ମେଳ ହୋଇ ଯୁଦ୍ଧ ସ୍ଥାନେ
ଯୁଝି ଯୁଝି ଶେଷେ    ପରାଜୟ ଲଭି
ପଳାଇଲେ ଅପମାନେ ।
ବଚନ ସର୍ଜନା    କାହାର ଏ ଭବେ
ନବୁଝିଇ କେହି ଲଭେ,
ନାନା ଅପକର୍ମ    କରୁଛି ମଣିଷ
ତୁଛାକୁ ମାଡ଼ ଗଢ଼େବେ ।
ଦୁଃସହ ସଂଗ୍ରାମ    କରି ବୀର ଭାଇ
ବହୁତ ମାରି ବାହିନୀ,
ଅର୍ଜିଲେ ପ୍ରଖ୍ୟାତ    ଏ ବସୁଧା ତଳେ
ଧନ୍ୟା କରିଣ ଭାମିନୀ ।
ଏଥୁଅନ୍ତେ କନ୍ୟା    ଘେନି ପାଞ୍ଚ ଭାଇ
ଗମିଲେ କୁମ୍ଭାର ଶାଳେ,
ହୋଇଥିଲ ରାତ୍ରି    ଅତାଇ ପ୍ରହର
ପ୍ରବିଷ୍ଟ ହେଲେ ଯେ କାଳେ ।
ପଚାରିଲେ କୁନ୍ତୀ    ଦେଖି ପାଞ୍ଚାଳୀକି
ଏ କଏସେ କୁତୁହଳେ,
''ଲଖ ବର୍ଷି କରି    ଦ୍ରୁପଦ କୁମାରୀ
ଆଣିଲୁ ସୌଭାଗ୍ୟବଳେ ।''
ଦ୍ରୌପଦୀ କାନରେ    ତୁନି ତୁନି କହି
କେଣି ନୀ ଗଲ ନବରେ
କୁମ୍ଭାର ପାଖଁଶେ    ଶେଯ ପାରି ଦେଇ
ଶୋଇଲେ ସର୍ବେ ଛନ୍ଦରେ ।
ଗହନ ସଂସାରେ    ପ୍ରାସାଦ ଭିତରେ
ଯେ ଥିଲା କାଙ୍ଗାଳ ତୁଳରେ
ଗଛ ତଳେ ଘଡ଼    ସେହି ପୁଣି ଆହା !
ଗଡ଼ୁଛି ଅଳ ଧୂଳରେ

ଜୀବନ ଧରି ବା ଚଳାଇଲେ କେହି
କାହାର ଗଲା ଜୀବନ,
ପଣ୍ଡୁବାର ସହ ଦ୍ରୁପଦ ନଗରେ
କରନ୍ତି ଅତି ବେଦନ ।
ନ ବୁଝିଲେ ମନ ବୁଝାଇବ କିଏ
ଏ ମହା ମାୟା ସଂସାରେ,
ସତ୍କର୍ମ ଅକର୍ମ ଗଢୁଅଛୁ କିଏ
ମାତ୍ର ସ୍ୱାର୍ଥ ଲାଳସାରେ ।
ଅନ୍ୟାୟ ବୋଲି ବା ଜାଣିଲେ କିଏସେ
ଓହରୁଛୁ ବସୁଧାରେ
ଦେଖିବାକୁ ନାହିଁ କେତେକ ପଛରୁ
ଲଗନ୍ତି ମଡ଼ାଇବାରେ ।
ଦେବର୍ଷି ବୋଲି ବା କହନ୍ତି ଯାହାକୁ
ସେହିତ ବଡ଼ ନାଟୁଆ,
ଉଭୟ ପକ୍ଷକୁ ଚିହ୍ନାଇ ଦେବାରୁ
ପାଉନୁ ଦୁଃଖ ବାଟୁଆ
ପଡ଼ ଅଛୁ ମଡ଼ କୁତ କୁତ ହୋଇ
ଶୋଣିତେ ଭସୁଛି ଧାଣ୍ଡ
ଅନ୍ୟାୟେ କୌରବେ ନ ମାନିଲା କଥା ।
ଭିଆଇଲେ ଏତେ କାଣ୍ଡ ।
ଲାଗିଛି କଳହ ଦୁନିଆଁ ଭିତରେ
ଦେଖେ ପର ମନ୍ଦ ହିତ
କ୍ଷତି ବିନା ଲାଭ ହୋଇଛି କାହାର
କରି କରମ ଅନୀତି
ଆପଣା ସ୍ୱାର୍ଥକୁ ଜପେ ଯେ ନିରତ
ପଡ଼ୁଅଛି ସେହି ଖାଲେ,
ଅସାର କଳ୍ପନା କରି ବା କିଏସେ
ପଡ଼ୁଛୁ ବିଷମ ଜାଲେ ।
ଲେଉଟି କେଶିନୀ ପଞ୍ଚାଳୀକ ଗୁଡ଼
ପ୍ରବେଶିଲା ନଗରରେ
ତାକୁ ଦେଖି ସର୍ବେ ପୁଚ୍ଛିଲେ ସକଳ
କଥା ଆକୁଳ ଅନ୍ତରେ ।
ଯୁଦ୍ଧ ଆରମ୍ଭରୁ ଦେଖିଥିଲା ଯାହା
ବର୍ଣ୍ଣି ନୃପତି ଆଗରେ

କହିଲା ଟିକିକୁ ପାଞ୍ଚାଳକ ଦେଖି
କୁମ୍ଭାର ପଛକୁ ଖବର ।
କେଶିନୀଙ୍କ ଠାରୁ ଦ୍ରୁପଦ ରାଜନ
ବାରତା ପାଇ କୁମ୍ଭାର
ତା ବିବାହ ଲାଗି ହେଲେ ସଜବାଜ
ଯୋଗାଡ଼ ନାନା ସମ୍ଭାର ।
ପ୍ରବେଶିଲେ ନୃପ କୁମ୍ଭକାର ଗୃହେ
ଦେଖିବାକୁ ଚମତ୍କାର
ସେମାନଙ୍କୁ କୁନ୍ତୀ ନିଦରୁ ଉଠାଇ
ଭଣିଲେ ଏମନ୍ତ ଗୀର ।
"ପାଞ୍ଚାଳେଶ ଆପେ କରିଛନ୍ତି ବିଜେ
ବନ୍ଦକୃଷ୍ଣଙ୍କୁ ସୁନ୍ଦର,"
ଜନନୀ ବଚନେ ସୁମରନ୍ତେ କୃଷ୍ଣ
ଆସିଲେ ଦ୍ୱାରେ ସତ୍ୱର ।
ପ୍ରବେଶିଲେ ତହିଁ ବ୍ୟାସ ମହାମୁନି
ସଙ୍ଗେ ଘେନି ବହୁ ଋଷି,
ଅମରାବତୀରୁ ଆସିବାରୁ ଇନ୍ଦ୍ର
କୃଷ୍ଣ ଦେଖି ହେଲେ ଖୁସି ।
କୁମ୍ଭାର ଶାଳଟି ହେଲା ନୂପୁର
ବିଶ୍ୱକର୍ମା ଅନୁଗ୍ରହେ
ସକଳ ପୁଲକେ ହେଲେ ମିଶା ମିଶି
କୃଷ୍ଣା ଦାରପରିଗ୍ରହେ ।
ଆସିଲେ ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ସହ
ସଜାଇ ରୁପ୍ୟା ମଣ୍ଡପ,
ପ୍ରବେଶ ନ ଥିଲା ଯହିଁ ରବିକର
ଖଞ୍ଜାହେତୁ ଚନ୍ଦ୍ରାତପ
ପାଞ୍ଚବୀରଙ୍କର ଏକାରୂପ ଦେଖି
ପୁଚ୍ଛେ ଦ୍ରୁପଦ ରାଜନ,
ଏ ପାଞ୍ଚମଧ୍ୟରେ କେ ବିନ୍ଧିଲା ଲାଖ
ଜଣାଅ ଆଗେ ବହନ
ବୋଲନ୍ତେ ଯୁଧିଷ୍ଠି ଏ ପାଞ୍ଚ ଭାଇରୁ
ବ୍ରାହ୍ମଣ ବିନ୍ଧିଲେ ଶର
ଯାହା ପାଉ ଯଶ ପାଞ୍ଚଭାଇ ହେରୁ
ଜାଣ ହେ ପାଞ୍ଚାଳେଶ୍ୱର ।

ଦ୍ରୌପଦୀଙ୍କ ବର ହେବେ ପାଞ୍ଚଜଣ
ଶୁଣି ତାହାକା ନରେଶ,
ବ୍ୟାସଙ୍କୁ ପୁଚ୍ଛନ୍ତେ ଦେଲେ ସେ ଉତ୍ତର
"ଦୋଷ ନାହିଁ ତହିଁ ଲେଶ ।"
ତହୁଁ ବାସୁଦେବ ଦ୍ରୁପଦଙ୍କୁ ଦେଇ
ପାଣ୍ଡବଙ୍କ ପରିଚୟ,
ବୋଇଲେ ସୁକୃତୁ ଏ ଜାମାତା ଯୋଗୁଁ
ନ ରହିବ କେବେ ଭୟ ।
ପାଞ୍ଚାଳ ତହୁଁ ବସିଲେ ବେଦୀରେ
ବିବାହ ବିଧାନ ପାଇଁ,
ନବୀନ ବସନ ପିନ୍ଧାଇ କୃଷ୍ଣାକୁ
ଆଣିଲେ ପାଞ୍ଚାଳସାଇଁ ।
ବନ୍ଧୁ ବନ୍ଧୁଗଣ ପାଇ ନିମନ୍ତ୍ରଣ
ବେଦୀର ଚଉପାଶରେ,
ଶୁଣୁଥିଲେ ବସି ବେଦ ମନ୍ତ୍ର ପାଠ
ପୁଲକିତ ହୃଦୟରେ ।
ବିବାହ ବିଧାନ ସରିବାରୁ କନ୍ୟା
ନେଲେ ଅସି ନରପାଳ,
ଦ୍ରୁପଦ ତଦନ୍ତେ ରାଜାର କର୍ତ୍ତବ୍ୟ
ବୁଝାଇଲେ କ୍ଷଣେ କାଳ ।

ସର୍ପିଣୀ ମୁଖ ଚୁମ୍ବନ କଠିନ ଯେମନ୍ତ,
ରାଜନୀତି ଅବଲମ୍ବ ଦୁଃସାଧ୍ୟ ତେମନ୍ତ ।
କାମ କ୍ରୋଧ ଲୋଭ ମୋହ ମଦ ମାତ୍ସର୍ଯ୍ୟାଦି ଅରି,
ପ୍ରଜାନୁରଞ୍ଜନ ଲାଗି ପରିହାର କରି ।
ଅବଲମ୍ବି ମିତାଚାର ଶାସନର ଭାର,
ତୁଲାଇଲେ ପ୍ରଜା ତୋ ଓଲଭଇ ଅପାର ।
ପ୍ରତ୍ୟୁଷରୁ ଉଠି ଭୂପ ସୁର ପୂଜା ସାରି,
ରାଇଜ କଥା ବୁଝିବ ଅମାତ୍ୟ ହକାରି ।
ନ ରହିଲେ ସଦାଚାର ପରଜା ପାଳନେ,
ପ୍ରସରଇ ଅସନ୍ତୋଷ ଭବନେ ଭବନେ ।
ଘଟିଲେ ଅରାଜକତା କରଇ ପ୍ରବେଶ,
ନ୍ୟାୟ ପ୍ରତି ସଦା ଦୃଷ୍ଟି ନ ଦେଲେ ନରେଶ ।
ଅନ୍ୟାୟକୁ ଅବଲମ୍ବି କେ ଉର୍ଦ୍ଧ୍ୱିତ ହେବ,
ଅବଶ୍ୟମ୍ଭାବୀ ପତନ ଅନ୍ୟାୟୀର ହେବ ।

ଶତ୍ରୁତା ମିତ୍ରତା ଜନ୍ମେ ଆଚରଣ ବଶେ,
ଅନ୍ତର ବିଶୁଦ୍ଧି ସାଧି ପରରକ୍ଷେ ଯଶେ ।
ମନୀଷ ଜନମ ଲଭି ହେଲେ ମାତ୍ର ଭ୍ରଷ୍ଟ,
କିଞ୍ଚିତ କାଳରେ ସେହି ଭୋଗେ ବହୁ କଷ୍ଟ ।
ଅନେଗ୍ରଷ୍ଟା ଭ୍ରମୁଛନ୍ତି ପଡ଼ୁଛି ନଜର,
ନିଜକୃତ ଦୁଷ୍କୃତରୁ ସିନା ହରବର ।
ପ୍ରତିଭୂ ତୋ ଅନ୍ତରାତ୍ମା ଅସତ କର୍ମରେ,
ଲଭିବୁ ବିଷମ ଦଣ୍ଡ ପର ଜନମରେ ।
ଦୁଷ୍ଟକୁ ରଖିବ ଦୂରେ ଶିଷ୍ଟକୁ ପାଶରେ.
ରଖିଲେ ସାହାଯ୍ୟ ମିଳେ ଆପଦ କାଳରେ ।
ପାପ ପୁଣ୍ୟ ନ ବିଚାରି କରେ ଯେ କରମ,
ନଲଭେ ସେ ସିଦ୍ଧି କେବେ ବୃଥା ତା ଜନମ ।
ଅପରାଧୀ ନ ପାଇଲେ ଯଥା ଯୋଗ୍ୟ ଦଣ୍ଡ,
କଣ୍ଟଣ ବଢ଼େ ସନ୍ତରେ ଦେଶ ଖଣ୍ଡ ଖଣ୍ଡ ।
ପରଜାକୁ କରି ରକ୍ଷା ଦଣ୍ଡହିଁ କେବଳ,
ଭାଙ୍ଗିଯାଏ ଦଣ୍ଡ ଭୟେ ଅପରାଧୀ ବଳ ।
ଚୋରି କରିବାକୁ ଚୋର ନ କରେ ସାହାସ,
ଦଣ୍ଡସିନା ନିରନ୍ତର ପୀଡ଼ଇ ମାନସ ।
ନଥାନ୍ତା ଜଗତେ ଯେବେ ଦଣ୍ଡର ବିଧାନ,
ମାରଠାରୁ ଭଲ କେବେ ନଥାନ୍ତା ସମ୍ମାନ !
ଦଣ୍ଡକୁ ବୋଲନ୍ତି ଧର୍ମ ପଣ୍ଡିତ ସକଳେ,
ଦେଖାଏ ସେ ନ୍ୟାୟ ପଥ ମନୀଷଙ୍କୁ ଭଲେ ।
ଅଳସୁଆ ସିନା ସଦା ଲୋଡ଼ଇ ବିଳାସ,
ରକ୍ଷକ ଭକ୍ଷକ ହେଲେ ଘଟଇ ବିନାଶ ।
ନିର୍ବୋଧ ବିଷୟାସକ୍ତ ଶୁଣି ଲୋଭୀଜନ,
ନ୍ୟାୟ ପଥ ଛାଡ଼ି ସଦା ପାପ ଲିପ୍ତ ମନ ।
ବଢ଼ଇ ରାଜାର ଯଶ ଶତ୍ରୁ ଦମନରେ,
ଅକପଟ ବ୍ୟବହାରେ ମିତ୍ରର ସଙ୍ଗରେ ।
ପୂରଣ କରିବା ଲାଗି ନିଜ"ଅଭିଲାଷ,
ଉପୁଜୋଇ ମନୀଷ ଘଟାଏ ବିନାଶ ।
ନ କର ସମର କେହି ଆତ୍ମ ସମର୍ପଣ,
କଲେ ତାକୁ ମିତ୍ର ରୂପେ କରିବ ଗ୍ରହଣ ।
ଜୟ ପରାଜୟ ଯୁଦ୍ଧେ ଦଇବ ଅଧୀନ,
ନ ବିଚାର କେତେ ବେଳେ ଆପଣାକୁ ହୀନ ।

ବ୍ୟସନେ ଆସକ୍ତ ହୋଇ ରାଜା ଏ ସଂସାରେ,
ନୁହନ୍ତି ସକ୍ଷମ କେବେ ପ୍ରଜା ପାଳିବାରେ ।
ଅବିନୟ ହେତୁ ରାଜା ନହୁଷ ସୁଦାସ,
ନାନା କ୍ଳେଶ ପାଇ ଶେଷେ ଲଭିଲେ ମରଣ ।
ଜିତେନ୍ଦ୍ରିୟ ହୋଇ ଆପେ ପ୍ରଜାଙ୍କୁ ବଶରେ,
ରାଜାଏ ସକ୍ଷମ ରଖିବାକୁ ଏ ଭବରେ ।
ଦିବାନିଦ୍ରା ଅକ୍ଷ କ୍ରୀଡ଼ା ବୃଥା ଅଭିମାନ,
ଅସୂୟା ଖଳତା ପରଦ୍ରୋହ ମଦ୍ୟପାନ ।
ଜୀବନର ସାଙ୍ଗ ହେଲେ ଘଟାନ୍ତି ପ୍ରମାଦ,
ସର୍ବଥା ବର୍ଜ୍ଜନ କଲେ ଘୁଞ୍ଚିବ ବିଷାଦ ।
ବ୍ୟସନୀ ଦିନକୁ ଦିନ ଲଭେ ଅବନତି,
ନିର୍ବ୍ୟସନ ଅହରହ ଅର୍ଜ୍ଜଇ କୀରତି ।
ସତ୍ ଉପାୟରେ ମନଯୋଗ ଉପାର୍ଜିତ ଅର୍ଥ,
ଆନନ୍ଦ ଲଭନ୍ତି କଲେ ଦେଶେ ପ୍ରଜାସାର୍ଥ
ନ୍ୟାୟାନ୍ୟାୟ ବିଚାରରେ ନିବେଶିବ ମନ,
କାର୍ଯ୍ୟଶୀଳ ହୁଅ କରି ଆଳସ୍ୟ ବର୍ଜ୍ଜନ ।
ହିତକର କାର୍ଯ୍ୟେ ରାଜା ବଳାଇଲେ ମତି,
ଦିନୁଦିନ କରେ ସିନା ଦେଶ ଅଗ୍ରଗତି ।
ଦେଶର କଲ୍ୟାଣ କର ନ୍ୟାୟେ ଅର୍ଜ୍ଜି ଧନ,
ପରଜା ଶୋଷଣେ କେବେ ନ ବଳାଅ ମନ ।
ଅଧ୍ୟବସାୟ ସମ୍ପନ୍ନ ହୁଅଇ ଯେ ନର,
ଲଭଇ ସେ ଆଜୀବନ ଲୋକ ଆଦର ।
ସର୍ବ ଶାସ୍ତ୍ର ବିଶାରଦ ଚତୁର କୁଳୀନ,
ରାଜଦୂତ ହେବା ଲାଗି ସଦା ସମୀଚୀନ ।
ଶୁଦ୍ଧଚିତ୍ତ ସ୍ମୃତିଶାଳୀ ସର୍ବଜନ ପ୍ରିୟ,
ନିର୍ଲୋଭ ନିର୍ଭୀକ ଯେହୁ ହୁଏ ପୂଜନୀୟ ।
ପ୍ରଜାର ସକଳ କାର୍ଯ୍ୟ ହେଲେ ଅବଗତ,
ସୁଶାସକ ବୋଲି ଘୋଷେ ଦୁନିଆଁ ସତତ ।
ଧାର୍ମିକ ବହୁଳ ଦେଶ ଧନଧାନ୍ୟ ଶାଳୀ,
ହୁଅନ୍ତି ରୋଗାଦିଶୂନ୍ୟ ସଦା ପ୍ରଜାବଳୀ ।
ଧର୍ମାଧର୍ମ ପ୍ରତି ଦୃଷ୍ଟି ଦେଇ ନରପତି,
ଶାସିଲେ ପରଜା ଚିତ୍ତ ଲଭନ୍ତି ତୃପତି ।

ସାର୍ଥ—ସମୂହ

ପୁତ୍ରପରି ସ୍ନେହ କରି ପରଜା ପାଳନ,
କରିବାରେ ତ୍ରୁଟି କେବେ ନକରୁ ରାଜନ !
ନ କରିବ ବନ୍ଧୁ ସଙ୍ଗେ କପଟାଚରଣ,
ନ ଦିଅ ପ୍ରଶ୍ରୟ ଶତ୍ରୁ ପରସ୍ତ୍ରୀ ହରଣେ ।
ଆପଣା ଛିଦ୍ରକୁ ଶତ୍ରୁ ନଜାଣେ ଯେପରି,
କରୁଥିବ କାର୍ଯ୍ୟ ଅବିରତ ସେହିପରି ।
ଶତ୍ରୁ ସଙ୍ଗେ ଯୁଦ୍ଧ ହେବ ବଳ କଷାକଷି,
ନ ପାରିଲେ ଶଶା ପରି ପଳାଇବ ଖସି ।
ଧାନ୍ୟ ଯେହ୍ନେ ଶୋଭେ ଥା ଉପାଡ଼ିଲେ ଘାସ,
କରିବ ନୃପତି ତଥା ବିରୋଧୀଙ୍କ ନାଶ ।
ଜ୍ଞାନେ ବା ଅଜ୍ଞାନେ ରାଜା କଲେ ଅବିଚାର,
ଜଳଉଚ୍ଛେଦ,ବନ୍ୟାଗ୍ନି ଦେଶେ ବାରମ୍ବାର ।
ରାଜ ଭୃତ୍ୟ ପ୍ରବଞ୍ଚକ ନ ହେଲେ ପରିଏ,
ସମୀଚୀନ ସଦା ନେବା ଯତନ ରାଜାଏ ।
ଅନ୍ତର୍ଯ୍ୟାମୀ ନିକର ସାକ୍ଷୀ ଶୁଭାଶୁଭ କର୍ମେ,
ମିଛ କହି ଏଣୁ କେବେ ନ ଯାଅ ଅଧର୍ମେ ।
ପ୍ରଜା ବର୍ଗ ଅସନ୍ତୁଷ୍ଟ ହେଲେ ରାଜାପ୍ରତି,
ପରିଣାମ ହୁଏ ତାର ଅମଙ୍ଗଳ ଅତି ।
ମନ୍ତ୍ରଣା କରିବ ରାଜା ନିଭୃତ ସ୍ଥାନରେ,
ସେତେବେଳେ ରମଣୀ କେ ନଥିବ ପାଶରେ ।
ଶାସନେ ଅସାଧୁ ଲୋକ ହେଲେ ଭରପୂର,
ନ୍ୟାୟ ପ୍ରତି ଅନୁରକ୍ତି ନରହେ ତାଙ୍କର ।
ଜଳ ସେଚନ ବ୍ୟବସ୍ଥା ନକଲେ ଦେଶରେ,
ଶସ୍ୟହାନି ହୁଏ ଭୂମି ବୃଷ୍ଟି ଅଭାବରେ ।
ସଂସାରେ ଅସତ୍ୟ କହି ନ ଅର୍ଜ ପାପ,
ଉପୁଜେ ତହିଁରୁ ସଦା ମାନସେ ସନ୍ତାପ ।
ଏକାଗ୍ରହୃଦୟ ବସି ବିଚାର ଆସନେ,
ନ୍ୟାୟାନୁଶରଣେ କର ସଦା ମନେ ମନେ ।
କର୍ମପଟୁ ହେବା ଲାଗି ଶାସ୍ତ୍ର ଅଧ୍ୟୟନ,
ନ କରି ମନୀଷ ଦେଖ ଲଭେ ଉଚ୍ଚାସନ ।
ସତ୍ୟ ଠାରୁ ବଳି ଧର୍ମ ନାହିଁ ଜଗତରେ,
ସତ କହ ନିତ୍ୟେ ଚଳ ଜୀବନରେ ।

## ଆଜିର ଦୁନିଆଁ

କଏ କେତେ ଦିନ ରହିବ ସଂସାରେ,
ଏକଥା କଏସେ ଚିନ୍ତିଲା କିବାରେ ?
ଅର୍ଥତୃଷ୍ଣା ସଦା ଘାରୁ ଅଛି ମୁଣ୍ଡ,
କ୍ଷମତା ନିମନ୍ତେ ଲୋକେ ଆଜି ରୁଣ୍ଡ ।
ପାପପୁଣ୍ୟ ଚିନ୍ତା ଯାଉଛି ଉଭେଇ,
ପର ପର ମଧ୍ୟେ ଲାଗିଛି ଲଢ଼େଇ ।
ଗରିବ ନାଆଁରେ ଲାଗିଛି ଲୁଣ୍ଠନ,
ଏସବୁ ସତତ ଦେଖୁଛି ନୟନ ।
ନିରୀହଙ୍କୁ ଏଣେ ଠକିବାରେ ବ୍ୟସ୍ତ,
ହିଂସ୍ର ହେଉଛନ୍ତି ଜନେ ଅପଦସ୍ତ ।
ମାତି ବିଳାସରେ ସାରି ଗନ୍ଧାଘର,
ପ୍ରଜାଙ୍କ ଉପରେ ବସୁଅଛି କର ।
ଗଣତନ୍ତ୍ର ହୋଲି ଭୁକ୍କାପଟେ ହୁରି,
ଭୋଟ ଲାଗି ଖର୍ଚ୍ଚ ଅର୍ଥ ଭୂରି ଭୂରି ।
ଭୋଟ ପାଇଁ ମୋଟା ନୋଟ କେ ଦେଖାଇ,
ଭୋଟରଙ୍କୁ ଡାକେ ଆଜି ଭାଇ ଭାଇ ।
ସ୍ୱାର୍ଥ ସଂଗ୍ରାମରେ ଦେଖ ଜବ ଗ୍ରସ୍ତ,
ହେଉ ଅଛି ଅଧ୍ୱ ରିହ ଅପଦସ୍ତ ।
କର ପରେ କର ବସେ ବାରଂବାର,
ଏଥି ପ୍ରତି ଯୁବ ହୁଅ ହୁସିଆର ।
କରୁଅଛି ମିଛ ପ୍ରତି ମୁଖେ ବସା,
ନଥାଏ ଖାତିର ହେଲେ ଲୋକ ହସା ।
ଚଉଦିଗେ ହିଂସା କରି ଅଭିନୟ,
କରି ନିରୀକ୍ଷଣ ଚମକେ ହୃଦୟ ।
ଛିଦ୍ର ଖୋଜି ବାରେ ମନକୁ ବଳାଇ ।
ଭାଷନ୍ତି ନେତାଏ ଦେଖାଇ ବଡାଇ,
କର୍ତ୍ତବ୍ୟ କରମେ ନାହିଁ କାରି ଲୟ ।
ଗୁରୁଉପଦେଶ ଭଜୁଛି ବିଲୟ ।

## ଅନ୍ତିମ ବେଦନା

ଜୀବନ ଯିବାକୁ ଅଛି ବାକି ଦୁଇଦିନ,
ଶ୍ଳଥ ଅବୟବ ଧୀରେ ଧୀରେ ଗତିହୀନ ।
ଆଖି କିଛି ଦିଶୁନାହିଁ ପଡ଼ିଲାଣି ଦନ୍ତ,
କରନ୍ତି ଜିଦ୍ ପୁତ୍ର ନାତି ହନ୍ତ ସନ୍ତ ।
'ମୋହର' ବୋଲି ଯାହାକୁ ଭାବୁଥିଲି ମନେ,
ନାସିକା କୁଞ୍ଚନ କରେ ମୋ ଦଶା ଦର୍ଶନେ ।
ବଦନେ ପୀୟୁଷ ଧରି ହୃଦେ ହଳାହଳ,
ସତ ଛାଡି ବିତାଇଲି ଜୀବନ କେବଳ,
ଅନ୍ତରେ ରହିବ ନାହିଁ କଡ଼ାଏ କଉଡ଼ି,
ଯେ ଯାହା ପଛରେ କହି ଦେବେ ତ ଘଉଡ଼ି
ଭାବୁଥିଲି ବନ୍ଧୁ ବୋଲି ଜୀବନେ ଯାହାକୁ,
ନ ଆସିଲି ଅସମୟେ ଲୋଡ଼ିଲେ ତାହାକୁ ।
ନୟନୁ ଲୋତକ ଧାର ଗଡ଼ିଲେ କାହାର .
ଆକାଶୁ ଛକନା ବୋଲି ଶୁଭେ ବାରବାର ।
ଆହା କରିବାକୁ ମୋତେ ଦେଖି ନାହିଁ ଜଣେ,
ପଡ଼ୋଶୀ ଅଛନ୍ତି ଦେଖ ଆଣି ଘରି କଣେ ।
ନେଇଗଲି କଏ ଆସି ହାତୁଁ କଣ୍ଠିକାଠି
କରିଥିଲେ ମନା ଅବା ବସିଥାନ୍ତା ଲାଠି ।
ଜାଣିରେ ମଣିଷ ସିନା ହେଉ ଲୋକହସା,
ବେଳୁଁ ଥିଲେ ହୁସିଆର ନପଡ଼ନ୍ତୁ ଏଦଶା ।
ପରର ଭେଟା ଭେଟି ମୁହୂର୍ତ୍ତେ ମାତର,
ଏଥି ଲାଗି ଜନେ କିମ୍ପା ଏତେ ହରବର ।
କାହିଁ ସେହି ଯଉବନ ଔଦ୍ଧତ୍ୟ ଯାହାର,
ସର୍ବନାଶ ହୋଇଅଛି ମଣିଷ ବେଭାର ।
ହାୟରେ ବିଧାତା ତୋରବଡ଼ ସର୍ଜ୍ଜନା,
ତୋ ବିନା କେ ହରିବ ମୋ ଅନ୍ତିମ ବେଦନା ।

-୦-

# ପାଣ୍ଡବ ବନବାସ

## ପ୍ରଥମ ସର୍ଗ

ପାଣ୍ଡବଙ୍କ ପରସନେ ନାନା କଜଣନ,
ଅବଲମ୍ବି ଦୁର୍ଯ୍ୟୋଧନ ହେବାରୁ ବିଫଳ ।
ଦ୍ୟୂତକ୍ରୀଡ଼ା କରିବାକୁ ମାତୁଳମର୍ଶନେ,
ଦୁଃଶାସନେ ଆଲୋଚନା କରିଲ ଗୋପନେ ।
ଜନକଙ୍କଠାରୁ ତହୁଁ ଆଣି ଅନୁମତି,
ଆରମ୍ଭି ଯୁଧିଷ୍ଠିର ସଙ୍ଗେ କପଟ ପୀଇତ ।
ଆଣିଲ ଲୋଡ଼ି ତାହାଙ୍କୁ ଆପଣା ନଗରେ,
କ୍ରୀଡ଼ିଲେ ସେ ୧ ମାଦ ରଖି ଅକ୍ଷଆନନ୍ଦରେ ।
ଖେଳୁ ଖେଳୁ ଯୁଧିଷ୍ଠିର ସର୍ବସ୍ୱ ହରାଇ,
ଥକା ହୋଇ ବସିଗଲେ ଅତି ଲାଜ ପାଇ ।
ଶକୁନିର ପ୍ରବଞ୍ଚନା ଦୁଃଶାର ଲାଞ୍ଛନା,
ଦେଇଥିଲ ଯୁଧିଷ୍ଠିର ଅନ୍ତରେ ବେଦନା ।
ପାଞ୍ଚାଳୀକ ପଣ ରଖି ଶେଷେ ଯୁଧିଷ୍ଠିର,
ଆରମ୍ଭିଲେ ପୁଣି ଖେଳ ମନ କରି ସ୍ଥିର ।
ଜାଣି ନପାରିଲେ ତିଳେ ଶକୁନି କପଟ,
ପଡ଼ିଗଲ ସଙ୍ଗେ ସଙ୍ଗେ ୨ ଅବକଟ ପଟ ।

ଦୁର୍ଯ୍ୟୋଧନ ବୋଲେ ଯାଇ ଜନ୍ମେ ଦୁଃଶାସନ,
ପାଞ୍ଚାଳୀକ ଟାଣି ଟାଣି ଆଣିଲ ତହନ ।
ବେଣୀମୁକୁଳିତା ବାଳା କାନ୍ଦନ୍ତି ବିକଳେ,
ପିନ୍ଧିବା ବସନ ଭିଜୁ ଅଛୁ ଅଶ୍ରୁଜଳେ ।
ଯୁଧିଷ୍ଠିର ପାଶେ ଥିଲେ ପାବନ କଣ୍ଠୀ,
ଗୁହାଁଲେ ସେ ଦୁର୍ହେଁ କରି ଆଖି ମିଟିମିଟି ।
ଥିଲେ ତହିଁ ଭୀଷ୍ମ କର୍ଣ୍ଣ ଶକୁନ୍ୟାଦି ବୀର,
କୃଷ୍ଣାର ଦୁର୍ଦ୍ଦଶା ଦେଖି ନ ଫିଟେ କା ଗିର ।
ମଦମତ୍ତ ଦୁର୍ଯ୍ୟୋଧନ କୃଷ୍ଣା ବିବସନେ,
ଆଦେଶିଲେ ଦୁଃଶାସନ ରେଷ ବହ୍ନି ମନେ ।
ଏକାନ୍ତେ ଦ୍ରୌପଦୀ ଆର୍ତ୍ତେ ସୁମରନ୍ତେ ହରି,
ଶ ନ୍ୟରୁ ବସନ ଖସି ହେଲ ତହିଁ ଭରି ।
ଗୋଟିକ ପରେ ଗୋଟିଏ ପଡ଼ିଲ ବସନ,
ଯୋଡ଼ାଇଲ ସଙ୍ଗେ ସଙ୍ଗେ ବାଳା ଅପଘନ ।
ସ୍ତମ୍ଭୀଭୂତ ହେଲେ ସର୍ବେ ଏ ରୂପ ଦର୍ଶନେ,
ମାତିଲେ ଦେଖଣାହାରୀ ମହିମା କୀର୍ତ୍ତନେ ।

---

୧ — ପଣ    ୨ — ବିପରୀତ

ମଧୁର ବଚନେ ଶୁଣି କପଟୀର
ନପଡ଼ ବଚନେ ତାର,
ଅମୃତ ଦେଲେ ସେ ବିଷମଣି ତାକୁ
କର ଦୂରୁ ପରିହାର ।
ଲଜ୍ଜାରୁ କଳଙ୍କ କ୍ଷୟରୁ କଲାଭଳ
ଅବୟବରୁ ଆଳସ୍ୟ,
ନକଲେ କରମ ଉପୁଜେ ଦୁଶ୍ଚିନ୍ତା
ଦିଅଇ କ୍ଲେଶ ଅବଶ୍ୟ ।
ପ୍ରାଚୁର୍ଯ୍ୟରେ ବର୍ତ୍ତି କେ ପାଉଛି ସୁଖ
ନକଲେ ଜୀବନେ ଶ୍ରମ,
ପ୍ରବେଶି ଶରୀରେ ନାନା ରୋଗ ଆସି
ହୁଅଇ ଶେଷରେ ଯମ ।
ବସୁନ୍ଧରା ତଳେ ହୁଏକି ଉଦ୍ଭିଦ
ଶ୍ରମ ବିନା ଜନ କାର
ବୀଜ ବପନେ କି ଖାଦ୍ୟ ହୁଏ କେବେ
ନକଲେ କୃଷି କେଦାର ।
ସ୍ୱକୀୟ ଧନରେ ଲଭିଲେ ସନ୍ତୋଷ
ହୋଇଥାଏ ସୁଖକର,
ପରସ୍ୱକୁ ସ୍ପୃହା କରୁଥାଏ ଯିନା
ନିର୍ଭୟ ନିରନ୍ତର ।
ଦୁଷ୍ଟ ଦୁଃଶାସନ ହୋଇ ଅବସନ୍ନ
କରନ୍ତେ ଉପବେଶନ,
ଦ୍ରୁପଦ ନନ୍ଦନୀ ଦେଖାଇ ତା ବେଣୀ
ଭାଷିଲା କୋପେ ଏସନ,
"ଚିରଦିନ ଲାଗି ଗର୍ବ ଅବା ଦମ୍ଭ
ନରହେ କାହାର ଭବେ,
ଦୁଃଶାର ଶୋଣିତେ ବାନ୍ଧିବ ଏ ବେଣୀ
ଇଚ୍ଛନ୍ତୁ ହେତୁ ୧କିତବେ ।"
ପାଞ୍ଚାଳୀ ବଚନେ ଶୁଣି ଦୁଃଶାସନ,
କହେ ତାକୁ କ୍ରୋଧଭରେ
"କୌରବ ନଗରେ ୨ପ୍ରେଷ୍ୟା ହେବା ଲାଗି
ଜନ୍ମିଛୁ ତୁହି ମର୍ତ୍ତ୍ୟରେ ।"

ଏସନ ସମୟେ ୧ଲୋମାଳକା ଭଟ
ଶୁଭିବାରୁ ଉଚ୍ଚସ୍ୱରେ,
ବିଦୁର ଗାନ୍ଧାରୀ ୨ଆମ୍ବିକେୟ ପାଶେ
ଯାଇ ନିବେଦିଲେ ତ୍ୱରେ ।
ଶୁଣି ନିବେଦନ ସାନ୍ତ୍ୱନା ପ୍ରଦାନ
କରି ପାଞ୍ଚାଳୀକି ଆଗେ,
କଲେ ତିରସ୍କାର କୁମାର ମାନଙ୍କୁ
ରାଜନ ଅତି ବିରାଗେ ।
ମୁକୁଳାଇ ପାଶୁ ପାଣ୍ଡବ ମାନଙ୍କୁ
ଫେରାଇ ଜିତ ପଦାର୍ଥ
ଲେଉଟିବା ଲାଗି ଅନୁଜ୍ଞା ଦେବାରୁ
ପ୍ରଫୁଲ୍ଲିତ ୩ପ୍ରଜାସାର୍ଥ ।
ଚଢ଼ିଲେ ସେମାନେ ଯାଜ୍ଞସେନୀ ସହ
ଦିବ୍ୟ ମାଗି ୪ସ୍ୟନ୍ଦନେ,
ଆରୋହି ଗମିଲେ ବୈରାଟା ବସୁର
ଇନ୍ଦ୍ରପ୍ରସ୍ଥ ହୃଷ୍ଟମନେ ।
ଏଘଟଣା ଶୁଣି ଦୁର୍ଯ୍ୟୋଧନ କର୍ଣ୍ଣ
ଶକୁନି ସହିତ ଯାଇ,
୫ପରବ୍ରତ ପାଶେ ହୋଇ ଉପଗତ
ଭାଷିଲେ ତାଙ୍କୁ ବୁଝାଇ ।
"ନବ ୬ଆଶୀବିଷ ପରାଏ ପାଣ୍ଡବେ
ଗଲେଣି ସ୍ୟନ୍ଦନେ ଚଢ଼ି
ପଶାଖେଳେ ଜିତି ନପଠିଲେ ବନେ
ବଳ ତାଙ୍କ ଯିବ ବଢ଼ି ।
୭ଆଶୀଯୁ କ୍ରୁଦ୍ଧ- ଉରଗ ଗଳାଇ
ବସୁଧାରେ କେ ଜନ୍ମରେ,
ଜୀବନ ଧରିବା ଦେଖିଛ କି କାହିଁ
କହନ୍ତୁ ଅମ୍ଭ ଆଗରେ ?
ଅନିଷ୍ଟାଚରଣ କରିଛ ଯାହାକି
ସଙ୍ଗରେ ପାଞ୍ଚାଳୀ ପ୍ରତି,
ପସୋରି ଯିବକି ପାଣ୍ଡବ ମାନସୁ
ଦେବେକି କ୍ଷମା ସମ୍ମତି ?

୧ ପ୍ରତାରକ, ଜୁଆଖେଳାଳୀ ୨ ଦାସୀ

୧ବଳୁଆ ୨ଧୃତରାଷ୍ଟ୍ର, ୩ସମୁଦ୍ର, ୪ରଥ, ୫ଧୃତରାଷ୍ଟ୍ର, ୬ସର୍ପ ୭ ବିଷଦନ୍ତଯୁକ୍ତ

ଏଣୁ ଅନୁମତି    ଦିଅନ୍ତୁ ଆମ୍ଭଙ୍କୁ
ଖେଳିବାକୁ ଆଉଥରେ,
ହାରିଲେ ପାଣ୍ଡବେ    ଦ୍ୱାଦଶ ବରଷ
ରହିବେ ବନଭିତର ।
ଆଉ ବର୍ଷେ ଟିଏ    ପ୍ରଚ୍ଛନ୍ନ ଭାବରେ
ପାଇବେ ଯେବେ କଟାଇ,
ନ ଭୁଆଇ କଲି    ଉଲ୍ଲସିତ ଚିତ୍ତେ
ରାଜ୍ୟ ଦେବୁ ଫେରାଇ ।"
ଏକାଳେ ପ୍ରବେଶି    ଜନନୀ ଗାନ୍ଧାରୀ
କଲେହେଁ କେତେ ବାରଣ,
ନ ବଳିଲା ମନ    ନରପତିଙ୍କର
କରିବାକୁ ଆଚରଣ ।
ଦୁର୍ଯ୍ୟୋଧନ କର୍ଣ୍ଣ    ଶକୁନି ଉଦନ୍ତେ
ନରପତିଙ୍କି ମନାଇ
ପାଣ୍ଡବ ୧ନିକଟା    ପେଠାଇଲେ ଚର
ଆଣିବାକୁ ବାହୁଡ଼ାଇ ।
ବହୁଦୂରଗତ    ପାଣ୍ଡୁସୁତମାନେ
ପ୍ରଣିଧି କରି ଦର୍ଶନ,
ପୁଚ୍ଛନ୍ତେ ବୋଇଲା,    "ପୁନଶ୍ଚ କ୍ରୀଡ଼ନେ
ଅନୁଜ୍ଞା ଦେଲେ ରାଜନ ।"
ଏ ବଚନ ଶୁଣି    ପ୍ରଫୁଲ୍ଲିତ ହୋଇ
ଲେଉଟିଲେ ଯୁଧିଷ୍ଠିର,
ହେମମୃଗ ପଛେ    ଯେସନ ଆତୁରେ
ଧାଇଁଥିଲେ ରଘୁବୀର ।
ପାଣ୍ଡବମାନେ କର    ପ୍ରବେଶି ସଭାରେ
କରନ୍ତେ ଉପବେଶନ,
ହରଷେ ଶକୁନି    ରାଜ ଦୁର୍ଯ୍ୟୋଧନ
ତାପାର୍ଶ୍ୱେ ଦେଲେ ଆସନ ।
ଦୁହିଙ୍କି ଅନାଇଁ    ପଣ ସମାତୁର
ଭାଷେ ଶକୁନି ଏପରି,
"ଜନକରେ ଯେ ଜୟୁ    ବାରବର୍ଷ ବନେ
ଯିବ ପରିବାର ଧରି ।

ବରଂପେ ଉଦନ୍ତେ    ରହିବ ପ୍ରଚ୍ଛନ୍ନେ
ବାସ୍ତୁସଜ୍ଜନ ପ୍ରଦେଶ,
ପଡ଼ିଗଲେ ଜଣା    ପୁନଶ୍ଚ ସେପରି
କରିବେ ବନେପ୍ରବେଶ ।"
"ତଥାସ୍ତୁ ଉଭୟେ    ବୋଲନ୍ତେ ଶକୁନି
ନିକ୍ଷେପିଲା ଅକ୍ଷ ସବେ,
ଖଳର ଛଳନା    କେବେ ମହାମନା
ବୁଝି ପାରିବ କି ଲବେ ।
"ଜିଣିଲି ବୋଲି ସେ    ଭାଷନ୍ତେ ତକ୍ଷଣେ
ଯୁଧିଷ୍ଠିରଙ୍କୁ ଅନାଇଁ,
ପାଣ୍ଡବ ସତତ    ହେଲେ ସଜବାଜ
ବନେ ତହୁଁ ଯିବା ପାଇଁ ।
ପାଣ୍ଡବ ଘଟନା    କୌରବ ବିଭବ
ଏ କାଳେ ଦୁଃଶା ଦେଖାଇ ,
ଡାକି ପାଞ୍ଚାଳୀକି    ନୃଶଂସ ବଚନ
ଭଣିଲା ଗୁପ୍ତ ଫୁଲାଇ ।
ଅର୍ଥନାଶେ ଯିନା    ହୁଏ ଦୈନ୍ୟ ଜାତ
ଅର୍ଥ ବୃଦ୍ଧିରେ ଗର୍ବ,
ଅର୍ଥକାମୀ ଭବେ    ଇଚ୍ଛନ୍ତି ଦେବାକୁ
ଅପରକୁ ପରାଭବ ।
ମୂର୍ଖ ସମାଗମେ    ମୋହ ହୁଏ ଜାତ
ସାଧୁ ସହବାସେ ଧର୍ମ,
ଖଳର ସଂସର୍ଗ    ଆସିଲେ ମଣିଷ
ଉପୁଜେ ନାନା ଦୁଷ୍କର୍ମ ।
ଦୁଃଶାର ବଚନେ    ଶ୍ରବଣେ ପାବନୀ
କରି ତାକୁ ତିରସ୍କାର,
"ଭଣିଲା ରଣେ ତୋ    ମୁଣ୍ଡ ଗୁଣ୍ଡ କରି
ଦେବ ତୋତେ ଉପହାର ।
ନିବାରିବ ତୃଷା    ୨ଫଣିପ୍ରିୟ ସୁତ
୩ଗୋଲକପୁତ୍ର ରୁଧିରେ,
୪ସତ୍ୟସନ୍ଧା ବେଣୀ    ତୋ ଶୋଣିତ ଦେଇ
ବାନ୍ଧିବ ପୁଣି ଅଚିରେ ।

୧ସମୀପ

୨ ପବନର ପୁତ୍ର ଭୀମ ୩ଦୁର୍ଯ୍ୟୋଧନ, ୪ ଦ୍ରୌପଦୀ

କର୍ଣ୍ଣର ନନ୍ଦନ୍ତା ହେବ କପିଧ୍ୱଜ ୧
ସହଦେବ ଶକୁନିର,
କହେ ପୁନରପି ଏ ସଭା ମଧ୍ୟରେ
ନୋହିବ ବୃଥା ଏ ଗିର" ।
"ବୋଲେ ସହଦେବ ଶକୁନିକ ବୁଦ୍ଧି
ରେ ଗାନ୍ଧାର କୁଳଙ୍ଗାର,
ଅକ୍ଷ ବୋଲି ଯାହା ଭାବୁ ମନେ ମନେ
କରିବ ପ୍ରାଣ ସହାର ।
ଦୁଃଖରେ କାତର ମୁକ୍ତବେଣୀ କୃଷ୍ଣା
୨ ଶ୍ୱଶ୍ରୂ ସନ୍ନିହିତ ହୋଇ,
ବିଦାୟକାଳୀନ ପ୍ରାର୍ଥନା କରିଲେ
ଚରଣେ ମସ୍ତକ ଥୋଇ ।
ସୁତମାତଙ୍କର ତାଦୃଶ ଅବସ୍ଥା
ଦର୍ଶନେ ମାତା ଶୋକରେ,
ଭାଗ୍ୟ ଦୋଷ ବୋଲି କହି ଅଶ୍ରୁ ସିଞ୍ଚିଲେ
କୁମାରମାନଙ୍କୁ ଖରେ ।
ତନୁଜମାନଙ୍କ ତାଦୃଶ ଦୁଃଖରେ
ଧିକ ଜନନୀର ପ୍ରାଣ,
ବନବାସକ୍ଲେଶ ବାସୁଦେବ ବିନା
କରିବ କେ ପରିତ୍ରାଣ ?
ନବଘନ ତତ୍ରେ ବନେ କୃଷ୍ଣାସଙ୍ଗେ
ଗମନ୍ତେ ପାଣ୍ଡୁନନ୍ଦନେ,
ଆଦ୍ୟୋପାନ୍ତ ଶୁଣି ଲଗିଲେ ନାଶିଏ
କୌରବ କୁଳାଙ୍ଗନେ ।

## ଦ୍ୱିତୀୟ ସର୍ଗ

ହାୟରେ ଦଇବ ନାନାମତେ ଯାହା
ଦେଉ ଛୁ ନିତ କଷଣ,
ତେତୁନାହିଁ ଲବେ ମନିଷ ଅନ୍ତର
ଦେଖି ତୋ ଦୁର୍ଦ୍ଧର୍ଷ ପଣ ।
ଦୁର୍ଗା ପାଣ୍ଡବେ ଗମନ କାଳରେ
୩ ପ୍ରାକାରେ ବସି ବାୟସେ,

୧ ଅର୍ଜୁନ, ୨ ଶାଶୁ, ୩ ପାଚେରି,

କୁରୁବଂଶ ଧ୍ୱଂସ ସଙ୍କେତ ଦେଲେ କି
ଚିତ୍କାରି କରି ୧ ରଭସେ ?
ଏକାଳେ ସୁରର୍ଷି ବଦାୟୁସୁ ଆସି
କଉରବଙ୍କ ବିନାଶ,
ଘଟିବ ବୋଲି ସେ ଶୁଣାଇ ସକଳ
ଗମିଲେ ପୁଣି ଆକାଶ ।
ବିଭବ ବର୍ଜିତ ପାଣ୍ଡୁସୁତମାନେ
ସେ ଦିନ ସାୟଂକାଳରେ,
ଅନାହାରେ ରହି ୨ ଯକ୍ଷବାସ ତଳେ
ଯାପିଲେ ନିଶା ଦୁଃଖରେ ।
ବିଭାବରୀ ଅନ୍ତେ ୩ ପିଣ୍ଡସନବନ୍ଧ
କରନ୍ତେ ତହିଁ ପ୍ରବେଶ,
ମଧୁର ବଚନେ- ତୋଷି ପୁଣ୍ୟଶ୍ଳୋକ
କହିଲେ କୁଟୁମ୍ବ କ୍ଳେଶ ।
ଶୌନକ ନାମରେ ୪ ଶମୀଗର୍ଭ ଜଣେ
ତହିଁ ହୋଇ ଉପନୀତ,
ଧର୍ମ ସମ୍ବନ୍ଧରେ କଲେ ଆଲୋଚନା
ଧର୍ମରାଜଙ୍କ ସହିତ ।
ବୋଲନ୍ତି ଶୌନକ ବିପର୍ଯ୍ୟସ୍ତ ଭାବ
ଦେଖୁଛୁ ସଂସାରେ ନିତ,
ସାଧୁଏ ଯାହାକୁ ତେଜନ୍ତି ଅସାଧୁ
ତହିଁରେ ଲଭନ୍ତି ପ୍ରୀତି ।
କର୍ମମଧ୍ୟ ଭବେ ସିଦ୍ଧି ଲଭ ଲାଗି
ଇନ୍ଦ୍ରିୟ କର ନିଗ୍ରହ,
ସଂଯମ ପ୍ରଭାବେ ଲଭିବ ଶେଷରେ
ପରମେଶ ଅନୁଗ୍ରହ ।
ଅର୍ଥଲଭ ଆଶେ ଅଥବା ବିନାଶେ
ନ ଭୋଗେ କିଏ କଷଣ ?
ତେଣୁ ହେ ୫ ଅବସ ବୀତସ୍ପୃହ ହୋଇ
କରନ୍ତୁ ପ୍ରାଣ ଧାରଣ ।
ନୋହିବ ମଣିଷ ସ୍ନେହ ଅନୁବର୍ତ୍ତୀ
ସ୍ନେହରୁ ଜାତ ବିକାର,

୧ ଶୀଘ୍ର, ୨ ବଟଗଛ, ୩ ଭିକ୍ଷୁକ, ୪ ବ୍ରାହ୍ମଣ, ୫ ରାଜା

ମାନସିକ ଦୁଃଖ ପ୍ରଶମିତ ସିନା
କଲେ ଚିନ୍ତା ପରିହରି,
ନୃପରୂପ ବୃକ୍ଷେ କୃପା ପୁଷ୍ପ ଫୁଟି
ରଞ୍ଜିଲେ ପ୍ରଜା ମାନସ,
ରାଜ ଶାସନରେ ଲଭି ତୃପ୍ତି ସଦା
ସରବେ ହୁଅନ୍ତି ବଶ ।
୧ ଷଣ୍ଢ ହେଲେ ପତି ଲଭେ ଅନାଦର
କାମିନୀଠାରୁ ଯେସନ,
ପ୍ରଜାପୁଞ୍ଜଠାରୁ ଶୁଣନ୍ତି ଧିକ୍କାର
ମହୀଶ ନୃପ ତେସନ ।
ବ୍ୟାଧିଭୟଗ୍ରସ୍ତ ମୃଗକୁଳ ପରି
ପ୍ରଜାପୁଞ୍ଜ ହେଲେ ତ୍ରସ୍ତ,
ସସାଗରା ଧରା ନୃପତି ଅବଶ୍ୟ
ହୁଏ ସଦା ଅପଦସ୍ତ ।
ଅନ୍ୟାୟରେ ବଶ ହେଲେ ନରପତି
ସମୂଳେ ଲଭେ ବିନାଶ,
୨ ଜଳଦପଟଳ ପ୍ରଭଞ୍ଜନ ଯୋଗେ
ଲଭଇ ଯେସନ୍ତେ ୩ ପର୍ଯ୍ୟାସ ।
ସାଧୁ ଆଚରିତ ଧର୍ମ ଆଚରଣେ
ରଜାର ବଢେ ସମ୍ପତ୍ତି,
ଐଶ୍ୱର୍ଯ୍ୟ କାରଣ ଧର୍ମ ସିନା ଭବେ
ଅଧର୍ମ ଲଭେ ବିପତ୍ତି ।
ଦୁର୍ଜ୍ଜୟ ଇନ୍ଦ୍ରିୟ ଅଧୀନେ ଦୁର୍ବୋଧ
ଆଶ୍ରି ନସୃଜ ଅନର୍ଥ,
ଯଥାର୍ଥ ଧର୍ମକୁ ଉପେକ୍ଷା କରି ସେ
ଲଭଇ ଅନ୍ୟାୟ ଅର୍ଥ ।
କ୍ରୋଧ ମଣିଷର କରଇ ଶ୍ରୀଭ୍ରଷ୍ଟ
ରୂପକୁ ଗ୍ରାସଇ ଜରା,
ଲଜ୍ଜାକୁ ହରଇ କାମ ଅବିରାମ
ନାଶଇ କାର୍ଯ୍ୟକୁ ଡର ।
ଶୀଳତାରେ ଭଦ୍ର ବୋଲା ହୁଏ ଜାତ
ସାଧୁତାର ବ୍ୟବହାରେ,

ଶତ୍ରୁ ମିତ୍ର କଏ ମିଳେ ପରିଚୟ
ଆପଦେ ସିନା ସଂସାରେ ।
ଅମୃଜ୍ଞାନ ଲଭି ସରଳ ସ୍ୱଭାବେ
ଚଳଇ ଭବେ ସଜ୍ଜନ,
ଅନ୍ୟାୟ କାର୍ଯ୍ୟକୁ ନ୍ୟାୟଯୁକ୍ତ ବୋଲି
ଭାବଇ ସଦା ଦୁର୍ଜ୍ଜନ ।
ଶୌନକ ପଣ୍ଡିତ ଭଣିତ ଶ୍ରବଣେ
ପୁରୋହିତଙ୍କୁ ଡକାଇ,
ନୃପେ ବଚନରେ ଯୁଧିଷ୍ଠିର ତାଙ୍କୁ
କହିଲେ ସବୁ ବୁଝାଇ ।
ପ୍ରତ୍ୟୁଷରୁ ଉଠି ବାନ୍ଧବସୁ ପୂଜା
କଲେ ନରହିବ କ୍ଳେଶ,
ବୋଲି ଚିନ୍ତା କରି ପୁରୋହିତ ଧୌମ୍ୟ
ଦେଲେ ତାଙ୍କୁ ଉପଦେଶ ।
ଗାତ୍ରୋତ୍ଥାନ କରି ଅତି ପ୍ରତ୍ୟୁଷରୁ
କଲେନ୍ତି ରାଜା ସେପରି,
ଅନ୍ନର ଅଭାବ ନରହିଲା ପୁଣି
୪-ପ୍ରେଷ ଗଲା ଅପସରି ।
ବିପ୍ରପରିବୃତ ପାଣ୍ଡବ ଏମନ୍ତେ
କୃଷ୍ଣା ପୁରୋହିତ ସହ,
କାମ୍ୟକ କାନନେ କରିଲେ ପ୍ରବେଶ
ଲଭି ଭାନୁ ଅନୁଗ୍ରହ ।
ସମୃଦ୍ଧି ସମ୍ପନ୍ନ ଅରଣ୍ୟ ଭିତରେ
ପାଣ୍ଡବେ ଥିବା କାଳରେ,
ଉପନୀତ ହୋଇ ବିଦୁର ସେଠାରେ
ସତ୍କୃତ ହେଲେ ଆଦରେ ।
ତହୁଁ ପୁଣ୍ୟଶ୍ଳୋକ ପୌରୁ ପଚାରୁ
ଆଗମନର କାରଣ,
ସକଳ ବୃତ୍ତାନ୍ତ ବର୍ଣ୍ଣିଲେ ଆଦ୍ୟରେ
କଲେ ସେ ତାହା ଶ୍ରବଣ ।
ଏଣେ ୫ ପଟ୍ଟବ୍ରତ ନିଜ ଭ୍ରମ ବୁଝି
କରି ପରିତାପ ଅତି,

୧ ନପୁଂସକ ୨ ମେଘସମୂହ ୩ ବିନାଶ

୪-କ୍ଳେଶ ୫ ଧୃତରାଷ୍ଟ୍ର

ଏଥିଉତ୍ତାରୁ ଧୃତରାଷ୍ଟ୍ର ସଞ୍ଜୟଙ୍କୁ ଡାକି
ପେଷିଲେ ବନେ ତ୍ୱରିତ ।
ଶ୍ରୀ ବିଦୁରଙ୍କୁ କାମ୍ୟକ କାନନେ
ପାଣ୍ଡବ ସନ୍ନିଧାନରେ,
ମଧୁର ଆଳାପେ ଯାପିଲେ ଶର୍ବରୀ
ସକଳ ଅତି ସୁଖରେ ।
ସଞ୍ଜୟ ବିଦୁର ତହୁଁ ବିଦା ମାଗି
କଲେ ହସ୍ତିନା ଗମନ,
ପ୍ରବେଶି ନଗରେ ଅମ୍ବିକା ସୁତଙ୍କୁ
ସାକ୍ଷାତ କଲେ ବନ୍ଦନ ।

## ତୃତୀୟ ସର୍ଗ

ପାଣ୍ଡବ ଦର୍ଶନ ଇଚ୍ଛାରେ କେଶବ
ପ୍ରବେଶି କାମ୍ୟକ ବନେ,
କୁଳ ଅବତଂସ ଧର୍ମ ରାଜଙ୍କୁ ସେ
ତୋଷିଲେ ଅଭିବାଦନେ ।
"ବୋଇଲେ ଉଦନ୍ତେ କୌରବେ ପକ୍ଷୀୟ
ସକଳ ରଣେ ନିହତ
ହୋଇ ରଣଚଣ୍ଡୀ- ତୃଷା ମେଣ୍ଟାଇବେ
ସେହି ମାନଙ୍କ ରକତ ।"
କୁରୁସଭା ତଳେ ଯାହା ଅପମାନ
ଦେଇଥିଲା ଦୁଃଶାସନ,
[2]ଶିଖଣ୍ଡିନୀ ତାହା ଭାଷିଲେ ଆତୁରେ
କରି ଲୋତକ ମୋଚନେ ।
ବୋଧକରି କୃଷ୍ଣ କୃଷ୍ଣାକୁ କହିଲେ
"ନକର ଶୋଚନା ଲବେ
କୁରୁବଂଶ ଧ୍ୱଂସ ଘଟିବ ଅବଶ୍ୟ
ଦେଖିବେ ସଭିଏ ଭବେ ।
ଅର୍ଜ୍ଜୁନ ନାରାଚେ ନିଧନ ଲଭିବେ
ରଣେ ସେହି ମନମତ
କୁମଭଳ ଶୋକେ ହୋଇବେ ଆତୁର
ତାଙ୍କର ବଲ୍ଲଭୀତତ ।

ଏଡ଼ାଭୃଶ କଷ୍ଟ ନୁହନ୍ତା ତୁମ୍ଭର
ଥିଲେ ମୁଁ ଦ୍ୱାରକାପୁରେ,
ଦ୍ୟୂତକ୍ରୀଡ଼ା ବିରୁଧେ ଦୁଃଖପ୍ରଦ ମଣି
ରହନ୍ତି ତା ପାଶୁ ଦୂରେ ।
ପାଣ୍ଡବ କୃଷ୍ଣାକୁ ବୁଝାଇ ଏସନ
କରନ୍ତେ କୃଷ୍ଣ ପ୍ରସ୍ଥାନ,
ଦ୍ୱୈତବନେ ଯାଇ ପାଣ୍ଡୁସୁତେ କଲେ
ଘନକାଳେ ଅବସ୍ଥାନ ।
ରସାରେ ପ୍ରାବୃଷା କାଳ ପ୍ରବେଶ,
ପ୍ରସ୍ଫୁଟ ମଣ୍ଡିତ[1]ଶିଖୀ ପ୍ରଦେଶ,
ସରୋବରେ ମୋଦେ ଖେଳେ[2]ବରଟା,
ଘନ ଦେଖି[3]ଶିଖୀ ଦେଖାଏ ଛଟା,
[4]ଅଜସ୍ର ଜଳ ଭିତରେ
ଟିପି ଟିପି ନାଦେ ବଜାଉଛି ଘଣ୍ଟ
ନିଶି ଯାପି ଉଜାଗରେ ।
କେବେ ଝିପି ଝିପି କେବେ ଆସର[5]
ହୋଇ ପରିପୂର୍ଣ୍ଣ ମାରେ କାସାର[6]
ବସିଛି [7]ବିଶଙ୍କୁ ତରୁ ଡାଳରେ
ନାଚିଅଛି ମନ ଘନ ରସରେ[8]
[9]ପ୍ରିୟକ ପ୍ରିୟକ ରସି
ଗୁଞ୍ଜରି[10]ପ୍ରିୟକ କରେ ମଧୁପାନ
ତଥିପରେ ମୋଦେ ବସି ।
ଘନ ଘନ [11]ଅଘ ଶବ୍ଦ ଶ୍ରବଣେ
ସବଳ ଡାହୁକ ବାଉଁଶ ବଣେ
ବନ ପଲ୍ଲବରେ ଦେଲା ଦୋଳାଇ
ପାଦପ ଲତାଏ ଅଙ୍ଗ ଲୁଚାଇ,
[12]ନର୍ତ୍ତକ କୁଟ ଦେଶରୁ
ପୁଲକେ ବାହାରି ନର୍ତ୍ତକୀ ସହିତ
ପକାଇଲା ଭଙ୍ଗି ତରୁ ।
ଦେଖି ଶତରୂପ ମେଘ କୋଳରେ
ନାଚ ଉଠିଲେଣି ପିଲେ ମୋଦରେ
ମାରୁତ ବିଜୁଳି ଥରିକୁ ଥର

---

[1] ବିଦୁର [2] ଦ୍ରୌପଦୀ

[1] ବନ, [2] ରାଜହଂସ, [3] ମୟୂର, [4] ବେଙ୍ଗ,
[5] ବୃଷ୍ଟିପାତ, [6] ସରୋବର, [7] ଗୃଡକ, [8] ପାଣି,
[9] କଦମ୍ବଫୁଲ, [10] ଭ୍ରମର [11] ମେଘ, [12] ହାଣ୍ଡି

୧ ବର୍ହୀ ୨ ବର୍ହ ତୋଳ ଝାଡ଼ିଲା ପର,
ବର୍ଷା କହିଲା ପବନ
୩ ଆନୂପାନୂପଙ୍କୁ ଦେଇ ସୁଖ ଯିନା
କର୍ମେ ଜନ ଅପଘନ ।
୪ ବନ୍ଯୀଦେଶୁ ବହେ ଝରଣା ଜଳ
ପିଇଲେ ମନାଏ ପେଟ ଶୀତଳ,
୫ ଶତଧାର ନାଦେ କମ୍ପଇ ଧରା
ବନସାରା ପୁଣି ନପଡ଼େ ଖରା,
ଅନିଳ ବଳ ନେଖାଇ
ଝଙ୍କି ଘରଦ୍ୱାର ମହା ମହା ଦ୍ରୁମ
ସକାଳେ ଦେଇ ଭସାଇ ।
କାହିଁ ଅଇଲା ଏ ବାଦଲ କାଳ,
ଭୁଜଗମାନଙ୍କ ହେଲାଣି କାଳ
କଷ୍ଟଙ୍କାବଡ଼ତ ପେଟ ବକନେ
ମୁଠେ ଅନ୍ନ ଲାଗି ଗଡ଼ନ୍ତି ତଳେ,
ବୁଝାମଣା ଦଇବର
କେ ବୁଝିବ ଭବେ ଏ କପଟ ସ୍ୱତ
ତା ହୃଦ ସଦା ପଥର ।
୬ କୀନାଶମାନସ ବଡ଼ ଆନନ୍ଦ
ବର୍ଷିଲେ ମନାଏ ଲାଗିବ ଖନ୍ଦ,
ମନ ଫୁଲାଣିଆ ସଙ୍ଗୀତ ଗାଇ
ଲାଗିଛି କେଦାରେ କଛୁ ନଖାଇ
ସମ୍ଭାଳେ ଉଦର ଦାଉ
ଯେତେବେଳେ ଯାହା ମିଳେ ତା କପାଳେ
ଗିଳଇଏ ଠାଉ ଠାଉ ।
କେତେ ଭୃଙ୍ଗୀବା ହରଷେ ଅତି
ଭ୍ରମିଲେଣି ୭ ଧର ଦେଶେ ସମ୍ପ୍ରତି,
ତରୁବରେ ୮ ଶପ ବଅନ୍ନ ଖାଇ
ଦେଖିଲେ ମଣିଷ ଯାନ୍ତି ପଳାଇ,
ଦୁର୍ବଳର ସଦା ଡ଼ର
ଦେଖିଲେ ବଳୁଆ ଛପିଯାଏ କାହିଁ
ହେବ ବୋଲି ହରବର ।

୧ ମୟୂର, ୨ ପୁଚ୍ଛ, ୩ ମହିଷ, ଗଣ୍ଡାର, ୪ ବନ, ୫ ବଜ୍ର, ୬ ଚଷା, ୭ ପର୍ବତ, ୮ ବାଳତୃଣ, ଘାସ

ଜଳେ କରୁଥିବା ୧ ଶଫରୀକେଳୀ
ଦର୍ଶନେ ପିଲାଏ ବାନ୍ଧିଲେ ମେଳ,
ଘଡ଼ିକେ ଆନନ୍ଦ ଘଡ଼ିକେ ଦୁଃଖ
କେ ପାଏ ସଂସାରେ ଅନିଶ ସୁଖ,
ଝେବୋକୁ ମୋଦେ ମୀନ
ଆପଣା ବୁଦ୍ଧିରେ ସାରୁଛି ସଂସାରେ
ଗର୍ବକ ବାପୁଡ଼ା ଦିନ ।
ଅସିଲାଣି ବଢ଼ି ଉଛୁଳି କୂଳ
ଫୋପାଡ଼େ ଉପାଡ଼ି ଝଟପୀମୂଳ,
କେକାରେ ଶୁଣି ଭୁଜଗକୁଳ
ଲୁଚି ହେବାକୁ ହେଲେ ଆକୁଳ,
କୋଟରେ ଭିତରେ ପଶି
ଉଣ୍ଡୁଛନ୍ତି ସଜ ତଳମା ପ୍ରବେଶେ
ଚଳାଇବେ ଧୀରେ ଖସି ।
ପ୍ରକୃତି ଶୋଭା କର ଦର୍ଶନ
ଲଖ ନାହିଁ ତହିଁ ପାଶ୍ଚାତ୍ୟମନ,
ଓଲଟ ପାଲଟ ଦୁନିଆଁ ମତ
ଏଥିଲାଗି କମା ଲଗିଛି ପ୍ରୀତ,
ଅଛି ଯା କପାଳେ ଯାର
ମନ୍ଦ ତେଜ ଯିନା ଆଚରିଲେ ଭଲ
ମିଳିବ ସୁଖ ଅପାର ।
ଦ୍ୱୈତ ବନରେ କରିଲେ ନିବାସ
ଯୁଧିଷ୍ଠିର ମହାମତି,
ବହି ଯାଉଅଛି ପାଦଦେଶେ ଯାର
ପୁଣ୍ୟତୋୟା ସରସ୍ୱତୀ ।
ପୁରାଣ ପ୍ରସିଦ୍ଧ ମାର୍କଣ୍ଡେୟ ଋଷି
ସେ ତପିନେ ଦିନେ ଆସି,
ଦେଲେ ପରାମର୍ଶ ପାଣ୍ଡବେ "ଅଧର୍ମେ
ନହୁଅ କେବେ ପ୍ରୟାସୀ ।
ବଳଅଛି ବୋଲି ତେଜିଲେ ଧରମ
ଦାରୁଣ କଷ୍ଟେଣେ ପଡ଼ି,
ଦେଖନ୍ତି ସରବେ ଦୁନିଆଁ ଭିତରେ
ଯାଉଛି ମଣିଷ ସଡ଼ି ।

୧ ମାଛ

୧ଶିଖୀସହ ବାତ ହେଲେ ସଂଯୋଜିତ
ପ୍ରଦଗ୍ଧ ଅଟବୀ ଯଥା,
କ୍ଷାତ୍ରବଳେ ବ୍ରହ୍ମ- ତେଜ ସଂଯୋଗରେ
ଶତ୍ରୁ ଏ ଜଗତେ ତଥା ।"
ଏହି ଆମର୍ଶଣ ଦେଇ ମାର୍କଣ୍ଡେୟ
କରନ୍ତେ ତହୁଁ ପ୍ରସ୍ଥାନ,
ବିଷଣ୍ଣ ବଦନା ୨ପାର୍ଷତୀ ଭାଷିଲେ
ପୁଣ୍ୟଶ୍ଳୋକ ସନ୍ନିଧାନ ।
"ଜାଣନ୍ତି ଆପଣ ଦୁଷ୍ଟ ଦୁର୍ଯ୍ୟୋଧନ
ନକରି ଛଳେ ଶୋଚନା,
କୁରୁସଭାତଳେ ନିର୍ଲଜ୍ଜ ଭାବରେ
ଦେଲା ଯା ଅବମାନନା ।
ବିପିନେ ପ୍ରବେଶି ସମ୍ଭର କୋପକୁ
ସହୁଛୁ ଯାହା କଷଣ,
ପ୍ରତିକାର ଲାଗି ନକଲେ ଯୋଗାଡ଼
ହେବ କି ଦଶା ହରଣେ ?
ଚନ୍ଦନ ଚର୍ଚ୍ଚିତ ଶୁଭ୍ର କଳେବର
ଦିଶୁଛି କେଉଁ ବିବର୍ଣ୍ଣ,
ଯୋଦ୍ଧା ଭାଇମାନେ କରି ବନବାସ
ହୋଇଛନ୍ତି ଅତି ବିଷଣ୍ଣ ।
ଅପ୍ରତିମ ବୀର ଦେବନ କୁମାର
ନଲୋଡ଼ି କାହା ସାହାଯ୍ୟ,
ହଟାଇ ସମରେ କୌରବଙ୍କ ଠାରୁ
ଆଣନ୍ତେ ଫେରାଇ ରାଜ୍ୟ ।
ଜାଗରୁକ ଥିଲେ ଦୁଷ୍ଟପ୍ରତି ସଦା
ପଡ଼େ କି କେବେ ଆପଦ,
ଦଣ୍ଡର ବିଧାନ ନକଲେ ଦୋଷୀକି
ହୁଅଇ ଶେଷ ଦରଦ ।"
ଦିଅନ୍ତି ଉତ୍ତର ଭଦ୍ରାକୁ ଏଥନ୍ତେ
ଯୁଧିଷ୍ଠିର ମହାମତି,
"ଯତିଏ କହନ୍ତି ମଣିଷକୁ ସିନା
ସତ୍ୟହିଁ ଦିଏ ମୁକତି ।
କ୍ରୋଧରୁ ଉତ୍ପନ୍ନ ହିତ ବା ଅହିତ
ଜାଣନ୍ତି ସଜ୍ଜନେ ଭବେ,
କରିଅଛି ବ୍ରତ ଚଳିବ ସତତ
ସତ୍ୟରୁ ନଟଳି ଲବେ ।
ନିଷ୍ଠୁରତା ଠାରୁ ଦୟା ଶ୍ରେୟସ୍କର
କହନ୍ତି ବୁଧେ ନିଯୁତ,
ଅସାଧୁ ବ୍ୟକ୍ତିକି ପରାଭବ ଦେବା
ନୁହଇ କେବେ ସଙ୍ଗତ ।
ସାମର୍ଥ୍ୟ ଥିଲେହେଁ ଅପକାର ଚିନ୍ତା
ନକରି କେବେ ଜୀବନେ,
ବିଗ୍ରହର ମୂଳ କ୍ରୋଧହିଁ କେବଳ
ହେଉଛୁ ଲିଖ ସଦା ମନେ ।
ବଳବାନ ବାୟୁ କରେ ବଶୀଭୂତ
ତୃଣ ଅଗ୍ରଭାଗ ଯଥା,
ଦୈବବଶବର୍ତ୍ତୀ ହୋଇ ପ୍ରକଟିତ
ପ୍ରାଣୀଏ ଜଗତେ ତଥା ।
ସଂଶୟ ରହିତ ହୋଇ ବସୁଧାରେ
କରିବ ସେବା ଧର୍ମର,
ଇନ୍ଦ୍ରିୟ ପ୍ରୀତିକି ତେଜିଲେ ହୃଦୟୁ
ମିଳେ ସୁଖ ନିରନ୍ତର ।"
ତହୁଁ ଆସି ଭୀମ ହୋଇ ତମ ତମ
କହଇ ବିଷର୍ଣ୍ଣ ମନେ,
"ଆପଣଙ୍କ ପାଶେ ହୋଇ ବଶବର୍ତ୍ତୀ
ପାଉଛୁ ଦୁଃଖ ଜୀବନେ ।
ଭୀମ ବାହୁବଳ ଜାଣନ୍ତି କୌରବେ
ଅନୁଜ୍ଞା ଦେଲେ ସଦୟେ,
ସେମାନଙ୍କୁ ରଣେ ଖଣ୍ଡ ଖଣ୍ଡ କରି
ପଠାଇବି ଯମାଳୟେ ।"
ନିନ୍ଦା ବା ପ୍ରଶଂସା ନଭାବି ମନୀଷ
ଲୋଡ଼ଇ ଆପଣା ସୁଖ,
ପରଠାରୁ ଲଭି ପରାଭବ ଭବେ
ସକଳେ ପାଆନ୍ତି ଦୁଃଖ ।
ଭୀମ ମନୋଭାବ ଜାଣି ଧର୍ମରାଜ
ବୁଝାଇବା ସମୟରେ,

୧ ଅଗ୍ନି, ୨ ଦ୍ରୌପଦୀ

ବାକ୍ୟ ବିଶାରଦ ପରାଶର ସୁତ
ବ୍ୟାସ ପ୍ରବେଶିଲେ ଖରେ ।
ଦରଶନ ଲଭି ତାଙ୍କର ପାଣ୍ଡବେ
ହେଲେ ଅତି ଉଲ୍ଲସିତ,
ସିଦ୍ଧି ଲାଭ ପାଇଁ ଉପାୟ ବତାଇ
ହେଲେ ସେହୁଁ ଅନ୍ତର୍ହିତ ।
ପାଞ୍ଚସେନା ସଙ୍ଗେ ଯୁଧିଷ୍ଠିର ନୃପ
ହରିବାକୁ ମନୋବ୍ୟଥା
ଋଷିଗଣ ମୁଖୁଁ ଶୁଣୁଥାନ୍ତି ବସି
ନଳଦମୟନ୍ତୀ କଥା ।
ଶାସନପଦ୍ଧତି ଦୁର୍ଯ୍ୟୋଧନଙ୍କର
ଜାଣିବାକୁ ଅଜାତାରି,
ଗଲା [1] ଅପସର୍ପ ବିଶ୍ୱାସ ଭାଜନ
ବ୍ରହ୍ମଚାରୀ ବେଶଧାରୀ ।
ଜ୍ଞାତ ହୋଇ ସବୁ ଫେରି ସେ ବନକୁ
ସ୍ୱାମୀ ହିତକାରୀ ଚର,
ନିବେଦିଲା ଅଗ୍ରେ ପୁରୁଷର୍ଷଭଙ୍କ
ତା ଶାସନ ସମାଚାର ।
ସ୍ୱାମୀ ହିତକାରୀ ପ୍ରଭୁର ସମୀପେ
କହିବାକୁ ସତକଥା,
ଭୃତ୍ୟର ଧରମ ଛାଡ଼େ ନାହିଁ କେବେ
ଲଭିଲେହେଁ ଗୁରୁବ୍ୟଥା ।
ଶେଷେ ଅମଙ୍ଗଳ ସଦ୍ୟ ପ୍ରିୟ କଥା
କହି ପ୍ରଭୁଙ୍କ ଆଗରେ,
ବାହାଦୁରି ଲାଗି ଆଚରିଲେ ଛଳ
ପଡ଼ଇ ଜଣା ସତ୍ୱରେ ।
ଅମାତ୍ୟ ପ୍ରଭୁର ଥିଲେ ନିରନ୍ତର
ପରସ୍ପର ଅନୁରାଗ,
ସକଳ ସମ୍ପଦ ହେଉଥାଏ ଠୁଳ
ନ ଜନ୍ମି ଲବେ ବିରାଗ ।

୧ ଗୁପ୍ତଚର

# ଚତୁର୍ଥ ସର୍ଗ

କ୍ଷମା ମାଗି ଫସ୍ଥ ଆଗେ ଘଟେ[1]ଅଜାତାରି ଆଗେ
ଦୁର୍ଯ୍ୟୋଧନର ସ୍ୱରାଗେ ଶାସନନୀତି
"ଭବପ୍ରତି ରଖେ ଭୟ ପ୍ରଜାଙ୍କଠାରେ ସଦୟ
ଷଡ୍‌ବର୍ଗଙ୍କୁ କରିଜୟ ଅର୍ଜିଛି ପ୍ରୀତି
କୃତ୍ରିମ ସାଧୁତା ବଳରେ,
ମିତତା ବାନ୍ଧିଛି ପୁଣି [2]ବସୁ ମେଳରେ ।
ଅହରହ ନିରଳସ ସଚିବଙ୍କୁ କରି ବଶ
ବଢ଼ାଉଛି ନିଜ ଯଶ ଚଉଦିଗରେ
ଅପାତ୍ରେ ନଦେଇ ବିତ୍ତ ପୁଣ୍ୟ କାର୍ଯ୍ୟେ ରଖିଚିତ୍ତ
[3]ବସୁରେ ନୋହି ତୃଷିତ ରହି ସୁଖରେ
ପ୍ରଜାବର୍ଗ ଅଯଥା ଦଣ୍ଡ
ନଦେଇ ଶାସୁଛି ରାଜ୍ୟ ବଳେଜ ଚଣ୍ଡ ।
[4]ସନ୍ନତି କରି ପ୍ରକାଶ ତେଜି ସକଳ ବିଳାସ
[5]ସପତ୍ନ କରି ବିନାଶ ପ୍ରଜାହିତରେ
[6]ଧନାଦନ କରି ଧ୍ୟାନ ଛାଡ଼ି ମନୁ ଅଭିମାନ
[7]ତୋୟାଧାର[8]ପଯୀମାନ କରି ରାଜ୍ୟରେ
[9]ଭୂତଭୂତ୍ ହୋଇଛି ଅତି
[10]ଅନାରତ ଜାଗ୍ରତ ତା[11]ଧ୍ୱଜନୀପତି ।
ଦୁର୍ଯ୍ୟୋଧନ ରାଜନର ଅବଞ୍ଚକ ଗୁପ୍ତଚର
ଆଣନ୍ତି ତଥ୍ୟନିକର ଅନ୍ୟରାଜାର,
ଆସମୁଦ୍ର ଭୂମଣ୍ଡଳ କରିବାଲାଗି କବଳ
ରତ୍ନାକର ଅବିରଳ ଶାସନ ଭାର
ଅର୍ପି ଦୁଃଶାସନ ହସ୍ତରେ
[12]ମର୍ଶନ କରୁଛି ନିତି କର୍ଣ୍ଣ ସଙ୍ଗରେ ।
ପରାକ୍ରମ ଅର୍ଜୁନର ଲୋକମୁଖେ ଥରି ଥରି
ଶୁଣି[13]ବସତି-ବାସର ରହିଛି ଡରେ
ଜୟ ଆଶା ପୋଷି ମନେ ଭୂମିର ଛିଦ୍ର ଗୋପନେ
[14]ଗୁପ୍ତ ଗତ ବୁଝିବନେ ଆଣନ୍ତି ଖରେ

୧ ଯୁଧିଷ୍ଠିର ୨ ପ୍ରଜା ୩ ଧନ ୪ ନମ୍ରତା ୫ ଶତ୍ରୁ
୬ ସର୍ବଦା ୭ ଜଳାଶ୍ରୟ ୮ ଗ୍ରୁହା ୯ କ୍ଷମତାଶାଳୀ
୧୦ ସଦା ୧୧ ସେନା ଫସ୍ଥ-ସ୍ୱର ୧୨ ପରାମର୍ଶ
୧୩ [illegible] ଦିନ ୧୪ ଗୁପ୍ତଚର

ପରାଜିତ ହେବ ଯେପରି
କରନ୍ତୁ ୧ତୂର୍ଣ୍ଣେ ବ୍ୟବସ୍ଥା ଡେରି ନକରି" ।
୨ପ୍ରେଷ୍ୟ ଆସ୍ୟରୁ ଦ୍ରୌପଦୀ ଶ୍ରବଣେ ରୋଷେ ୩ସପଦି
କୌନ୍ତେୟଙ୍କୁ ଦୋଷଲବ୍ଧ ଭାଷେ ଏସନେ,
ନିତ୍ୟ ୪ଏଣଏଣୀ ନାଶି   ଅର୍ଜ୍ଜୁଅଛୁ ପାପରାଶି
୫ପାଶୀ ପରି ପିଶିତାଶୀ ହେଲୁ କାନନେ
ସସାଗରା ଧରା ହରାଇ
ଅକ୍ଷକ୍ରୀଡ଼େ ନିଜ ଭ୍ରାନ୍ତି ଦେଲୁ ଲଗାଇ ।
ସମୃଦ୍ଧ୍ୟକାଙ୍କ୍ଷ ମାନବ   ଜଗେ ସଦା ତା ବିଭବ
ନ ଲଭଇ ପରାଭବ କେବେ ସଂସାରେ
କପଟୀ ରଖି କପଟେ   ଲଗାଇଣ ଲଟପଟ
ମଣିଷକୁ ଛଟପଟ କରେ ବେଭାରେ
ତୁମଭଳିକ କିଏ ଭବରେ
୬ମଙ୍ଗଳାକୁ ଦିଏ ଗୁଣ୍ଡି ପର ହାତରେ ।
ଶତ୍ରୁକୁ ବନ୍ଦୀ ଗାରରେ   ଉଠେ ଯେଝୁ ପ୍ରତ୍ୟୂଷରେ
୭ ଅଶିବ ଶିବାରୁତରେ ୮ନିଦ୍ରା ବର୍ଜନ
ନନ୍ଦିଏ କି ଖେଦମନେ   ଆବୋରି ୯ଚୀରବସନେ
୧୦ ପଲଲ ଫଳ ଅଶନେ ୧୧ କାଳ ଯାପନେ
କେଉଁ ଜନ ଏହା ସହିବ
ଘଟାଇଛୁ ପୂର୍ବ ପାପୁଁ କ୍ରୂର ଦଇବ
ଆଚରିବା ସଦା ଶମ   ଅଟଇ ଋଷି ଧରମ
୧୨ଯୁଯୁଧାନ ନରାଧମ ମନୁ ମତରେ
ତବାଦେଶ ମାନି ମାନ   ହେଉଅଛୁ ମାନ ହାନି
ହୋଇ ଏତେ ମହାତ୍ମା ଶତ୍ରୁ ଉପରେ
ଯାପିବା କି ଏପରି କାଳ
ଯୁଦ୍ଧଲାଗି ଭୀମ ଏବେ କରୁଛି ଆଳ ।
ଶତ୍ରୁଠାରୁ ପରାଭବ   ଲଭି ଦୁଃଖ ଅନୁଭବ
ନକଲେ ଭବେ ମାନବ କାର୍ଯ୍ୟ ସାଧନେ
ଜଟାଧର ହୋଇ ବନେ   ପ୍ରାଣ ଧରି ଫଳାସନେ
କାଳଯାପି ପ୍ରଶମନେ ପ୍ରଶାନ୍ତ ମନେ

୧୩ରାଜଧ୍ୱଜ ୧୪କାର୍ମୁକ ଗୁଣ୍ଡ
୧୫ହବ କରୁ ହୁତାଶନେ ୧୬ହବି ଅଜାଡ଼ି ।
ସଦା ମାଣ୍ଡ ପାଳ ପାଳ   ମାରଠାରୁ ଶୁଣି ଗାଳି
ବଦନେ ବୋଳୁଛ କାଳି ଦେଖନ୍ତୁ ଲୋକେ
ନାନା ନିର୍ଯ୍ୟାତନା ପାଇ   ରହିଛୁ ପ୍ରାଣ ନଯାଇ
ଭୀମ ଭୁଜବଳ ଥାଇ ଜୀବନ ଶୋକେ
ଦ୍ରୁପଦ ନନ୍ଦନୀ କାନନେ
ଯାପୁଅଛୁ ପୂର୍ବ କଥା ପକାଇ ମନେ ।
ପୌରୁଷହୀନତା ଭବେ   ଦିଅଇ ପ୍ରେଷ ମାନବେ
କଳ୍ମଷ ବନ୍ଧୁ ଗୌରବେ ସବୁ ଯୁଗରେ
ଅବରତ ନେଲେ ସର୍ଗ ୧୭ ବଢ଼ଇ ମର୍ଷ ସର୍ଗ ୧୮
ଆଳସ୍ୟ କରିଲେ ସର୍ଗ ୧୯ ଜୟ ଯୁଦ୍ଧରେ
ମିଳେ ଯଦ୍ଦ ଆଦେଶ ତବ
ଭାଇଏ ଆଣିବେ ଜିଣି ହୃତ ବିଭବ
ସେମାନେ ଅତି ସାହସୀ   ମୁହୂର୍ତ୍ତକେ ଦେବେ ଗ୍ରାସି
ଦୁର୍ଯ୍ୟୋଧନ ସୈନ୍ୟବଳି କାହିଁକି ଭୟ
ଜୀବକୁ ଜୀବକ ଧାରି   ଏହିନା ଭବ ବେଭାର
ନକଲେ ଆଶୁ ବିସ୍ତର ଅରାତି ଜୟ
ହେବ ନାହିଁ କେବେ ସମ୍ଭବ
ହୀନ ଦାନ ଶକ୍ତିଶାଳୀ ହେବ ଶାସବ
ଏଅନ୍ତେ ପ୍ରେମ ନନ୍ଦନ   ଶୁଣି ପାଞ୍ଚାଳୀ ବଚନ
ଚାହିଁ ଅଗ୍ରଜ ବଦନ ଭାଷିଲେ ଖର
ନକରି କେବେ ଭାବନ   ବିନା ଯୁଦ୍ଧ ଦୁର୍ଯ୍ୟୋଧନ
ଫେରିବ ପ୍ରତି ଅର୍ପଣ ରାଜ୍ୟ ଆମର
ନେଇଅଛି ତାହା ବ୍ୟାଜରେ
ହେବନାହିଁ କେବେ ଲବ୍ଧ ବିନା ୨୦ଊର୍ଜ୍ଜରେ
୨୧ ସର୍ଗହୀନ ମଣିଷର   ନରହେ ଐଶ୍ୱର୍ଯ୍ୟଭର
ବ୍ୟସନ ନହୋଇ ନର ରକିବ ଭବେ

---

୧ ଶୀଘ୍ର, ୨ ଚର, ୩ ଶୀଘ୍ର, ୪ ହରିଣ ହରିଣୀ, ୫ ବ୍ୟାଧ, ମାଂସଭୋଜୀ, ୬ ପତିବ୍ରତା ସ୍ତ୍ରୀ, ୭ ଅମଙ୍ଗଳ, ୮ ରବ, ୯ ବକଳ, ୧୦ ମାଂସ, ୧୧ ଭକ୍ଷଣ, ୧୨ ଯୁଦ୍ଧପ୍ରି

୧୩ ରାଜଚିହ୍ନ, ୧୪ ଧନୁ, ୧୫ ଯଜ୍ଞ, ୧୬ ଘିଅ, ୧୭ ସର୍ଗ-ଯତ୍ନ, ୧୮ ଉତ୍ସାହ, ୧୯ ତ୍ୟାଗ ପାଞ୍ଚାଳୀ-ଦ୍ରୋପଦୀ କାର୍ପାସୀ-କର୍ମଶୀଳ ଜୀର-ଖଣ୍ଡା ଜାରକ-ଖଣ୍ଡା ଭବ-ପୃଥିବୀ ଶାସବ-ଶତ୍ରୁ ପ୍ରେମନନ୍ଦନ-ଭୀମ, ପବନନନ୍ଦନ ୨୦ଊର୍ଜ୍ଜ-ବଳ, ଚେଷ୍ଟାରେ ୨୧ଉତ୍ସାହହୀନ,

ଆଚରଣ ୧ଗୁଣ ପାଶ     ୨ଭୁଞ୍ଜି କରି ସବୁ ଗ୍ରାସ
ଦୁଃଖ ସାଗରେ ସନ୍ନ୍ୟାସ କରି କୌରବେ
ଲଭୁଛନ୍ତି ମହା ଆନନ୍ଦ
ହିଏ ନିତ୍ୟ ମନ୍ତ୍ର ପୁଣି ନୁହନ୍ତି ମନ୍ଦ
ଅସାବଧାନଜନିତ     ମୋହକୁ ଛାଡ଼ି ତ୍ୱରିତ
ହେବେ କି ଭଳି ନାଶିତ ଶାସିବେ ତବ
କଲେ ତାର ପ୍ରତିକାର     ହେବ ଲଘୁ ଦୁଃଖଭାର
ଭୁଟିବ ମନୁ ବିକାର ଲଭୁ ୩ ଆହବ
୪ପ୍ରମାର୍ଜ୍ଜନ ବଳ ଦେଖା
ହେଲେ ସିନା କଉରବେ ପାଇବେ ଶିକ୍ଷା
ଦୁର୍ଯ୍ୟୋଧନ ଦେଖି ଦ୍ୱେଷ     ଦେଇଛୁ ବହୁଧା ୪ପ୍ରେଷ
ଯାହାର ନଯାଇ କ୍ଲେଶ ଘାରେ ମାନସ
ପୌରୁଷ ଅବଲମ୍ବନ     କରି ତାର ଗରଜନ
ଛଡ଼ାଇ ୫ପବନନନ୍ଦନ ଲଭିବ ଯଶ
ବିପକ୍ଷର ଦେଖି ଉନ୍ନତି
ସହିବ କି କେତେବେଳେ ଉଦ୍ୟୋଗୀ ମତି
ବସୁନ୍ଧରା ତୃଣପରି     ଦେଖନ୍ତି ମାନେ କରି
ଅବମାନନା ନଜରି ଶତ୍ରୁ ହାତରେ
କରେ ପ୍ରଗାଢ଼ ଯତନ     ହୋଇ ଅତି ଅସହନ
୬ ସାହସ ଅବଲମ୍ବନ କରି ୭ ପ୍ରହାରେ
ରଖଇ କୀର୍ତ୍ତି ଭୁବନେ
ଅନୁସରି ତ୍ରିବର୍ଗକୁ ୮ ସଦା ଜୀବନେ
ହିତ ବିନାଶ ଗତି     ଦେଖେ ସଦା ସୁଧୀମନ୍ତ
ନ ବିଚାରି ନିଜ କ୍ଷତି ମରି ହସାରେ
ତୁମକୁ ଦେଖି ବିପନ୍ନ     ଅବସନ୍ନ ମୋର ମନ
ନକରି ତେଳ ଚନ୍ଦନ ଶତ୍ରୁ ହାତରେ
ପଉରୁଷ କରି ବିନଷ୍ଟ
ଜାଣି ଜାଣି ବନ ମଧ୍ୟେ ପାଉଛ କଷ୍ଟ
ପାବନୀ ବଚନ ଶୁଣି     କହନ୍ତି କୌନ୍ତେୟ ଗୁଣି
ତାଙ୍କ ଗୁଣ ଗୁଣି ଗୁଣି ହୋଇ ଆନନ୍ଦ

---

୧କପଟ, ୨ ସମ୍ପତ୍ତି, ୩ ଯୁଦ୍ଧ, ୪ କ୍ଲେଶ, ୫ ବାୟୁ
୬ ବଳ, ୭ ଯୁଦ୍ଧ, ୮ ଆୟୁ, ବ୍ୟୟ, ବୃଦ୍ଧି

ସନ୍ନ୍ୟାସ-ନିକ୍ଷେପ

ତୁମ ବିନା କେଉଁ ଭବେ     ସମର୍ଥ ହେବେ କି ଲଭେ
କହିବାକୁ ଗଉରବେ ନରଖି ଛଳ
ଯୁକ୍ତିଯୁକ୍ତ ଉକ୍ତି ତୁମର
ଶ୍ରବଣେ ମୋହିତ ହେଲା ହୃଦ ଅମ୍ବର
୯ ଜିଘାଂସୁ ପ୍ରବଳ ଅତି     ହେବା ହେତୁରୁ ସମ୍ପ୍ରତି
ଆମର ନାହିଁ ଶକତି ରଣ କରଣେ
ପୂର୍ବ୍ବ ଭାବ ନିଭ ଷତି     କରିଲେ କରମଗତି
ନ ଘଟେ କେବେ ବିପତ୍ତି ୧୦ ଦଣ୍ଡ ପ୍ରାଙ୍ଗଣେ
ବିଧିଯୁକ୍ତ ନ ହେଲେ ସଦା
ସିଦ୍ଧି ନିଭ ନ ଘଟଇ କାର୍ଯ୍ୟରେ କଦା
ଯେମନ୍ତ କେଦାରେ କୃଷୀ     ସିଞ୍ଚି ସିଞ୍ଚି ଜଳ ରାଶି
ଶସ୍ୟ ରଖି ଘାସ କାଟି ଫଳାଏ ଫଳ
ତେମନ୍ତ ବିବେକ ଜଳ     ହୃଦ କ୍ଷେତ୍ରେ ଅବିରଳ
ସେଚନେ କଲେ ସଫଳ କାର୍ଯ୍ୟ ସକଳ
୧୧ବର୍ଗ କରି ଶତ୍ରୁ ୧୨ଅମର୍ଷ
ପ୍ରବେଶ କରି ସଂଗ୍ରାମେ କରି ବିମର୍ଶ ୧୩
ଶତ୍ରୁ ଅଭ୍ୟୁଦୟ ସହି     ଯାଏ ହୃଦେ ଶାନ୍ତି ବହି
ସତତ ସତର୍କ ରହି ସୁଧୀ ପୁରୁଷ
ଆପଣା ଶରୀରୁ ଜାତ     କୋପ ନକଲେ ନିପାତ
ଘଟଇ କର୍ମେ ବ୍ୟାଘାତ ଉକ୍ତି ପରୁଷ
ନ କହି ମାରୁତି ନନ୍ଦନ
ଚପଳ ଇନ୍ଦ୍ରିୟମାନଙ୍କୁ କରୁ ଦମନ
ଦେଖି ଦୁର୍ଯ୍ୟୋଧନ ଧନ     ହୋଇ ସନ୍ତୋଷ ଭାଜନ
ନ୍ୟାୟ ପଥ ତେଜି ମନ କେତେ ଭୂପାଳ
ନିଜ ସ୍ୱାର୍ଥ ସିଦ୍ଧି ପାଇଁ     କପଟ ସ୍ନେହ ଲଗାଇ
ତାର ସନ୍ନିଧାନେ ଯାଇ ଯାପନ୍ତି କାଳ
ଆକାଂକ୍ଷିବ ଯେବେ ୧୪ ପ୍ରସର
ଧରିବେ ମୋ ପକ୍ଷ ଆଶୁ ଯୋଦ୍ଧା ପ୍ରବର
କର୍ତ୍ତବ୍ୟକୁ ହେଳା କରି     ଅକର୍ତ୍ତବ୍ୟ ଅନୁସରି
ଅନ୍ୟାୟ ମାର୍ଗେ ବିଚରି ରାଜଶାସନ
ତସ୍କର ତୁଲ୍ୟ ବନ୍ଧୁକାଳ     ସ୍ୱତଃ ଉଠି ପ୍ରଜାକୁଳ
ଜାଳି ବିଦ୍ରୋହ ଅନଳ ଦିଅନ୍ତି ପୀଡ଼ନ

---

୯ ଶତ୍ରୁ ୧୦ ଯୁଦ୍ଧ ୧୧ତ୍ୟାଗ ୧୨ କ୍ରୋଧ ୧୩ ବିବେଚନା
୧୪ ଯୁଦ୍ଧ

ଅନ୍ତରଙ୍ଗ ଅମାତ୍ୟଚୟ
କରନ୍ତି ଅସହଯୋଗ ହୋଇ ନିର୍ଭୟ
ଜଗତେ ବସ୍ତୁରବାନ    ଉଦ୍ଧତ ଶତ୍ରୁ ଉତ୍‌ଥାନ
ଅତ୍ୟାଚାର ଅଭିମାନ ତୁଚ୍ଛ ଦର୍ଶନେ
ଅବିମୃଶ୍ୟ କାର୍ଯ୍ୟରତ    କରି ଅପସବ୍ୟ୧ ଗତି
ଆଣେ ନିକାମ୨ ବିପତ୍ତି ଦେଖୁ ଭୁବନେ
ଯଥାକାଳ ଜଗି ରହିବ
ନିବୃତ୍ତିର ପ୍ରବୃତ୍ତିକୁ ସବୁ ସହିବ
ହୋଇଲେ ଇନ୍ଦ୍ରିୟ ବଶ    ଅବଶ ସଦା ୩ଅଟସ
ବଢେ ତାର ଅପଯଶ ଲୋକ ମୁଖରେ
ପକ୍ଷପାତ ବ୍ୟବହାର    ଯଶୋଲିପ୍ସୁ ପରିହାର
କଲେ ଅଭିଷ୍ଟ ସହାୟ ସହଜ ଶରେ
ବିଚାର ଏ ଭବ ବେଭାର
ହୁଡ଼ିଲେ ମଣିଷ ଅରେ ଦୁଃଖ ଅପାର
ଏକାକେ ଆସି ୪ପାବନ    ସହସା ଦେଲେ ଦର୍ଶନ
ପ୍ରବେଶି ଦ୍ୱଇତବନ ଯୁଧିଷ୍ଠି ପାଶେ
ଅଶ୍ରୁଲୋଚନା ଦ୍ରୌପଦୀ    ଆଶ୍ରମୁ ଆସି ସପଦି
ଭକ୍ତିଭରେ ତାଙ୍କୁ ବନ୍ଦି କୌରବ ନାଶେ
ନିବେଦନ୍ତେ ବିଷାଦଭରେ
ଆଶ୍ୱାସି କହିଲେ ଋଷି ତାଙ୍କୁ ସାଦରେ
ଅସାଧୁ ସଂସର୍ଗ ଭବେ    ପତନ ଆଣଇ ଜବେ
ଯୁଦ୍ଧ ଜୟ ଆଶାଲଭେ ନହିଏ ମନେ
ଦୁର୍ଯ୍ୟୋଧନ ଦୁଃଶାସନ    ମିଶି ଭାସ୍କର ନନ୍ଦନ
ସତତ ସନ୍ଦେହାପନ୍ନ ଇଷ୍ଟ ସାଧନେ
ଇହାଙ୍କର ବୈରୁ କରି
କରିବ ଉସାରେ କର୍ମ କେବେ ନଡରି
ଦୁର୍ଯ୍ୟୋଧନ ମହାକୃଷ୍ଣ    ପ୍ରତିହିଂସା ତା ପ୍ରବୃତ୍ତି
ବଢ଼ୁଛି ଏବେ ତା ୫ଋଦ୍ଧି ଅଛି ତା ୬ଦମ
ଭୀଷ୍ମ ଦ୍ରୋଣ କର୍ଣ୍ଣବୀରେ    ରହିଛନ୍ତି ତା ସାଥିରେ
ପରାକ୍ରମରେ ମହୀରେ ନୁହେ କେ ସମ
ନ କଲେ ପୂର୍ବରୁ ପ୍ରୟାସ
ଘଟିବ ୭ମନସି ପାଣ୍ଡବଙ୍କ ୮ପର୍ଯ୍ୟାସ

୧ ବିପରୀତ ପଥ, ୨ ବହୁତ, ୩ ରଜା, ୪ ବ୍ୟାସ, ୫ ସୌଭାଗ୍ୟ, ୬ ଶକ୍ତି, ୭ ମନସ୍ୱୀ, ୮ ବିନାଶ

ଅନାଇଁ ୯କପିକେତନ    ଭାଷିଲେ ତହୁଁ ପାବନ
"କରିବ ଯୋଗ ସାଧନ ଏକ ଲକ୍ଷ୍ୟରେ
ଶୁଚିବନ୍ତ ହୋଇ ନିତ    ୧୦ପ୍ରାଶନେ ନରଖି ପ୍ରୀତି
ଅବଲମ୍ବି କାଷ୍ଠାମାତ୍ର ଛନ୍ଦ୍ର କାଳରେ
ଆଚରିଲେ ଏପରି ବ୍ରତ
୧୧ଗୀର୍ବାଣ ସକଳ ହେବେ ଅତି ତୁଷ୍ଟ" ।
ଏମନ୍ତ ଭାଷନ୍ତେ ବ୍ୟାସ    ମାନସେ ବହି ଉଚ୍ଛ୍ୱାସ
କରିବାକୁ ଯୋଗାଭ୍ୟାସ କଲେ ସ୍ୱୀକାର,
କରି ୧୨ଇନ୍ଦ୍ରଦର୍ଶ ଭରସା    ଶ୍ୱେତବାହନ ତପସା
ଯିବାରୁ ତାଙ୍କ ନିକଷା ତେଜ ବିକାର
ଶିଖାଇଲେ ତପୋନିୟମ
ତୁହିଗଲେ ୧୩କପିଧ୍ୱଜମନୁ ୧୪ଉଦ୍‌ଭ୍ରମ ।
ଯାତ୍ରାକାଳେ ସୁପ୍ରସନ୍ନ    ଥିଲେ ରମଣୀ ଲୋଚନ
ଯାତ୍ରୀକ କରି ଦର୍ଶନ ଲଭେ କୁଶଳ,
ଯାଜ୍ଞସେନୀ ଆଗୁଜାଣି    ଅବରୋଧି ନେତ୍ରପାଣି
କୃଷ୍ଣଙ୍କୁ ଦେଇ ମେଲାଣି ୧୫ଭୃଶ ଚଞ୍ଚଳ
ଭାଷିଲେ ସକଳ ବୁଝାଇ,
ଫୁଲମାଳ ଗଳେ ତାଙ୍କ ମୋଦେ ପିନ୍ଧାଇ ।
"ସର୍ଜି ଅଛୁ ଆଗୁ ବିଧି    ପଙ୍କେ ବୁଡ଼ିଥିବା ନିଧି
ଉଦ୍ଧରି ଲଭିବ ସିଦ୍ଧି ବୋଲି ମନରେ,
ଘୋଷୁଥିବ ମନ୍ତ୍ରର    ପୁଲକେ ପୂଜ ଶଙ୍କର
ଚଳିଣ ବନ୍ଧ ୧୬କୃଷ୍ଣର ହର୍ଷ ଆସ୍ୟରେ
ଭାଷିଲେ ତାହାଙ୍କୁ କୁଣ୍ଢାଇ
ନକରିବ ଦୁଃଖ ତଳେ ମନେ ପକାଇ ।
ନାନା ୧୭ଉପଲମ୍ଭ ସହି    ହୃଦୟ ଦେଉଛି ଦହି
ଜୀବନ ଧରିଛି ରହି ବନ ଦେଶରେ
୧୮ଅନନ୍ୟା ବିଜେତା ପତି    ପାଇ ଥୟ କରେ ମତି
ମୋ ଭଳି ହତଭାଗୀ ନାହିଁ ଇହ ଲୋକରେ
ଜାତ ହୋଇ ନଥିବେ କେହି
ଧିକ ଧିକ ଏ ଜୀବନ ଧିକ ଏ ଦେହୀ ।

୯ ଅର୍ଜୁନ ୧୦ ଭୋଜନ ୧୧ ଦେବତା ୧୨ ଦେବତା ୧୩ ଅର୍ଜୁନ ୧୪ ଆକୁଳତା ୧୫ ଅତିଶୟ ୧୬ ଅର୍ଜୁନ ୧୭ ତିରସ୍କାର ୧୮ ପୃଥିବୀ

ଅଧ୍ୟବସାୟୀ ସକଳ ଦୁରୂହ କର୍ମ ସଫଳ
କରି ସାଧନ୍ତି ମଙ୍ଗଳ ସତତ ଭବେ,
ତୁମେ ସୁଯୋଗ୍ୟ ସନ୍ତାନ ନିବାରିବ ଅପମାନ
୧ଶାଶ୍ୱତ ୨ଆମର୍ଷ ମାନ ମାନସେ ଜବେ
ରଖି ତୃପ୍ତି କରି ୩ନିର୍ଜ୍ଜରେ
ଅଭୀଷ୍ଟ ସାଧିତ ହେଉ ୪ଦଭ୍ର କାଳରେ ।
କୌରବଙ୍କ ଅବସାନ ହେଲେତ ରହିବ ମାନ
ବିବସନ ଅପମାନ ଘାରେ ହୃଦୟ
ଶ୍ୱାପଦ ସଙ୍କୁଳବନ ଲଭୁଥିବ ଘନାଘନ
ବ୍ରତ କରି ସମାପନ ତୋଷି ୫ଅବ୍ୟୟ
୬ଅପବର୍ଗ ଯଥା କାଳରେ
ବାନ୍ଧବ ସୁଲଭେ କରି ସର୍ବଭବ୍ୟରେ" ।
୭ପାର୍ଷତୀର ଘନ ଘନ କପଟ ଶୂନ୍ୟ କଥନ
ଶୁଣି ୮ମଘବାନନ୍ଦନ ଗାମ୍ଭୀର୍ଯ୍ୟ ବହି
କହିଲେ "ପାଉଛୁ ୯ପ୍ରେଷ ନପାଇ ପୂର୍ବଜାଦେଶ
ଯାସୋର ନାହିଁ ତ ଲେଶ ସକଳ ସହି
ପଡ଼ିଅଛୁ ଘୋର କାନନେ
ଲେଖିବାକାଳ ସଖି, ନାହିଁକି ମନେ" ?
"ଖାଣ୍ଡବ ବନରେ ସହି ବାସବ ବିପକ୍ଷେ ରହି
ଦେଇଥିଲି ତାଙ୍କୁ ଦହି ପଡେ ମନରେ
ଗାଣ୍ଡୀବ କୋଦଣ୍ଡ ଧରି ରହିଅଛୁ କ୍ଲୀବ ପରି
ଭ୍ରାତାକଥା ଅନୁସରି ହିକତଭରେ,
ହେବ ପୂର୍ଣ୍ଣ ତବ କାମନା
ସରିଲେ ନିଭୃତବାସ ନୁହ ବିମନା ।
ପୁଣ୍ୟାହରେ ଆଶ୍ରମରୁ ଦର୍ଶନ ଇଚ୍ଛାରେ ୧୦ଖରୁ
ବିଦା ମାଗି କୃଷ୍ଣମୁଖରୁ ଗଲେ ଅର୍ଜୁନ,
୧୧ଶାଶ୍ୱତ ଆଦେଶ ପାଇ କାନ୍ଧରେ ପକ୍ଷ ବସାଇ
ବନଦେବୀ ପଢ଼ାଇ ଶୁଭ ୧୨ଶକୁନ
ମାର୍ଗେ ମାର୍ଗେ କରି ଲୋକନ
ଅନନ୍ତର ଅନ୍ତର୍ଦ୍ଧାନ ହେଲେ ପାବନ ।

୧ ବ୍ୟାସ ୨ ଉପଦେଶ ୩ ଦେବତା ୪ ଅଳ୍ପ ୫ ଶିବ ୬ ସିଦ୍ଧିଲାଭ ୭ ଦ୍ରୌପଦୀ ୮ ଅର୍ଜୁନ ୯ କ୍ଲେଶ ଘନଘନ-ସଦା ୧୦ ଶିବ ୧୧ ବ୍ୟାସ ୧୨ ଚିହ୍ନ ୧୩ ବ୍ୟାସ

## ପଞ୍ଚମ ସର୍ଗ
## ( ଶରତ୍କାଳ ବର୍ଣ୍ଣନା )

୧ତପାତ୍ୟୟ ଅନ୍ତେ ପ୍ରବେଶ ହେବେ ଶରତକାଳ,
ଅପସରି ଗଲା ୨ଅମ୍ବରୁ ଏବେ ଜଳଦଜାଳ ।
୩ଭାସନ୍ତଭାସନ୍ତୀ ଭାସ୍ୱର ହୋଇ ହସେ ଶୋଭନ,
କୁମୁଦମା ହସି ଉଠିଲା ଦେଖି ପ୍ରିୟ ବଦନ ।
୪ଦୋଷାକରଙ୍କର ପ୍ରେକ୍ଷଣ ବହୁଦିନୁ ନପାଇ,
ଚକୋରଚକୋରୀ ଦୁଃଖରେ ଥିଲେ ମୁହଁ ଶୁଖାଇ ।
ଜଳସ୍ଥଳନଭ ୫ପ୍ରଦ୍ୟୋତେ ବକ୍ରିତ ୬ଭଙ୍ଗୀରେ,
ପୁଲକେ ମିଳିଲେ ୭ମାଳଞ୍ଚ ଦୁହେଁ ମିଶି ଅଧୀରେ ।
୮ସ୍ରୋତସ୍ୱିନୀ ସରସୀ ୯ଅକ୍ଷର ହସିଲେ ବିମଳ,
ଦିନୁଦିନ ୧୦ବପ୍ର ବହୁଳ ହେଲେ ୧୧ଝଷମଣ୍ଡଳ ।
୧୨ହ୍ରଦମାନଙ୍କରେ ୧୩ସ୍ତିମିତ ବସି ୧୪କାରୁଷମକ୍ଷ
୧୫ବିସାରଗଣଙ୍କ ଆନନ୍ଦେ କରୁଅଛନ୍ତି ଲକ୍ଷ୍ୟ ।
ଧାନତୃଣେ ପୂରି ରହିଛି ପୁଣି କେଦାରମକ୍ଷ,
ପରିହିତ ଶ୍ୟାମ ଶାଢ଼ୀରେ ଅବା ୧୬ବସୁଧାବକ୍ଷ ।
ବାଳକବାଳିକା ନିବିଡ଼ ମକା ବାଡ଼ରେ ପଶି,
କଷି ଖୋଜି ଖୋଜି ଆଣନ୍ତି ମକାପୋଡ଼ାରେ ରସି ।
ଜହ୍ନିଫୁଲ ଫୁଟି ବାଡରେ ୧୭ଭୂରି କାନ୍ତିକଳଶି,
୧୮ବୃଷଲୀମାନଙ୍କ ମାନସ ଅବା ନେଉଛି କଶି ।
ଜହ୍ନିଓଷା ଲାଗି ସେମାନେ ତୋଳେ ତୋଳେ ତା ଫୁଲ,
ସାଙ୍ଗସାଥି ହୋଇ ପ୍ରଦୋଷେ ଓଷା କରନ୍ତି ଭୁଲ ।
୧୯ମାଳଞ୍ଚରେ ଫୁଟି ମାଳତୀ ସୁରଭିତ କାନନ,
ତା ସହିତ ମିଶି ଶେଫାଳୀ ହରେ ଜୀବର ମନ ।
ଅସିତା ଅପରାଜିତାର ରୂପେ ମଜ୍ଜି କେଶବ,
ଏ ୨୦ଜଳଦକ୍ଷୟେ ହେଲେ କି ଧରାତଳେ ୨୧ସମ୍ଭବ

୧ ବର୍ଷାକାଳ ଶେଷରେ ୨ ଆକାଶରୁ ୩ ଚନ୍ଦ୍ରତାରା ୪ ଚନ୍ଦ୍ର ୫ ଆଲୋକ ୬ ଗତି ୭ ଚନ୍ଦ୍ରକିରଣ ୮ ନଦୀ ୯ ଜଳ ୧୦ କ୍ଷେତ ୧୧ ମାଛ ୧୨ ହ୍ରଦ ୧୩ ନିଶ୍ଚଳ ୧୪ ବଗସମୂହ ୧୫ ମାଛ ୧୬ ପୃଥିବୀ ୧୭ ସୁନା ୧୮ ବାରବର୍ଷରୁ ସାନ ବାଳିକା ୧୯ ଗୃହ ୨୦ ଶରତ୍କାଳ ୨୧ ଉତ୍ପନ୍ନ

୧ପୂତ ତୃଣ ପୂର୍ଣ୍ଣ ଭୂଖଣ୍ଡେ ପଶି ୨ଭୂଦେବଭର,
ତା ସଂଗ୍ରହ କଲେ ୩ନଭସ୍ୟ ଦେଖି ଭବ୍ୟବାସର
୪ବନହାସ ଫୁଲେ ଧରଣୀ ହସେ ଧବଳମୟ,
ଖସି ପଡ଼ିଲେକି ୫ଅନନ୍ତୁ କେତେ ନକ୍ଷତ୍ରଚୟ ।
୬ କର୍ବୂରିତ ବନ ପ୍ରଦେଶ ପୁଣି ବାହ୍ୱମାସର,
ବଳୟିତ ଶ୍ୟାମ ଲତାରେ ୭ଉର୍ବୀରୁହ ନିକର ।
୮ଶଶିପ୍ରଭ ଫୁଲ ବିକସି ବନେ ସପ୍ତଚ୍ଛଦରେ,
୯ବୈଖାନସ ମନ ମୋହୁଛି ଏହି ଶରତକାଳରେ ।
କଇଁଚକାକୁଡ଼ି ଲେଖନ ଫଳେ ବ୍ରତଚିନ୍ତ,
୧୦ବାହୁଜେ ୧୧ବଦସ କରନ୍ତି ହୋଇ ମହା ଉଷତ
୧୨ନଭସ୍ୟ ସୁନ୍ଦର ଚତୁର୍ଥୀ ବର୍ଦ୍ଧ୍ନଗ୍ରଜ ଜନମ,
ଅଧୀଶ୍ୱ ସକଳ ହୁଅନ୍ତି ପୁଷ୍ପଫଳର ଯମ ।
ଛୁଣ୍ଡାଛୁଣ୍ଡି କରି ସେତକ ମଣ୍ଡି ମହା ଆନନ୍ଦେ,
ଶିରଃଫଳଜଳ ଅର୍ପନ୍ତି ଗଜାନନଙ୍କୁ ମନ୍ଦେ ।
ଭ୍ରହ୍ମି ଭ୍ରହ୍ମି ହେଲା ଦଶହରା ଘରେ ଘରେ ଉତ୍ସବ,
ପରିହିତ ନବ ବସନେ ନରନାରୀ ସରବ ।
୧୩ପିତୃପ୍ରସୂ ଦେଖି କେଦାରେ ୧୪ବ୍ୟାଘ୍ରନାସୂକପଶି
୧୫ଶକଳୀକୁଳୀରକୁଳକୁ ମୋଦେ ଦେଉଛି ଧ୍ୱଂସି ।
୧୬ମଧୂଳା ଉତ୍ସଙ୍ଗେ ୧୭ବରଜା ବସ୍ତୁରିତ ପ୍ରଖର,
ଚରି ଚରି ପେଟ ଭରନ୍ତି କଲେ ଗୋରୁ ପ୍ରକର ।
୧୮ଧାର୍ତ୍ତରାଷ୍ଟ୍ରବ୍ରାତ କୌତୁକେ ଧାର୍ତ୍ତରାଷ୍ଟ୍ରୀ ସଙ୍ଗରେ,
ଖଣ୍ଡେ ଖଣ୍ଡେ ୧୯ବିଷଣ୍ଡ ଝାଡ଼ୁଛନ୍ତି ସରରେ ।
୨୦ଅବଲକ୍ଷ ପକ୍ଷ ସଂଗ୍ରହ କେତେ କୂଳକୁ ଆସି,
୨୧ଇତରେତର ବା ଘଷନ୍ତି ଚଞ୍ଚୁ ପ୍ରେମ ପ୍ରକାଶି ।
୨୨ପ୍ରାବୃଷ୍ୟଉତ୍ପାତ କଞ୍ଚିତ ନାହିଁ ପ୍ରବାହମାର,
୨୩ଜମ୍ବାଳ ବିହୀନ ହେଲାଣି କ୍ରମେ ରସା ଶରୀର ।

ଭର୍ତ୍ତୃବିଯୋଗିନୀ ନାରୀକା ପରି ହସେ ମଳିନ,
୨୪କଦମ୍ବ କଦମ୍ବ ହେବାରୁ ଏବେ ପ୍ରସୂନ ହୀନ ।
ଶିଖିଷ କୁସୁମ ବର୍ଣ୍ଣ କୀର କେଦାରେ ଯାଇ,
ଲୋହିତ ଚଞ୍ଚୁରେ କଳମ କେଣ୍ଡା ଖାଏ ଛିଣ୍ଡାଇ ।
୨୫ଆଶ୍ୱିନୀ ରଜନୀ ଆସିଲା ଧରି ୨୬ଅର୍ଜ୍ଜୁନୀ ବେଶ,
ନବବାସ ପିନ୍ଧି ପିଲାଏ କ୍ରୀଡ଼ନକେ ପ୍ରବେଶ ।
ବାଟେ ବାଟେ ଦୃଶ୍ୟ ଶିକ୍ଷଣ କରି କରି ବାସବ,
ଅବତରି ଯକ୍ଷ ସ୍କନ୍ଧରୁ ପ୍ରବେଶିଲେ ଅଟବୀ ।
ପ୍ରାନ୍ତର ପ୍ରଦେଶ ଦିଶଇ ଏବେ ୨୭ଅର୍ଜ୍ଜୁନମୟ,
ଛପିଲେଣି ଲତାକୁଞ୍ଜରେ ଯାଇ ୨୮ଅର୍ଜ୍ଜୁନଚୟ ।
ପରେକେ ଗ୍ରୀବ କଳାପ ଅବନତ ଶିରରେ,
ନମିଲେ କି ଅବା ଅର୍ଜ୍ଜୁନ ଦେଖି ଯୋଗୀ ବେଶରେ ।
୨୯ଗୋମହିଷ ସଙ୍ଗରେ ୩୦ମହୋକ୍ଷ କରି ଗତି ମନ୍ଥର,
ଚରୁଥିବା ଦୃଷ୍ଟି ଗୋଚର ହେଲା ଅର୍ଜ୍ଜୁନଙ୍କର ।
୩୧ଗୋଣୀନ ଆପୀନୁ କ୍ଷରିତ ହେବା କ୍ଷୀର ପ୍ରଚୁର,
ବତ୍ସମାନେ ପିଇ ପିପାସା କ୍ଷୁଧା କରନ୍ତି ଦୂର ।
ନଗଣ୍ଡ ପ୍ରାଙ୍ଗଣରେ ଗୋପିକା କରେ କଳସି ଧରି,
ବତ୍ସାଦାନ ଅନ୍ତେ ଆଣନ୍ତି ଦୁଗ୍ଧ ଦୋହନ କରି ।
ନବ ଯଉବନା ଗୋପୀଙ୍କ ଜିତ କୋକିଳ ଗାନ,
୩୨ମୃଗୀକଦମ୍ବକ ଶୁଣନ୍ତି ହୋଇ ୩୩କୃତାବଧାନ ।
ସରୋବର ଜଳ କି ଅବା ହେଲେ ବସିତ ଅନ୍ତ,
ବିକଚ ରାଜୀବ ନୟନେ ଦେଖି ଅର୍ଜ୍ଜୁନ ଗତ ।
ଉଦ୍‌ବର୍ତ୍ତନ ଗତ ମୀନଙ୍କ କରି ଅବଲୋକନ,
ପଥଶ୍ରମବାଧା ପଥିକ କରେ ଅପନୋଦନ ।

## ହିମାଳୟ ଦୃଶ୍ୟ

ଅଗ୍ରେ ହିମାଚଳ କରି ଦର୍ଶନ,
ତାମଧ୍ୟେ ପଶିଲେ ୩୪ଶ୍ୱେତବାହନ ।

---

୧ କୁଶ ୨ ବ୍ରାହ୍ମଣସମୂହ ୩ ଭାଦ୍ରବମାସ ୪ କାଶତଣ୍ଡୀ ୫ ଆକାଶ ୬ ନାନାବର୍ଣ୍ଣଯୁକ୍ତ ୭ ବୃକ୍ଷ ୮ ଶୁଭ୍ର ୯ ବନବାସୀ ୧୦ ଶୁକ ୧୧ ଭକ୍ଷଣ ୧୨ ଭାଦ୍ରଶୁକ୍ଲ ରାମ-ରମଣୀୟ ୧୩ ସନ୍ଧ୍ୟା ୧୪ ବିଲୁଆ ୧୫ ମାଛ କଙ୍କଡ଼ା ୧୬ ପୃଥିବୀ ୧୭ ଦୁବ ୧୮ ହଂସ ସମୂହ ୧୯ ମୃଣାଳ ୨୦ ଶୁଭ୍ର ୨୧ ପରସ୍ପର ୨୨ ବର୍ଷାକାଳୀନ ୨୩ ପଙ୍କ

୨୪ କଦମ୍ବସମୂହ ୨୫ ଆଶ୍ୱିନ ପୂର୍ଣ୍ଣିମା ୨୬ ଶୁକ୍ଳ-ବର୍ଣ୍ଣ ଯୁକ୍ତ ୨୭ ତୃଣମୟ ୨୮ ମୟୂର ସମୂହ ୨୯ ଗାଈସମୂହ ୩୦ ବଳଦଣ୍ଡ ସମୂହ ୩୧ ଗାଈର ମୋଟା ପହ୍ଲା ୩୨ ମୃଗୀସମୂହ ୩୩ ମନୋଯୋଗ କରି ୩୪ ଓଲଟପାଲଟ ।

୧ତାପନେ ତାପନେ ଭେଦ ନପାରି,
୨ଅମାତମା ଘର ତମସ ହରି ।
ମଧ୍ୟାହ୍ନେ କାନନ ଲତାଗୁଳ୍ମରେ,
ବଞ୍ଚୁଛନ୍ତି ହୋଇ ଚଉଦଗରେ ।
ଗଜକ୍ଷତତଟା ୩ନେଶୀ ୪କମଳେ
ହସୁଛନ୍ତି ମନୋରମ କମଳେ,
ବହି ଆସୁଅଛି ଜାହ୍ନବୀଜଳ,
କଳ କଳ ନାଦେ ଅତି ଚପଳ ।
ହିମାଦ୍ରିର ଶୋଭା କରି ଲୋକନ,
ଅର୍ଜ୍ଜୁନଙ୍କୁ ଯକ୍ଷ ଭାଷେ ଏସନ ।
"ଦେଖ ୫ଅଶ୍ମେ ପଡ଼ ତୁଷାର ରାଶି,
ଯାଉଛି କି ବେଗେ ଗଙ୍ଗାରେ ଭାସି ।
ନଭସ୍ପର୍ଶ କଲାପରି ଶିଖର—
ନିକର ହଟଇ ପଡ ଶୀକର ।
ଉଦ୍ଭାସିତ ହୋଇ ମଣିମୟୂଖେ,
ସନ୍ଧ୍ୟାରାଗ ଛଟା ରଜନୀମୁଖେ ।
କୁସୁମିତ ନାନା ଲତା ସକଳ,
ବେଢ଼ିଛନ୍ତି ବେଢ଼ ଏହି ଅଚଳ ।
ପାଦପମଣ୍ଡିତ ଦେଖ ଗହନ,
ହୋଇଅଛି ସଦା କେଡ଼େ ୬ଗହନ ।
ରୁଚିର ପଲ୍ଲବ ପ୍ରସୂନ ଫଳେ,
ଯୋଗୀଙ୍କ ସେବାଏ ନିତ ସକଳେ ।
ଏ ଧରେ ତପସ୍ୟା କରି ଗଉରୀ,
ଶେଷେ ପତି ରୂପେ ଲଭିଲେ ୭ଭୂରି ।
ହେଉନାହିଁ ଜର୍ଣ୍ଣ କେବେ ପଲ୍ଲବ,
ହତଗୌଣ ବାସେ ସିନା ସମ୍ଭବ ।
ଜନ୍ମଜରାନ୍ତକ ଭବାନୀ ପତି,
ଯୋଗସାଧନାରେ ସତତ ବ୍ରତୀ ।
କରନ୍ତି ବସତି ଏହି ଗହନେ,
ଲଭେ ଲୋକେ ମୁକ୍ତି ତାଙ୍କ ଦର୍ଶନେ ।
ଚନ୍ଦ୍ରଲେଖା କରି ହର ଶିରରୁ,
ସ୍ରବି ପଡ଼େ ତମ ବନଦେଶରୁ ।

ନୁହେ ଭୋଗଭୂମି ଏ ହିମାଚଳ,
ମୁକ୍ତିକାମୀଙ୍କ ଏ ତପସ୍ୟା ସ୍ଥଳ ।
ବିବିଧ ବର୍ଣ୍ଣର ମଣି ନିକର,
ପ୍ରତିବିମ୍ବି ଘନେ କି ମନୋହର ।
ଅବକ୍ରଯୁକ୍ତା ହୋଇଛନ୍ତି ୮ସିନ୍ଧୁଏ,
ଯହିଁ କ୍ରୀଡ଼ୁଛନ୍ତି ସୁଖେ ୯ମିନ୍ଧୁଏ ।
ଶତଦଳବ୍ରାତ ବାତ ଚାଳିତ,
ଜଳେ ନୃତ୍ୟ କଲାପରି ପ୍ରତୀତ ।
ନବଦୂର୍ବା ଧରିବାରୁ ଶାଦ୍ୱଳ,
୧୦ତାମରସବନ ଦିଶେ ଶ୍ୟାମଳ ।
ରସିକ ୧୧ରୋଲମ୍ବ ୧୨ବିସିନୀ କୋଳେ,
ବସି ଚୁମ୍ବନ୍ତାକୁ ଆସବଭୋଳେ ।
କୁରଙ୍ଗ ପକ୍ଷୀଏ ପାଦପ ଡାଳେ,
ବସି କୂଜୁଛନ୍ତି ମୋଦେ ଏକାଳେ ।
ସମୃଦ୍ଧି ସମ୍ପନ୍ନ ଏଥିର ଦେଶ,
ଦୂରୁ ଦିଶୁଅଛି କଳସ୍ୱ ପରି ।
ଦେଖ ଠାବେ ଠାବେ ୧୩ଭୋଗିବଲ୍ଲଭ,
୧୪ଭୋଗିକାନ୍ତ ଯୋଗେ ବ୍ୟାପେ ସୌରଭ ।
ଅକାଳେ ସୁରଭି ସୌରଭ୍ୟ ପାଇ,
ଯୋଗୀମନ ପିକ ହଏ ଭୁଲଇ ।
ଅଗ୍ରେ ଇନ୍ଦ୍ରକୀଳ ଜଗଧର,
ଦିଶୁଅଛି ଦୂରୁ କେଡେ ସୁନ୍ଦର ।
ହିରଣ୍ମୟକାନ୍ତି କରି ଧାରଣ,
ଯୋଗୀଜନ ମନ କରେ ହରଣ ।
୧୫ମହାହି ବର୍ଜିତ ଏ ବନଦେଶ,
ଶିବ ଅପଣର ପାବନ କ୍ଳେଶ ।
ଇନ୍ଦ୍ରସୂ ରୂପକ ଅର୍ଜ୍ଜୁନକର,
ହୁଅନ୍ତୁ ଆପୂର ତୂର୍ଣ୍ଣ ତୁମ୍ଭର ।
ଆଚର ତପସ୍ୟା ଇନ୍ଦ୍ରକୀଳରେ,
ଅହୋରାତ୍ର ରହି ଅପ୍ରମତ୍ତରେ ।
ହଅନ୍ତୁ ୧୬କାପାଳୀ ସାଧୁ ଉତ୍ସାହ,
ହେଉ ନିର୍ବିଘ୍ନରେ ତପ ନିର୍ବାହ ।
ଗଲା ଯକ୍ଷ କହି ପ୍ରିୟ ବଚନ,
ରହିଲେ ଏକାକୀ ପୃଥାନନ୍ଦନ ।

---

୧ ସୂର୍ଯ୍ୟକିରଣ ୨ ଅମାବାସ୍ୟାର ରାତିପରି ଅନ୍ଧାର
୩ ନଦୀ ୪ ଜଳ ୫ ପଥର ୬ ଦୁଷ୍ପ୍ରବେଶ୍ୟ ୭ ଶିବ
୮ ନଦୀ ୯ ହାଙ୍ଗର ୧୦ ପଦ୍ମ ୧୧ ଭ୍ରମର ୧୨ ପଦ୍ମିନୀ
୧୩ ଚନ୍ଦନବୃକ୍ଷ ୧୪ ପବନ ୧୫ ବଡ଼ସାପ ୧୬ ଶିବ

## ଷଷ୍ଠ ସର୍ଗ
## ଇନ୍ଦ୍ରକୀଳରେ ଅର୍ଜ୍ଜୁନ ପ୍ରବେଶ

୧ପୁରୁହୂତ ସୁତ ଆରୋହଣନ୍ତେ ଧୀରେ
ଇନ୍ଦ୍ରକୀଳ ଅନନ୍ତର,
୨ବହୁତରୁଲତ ୩ଜଗଣ୍ଟରୁହରୁ
ପଡ଼ିଲା ପୁଷ୍ପପ୍ରକର ।
୪ବହୁଣା ବପ୍ରସ୍ଥ ୫ଚାମର ବନକ
ଅବନତ ମସ୍ତକରେ,
ଅର୍ଜ୍ଜୁନ ଦର୍ଶନେ କରିଲ ପ୍ରଣତ
ଅତି ବିନମ୍ର ଭାବରେ !
୬ବପ୍ରକ୍ରୀଡାସକ୍ତ ବାରଣମାନଙ୍କୁ
ଦେଖି ୭ବପ୍ର ପାରୁଶରେ,
୮ଅମ୍ଭୋଜ ବଜାଇ ଘଉଡ଼ାଇ ଦେଲେ
ସେମାନଙ୍କୁ ସେଥୁଁ ଦୂରେ ।
ଚକ୍ରବାକୀ ଏକ ୯ନେଶୀ ତଟେ ବୁଲି
କରୁଥିବା ଅନ୍ୱେଷଣ,
କରୁଣ କୂଜନେ କାନ୍ତକୁ ନପାଇ
କଲେ ସେ ତହିଁ ବୀକ୍ଷଣ ।
ଯାଉ ଯାଉ ମାର୍ଗେ ଗଙ୍ଗାନୁଗାମିନୀ
୧୦ରାମାମାନ ଅତିକ୍ରମି,
ଗିରିର ସୀମନ୍ତ ବନପ୍ରାନ୍ତ ଭୂମି
ଲଭିଲେ ସେ ଭ୍ରମି ଭ୍ରମି ।
ଫଳିତ ଫଳ୍ଗିକା ବ୍ୟାପ୍ତ ସାନୁ ଦେଶ
ଲଭିଲେ ୧୧ବିବକ୍ତ ଅତି,
ସେ ୧୨ସୁହାସ୍ୟ ସୁତ ତପସ୍ୟା ନମିତ୍ତ
ବଳାଇଲେ ତହିଁ ମତି ।
ବିଷୟ ନିବୃତ୍ତି ମୁଖ୍ୟ ସୁଖ ବୋଲି
ବିଚାରୁଥାଏ ଯେଉଁ ଜନ,
ସେହି ଏକା ସିନା ବସୁନ୍ଧରା ତଳେ
କରିପାରେ ସୁଯତନ ।

୧ ଇନ୍ଦ୍ର ୨ ପବନ ୩ ବୃକ୍ଷ ୪ ନଦୀତଟ ୫ ବେତସ ୬ ଶିଙ୍ଗ ବା ଦାନ୍ତରେ ମାଟି ଖୋଳିବା ୭ ତଟ ୮ ଶଙ୍ଖ ୯ ନଦୀ ୧୦ ନଦୀ ୧୧ ବିଜନ ପବିତ୍ରସ୍ଥାନ ୧୨ ଇନ୍ଦ୍ରପୁତ୍ର ଅର୍ଜ୍ଜୁନ

## ତପ

ତପଲାଗି ୧୩ଦର୍ଭାସନ କରି ମହେନ୍ଦ୍ର ନନ୍ଦନ
ଆରମ୍ଭିଲେ ଆରାଧନା ଏକ ୧୪ସର୍ଗରେ,
୧୫ଜୀବନ ନିଘସ କରି ୧୬ସୁଗ୍ରୀବ ସୁଗ୍ରୀବ ସୁତ
୧୭ପୂତ ପୂତ ପୂତ ଧରି ଭକତିଭରେ
ଅହୋରାତ୍ର ଉଜାଗରରେ
୧୮ବ୍ୟାଳକର୍ଣ୍ଣ ୧୯ଦର୍ଭଚର ୨୦ଜଟୀ ମୂଳରେ
୨୧ମଣ୍ଡଳୀମୂଳେ ୨୨ମଣ୍ଡଳୀ ବଳୁ ବୁହେଁ ଗଳାଗଳ
ନଥିବାରୁ ବା ୨୩କୁଣ୍ଡଳୀ ତପଃ ସାଧନ,
ଏକାଳେ ଅର୍ଜ୍ଜୁନଙ୍କର କରି ଅଗ୍ରଗାମୀତର
ପେଶିଲେ କି ତାକୁ ହରି ତାର ନାଶନ
କରିବାକୁ ଦେଖାଇ ଭୟ
ଉଠିରେ କି କେବେ ତହିଁରେ ୨୪ଅକୁତୋଭୟ ।
ହେବାରୁ ଆତ୍ମ ପ୍ରତ୍ୟୟ ଚିହ୍ନଲା ଲାଗି ହୃଦୟ
ଦର୍ଶନଲାଗି ଅବ୍ୟୟ ଅନ୍ୟ ଭାବନା
ନଥିଲା ମାନସେ ଲବେ ଗଡ଼ିବେ କି ଗି ଭବେ
ପ୍ରୟାସୀ ସଦା ମାନବେ ଧନ୍ୟ ସାଧନା
ପ୍ରଣପ୍ରାନ୍ତ ମମତା ମନ
ନଥାଏ ବା ତାପସର ସିଦ୍ଧି ସାଧନେ ।
ଦେଖି ତାଙ୍କ ଆଚରଣ କୁରଙ୍ଗ କୁରଙ୍ଗୀଗଣ
କଲେ ତପ ପ୍ରେକ୍ଷଣ ଉତ୍ସୁକମନେ,
ପ୍ରସୂନ ପ୍ରଦାନ ପାଇଁ ଶାଖାଗ୍ର ଶାଖୀ ନୁଆଇଁ
ଚିହ୍ନଲା କି ସଦା ବୁହିଁ ପଣ ଅର୍ଜ୍ଜୁନେ,
ବଶୀଭୂତ ହୋଇ ପବନ
ତପୋଜନିତ କ୍ଳାନ୍ତି ବା କରେ ନୋଦନ ।
ପାସୋରି ଗାର୍ହସ୍ଥ୍ୟ ପ୍ରୀତି ଧୃତାୟୁଧ ହୋଇନତି
ଆଚରିଲେ ତପୋବ୍ରତ ଶୁଦ୍ଧ ୨୫ସ୍ୱାନ୍ତରେ,
ବାନୁଦାନ ବଟେ ୨୬ଦାନ୍ତ ତାପସଙ୍କ ଶରୀର କାନ୍ତି
ବନରକ୍ଷି ମନେ ଭ୍ରାନ୍ତ ଜନ୍ମାନ୍ତେ ଖରେ,

୧୩ କୁଶ ୧୪ ଏକାଗ୍ରଚିତ୍ତରେ ୧୫ ବାୟୁ ଭକ୍ଷଣ କରି ୧୬ ଇନ୍ଦ୍ର ଓ ଗ୍ରୀବ ୧୭ ପବନ ଶଙ୍ଖ ଓ କୁଶ ୧୮ ହଂସ ଜନ୍ତୁ ପରିପୂର୍ଣ୍ଣ ୧୯ନିଭୃତ ସ୍ଥାନ ୨୦ବରଗଛ ୨୧ ବରଗଛ ୨୨ ସାପ ୨୩ ମୟୂର ୨୪ ନିର୍ଭୀକ ୨୫ ଚିତ୍ତ ୨୬ ତପଃ କ୍ଳେଶ ଜନିତ ସହିଷ୍ଣୁତା

ବହୁରି ବହୁରି ସକଳେ,
[୧]ପୁରଶରେ ଜଣାଇଲେ ଭକ୍ତିବନ୍ଦ୍ୟ ଜନେ ।
କଟୀ ଆବରଣ [୨]ଚୀର    ଶୁଷ୍କତର ପର ଶରୀର
ଦିଏ କି ତଡ଼ି ତିମିର ବନଦେଶର
ଭୀଷଣ ଭୁଜଙ୍ଗ ପରି    ଭୁଜବେନ ଦେଖି ଅରି
ନ ପଶେ ପାଶକୁ ଡରି ଋଷିଙ୍କର
ଦେଖି ତାଙ୍କ ତପଃସାଧନା
ଭାବି ଭାବି ହେଲେ କିବା ଅଥୟମନା ।
ଶୈଳଲକ୍ଷ୍ମୀଙ୍କ ବଚନ    ଶ୍ରବଣେ [୩]ପାକଶାସନ
[୪]ବାସବ ବୋଲି ଭାବନ କରିଲେ ମନେ
ଟଳାଇବାକୁ ଉକତ    ଡକାଇ ଅପ୍‌ସରଗଣ
ପେଷିଲେ ବନେ ଝଟତି ତପୋନାଶନେ
ଇନ୍ଦ୍ରଙ୍କ ନେ [୫]ସିତାଶ୍ୱଙ୍କର,
ମୋଦଭରେ ବାହାରିଲେ [୬]ରାମାମାନକର ।

## ଅପ୍‌ସରାମାନଙ୍କ ଆଗମନ

ଆରୋହି ସ୍ୟନ୍ଦନେ ତ୍ରିଦଶବଧୂଏ ଗନ୍ଧର୍ବସଙ୍ଗରେ,
ପ୍ରବେଶିଲେ ଆସି ମହାଶୈଳର ମେଖଳା-ଦେଶରେ ।
ଅବତରି ତହିଁ କମନୀୟ କାନ୍ତ କାନନଦେଶର,
କରନ୍ତେ ଲୋକନ ବିହାରେ ମାନସ ବଳନ୍ତି ସତ୍ୱରେ ।
ବିଲୁଳିତ କେଶା ନାୟିକାଙ୍କର ବିମୁଗ୍ଧ ହୃଦୟେ
ପୁଷ୍ପଭରା ଶାଖୀଚୟ ଦେଖିଗଲେ [୭]ପ୍ରସୂନାବଚୟେ ।
ଉନ୍ମିଷିତ ପୁଷ୍ପନୟନେ ଶାଖୀଏ ଆଦର ସହିତ,
ସୁରବଧୂବୃନ୍ଦ ଦେଖୁଥିଲେ ଯେହ୍ନେ ହୋଇଣ ପ୍ରଣତ ।
କେହି କୌତୁହଳ ଉଗୁଳାଉଥିଲେ କାହାରି କାହାରି,
ପୀନ ପୟୋଧର ପୁଷ୍ପ ଯୋଗରେ ପାଣ୍ଡୁବର୍ଣ୍ଣ ଧରି ।
ଏକାଳେ [୮]ଅରୁଣ ଅଧୋମୁଖ ହୋଇ ଦିଶିଲେ ପାଟଳ
[୯]ଅରୁଣ ବରଣେ ଶୋଭିଲା [୧୦]ବାରୁଣୀ [୧୧]ବିୟତମଣ୍ଡଳ
ମୁଦିତ ହୋଇ କି [୧୨]ସହସ୍ରମରୀଚି ଶେଷର ସୌଷ୍ଠବେ
ଲୋଡ଼ନ୍ତି ମାତେ [୧୩]ବହଙ୍ଗବତୀନ ମଧ୍ୟରେ ଆଜବେ

୧ ଇନ୍ଦ୍ର ୨ ବଲ୍କଳ ୩ ଇନ୍ଦ୍ର ୪ ଅର୍ଜୁନ ୫ ଅର୍ଜୁନ
୬ ସୁନ୍ଦରୀ ନାରୀ ୭ ଫୁଲ ତୋଳିବା ୮ ସୂର୍ଯ୍ୟ
୯ ସିନ୍ଦୂର ୧୦ ପଶ୍ଚିମ ୧୧ ଆକାଶ ୧୨ ସୂର୍ଯ୍ୟ
୧୩ ସମୁଦ୍ର

ନାନାଜାତି ଫୁଲେ ସଜାଇ କୁନ୍ତଳ ଅପ୍‌ସରାବୃନ୍ଦ,
[୧]ଉଦୟଗିରି ଦୃଶ୍ୟ ଦରଶନ କରି ପାରିଲେ [୨]ବସନ୍ତ
ଅସ୍ତାଚଳଡ଼ଇଁ ପଡ଼ନ୍ତେ [୩]ପତଙ୍ଗ ଯେ ଯାହାଖାଡ଼ରେ,
ରହିଲେ [୪]ପତଙ୍ଗେ ଶାବକ ସଙ୍ଗରେ [୫]ତିମିତ ଭାବରେ
[୬]ଦିନଶାନ୍ତ ସମୟେ ମନ୍ଦମନ୍ଦ ଭାବେ ଘୋଟନ୍ତେ ତିମିର,
ଖାଦ୍ୟ ଅନ୍ୱେଷଣେ ଶାବଚୟ ହୋଇଲେ ଅସ୍ଥିର ।
ଅବନତ ମୁଖେ ରହିଲ ନଳିନୀ ନଦେଖି ରବିକି,
କାମିନୀ ବିୟୋଗ ଯାମିନୀରେ ଅତି ବାଧ୍ୟନ୍ତି [୭]ରଥାଙ୍ଗିକ ।
କେତକୀ କୁସୁମ କେଶର ସଦୃଶ ପାଣ୍ଡୁବର୍ଣ୍ଣ [୮]ଅଂଶୁ,
ପୂରୁବ ଦିଗରେ ଏକାଳେ ଶୋଭିଲେ ବିସ୍ତାରି ହିମାଂଶୁ
[୯]ତମସ୍ତୋମ ତୂର୍ଣ୍ଣେ ମଧୁରା ବକ୍ଷରୁ ହୁଅନ୍ତେ ଅନ୍ତର,
ନପାରିଲ ସହି ବିରହୀ ରଥାଙ୍ଗ ଦେଖି ଇନ୍ଦୁକର ।
ମନୋହର ଦ୍ରବ୍ୟକେତେକେବେଳେ ହେଲେ ନଦିଏ ଆନନ୍ଦ
ଦୁଃଖିତ ପ୍ରାଣୀର ହୃଦୟେ ଧବଳେ ଦେଖାଇଲେ ଚନ୍ଦ
[୧୦]ଗଭସ୍ତି ସନ୍ତତି [୧୧]ଅଟ୍ଟାଳପାଡ଼ାକ ବ୍ୟାପନ୍ତେ କ୍ରମଶଃ
ଛାଦିକାବଧୂଏ ଚଉପାଶେ ବେଢ଼ି ରହିଲେ [୧୨]ବିକଶ
ଚନ୍ଦ୍ରିକା ପିପାସୁ ଚକୋର ଚକୋରୀ ଶାଖିଶାଖାପରେ,
ଗୃହକୁ ଅନାଇଁ ରହିଥାନ୍ତି ବସି ସହର୍ଷ ସ୍ୱାନ୍ତରେ ।
ସରୋବରେ ଜଳେ ହସି ଉଠିଲିଣି ପାଖୁଡ଼ା ମେଲଇ,
କୁମୁଦିନୀ ନବେ [୧୩]ସୁଧାସୂତଙ୍କର ଦରଶନ ପାଇ ।
ନିଶୀଥିନୀ ଶେଷ ହେଲା କ୍ରମେ କ୍ରମେ ଶୟନ ବର୍ଜ୍ଜନ,
କରି କାମିନୀଏ ସାରିଲେ ତକ୍ଷଣେ ଶରୀର ମାର୍ଜନ ।
ଧୀରେ ଧୀରେ [୧୪]ଧ୍ୱାନ୍ତ
ଧଇଁଗଲା ଗୁଡ଼ି ଉଇଁଲେ [୧୫]ଧ୍ୱାନ୍ତାରି,
ଅଳକ୍ତକ ରସେ ରଞ୍ଜାଇଲେ ପାଦ ପ୍ରାତଃକୃତ୍ୟ ସାରି ।
ପ୍ରାକୃତିକ ତଟ ଉତ୍ତୁଙ୍ଗ ଶୃଙ୍ଗରେ ହେଲା ସୁଖପ୍ରଦ,
କ୍ରମେ କ୍ରମେ ଏଣେ ବସୁନ୍ଧରା ବକ୍ଷ ଦିଶିଲା ବିଶଦ
କେହି ଶୋଭାଲାଗି ନୟନେ କଜ୍ଜଳ କପୋଳ ତିଳକ,
ଗ୍ରଥିତ ପ୍ରସୂନ ମାଳା ଉରେ ହେଲା ଆନନ୍ଦ ଦାୟକ ।
ପ୍ରିୟାଙ୍ଗ ସଂସର୍ଗ ଲଭିବା ମାନସେ ତପସ୍ୟା ସ୍ଥାନରେ.
କୁଚ କଳଶକୁ ଦେଖାଇ ଦେଖାଇ ପ୍ରବେଶିଲେ ଶତ

୧ ହିମାଳୟ ୨ ରାତ୍ରି ୩ ସୂର୍ଯ୍ୟ ୪ ପକ୍ଷୀ ୫ ନିଶ୍ଚଳ
୬ ସନ୍ଧ୍ୟା ୭ ଚକ୍ରବାକ ୮ କିରଣ ୯ ଅନ୍ଧାର ସମୂହ
୧୦ କିରଣ ସମୂହ ୧୧ ସଦନ ୧୨ ଚନ୍ଦ୍ର ୧୩ ଚନ୍ଦ୍ର
୧୪ ଅନ୍ଧାର ୧୫ ସୂର୍ଯ୍ୟ

ତଦନ୍ତେ ସମାଏ ୧ତପସ୍ୟ ଦର୍ଶନେ ଗମିଣ ଉତ୍ସୁକେ
ତପସ୍ୟା ଭଙ୍ଗିବା ଲାଗି ନାନାଭଙ୍ଗି କରିଲେ କୌତୁକେ
୨ବାରୁଣୀକି ପିଇ ତରୁଣୀଏ କେତେ ଲଭି ଉନ୍ମାଦନ,
କୁଣ୍ଠାକୁଣ୍ଠି ହୋଇ ପ୍ରେମେ ପରସ୍ପର ଦିଅନ୍ତି ଚୁମ୍ବନ ।
କେହିବା ନବୋଢ଼ା ବ୍ରୀଡ଼ାକୁ ବରଜି ନୀବୀବନ୍ଧ ବାସ,
ଦେଇଥିଲା ଟେକି ଟାଣିବାକୁ ମନ ପ୍ରକାଶି ଉଲ୍ଲାସ ।
ମର୍ଯ୍ୟାଦାକୁ ଲଙ୍ଘି ୩ପୀବର ସ୍ତନରେ ହୀନ ପୟୋଧରେ
ଉଚ୍ଛୃଙ୍ଖଳ ହୋଇ କରିଲେ ତାଡନ ପ୍ରମଦାନିକର ।
କୌଣସି ନାୟିକା ନିର୍ନିମେଷ ନେତ୍ରେ ଅର୍ଜୁନ ରୂପକୁ
ନିରୀକ୍ଷଣ କରି ଠିଆ ହୋଇଲା ପାଶେ ଦେଖାଇ ଉରକୁ ।
ନିଜ କର୍ଣ୍ଣୋତ୍ପଳ ସ୍ୱହସ୍ତରେ ଧରି କେହିବା ରମଣୀ,
ମୁନି ଉରୋଦେଶ କରିଲା ତାଡନ ଆସି ସେହିକ୍ଷଣି ।
ନ ଫେରାଇ ଦୃଷ୍ଟି ତହିଁଲେ
୪ତାପସ୍ୟ ୫ତଦ୍‌ଗତ ୬ଚିତ୍ତବୃତ୍ତିରେ,
ବାକି ତପୋତେଜ ଦର୍ଶିଲେ ମଦନ ଏକାକେ ଅପ୍ସରେ
ବଶୀଭୂତ ହୋଇ କାମିନୀଏ ଆଚରି ବଞ୍ଚନା,
ବଜାନ୍ତେ ବାଣାକୁ ବୀଭତ୍ସୁ ଅଟଳ ନହୋଇ ୭ଉନ୍ମନା
ସକଳ କୌଶଳ ହେବାରୁ ନିଷ୍ଫଳ ଚଞ୍ଚଳା ଯୋଷିତେ
୮ହୋଇ ଅନ୍ୟମନା ଗନ୍ଧର୍ବ ନିକଷା ଫେରିଲେ ତ୍ୱରିତେ
୯ତୁହିନ ରହିତ ୧୦ପୁଷ୍ପମାସ କଲା ଏକାଳେ ପ୍ରବେଶ
ଶୁଭ କୁହରିତ ଆତାଳପାତାଳ କାନନ ପ୍ରଦେଶ ।
୧୧ଆସଙ୍ଗ ୧୨ଅଳିଏ ଆଶ୍ରା କଲେ ଯାଇ ମୃଣାଳୀ ନବନେ
ମଳୟ ମାରୁତ ଅବିରତ ବ୍ୟସ୍ତ ସୁରଭି ବଣ୍ଟନେ ।
ଗନ୍ଧର୍ବ ୧୩ନିବନ୍ଧ ସୁରଙ୍ଗନା ନୃତ୍ୟ ୧୪ସୁରଭି ସମୟେ
କିଞ୍ଚିତ ବିକ୍ରିୟା ନକଲା ପ୍ରବେଶ ୧୫ସିତାଶ୍ୱ ହୃଦୟେ
ହରିସୁତ ଜିଷ୍ଣୁ ନ ହୁଅନ୍ତେ ବଶ ସୁରବଧୂଚୟ,
ଗନ୍ଧର୍ବ ସଙ୍ଗରେ ଲେଉଟିଲେ ଦୁଃଖେ ଆପଣା ନିଳୟ

୧ ଅର୍ଜୁନ ୨ ମଦ୍ୟ ବିଶେଷ ୩ ମୋଟା ୪ ଅର୍ଜୁନ
୫ ଏକାଗ୍ର ୬ ଚିତ୍ତରେ ୭ ଅନ୍ୟମନସ୍କ ୮ ବ୍ୟାକୁଳ
ନହୋଇ ୯ କାତର ୧୦ ବସନ୍ତ ୧୧ ସତତ
୧୨ ଭ୍ରମରମାନେ ୧୩ ଗୀତ ୧୪ ବସନ୍ତ ୧୫ ଅର୍ଜୁନ

## ସପ୍ତମ ସର୍ଗ

## ଅର୍ଜୁନଙ୍କ ଆଶ୍ରମରେ ଇନ୍ଦ୍ରଙ୍କ ପ୍ରବେଶ

ମନେରଖି ଶତ୍ରୁଦ୍ୱେଷ   ନିର୍ବିକାରେ ୧ଗୁଡ଼ାକେଶ
ତପସ୍ୟାମଗ୍ନ ସନ୍ଦେଶ ୨ଘନବାହନ
ଅପ୍ସରା ମୁଖୁ ଶ୍ରବଣେ   ଅର୍ଜୁନାଶ୍ରମ ବୀକ୍ଷଣେ
ବାହାରି ଅଳପ କ୍ଷଣେ ହୋଇ ପ୍ରସନ୍ନ
୩ଅଧ୍ୱକ୍ଳାନ୍ତ ପଳିତ ପରି,
ପ୍ରବେଶିଲେ ମୁନି ଅଗ୍ରେ ଛଳନା କରି ।
ଖଣ୍ଡିଏ ଯଷ୍ଟି ହସ୍ତରେ   ଜଟାଜୂଟ ମସ୍ତକରେ
୪ସିତକେଶ ଭ୍ରୂଯୁଗରେ ଜୀର୍ଣ୍ଣ ୫ଅଜିର
ତାହାଙ୍କୁ କରି ଦର୍ଶନ   ପ୍ରେମରେ ୬ପ୍ରେମନନ୍ଦନ
ଦିଅନ୍ତେ ପାଶେ ଆସନ ଏମନ୍ତ ଗିର
ଶ୍ରମଦୂର କରିବା ପରେ
ଭାଷିଲେ ସେ ବର୍ଷୀୟାନ କଥା ଛଳରେ ।
ମାଦୃଶ ବ୍ୟକ୍ତି ଏ ଭବେ   ବିଷୟୁ ନିବୃତ୍ତି ଲଭେ
ମାତୁଳ ନିତି ଗଢ଼ିବେ ପତଡ଼ ମୋଚନେ,
ସୌମ୍ୟ କଳେବର ତବ   ତଥା ଗୁଣ ସମ୍ଭବ
ଉଭୟ ଗୁଣ ଦୁର୍ଲଭ ତବ ସାଧନେ
ସୁବର୍ଣ୍ଣରେ ସୁଗନ୍ଧ ଯୋଗ,
ତେଜନ୍ତ ୭ଅକ୍ଷରରେ ଯୌବନ ଭୋଗ ।
ଦେଖ ଯଉବନ ଶିରୀ   ଟଳଉଛି ଥିରି ଥିରି
୮ଘନାନ୍ତ ଜୀମୂତ ପରି ବିଷୟ ଯୋଗେ,
ଆସକ୍ତ ରଖି ମାନବ   ପାଉଛି ସଦା ୯ଆସ୍ରବ
ଗୌରବ ସିନା ନ୍ୟସ୍ତ ଲାଳସା ଯୋଗେ
ଦୁଃଖପୂର୍ଣ୍ଣ ଜୀବଜୀବନ
ଆପାତ ସୁଖକୁ ସାଧୁ କରେ ବର୍ଜନ ।
କଲ୍ୟାଣକାରିଣୀ ବୁଦ୍ଧି   ଉପେକ୍ଷି ନିପୂତ ୧୦ଋଦ୍ଧି
କରିବାକୁ ଚିତ୍ତଶୁଦ୍ଧି ରହେ ଜାଗ୍ରତ
ତପେ ହିଂସାପରାୟଣ   ହୋଇ ଆୟୁଧ ଧାରଣ
ଅଟଇ ମହା ଦୂଷଣ ଅନବରତ

୧ ଅର୍ଜୁନ ୨ ଇନ୍ଦ୍ର ୩ ପଥ ୪ ଶୁକ୍ଳ ୫ ଦେହ
୬ ଅର୍ଜୁନ ୭ ତପସ୍ୟା ୮ ଶରତ୍‌କାଳ ୯ କ୍ଲେଶ
୧୦ ସମ୍ପତ୍ତି

ମୁକ୍ତିକାମୀ ଶରୀର ସ୍ତବ
ନରଖି ଆସ୍ଥା ଇଚ୍ଛାଇ ପରମଗତ ।
ପ୍ରାଣୀଙ୍କି ଜନ୍ମାଏ ଭୟ    ତୁମର ଏ ବାତୁଳତ୍ୱ
କରିବାକୁ ଶତ୍ରୁଜୟ ତୁମ କାମନା
ଶାନ୍ତିମାର୍ଗ ପରିହରି    ଖରତର ଅୟୁଧ ଧରି
ବସିଛ ତପସ୍ୟା କରି ବୃଥା ଭାବନା
ତୁମର ଏ କର୍ମ ଜଟିଳ
କରୁଛ ପଙ୍କିଳ ଯିନା ସ୍ୱଚ୍ଛ ସଳିଳ ।
୧ପୁରୁଷାର୍ଥ ଶତ୍ରୁ ଧନ    କ୍ଲେଶସାଧ୍ୟ ଉପାର୍ଜନ
ଉପୁଜେ ନାନା କଷଣ ତାର ରକ୍ଷଣେ
ନଜାଣି ଭବେ ୨ଅବ୍ୟକ୍ତ    ଧନପ୍ରତି ଅନୁରକ୍ତ
କୋହ୍ନ କେବେ ଅନାସକ୍ତ ତହିଁର ପଣେ
ଅନର୍ଥର ହେତୁ ସମ୍ପତ୍ତି
ଅନ୍ତରେ କରେ ସଦା କୁଟିଳଗତ ।
ଅର୍ଥଲୋଭ ପରିହରି    ସମାଧି ଆଶ୍ରୟ କରି
ବୀରଧର୍ମ ଅନୁସରି ଅଛ ଏଠାରେ
ଆପଣା ପୀଡ଼ା ଯେପରି    ପରର ବାଧା ସେପରି
ଭଲମନ୍ଦ ନ ବିଚାରି ଯେଉଁ ସଂସାରେ
କରୁଅଛି କରମମାନ,
ଅସହାୟେ ଭୋଗଇ ସେ ଦୁଃଖବିତାନ ।
ନ୍ୟାୟକୁ ଅବଲମ୍ବନ    କରିଥାଏ ତପୋଧନ
ସମରୋତ୍ସାହ ବର୍ଜନ କର ସତ୍ତ୍ୱରେ
ନାସିକା ଚକ୍ଷୁ ଶ୍ରବଣେ    ଥାଆନ୍ତୁ ଇନ୍ଦ୍ରିୟଗଣ
ନପଶି କାର କାରଣ ସ୍ୱଚ୍ଛ ଅନ୍ତରେ
ଅନ୍ତଃ ଶତ୍ରୁ କର ଦମନ
ଯଶଲଭ ତପେ କରି ଜିଣି ଭୁବନ ।
ଜୀବନଟା ବିଷଯୁକ୍ତ    ଅନନ୍ତୁକୂଳ ବୋଲି ଉକ୍ତ
ଥିବାରୁ ଯୋଗୀଏ ମୁକ୍ତ ହେବା ନିମିତ୍ତେ,
କରନ୍ତି ଉଦ୍‌ଯୋଗ ନିତ    ବିଷୟେ ନରଖି ପ୍ରୀତି
ଅବଲମ୍ବି ଧୃତ ଶାନ୍ତ ପ୍ରଶାନ୍ତ ଚିତ୍ତେ
ଗୁଣାର୍ଜନ ଅତି ଦୁର୍ଲ୍ଲଭ
ଜଳର ବୁଦ୍‌ବୁଦ୍ ପରି ଯିନା ବୈଭବ ।

୧ ମୁକ୍ତି ୨ ମୂର୍ଖ

ନିର୍ଣ୍ଣୟ ପ୍ରିୟାପ୍ରିୟ    ନଜାଣେ ଅଜିତେନ୍ଦ୍ରିୟ
କରେ ଘୃଣା ପୂଜନୀୟ ଦେଖନ୍ତି ଜନେ,
ପୁନର୍ଜନ୍ମ ନିବର୍ତ୍ତକ    ମୋକ୍ଷର୍ଦ୍ଧି ସୁଖଦାୟକ
ପାଶୋର ମନ୍ତ୍ରିଁ ଦୂଷକ ସ୍ୱାର୍ଥସାଧନେ
ସ୍ୱପ୍ନତୁଲ୍ୟ ଅର୍ଥାନୁସରି
ପୁରୁଷରେ ହୁଏ ଭ୍ରଷ୍ଟ ବଳଦ ପରି ।
ସ୍ୱାର୍ଥସାଧନ ନିମିତ୍ତ    ପରାଧୀନ ଅନୁଗତ
ହେଲେ ଶସ୍ତ ଭରତ ପାଇବ ମୁକ୍ତି
ଭାଷି ବା ଅନ୍ତେ ବାସବ    ଓଜସ୍ୱୀ ଅର୍ଥ ଗୌରବ
ଅର୍ଜ୍ଜୁନ ସିଦ୍ଧସମ୍ପ୍ରତି ଅକୈତବ ମଧୁର ଉକ୍ତି
ଉତ୍ତରନ୍ତେ ଅତି ଗମ୍ଭୀରେ
ଶତ୍ରୁଘ୍ନ ସେ ଗୁଡ଼କ ଶୁଣିଲେ ଧୀରେ ।

## ଅର୍ଜ୍ଜୁନଙ୍କ ପ୍ରତ୍ୟୁକ୍ତି

କହନ୍ତି ବିଜୟ    "ଜାତିରେ କ୍ଷତ୍ରିୟ
କୁନ୍ତୀଦେବୀଙ୍କ ମୁଁ ତନୟ,
୧କୃଷ୍ଣ ଦ୍ୱୈପାୟନ    ଉପଦେଶ କ୍ରମେ
ରଖିଅଛି ତପେ ହୃଦୟ,
ବୃଦ୍ଧ ହେ, ବୈରିନିର୍ଯ୍ୟାତନ ନିମିତ୍ତ
୨ଶକ୍ରମୂର୍ତ୍ତିବାହନ ଉପାସନା ଲଗି
ହୋଇଅଛି ଯୋଗେ ୩ଆସିକ୍ତ ।
କପଟ ପାଶେ ମୋ    ଅଗ୍ରଜ ୪ଅଜାତଶତ୍ରୁ
ସର୍ବସ୍ୱ ହରାଇ ପଣରେ,
ପାଞ୍ଚାଳୀକ ହେନ    ଅନୁଜ ସହିତ
ପ୍ରବେଶିଲେ ବନେ ଦୁଃଖରେ,
ବୃଦ୍ଧ ହେ, ବୈରାଗ୍ୟ ଆସିବ କପରି
ସନ୍ତାପିତ ୫ସ୍ୱାନ୍ତ ହେଉଅଛି ଯାର
୬ଶାତ୍ରବେ ହାରାଇ ଯେପରି ।
ଅବର୍ତ୍ତିନୀ କରି    ସଭାରେ, ଆମର
ବସନ ଆକର୍ଷି ରାଗରେ,
ମର୍ମଚ୍ଛିଦ ବାକ୍ୟ    କରିଲେ ପ୍ରୟୋଗ
ଗାଙ୍ଗେୟ ଦ୍ରୋଣାଦି ଆଗରେ

୧ ବ୍ୟାସଦେବ ୨ ଇନ୍ଦ୍ର ୩ ଉପବିଷ୍ଟ ୪ ଯୁଧିଷ୍ଠିର
୫ ଚିତ୍ତ ୬ ଶତ୍ରୁମାନେ

ବୁଦ୍ଧଦେବ, ଯାଜ୍ଞସେନୀ କେଶଅମ୍ବର,
ଦୁର୍ଯ୍ୟୋଧନାଦେଶେ ଦୁଃଶାସନ ଆସି
କଲା ଆକର୍ଷଣ ସଭାରେ ।
ତଟସ୍ଥ ହୋଇ ଅମ୍ଭେ ପାଞ୍ଚଭାଇ
ହରିଣ ସଦୃଶ ଆହାରେ,
ନାନାକ୍ଲେଶସହ କଟାଉ ସମୟ
ଘୋର ବନଦେଶ ବହାରେ
ବୁଦ୍ଧଦେବ,ମାନହୀନ ବ୍ୟକ୍ତି ଭବରେ
ତୃଣଠାରୁ ମଧ୍ୟ ହୀନ ବିବେଚିତ
ହୋଇଥାଏ ଲୋକମତରେ ।
ଗୁଣପ୍ରିୟ ଭ୍ରାତ କୌନ୍ତେୟ ସହିଲେ
ନିକୃଷ୍ଟ ଅବସ୍ଥା ଆମର
ନଲଙ୍ଘି ମର୍ଯ୍ୟାଦା ସତ୍ୟ ରକ୍ଷାକରି
ସହୁଛନ୍ତି ଦୁଃଖନିକର
ବୁଦ୍ଧଦେବ,ମନସ୍ୱୀ ପୁରୁଷ ମାନସ
କଳୁଷ ନହୋଇ ସ୍ୱଚ୍ଛତାକୁ ଧରି
ବିକସେ ଅପୂର୍ବ [1]ସାହସ ।
ପ୍ରତାପ ସମ୍ପନ୍ନ ମାନୋନ୍ନତ ଜନ
ବୀରଧର୍ମ ପାଳି ମର୍ତ୍ତ୍ୟରେ
ବୈରିବିଧ୍ୱଂସ କରି ରଣମୂଳେ
ରଖଇ ଭାରତ କୁଳରେ
ବୁଦ୍ଧଦେବ,ଜୟଶ୍ରୀ ଲୋଡଇ କେବଳ
ଦଇବୁ ଆଶିଷ ଯେପରି ଏକର୍ମ
ହେବ ଅବଲମ୍ବେ କୁଶଳ ।
ଊଷୀର କ୍ଷେତ୍ରରେ ଶାଳିବୀଜବୁଣା
ଘଟଇ ବିଫଳ ଯେସନ
ସଙ୍ଗତି ନଜାଣି ଉପଦେଶ ଦେବା
ହୁଅଇ ଅଗ୍ରାହ୍ୟ ତେସନ
ବୁଦ୍ଧଦେବ,କୁମୁଦବାନ୍ଧବ [2]ଅବକାଶେ

[1] ଶକ୍ତି [2] ଆକାଶେ [3] ଉଲ୍ଲାସେ

ଉଦିତ ହୋଇଲେ ସରୋଜିନୀ ମନ
ମାତ୍ର ଉଠିବ କି [3]ବିକାଶେ ?
ସିନ୍ଧୁର୍ମି ସଦୃଶ ଚପଳ ସୁଖକୁ
ନଇଛୁ ଅନିତ୍ୟ ସଂସାରେ
ସମୁଚ୍ଛେଦ ଲାଗି ଆପଣା ଶତ୍ରୁକୁ
ଦେଶଲକ୍ଷ୍ମୀଙ୍କର ଉଦ୍ଧାରେ
ବୁଦ୍ଧଦେବ,ନୋହିଲେ ଚେଷ୍ଟିତ ପୁରୁଷ
ଇହଲୋକେ ତାର ବଢ଼ିବ କପରି
ଗୁଣୀଙ୍କ ସଭାରେ ପୌରୁଷ ।
କହ ତପୋଧନ ଶତ୍ରୁ ନଜିଣି
ଯେ ପୁରୁଷ ଶାନ୍ତ ଆଚରେ,
ପୁରୁଷ ନାମର ସାର୍ଥକତା ନାସ୍ତି
ଲଭେ ପରାଭବ ଲୋକରେ
ବୁଦ୍ଧଦେବ,ପଦ୍ମମୁଖୀ ଦେଖିଲ ବ୍ୟସନ
ନିର୍ମଳ ଚନ୍ଦ୍ରରେ କଳଙ୍କ ସଦୃଶ
ରହିଲ ଲାଞ୍ଛନ ଜୀବନେ ।
ଜନ ଅପବାଦ ନଡରି ଆଚରେ
ସର୍ବଦା ଧୂର୍ତ୍ତତା ଯେ ଜନ
ଅମର୍ଷ ଅଗ୍ନି ନିକ୍ଷେପଣେ କରି
ଘଟାଇବ ତାର ନିଧନ
ବୁଦ୍ଧଦେବ,ନକରି କେ ନିନ୍ଦା ଭବରେ
ଶତ୍ରୁକୃତ ପାପ ପଙ୍କକୁ ନଧୋଇଲେ
ସେମାନଙ୍କ ଚକ୍ରୀ ଅସ୍ତ୍ରରେ
ଶୁଣି ସହସ୍ରାକ୍ଷ ବାସବୀଙ୍କ ଠାରୁ
ଏମନ୍ତ କରୁଣ ବଚନ
ସ୍ୱରୂପ ପ୍ରକାଶ କରି ତତକ୍ଷଣେ
ଆଲିଙ୍ଗି ଭାଷିଲେ ଏସନ
କାପଳୀ,ସେବନ କର ଯାଇ ଖରେ
ସନ୍ତୁଷ୍ଟ ହେଲେ ସେ ନିବେଦିବ ତାଙ୍କୁ
ଯେପରି ଜିଣିବ ସମରେ ।

## ଅଷ୍ଟମ ସର୍ଗ
## ଅର୍ଜ୍ଜୁନଙ୍କ ତପସ୍ୟା

୧ଜୀମୂତ ତିରୋଧାନ ପରେ ବଳୟ,
୨ସପ୍ତାଶ୍ୱ ଅଭିମୁଖେ କରିଲେ ଲୟ ।
ପୁଲକେ ଏକପାଦେ ହେଲେ ସେ ଠିଆ,
ବାହ୍ୟାଭ୍ୟନ୍ତର ଶୁଦ୍ଧି ଲୁଡ଼ିଲେ ଖିଆ ।
୩ନଗପତିସନ୍ନିଭ ହେଲେ ଅଚଳ,
କାମନା ସିଦ୍ଧି ଲାଗି ହୃଦ ଅଟଳ ।
ମହାମନା ଲୋକର ଧୈର୍ଯ୍ୟ ଦୁର୍ଜ୍ଜେୟ,
ମଣନ୍ତି ଜୀବନକୁ ସର୍ବଦା ହେୟ ।
ସ୍ୱଭି ପଦ୍ମଫଳେ ମନ ନଦଳେ,
ସୁକୃତି ପୁରୁଷର ଧ୍ୟାନ ନ ଟଳେ ।
ରଜତମ ଉଭୟେ ହେଲେ ପରାସ୍ତ,
ସତ୍ତ୍ୱଗୁଣ ଲୋକର ଚିତ୍ତ ପ୍ରଶସ୍ତ ।
ବଲ୍କଳ ବସ୍ତ୍ରକୁ କଲେ ଧାରଣ,
ଟଳିଉଛନ୍ତି ଦେଖି ବାରଣଗଣ ।
ନିଶୀଥେ ପ୍ରଜ୍ୱଳିତ ଜ୍ୱଳନସମ,
ଦିଶୁଥିଲା ୪ଅଜିର ତେଜସ୍ତମ ।
ଚଉଦିଗରେ ଦନ୍ତପ୍ରଭା ପ୍ରସରି,
ଶୋଭୁଥିଲା ଏକାକୀ ପୂର୍ଣ୍ଣେନ୍ଦୁ ପରି ।
ନିତ୍ୟ ସବନ ଲାଗି ଯିବା ଚରଣ,
ଧରାବକ୍ଷ କମ୍ପିତ କଲେ କ୍ଷେପଣ ।
କାର୍ମୁକ ଦେଖି ମନେ ହୁଏ ପ୍ରତୀତ,
୫ଦମ୍ଭୋଳିଧର ଗୃହ ପରା ପତିତ ।
ଦୁର୍ଦ୍ଧର୍ଷ ଜ୍ୟୋତି ଦେଖି ମହର୍ଷିଗଣ,
୬କାଳେଶପାଶେ ଯାଇ ନେଲେ ଶରଣ ।
ନିକାଳକଣ୍ଠ ଶମ୍ଭୁ ଦର୍ଶନ ପାଇଁ,
ଶଇଳ ଶିଖରକୁ ଦେଲେ ଅନାଇଁ ।
ସୌମ୍ୟମୂରତି ଧରି ଚନ୍ଦ୍ରଶେଖର,
ସାକ୍ଷାତ ଦେଲେ ଆସି ମୁନିନିକର ।

ମସ୍ତକେ ଜଟାଜୂଟ ଅହି କଣ୍ଠେ,
ସ୍କନ୍ଧ ଶୋଭିତ ପଜ୍ଞ ଉପବୀତରେ ।
ତୁହିନରାଶି ପରି ଶୁଭ୍ର ଦିଶଇ,
୮ବିସାରିଚନ୍ଦ୍ରତେଜ ସରି ନୁହଇ ।
ଆଗରେ ଠିଆ ହୋଇ ତାପସରୂପୁ,
ଭାଷିଲେ ଅର୍ଜ୍ଜୁନଙ୍କ ତପବିଷୟ ।
"ଜଗତକୁ ଜିଣିବା ଇଚ୍ଛା ବା କରି,
ଦିଶନ୍ତି ତେଜୋବନ୍ତ ତପ ଆଚରି" ।
ଏମାନଙ୍କ ଉଦନ୍ତ ଶୁଣି ଶଙ୍କର,
"ଶତ୍ରୁ ସଂହାର ଲାଗି ପୃଥାକୁମର ।
ଅର୍ଜ୍ଜୁନ ନବଜନା ମୋର କରନ୍ତି,
ନଜାଣନ୍ତି କପଟ ତାପସପନ୍ଥି ।
ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ଅନୁରୋଧରେ,
ଦାନବ ବଧ ଲାଗି ପ୍ରଜାହିତରେ ।
ଜନମିଛନ୍ତି ମର୍ତ୍ତ୍ୟଲୋକେ ଅର୍ଜ୍ଜୁନ,
ଶକ୍ର ଆଦେଶମତେ ଯୋଗେ ମଗନ ।
ମୂକ ନାମେ ଦଇତ ଏକ ବାହାରି,
ଅର୍ଜ୍ଜୁନ ତପ ସୁକୃତ୍ୟ ବୈରୀ ।
ତାଙ୍କ ନିଧନ ଲାଗି ହେଲାଣି ବ୍ୟଗ୍ର,
୯ଭୂଦାର ରୂପେ ଯାଏ ତାହାଙ୍କ ଅଗ୍ର ।
ପାପାସକ୍ତ ନିରତ ସେହି ରାକ୍ଷସ,
ବିନାଶ କରି ତାକୁ ରଖିବ ଯଶ ।
ମୋ ସଙ୍ଗେ ଆସ ତୁମେ ଋଷି ସକଳ,
ଦେଖିବ, ଦୈତ୍ୟ ଚେଷ୍ଟା ହେବ ବିଫଳ" ।
ଏମନ୍ତ କହି ୧୦ଖରୁ କିରାତ ବେଶ,
ଧରି ଆସିଲେ ଖରେ ସେ ବନ ଦେଶ ।
ଶୂଳ ପରଶୁ ଶର ଚାପ ଧାରଣ,
କରି ଆସିଲେ ସଙ୍ଗେ ପ୍ରମଥଗଣ ।
କୁସୁମିତ ଲତାଗ୍ରେ କେଶ ମଣ୍ଡିତ,
ବହିବର୍ହ କପାଳେ ଅତି ଶୋଭିତ ।
ନୟନ ଦିଶୁଅଛି ଅରୁଣ ବର୍ଣ୍ଣ,
୧୧ଅଜଗବ ନିକ୍ୱଣେ ବଧିର କର୍ଣ୍ଣ ।

---

୧ ଇନ୍ଦ୍ର ୨ ସୂର୍ଯ୍ୟ ୩ ହିମାଳୟ ୪ ଶରୀର ସନ୍ନିଭ-ସଦୃଶ ସବନ-ସ୍ନାନ ୫ ଇନ୍ଦ୍ର ୬ ଶିବ ୭ କଣ୍ଠ

୮ ବ୍ୟାଘ୍ର ୯ ବରାହ ୧୦ ଶିବ ୧୧ ଅଜଗବ-ଶିବଙ୍କ ଧନୁ

ବନପ୍ରାନ୍ତର ଦୃଶ୍ୟ ଦେଖି ସକଳେ,
ବୁଲିଲେ ସୁଖଆଡେ ମୃଗୟା ଛଳେ ।
ମାର୍ଗରେ ଇତସ୍ତତ ହରିଣକୁଳ,
ଚଳାଇ ଯାଉଥିଲେ ତକ୍ଷଣେ ଡରି ।
ପ୍ରବଳ ଭୟୁ ହେତୁ ବାଳ ଚମରୀ,
୧ବେଣୁ ଗୁଳ୍ମ ଛପିଲା ମାଆଙ୍କୁ ଧରି ।
ଗଜମଦ ବାସିତ ୨ସଟା କେଶରୀ,
ଜୃମ୍ଭାମାରି ଉଠିଲା ନିଃଶଙ୍କ ଚରି ।
ଏଣେ ଦେଖିଲେ ଆଗେ ଭୀମଅନୁଜ,
ବରାହ ବପୁ ଧରି ମୂକ ଦନୁଜ ।
ବୃକ୍ଷମୂଳ ବଦାରି ସ୍କନ୍ଧ ଘର୍ଷଣ,
କରି ଆସେ ଦେଖାଇ ଯୁଦ୍ଧ ଲକ୍ଷଣ ।
ଭାବିଲେ ମନେ ମନେ "ଏହି ଭୂଦାର,
ଆସୁଛି କରିବାକୁ ମୋତେ ସଂହାର ।
ଛେଦେ ବରାହ ମାତ୍ର ଜଣେ ଦଇତ,
ନ ବଧିଲେ ଏହାକୁ ହେବ ଅହିତ ।
ମନ ହୁଏ ପ୍ରସନ୍ନ ଯାର ଦର୍ଶନେ,
ସେ ସିନା ମିତ୍ର ବୋଲି କହନ୍ତି ଜନେ ।
ନିରପରାଧ ଋଷି ସୁଣି ଜିତାତ୍ମା,
ଉଦ୍‌ବେଗ କର୍ପାନ୍ତି ଦେଖି ଦୁରାତ୍ମା
ଅବା ଦୁର୍ଯ୍ୟୋଧନାଦି ମୋର ନିଧନେ
ବରାହ ରୂପେ ଯାକୁ ପେଷିଲେ ବନେ ।"
ଏହି ଭାବି ବଢ଼କେ ଶଙ୍କିକୁମର,
ଯୋଖିଲେ ଗାଣ୍ଡୀବରେ ସୁତୀକ୍ଷ୍ଣ ଶର ।
ସେହି କାଳେ ୩ଅବ୍ଦ ଶବ୍ଦ ସଦୃଶ,
ହେଲା ଜାତ ତହିଁରୁ ନିନାଦ ଭୀଷଣ
ସହସା ଆସି ଶଙ୍କୁ ପ୍ରବେଶ କରି,
କ୍ଷେପିଲେ ନାରଚେକ ପିନାକ ଧରି ।
ସଙ୍ଗେ ସଙ୍ଗେ ଅର୍ଜୁନ ନ୍ୟାସିଲେ ବାଣ,
ଉଭୟ କାଣ୍ଡ ଭେଦିଗଲା ତା ପ୍ରାଣ ।
ଶିବ ପ୍ରେରିତ ଶର ନେବା ମାନସେ,
ବରାହ ପାଶେ ଗଲେ ୫ଐନ୍ଦ୍ର ରଭସେ ।

ବନେଚରେକ ଜାଣି ଅର୍ଜୁନ ମନ,
ନ ନେବାକୁ ସେ ବାଣ କଲା ବାରଣ ।
"ସଦାଚାର ପଦ୍ଧତି ନଷ୍ଟ ହେଉ ଲବେ,
ନ୍ୟାୟ ମାର୍ଗ ରହନ୍ତି ତାପସେ ଭବେ ।
ଅମାର୍ଗରୁ ନିବୃତ୍ତ ହେବାକୁ ଲୋକେ,
ହିଅନ୍ତି ଉପଦେଶ ଯୋଗିଏ ୬ଲୋକେ ।
୭ନିଶିତ ଶର ପ୍ରଭୁ ଯୋଗେ ଆମ୍ଭର,
ଦୈତ୍ୟମାଜ ସାଧିଲେ ଇଷ୍ଟ ତୁମ୍ଭର ।
ଚମୂପତିଙ୍କ ବିନା କିଏ ଏ ଭବେ,
ନିହିଂସନେ ସମର୍ଥ ହୁଅନ୍ତା ଲବେ ?
ତୁମ ଭଳି ସଜ୍ଜନ କରିଲେ କୋପ,
କୃତଜ୍ଞତା ଜଗତୁ ପାଇବ ଲୋପ ।
ଆପଦର ବନ୍ଧୁ ଯେ କିରାତପତି,
ତାଠାରେ ରହୁ ସଦା ତୁମର ମତି ।
ବିଦ୍ୱାନ ବ୍ୟକ୍ତି ଆମ୍ଭ ସ୍ୱାମୀ ଚରିତ,
ଶ୍ରବଣେ ହେଉଛନ୍ତି ସଦା ମୋହିତ ।
ସମ୍ପର୍କ ରଖି ଆମ୍ଭ ସ୍ୱାମୀଙ୍କ ସଙ୍ଗ,
ତପସ୍ୟା ଫଳ ଲାଭ କରନ୍ତୁ ବିପ୍ର ।
ପ୍ରବଳ ଶତ୍ରୁ କରେ ଧନ ହରଣ,
ତେଣୁ ମିତ୍ରତା ପାଶେ ପଶ ଶରଣ ।
ଅମାର୍ଗରୁ ନିବୃତ୍ତ ହେଲେ ପୁରୁଷ,
ଲୋକ ମୁଖରେ ସିନା ଲଭେ ପୌରୁଷ ।
ଅନ୍ୟ ବ୍ୟକ୍ତି ପ୍ରେରିତ ୮ବିଶିଖ ପ୍ରତି,
ମନସ୍ୱୀ ପୁରୁଷର ନବନ୍ତୁ ମତି ।
ଫଣୀର ଶିରୋମଣି ନେବାକୁ ବଳେ,
ଉଦ୍ୟମ କଲେ ଶେଷେ ବିଷମ ଫଳେ ।
ତ୍ୟଜନ କର ତୁମ୍ଭେ ଚପଳ କର୍ମ,
କିଏ ସହିବ କହ, କଲେ ଅକର୍ମ" ।
ଘୋଷିଲା ବନେଚର ତାଙ୍କ ମାର୍ଗଣ୯
ନକଲେ ପ୍ରତ୍ୟର୍ପଣ ଲାଗିବ ରଣ ।

୧ ବାଉଁଶ ୨ ଜଟା ୩ ମେଘ ୪ ଅତିଶୟ ୫ ଅର୍ଜୁନ

୬ ଲୋକେ-ଜଗତେ ୭ ଧାରୁଆ ୮ ଶର ୯ ଶର

## ନବମ ସର୍ଗ

## ଅର୍ଜୁନଙ୍କ ପ୍ରତ୍ୟୁକ୍ତି

ପ୍ରଗଲ୍‌ଭ ଭାରତୀ କିରାତର ଶୁଣି
[1]ବାସବ ବନ୍ଧୁ ବଦ୍ଧ ମାନସେ
ନୋହି ବିଚଳିତ ସୁଖାବହ ବୋଲି
ଭାଷିଲେ [2]ରଭସେ ସାହସେ
"ବ୍ୟାଧ ହେ, ପୁଣ୍ୟବାନ ଲୋକ ଭବରେ,
ମନୋଗତଭାବ କରନ୍ତି ପ୍ରକାଶ
ନ ଅଟେ ଶାଠ୍ୟ ଅନ୍ତରେ ।
ଫଳ ବିରୋଧିର କର୍ମ କରିବାକୁ
ଉଦ୍ୟତ ନୃପତି ତୁମ୍ଭର,
ଏବେ ବ୍ୟତିକ୍ରମ କଥାମାନ କହି
ଭୁଆଅ ଅହିତ ଲୋକର
ବ୍ୟାଧ ହେ, ସତତ ସଂସାରେ ସଜ୍ଜନ,
ସାଧୁ ଆଚରଣ ଅବଲମ୍ବି ହୃଦେ
ରଖିଯାନ୍ତି ଯଶ ଭୁବନେ ।
ଅକ୍ଷୟ ତୂଣୀର ତଥା [3]ଶିଳୀମୁଖ
ଦେଇଛନ୍ତି ମୋତେ ଅନଳ
ତେବେ କେଉଁଠାରେ କିରାତ ସାଧୁକେ
ଅଛି ମୋ ଆଦର କନ୍ଦଳ
ବ୍ୟାଧ ହେ, ଭୁଆଇବା ଲାଗି ପ୍ରୟାସ,
କରୁଛ ତୁମ୍ଭାକୁ ଏକୁଟିଆ ଦେଖି
ଉପୁଜାଇ ମନେ ବିଶ୍ୱାସ ।
ନିଜ ଦୋଷଚୟ ଘୋଡାଇବା ଲାଗି
ନିର୍ଦ୍ଦୋଷ ବ୍ୟକ୍ତିକ ଦୋଷରେ
କଲି ଅଭିଯୁକ୍ତ ଭଲେଇ ହେବାକୁ
କିରାତ ନୃପତି ଆଗରେ
ବ୍ୟାଧ ହେ, ହେଲି ବୁଦ୍ଧିଭ୍ରଷ୍ଟ ତୁମ୍ଭର
ଶରାପହରଣେ ମୋତେ ଶଙ୍କା କରି
ପିଅ ନାହିଁ କେବେ ଜହର ।

୧ ଅର୍ଜୁନ ୨ ଚଞ୍ଚଳ ୩ ଶର

ବନାଶ୍ରିତ ମୃଗ କୌଣସି ବ୍ୟକ୍ତିର
ନୁହେ ପରିଗ୍ରହ ଏଭବେ
ଯେ ମାତ୍ରେ ପ୍ରସଙ୍ଗେ ନିହନ୍ତା ସେ ସିନା
ପ୍ରାଣିହିଂସା କରି ଗରବେ
ବ୍ୟାଧ ହେ, ଅଜ୍ଞମାନ ଗୂଢ ମନରୁ,
ଆତ୍ମରକ୍ଷା ଲାଗି ଅଜଗବ ନ୍ୟାସ
କରିଅଛ ସିନା ଉପୁରୁ ।
[4]ମୃଗୟୁ [5]ମୃଗକୁ କରୁଅଛି ବଧ
ଅବିରତ ସ୍ୱାର୍ଥ ନିମିତ୍ତ
ତପସ୍ୱୀମାନଙ୍କ ଉପକାର ବୋଲି
କହିବା ନୁହଇ ଉଚିତ
ବ୍ୟାଧ ହେ, ଦୁହିଁଙ୍କ ନାରାଚେ [6]ଭୂଦାର
ଦେହରେ ପ୍ରବେଶ କରି ଏକାବେଳେ
ଘଟିଛି ତାହାର ସଂହାର
ବର୍ଣ୍ଣାଶ୍ରମ ଧର୍ମ ରକ୍ଷଣ ରୂପକ
ବିଶୁଦ୍ଧ ବୃତ୍ତି ଯେ ଆଚରେ,
ଜାତକ୍ଷ୍ମନ ମୃଗ ଜୀବନ ନାଶନ
ହିଂସା ପରିପୂର୍ଣ୍ଣ ସଙ୍ଗରେ
ବ୍ୟାଧ ହେ, ବନ୍ଧୁତା ବାନ୍ଧିବ କପରି
[7]ବିଷାଣୀ କେବେକ [8]ଗୋମାୟୁ ସହିତ
ଯେ ନୃପ ଜଗତେ ତପୋରତଠାରେ
କରୁଛି ଅସୂୟା ପ୍ରକାଶ
ସେ କପରି ପୁଣି ମିତ୍ର ହେଲେ ତାର
ହୃଦୟେ ଆସିବ ଉଲ୍ଲାସ
ବ୍ୟାଧ ହେ, ନୀଚ ଲୋକ ସଙ୍ଗ ମିତ୍ରତା
କଲେ ବା ସଜ୍ଜନ ଗୁଣ ନାଶଯିବ
ଫୁଟି ଉଠିବ ତା ହୀନତା" ।

୪ ବ୍ୟାଧ ୫ ପଶୁ ୬ ବରାହ ୭ ହସ୍ତୀ ୮ ବିଲୁଆ

## ଅର୍ଜୁନଙ୍କ ସଙ୍ଗେ କିରାତ ବେଶଧାରୀ ପ୍ରମଥମାନଙ୍କ ଯୁଦ୍ଧ

୧ପାଶିବେଶ ଧାରୀ ପ୍ରଥମ ଶୁଣି କୃଷ୍ଣ ବଚନ,
ପଦ୍ମାସ୍ଥଳ ଯାଇ ୨ତତ୍ପରେ ପାଶେ ୩ହରିଚନ୍ଦନ ।
ଗାଣ୍ଡୀବ ଭର୍ଷିତ ଶ୍ରବଣେ କୋପେ ୪ପୁଙ୍ଗବ କେତୁ,
ପଠାଇଲେ ସେନାମାନଙ୍କୁ ସବେ ରୌଦ୍ରେ ୫ଠକେତୁ
ଅମ୍ଭୋନିଧି ଊର୍ମି ସଦୃଶ ମାଡ଼ି ଆସି ସେମାନେ,
ବନଭୂମି ଅବରୋଧିଲେ ସବ୍ୟସାଚୀ ସନ୍ଧାନେ ।
ଜୟ ଜୟ ନାଦେ କମ୍ପିଲ ଗିରିଗୁହା ସକଳ,
ଜ୍ୟାଘୋଷ ମିଶନ୍ତେ ତହିଁରେ ବଢ଼ିଗଲା ସେ ସ୍ଥଳ ।
ବିଶାଳ ବକ୍ଷରେ ଆଚ୍ଛାଦି ଦଶଦିଗ୍ମୁଖ ଜବ,
ସେନା ମଣ୍ଡଳର ଉପରେ ବେଗେ ରହିଲେ ୬ଭବ ।
ଏତାଦୃଶ କାର୍ଯ୍ୟ ଦର୍ଶନେ ଧରି ୭ଅନ୍ତଃକ୍ଷ ଚୟ,
୮ଅସମ୍ଭ୍ରମେ ଚକ୍ଷୁ ନିବେଶ କଲେ ତହିଁ ବିଜୟ ।
୯କୃଶାନୁ ସଦୃଶ ଶରର ଦ୍ୟୁତି ଦେଖି ତାଙ୍କର,
ଭୟରେ ସ୍ତମ୍ଭିତ ହେଲେଣି ଏଣେ ଶିବାନୁଚର ।
ଅସମର୍ଥ ହେବେ ବିଚାରି ଜଣେ ଜଣେ ଯୁଝିଲେ,
ସଙ୍ଘଶକ୍ତି ଆବଶ୍ୟକତା ଅଛି ବୋଲି ବୁଝିଲେ ।
ଏକତ୍ର ପ୍ରମଥେ ନିକ୍ଷେପ କଲେ ୧୦ବିକର୍ଷ ଚୟ,
ଚତୁର୍ଦ୍ଦିଗ ବ୍ୟାପି ନିଦର୍ଶେ ହେଲା ଜାତ ବିସ୍ମୟ ।
ତହୁଁ ୧୧ଜିଷ୍ଣୁ ୧୨ଇଷୁ ବନ୍ଧନେ ଗାଣ୍ଡୀବକୁ ଉଠାଇ
ଉଲ୍କାପରି ଶିବ ସୈନ୍ୟଙ୍କ ପରେ ପଡ଼ିଲା ଯାଇ ।
ଲକ୍ଷ୍ୟଭେଦୀ ୧୩ଶରସଂଘାତ ଦେଖି ଶିବାନୁଚରେ,
କଲ୍ପାନ୍ତ କାଳକ ଆସିଲା ବୋଲି ଭାବିଲେ ଡରେ
ବହଗତ ନୋହି ସମର୍ଥ ହେଲେ ତାପସ ଶରେ ।
୧୪ଅକ୍ଳମ ଛେଦନ ଭେଦନ ତାଡ଼ନାଦି କର୍ମରେ,
ସଙ୍କୁଚିତ ଚନ୍ଦ୍ର ପ୍ରଭାରେ ଯଥା ପଙ୍କଜତତି,
ଲେଖ ହେଲେ ୧୫ଭବ ସେନାଏ ପାର୍ଥ ମାର୍ଗଣ ଅତି

ଏକ ମାତ୍ର ଅର୍କ ଯେପରି ଏକସ୍ଥାନରେ ରହି,
ନାନାସ୍ଥାନେ ଥିବା ଲୋକଙ୍କ ହେବେ ଦୃଷ୍ଟି ପଡ଼ଇ ।
ବାଣବର୍ଷି ପାର୍ଥ ସେପରି ରହି ଏକ ସ୍ଥାନରେ,
ଭୃଗୁ ୧ସେନାଙ୍କର ନୟନ ପଥେ ପଡ଼ିଲେ ଖରେ ।
ଗୃହଆଡ଼ୁ ତୀବ୍ର ବେଗରେ ଆସେ ତାପସ ଶର,
ଛିନ୍ନଭିନ୍ନ ହୋଇ ବ୍ୟାହତ ହେଲେ ଶିବାନୁଚର ।
ବାହୁଡ଼ିବା ବେଳେ ଏମାନେ ହୋଇ ନିରସ୍ତ୍ରବଳ,
ପୁରୋବର୍ତ୍ତୀ ରୁଦ୍ର ଦେଖି ତା ହେଲେ ରୌଦ୍ରେ ବିହ୍ୱଳ
ବାରବାର କଲେ ବାରଣ ଏବେ ଏସନ କହି,
"ନକର ବିନାଶ ଯଶକୁ ଯୁଦ୍ଧ ପ୍ରସରେ ରହି ।
ଦ୍ୱିଗୁଣିତ ତେଜ ଧରଣ ଚଣ୍ଡ ଭାସ୍କର କରି,
ହସିଲା ପରାଏ ହସନ୍ତି ତୁମ୍ଭ ୨ଅସ୍ତ୍ରବସର ।
ପଶୁତୁଲ୍ୟ ତୁମ୍ଭମାନଙ୍କୁ ମାରି ଏହି ପୁରୁଷ,
ମୋ ସମ୍ମୁଖେ ନାଶକରିଛି ତୁମ୍ଭ ଯଶ ପୌରୁଷ ।
ଶୂର ଅଭିମାନ ନ ଛାଡ଼ି ରହ ରଣ ଭୂଇଁରେ,
ପରାଙ୍ମୁଖ ହୋଇ ପଳାନ୍ତି କେତେବେଳେ କ ବୀରେ
କଳଙ୍କର ଦୋଷ ଲୁଚିଲ ଭର୍ତ୍ତା ରଖିଲା ପରି,
ଯାବନ୍ତ କୁକର୍ମ ଘୋଡ଼ାଇ ଦେବେ ସ୍ୱାମୀ ତୁମରି ।
୩ଈଶାନଙ୍କ ତୁଣ୍ଡୁ ଏକାଳେ ଶୁଣି ଉକ୍ତି ଅଭୟ,
ସନ୍ତାପିତ ୪ପତାକିମାଙ୍କ ସ୍ଥିର ହେଲା ହୃଦୟ ।
୫ବୀରର୍ଷଭ ୬ବୀରର୍ଷଭ ମଧ୍ୟରେ ଲାଗେ ତୁମୁଳ ରଣ
୭ଏ ତୁମୂଳ ଦେଖୁଥାଆନ୍ତି ମୋଦେ ପ୍ରମଥଗଣ ।

## କିରାତାର୍ଜୁନ ଯୁଦ୍ଧ

୮ଅଜଗବେ ୯ଅଜଗବ ଖଞ୍ଜି କ୍ଷେପନ୍ତେ ୧୦ଭୈରବ
ଶୁଭିଲା ଶବ୍ଦ ରୌରବ ୧୧କମ୍ପିତ ବନ
୧୨କୃତହସ୍ତ ଧନଞ୍ଜୟ ନବନ୍ଧି କମ୍ପିତ ଭୟ
୧୩ଶବର ୧୪ସୁପର୍ବାଚୟ କରି ଖଣ୍ଡନ
ଗାଣ୍ଡୀବକୁ ବନ୍ଧି ସ୍କନ୍ଧରେ
ଭଣାଙ୍ଗନେ ସଞ୍ଚରିଲେ ଶଉର୍ଯ୍ୟଭରେ

୧ ବ୍ୟାଧ ବେଶଧାରୀ ୨ ଶୀଘ୍ର ୩ ଶିବ ୪ ଶିବ ୫ ଉତ୍ପାନ ଚନ୍ଦ୍ର ୬ ଶିବ ୭ ଶରମାନ ୮ ସ୍ଥିରଭାବରେ ୯ ଅଗ୍ନି ୧୦ ଶରମାନ ୧୧ ଅର୍ଜୁନ ୧୨ ଶର ୧୩ ଶରସମୂହ ୧୪ ପରିଶ୍ରମରେ କ୍ଳାନ୍ତ ବୋଧ ନକରିବା ଅଶ୍ରାନ୍ତ ୧୫ ଶିବ

୧ଶିବ ୨ଖଣ୍ଡାସମୂହ ୩ଶିବ ୪ସେନା ୫ଶିବ ୬ଅର୍ଜୁନ ୭କନର୍ଦ୍ଦ ୮ପିନାକ ୯ବାଣ ୧୦ଅଲୌକିକ ୧୧ଭୟଙ୍କର ୧୨ ଶର କ୍ଷେପଣ ନିପୁଣ ୧୩ ଅର୍ଜୁନ ୧୪ବାଣ

ପ୍ରସନ୍ନ ସଦା ମାନସ ୧ସବ୍ୟସାଚୀର ସାହସ
ନଥିଲା ହୃଦେ ସାଧ୍ୱସ ୨ ଶତ୍ରୁ ତାଡନେ
ଭ୍ରମିବାର ୩ଗୁଡ଼ାକେଶ ୪ଅବଲୋକି ଗୁଡାକେଶ୫
୬ନବେଶ କରି ନବେଶ ଅତି କୋପନେ
ଦେଖାଇ ନିଜର ବାହାନ୍ତ୭
କାଦମ୍ବକଦମ୍ବ ନ୍ୟାସ କଲେ ୭ଅଶ୍ରାନ୍ତ
୮କର୍ଣ୍ଣୋଳ ଛେଦେ ୯ଅଚଳ ଟଗ ଏ ରଚ୍ଛ ଅଚଳ
ତୁଣୀରୁ ଛାଡ଼ି ମଣ୍ଡଳ କାଢ଼ି ବହନ
ରୁନ୍ଧ ୧୦ଆଡାଳ ପାତାଳ ତକ୍ଷଣେ ଦେଲେଜାଳ
୧୧ପ୍ରନବସୁ ୧୨ବିଶିଖାଳ କପିକେତନ୧୩
ହେଲା ସ୍ୱନେ ବଧିର କାନ
ବଦ୍ଧ୍ୟନ୍ନାଳା ଚିର ଶୋଭ୍ୟ ଶରବିତାନ୧୪
ଜଗତ୍‌ପ୍ରାଣ ମାର୍ଗଣ ଲଭି ବିକାଶ,
ଜଗତ୍‌ପ୍ରାଣ ମାର୍ଗଣ ଦେଲେ ବିକାଶ ।
ଜଗତ୍‌ପ୍ରାଣ ମାର୍ଗଣ ଅତି ବିକାଶ,
ଜଗତ୍‌ପ୍ରାଣ ମାର୍ଗଣ ସ୍ଥିତି ବିକାଶ ।

ଜଗତ୍‌ପ୍ରାଣ (ପୃଥ୍ୱୀପତି) ଅର୍ଜ୍ଜୁନଙ୍କର ଶରମାନ ଦ୍ୱାରା ଲଭି (ବିକାଶ) (ଜଗତ୍+ପ୍ରାଣ) ଶିବଙ୍କର ଶରି ଗୁଡ଼ିକୁ ବିକାଶ (ବିଷମଗତି) ଦେଲେ ଅର୍ଥାତ୍ ଭଗ୍ନାବସ୍ଥା ପାଇଲେ ଜଗତ୍‌ପ୍ରାଣଗଣ (ଦାନବମାନେ ଅତି ବିକାଶ (ଉଲ୍ଲାସ) ଲଭିକଲେ ଅର୍ଥାତ୍ ଆନନ୍ଦିତ ହେଲେ । ଜଗତ୍‌ପ୍ରାଣ ଶିବଙ୍କର ମାର୍ଗଣ (ଅନ୍ୱେଷଣକାରୀ) ଦେବର୍ଷିମାନେ ବିକାଶ — ଆକାଶରେ ସ୍ଥିତ ହେଲେ ଅର୍ଥାତ୍ ଯୁଦ୍ଧ ଦେଖିବା ଇଚ୍ଛାରେ ଆକାଶରେ ରହିଲେ ।

## ଦଶମ ସର୍ଗ

ଶୌର୍ଯ୍ୟବୀର୍ଯ୍ୟ ଦେଖି ଶ୍ୱେତବାହନର
୧୫ଜାବତାର ବୋଲି ଭାବିଲେ ହର,
କଲେ କୂଟ ଏବେ ନାନା ଉପାୟରେ
କରିବାକୁ ହ୍ରାସ ଶକ୍ତି ତାଙ୍କର ।

୧ ଅଲୌକିକ ୨ ଭୟ ୩ ଅର୍ଜ୍ଜୁନ ୪ ଶିବ ୫ ଯୁଦ୍ଧ ୬ ବିଷମ ୭ ସଦା ୮ ଯୁଦ୍ଧ ୯ ପର୍ବତ ୧୦ ସପ୍ତମ ୧୧ଶିବ ୧୨ଶରସମୂହକୁ ୧୩ ଅର୍ଜ୍ଜୁନ ୧୪ଶରସମୂହ ୧୫ ବିଷ୍ଣୁ ଅବତାର

"ଯୋଦ୍ଧାମାନଙ୍କର ହୁଂକାର ଶବ୍ଦ
ଶୁଣାଯାଉ ନାହିଁ ଆଜ ସମରେ,
ତେଜଯୁକ୍ତ ଶସ୍ତ୍ର ହୋଇ ଉଲ୍ଲସିତ
ଦିଶୁନାହିଁ କାହିଁ ବ୍ୟୋମଦେଶରେ ।
ପ୍ରକୃତ କପଟ ନୁହେ ଏ ପୁରୁଷ
ଚେଷ୍ଟିଛୁ ପ୍ରଚ୍ଛନ୍ନ ନିଜ ଆକାର,
ଶଶଲାଞ୍ଛନର ଶିଖକୁ ଧାର୍ଷଣ
କରି ଦୃଶ୍ୟ ହୁଏ ଶୂନ୍ୟ ବିକାର ।
ଶତ୍ରୁଛିଦ୍ର ଅଳ୍ପ ଦେଖି ସୁଦ୍ଧା ଅତି
ପ୍ରହାର କଷଟେ ହୁଏ ଉଦ୍ୟତ,
ନିଜଛିଦ୍ର ବହୁ ଥିଲେହେଁ ତାହାର
ଘୋଡ଼ାଇ ଦେବାକୁ ସଦା ଜାଗ୍ରତ ।
ବିହାୟସ ଯଥା କୁମୁଦବାନ୍ଧବ-
କାନ୍ତି ପ୍ରଗ୍ରହନ ସୂର୍ଯ୍ୟ କରଣେ,
ଶତ୍ରୁ ପ୍ରେରଣ ଅତ୍ୟୟମେ କ୍ଷମ
ମୋ ଶକ୍ତି ହ୍ରାସ ବ୍ୟାଧି ମାର୍ଗଣେ ।
ଆକାଶ ମାର୍ଗକୁ ଦୁଇଖଣ୍ଡ କରି
ଦେବାପାଇଁ ଅବା ଏହି କପଟ,
ବାର ବାର ଧନୁ ଟାଣି ପରାକ୍ରମେ
କପଟିଛି ହୃଦେ ସାଧ୍ୱସ ଜାତ ।
ଭବ ଏହାପରି ବାସବ ଏଥନ୍ତେ
ପ୍ରସ୍ୱାପନ ଅସ୍ତ୍ର କରି ପ୍ରହାର,
୧ସପ୍ତସପ୍ତିଙ୍କର ତେଜକୁ ଘୋଡ଼ାଇ
କରିଦେଲେ ଦଶଦିଶ ଅନ୍ଧାର ।
ସୁମେରୁ ଶୃଙ୍ଗରୁ ଅର୍କବିମ୍ବ ଲୁଛି
୨କପଟ ମୌଳିରୁ ଜ୍ୟୋତି ବାହାରି,
ତମୋମଣ୍ଡି ଗୁମ୍ଫା କରିଦେଲା ଦୂର
ଶଶଧର କାନ୍ତି ଊର୍ଦ୍ଧ୍ୱ ବିସ୍ତାରି ।
ନିମ୍ନଭୂ ଅନନ୍ତେ ପ୍ରସ୍ୱାପନ ଅସ୍ତ୍ର
ହରିଲା ନିର୍ମଳ ଘନପଟଳ,
ନାନାବର୍ଣ୍ଣ ଯୁକ୍ତ ଶାଣିତ ଆୟୁଧ
ଧରିଲେ ଏକାଳେ ଭୈରବ ବଳ ।

୧ ସୂର୍ଯ୍ୟ ୨ କପଟ ମସ୍ତକରୁ

ପ୍ରସ୍ଥାନେ ଅସ୍ତ୍ର ହୁଅନ୍ତେ ଶିଥିଳ
ଭୁଜବୀର୍ଯ୍ୟଶାଳୀ କପିକେତନ,
ଭୁଜଙ୍ଗ ନାଶାସ୍ତ୍ର କରିଲେ ପ୍ରେରଣ
କରିବାକୁ ୧ତୂର୍ଣ୍ଣ ଶତ୍ରୁବନ୍ଧନ ।
ବିଷାଗ୍ନିପ୍ରସୂତ ଭୁଜଗେନ୍ଦ୍ର ଭୟେ
ନଭସ୍ଥଗତ୍ୟକ୍ତ ୨ବକାଶବାଟ,
ଶତ ଶତ ଜିହ୍ୱା ବାରମ୍ବାର ଗୃଳ
କଲେ ଅବରୋଧ ଭୁଜଗଆଟ ।
ସର୍ପ ମାନଙ୍କର ଉନ୍ନମିତ ଫଣା
ମଣ୍ଡଳୁ ନିର୍ଗତ ନିଶ୍ୱାସ ଧୂମ,
ସୂର୍ଯ୍ୟମଣ୍ଡଳକୁ ଗ୍ରାସ କଲାପରି
ହେଉଥିଲା କାର ମନ୍ଦ ବିଭ୍ରମ ।
୩ ଘୋରଘୋରତର ୪ ତାର୍କ୍ଷ୍ୟ ସମୂହଙ୍କୁ
୫ ତାର୍କ୍ଷ୍ୟ ମନ୍ତ୍ରଯୋଗେ କଲେ ବାରଣ,
୬ ଛିବ ୭ ତାର୍କ୍ଷ୍ୟଙ୍କର ରଣ କଉଶଳ
କୌତୁକେ ଦେଖନ୍ତି ପ୍ରଥମଗଣ ।
ସର୍ପାସ୍ତ୍ର ପ୍ରଭାବ ରହୁ ରେହେମେ
କ୍ରମେ କ୍ରମେ ରଣେ ଲଭନ୍ତି ହ୍ରାସ,
ଆଗ୍ନେୟାସ୍ତ୍ର କୃଷ୍ଣ କରିଲେ ନିକ୍ଷେପଣ
ଜନମାଙ୍କ ବୈରମନେ ବିଶ୍ୱାସ ।
ତର୍କ ଗର୍ତ୍ତରେ ଊର୍ଦ୍ଧ୍ୱ ଅଧୋଦେଶେ
୮ଜ୍ୱାଳଜାଳ ବ୍ୟାପି ପ୍ରାଣିନାଶନ,
ସମୀର ସଂଯୋଗେ ସ୍ଫୁଲିଙ୍ଗ ବିସ୍ତାର
ଲାଗିଲା ଜ୍ୱଳନ ଘୋର ଜ୍ୱଳନେ ।
ଗିଳ ଦେଲା ପର ହରନ୍ତେ ୯ଲୋକଙ୍କୁ
ପର୍ଜ୍ଜନ୍ୟାସ୍ତ୍ର ୧୦ଧରୀ କଲେ କ୍ଷେପଣ,
ତହିଁରୁ ବାହାର ୧୧ବଳାହକମାଳ
ଅବିରଳ ଜଳ କଲେ ବର୍ଷଣ ।
ଆସାର ପାତରେ ନିର୍ବାପିତ ଶିଖା
ଜଳପାତ ପଡ଼ି ତପ୍ତ ଲୌହରେ,
ପାବକ ଶସ୍ତ୍ରର ଉପୁଜାଇ ଧ୍ୱନି
ବାହୁଡ଼ିଲା ଧୂମ ଚଉଦିଗରେ ।

ଆପନ୍ନବାରକ ଆଗ୍ନେୟାଦ୍ୟ ଅସ୍ତ୍ର
ହୁଅନ୍ତେ ସମାପ୍ତ ଇନ୍ଦ୍ରନନ୍ଦନ,
ଅବଲମ୍ବି ଧୈର୍ଯ୍ୟ ପୁନଶ୍ଚ ୧ଆହବେ
ନିବେଶିବା ଲାଗି କଲେ ଯତନ ।
ନେତ୍ରଯୁଗଳରୁ ମହାସର୍ପ ବିଷ
ସଦୃଶ କ୍ରୋଧାଗ୍ନି ପଡ଼ୁଛି ଝରି,
ବାହାରିଲେ ୨ଯୁଦ୍ଧେ ଅଦ୍ଧ ଶନ୍ଧ ଟଣି
ଗର୍ଜୁଥିବା ଗୃପ ହସ୍ତରେ ଧରି ।
ଶମ୍ଭୁଙ୍କ ଧନୁରୁ ନିର୍ଗତ ଇଷୁକୁ
ନିବାରଣ ଲାଗି ଦୃଢ଼ ମନରେ,
ଶୂରତ୍ୱ ଦେଖାଇ ଧରଣୀକୁ ଜିଷ୍ଣୁ
କଲେ ଆଚ୍ଛାଦନ ଶରଜାଳରେ ।
ଉତ୍କଟ ୩ଉତ୍କଟ- ପଟଳ ପ୍ରକ୍ଷେପି
୪ଗଣ୍ଡିକସେନାଙ୍କୁ ଦେଲେ ସନ୍ତାପ,
ମାତ୍ର ୫ଖଣ୍ଡପର୍ଶୁ ରହିଲେ ଅଖଣ୍ଡ
ଫଳଶୂନ୍ୟ ହେଲା ଜିଷ୍ଣୁ ପ୍ରତାପ ।
୬ହୈମନ ୭ସପ୍ତାଶ୍ୱ ତେଜପୁଞ୍ଜ ଯଥା
ନ ଦିଅଇ ବାଧା କେବେ ପ୍ରାଣୀଙ୍କୁ,
ତଥା ପୃଥାସୁତ ୮ଶିଖଣ୍ଡି ନିକ୍ଷେପ
ନ ଲାଗିଲା ବ୍ୟଥା ପଶୁପତିଙ୍କୁ ।
ନିଜ ସୈନ୍ୟଠାରେ ଅର୍ଜ୍ଜୁନଙ୍କ କର୍ତ୍ତି
ବଢାଇବା ଲାଗି ୯ତ୍ରିଭୁଣ୍ଡତପୁର,
ଏକ ପଟେ ଏକ ଜୟ ପରାଜୟ
ରଣେ ନ୍ୟୂନ ଇଚ୍ଛା ଥିଲା ତାଙ୍କର ।
ବୃଷ୍ଟି କରୁଥିବା ରବି ଘନସ୍ୱନ
ହୁଅନ୍ତି ଶଙ୍କିତ ଗୋବୃନ୍ଦ ଯଥା,
୧୦କପିଧ୍ୱଜ ଧନୁ ଧ୍ୱନି ଶ୍ରବଣରେ
୧୧ଧ୍ରୁବଧ୍ୱଜନୀଏ ତ୍ରସ୍ତ ତଥା ।
ଜଳନିଧି ଦ୍ୱାର ନଦୀ ମୁଖାଗତ
ଜଳଜନ୍ତୁଜାଳ ଭର୍ତ୍ସିତ ଯଥା,

୧ ଶୀଘ୍ର ୨ ଆକାଶବାଟ ୩ ଶିବ ୪ସର୍ପ ୫ ଗରୁଡ଼
୬ ଶିବ ୭ ଅର୍ଜ୍ଜୁନ ୮ ଶିଖାସମୂହ ୯ଜଗତ ୧୦ଶିବ
୧୧ ମେଘ ସମୂହ, ଉନ୍ନମିତ-ଉପରକୁ ଉଠିଥିବା

୧ ଯୁଦ୍ଧ ୨ମେଘ ୩ ଶର ୪ ଶିବ ୫ ଶିବ ୬ହେମନ୍ତ
କାଳୀନ ୭ ସୂର୍ଯ୍ୟ ୮ଶର ୯ ଶିବ ୧୦ ଅର୍ଜ୍ଜୁନ
୧୧ ଶିବ ସେନାମାନେ

୧ପୁନର୍ବସୁ ପ୍ରତି ଫାଲ୍‌ଗୁନ ପ୍ରେରିତ
୨ପୃଷତ୍କ ପ୍ରକର ପୀଡ଼ିତ ତଥା ।
ବାସବ ବିକ୍ରମ ବିକାଶ ଶିକ୍ଷଣେ
କଲେ ବାଣବୃଷ୍ଟି ୩ଭୂରିବାର୍ଦ୍ଧ,
କିନ୍ତୁ ସେ ଗୁଡ଼ିକ ମର୍ମସ୍ଥାନେ ଆସି
ନବାଜିବା ଯୋଗୁଁ କ୍ଷିପ୍ରି ୪ବ୍ରାହ୍ମଣ ।
ନିଜ ସନ୍ଧାନକୁ ଉନ୍ମୀଳନ ଦେଖି
କୈଳାସନିବାସୀ କୃଷ୍ଣ ୫ମାର୍ଗଣ,
ନେଲେ ଅପହରି ଜଉଶଳ କରି
୬ସର୍ବ୍ଗୁର କଲାପରି ବାରି ଶୋଷଣ ।
ନିଷଙ୍ଗରେ ଶିଖ ଶୂନ୍ୟ ହେବା ଦେଖି
ପୃଥାସୁନୁ ମନ ଅତି ବିକଷ୍ଟି,
ଚେତନାରହିତ ପ୍ରାଣପରି ଥିଲା
ସେ ତୂଣୀର ଦେଖି ସ୍ୱାମୀ ୭ବାନସନ ।
ଅନନ୍ତର ୮ଖରୁ ଅର୍ଜ୍ଜୁନ ଗାତ୍ରରୁ
ମାସ୍ତ୍ରାନର କଞ୍ଚୁକ ନେଲେ ଛଡାଇ,
ଘନମୁକ୍ତ ରବି ପରି ସେ ଦୀପିତ
ଦିଶିଲେ ଏକାନ୍ତେ ଗୁଡ଼ ବଢ଼ାଇ ।
ପୁନଃ ପୁନଃ ହାଣି କଲେହେଁ ନିବେଶ
ନଥିଲ ତୂଣୀରେ କିଛି ୯ପୃଷତ୍କ
ଭୁଜବଳେ ତହୁଁ ଆରମ୍ଭିଲେ ରଣ
ବୁଦ୍ଧି ନପାରି ସେ ୧୦ଧୂର୍ଜ୍ଜଟିକୁ ଟି ।
ସତ୍ତ୍ୱଗୁଣଯୁକ୍ତ ତାପସକୁ କ୍ଷଣ
ବଜ୍ର ଅସ୍ତ୍ରାଘାତେ କରନ୍ତି କ୍ଷତ,
ପୁଷ୍ପିତ କିଂଶୁକ- ପରି ଦିଶୁଥିଲ
୧୧ଅନାରତ ଦେହୁ ବୋହି ରକତ ।
ଅନନ୍ତର ଧନ୍ଵ୧୨ କ୍ରୋଧେ ଧାଇଁଲେ
ପିଠି ଗୁନ୍ଦି କର କେଶଗ୍ର ଧୂନ,
କୁଳଶ ସଦୃଶ କଠିନ ଗାଣ୍ଡୀବ
ଉଠାଇ ପିଟିଲେ ୧୩ହେମବାହନ ।
ସେ ଗାଣ୍ଡୀବ ଧନୁ ଅବ୍ୟକ୍ତ ଆତ୍ମାରେ
ଅନ୍ତର୍ଦ୍ଧାନ ହେବା ଦେଖି ଅର୍ଜ୍ଜୁନ,

୧ ଶିବ ୨ ଶର ୩ ଶିବ ୪ ଅର୍ଜ୍ଜୁନ ୫ଶର ୬ସୂର୍ଯ୍ୟ
୭ ଦୁର୍ଭାଗ୍ୟ ୮ ଶିବ, ଜଳଜନ୍ତୁ-କୁମ୍ଭୀର ୯ ଶର
୧୦ ଶିବ ୧୧ ସଦା ୧୨ ଅର୍ଜ୍ଜୁନ ୧୩ ଶିବ

ଭଗ୍ନ ମନୋରଥ ହୋଇ ରଣ ସ୍ଥଳେ
ଦୁଃଖରେ ନିକଟେ ହେଲେ ମଗନ ।
ଧୃତ ଅନ୍ତର୍ଦ୍ଧାନ ପରେ ସର୍ବ୍ଵ୍ୟାପୀ
୧ଶିବଙ୍କ ଦୁର୍ଲଭ୍ୟ ୧କାରକ ଧରି,
ଜନ୍ମାଇଲେ ଭୟ ପ୍ରମଥଙ୍କ ମନେ
ବାଜବ ଗଡରେ ଘୋଷ ସଞ୍ଚରି ।
ଅନ୍ତରୀକ୍ଷେ ପୁଣି ପ୍ରତିବନ୍ଧି ଜନେ
ହେଉଥାଏ ତୃଣ ସପ୍ତାଶ୍ୱ ଯଥା,
ଦ୍ୱିମୂର୍ତ୍ତି ରୂପରେ ନଭେରଣ ସ୍ଥଳେ
ଦେଖିଲେ ପ୍ରମଥେ ସିଦ୍ଧାଶ୍ୱ ତଥା ।
କୃଷ୍ଣ ଧୂର ୨ଙ୍କର ୩ଜୟନ୍ତ ମାର୍ଗଣେ
ଖଣ୍ଡ ହୋଇ ଚଳେ ଦିଗନ୍ତେ ଖରେ,
ଗୋଡାଇ ପାଷାଣ ପୋପାଡନ୍ତେ ତାଙ୍କୁ
ନିବାରିଲେ ୪ଭବ ଅମୋଘ ଶରେ ।
ନୋହି ସର୍ଗହୀନ ବାସବନନ୍ଦନ
ମହାଦ୍ରି ବନରୁ ତରୁ ଉପାଡ଼ି,
ହୋଇ ବେଗଗାମୀ ୫ଘୋରଘୋରତର
ଉତ୍ତମାଙ୍ଗ ପରେ ଦେଲେ ଛାଡ଼ି ।
୬ଈଶାନ ତକ୍ଷଣେ ବୃକ୍ଷମାନଙ୍କର
ବଲ୍‌କଲ ପଲ୍ଲବ କୁସୁମ ନେଇ,
କଲେ ବଳି ପୂଜା ରଣଭୂମିସ୍ଥିତ
ଗୀର୍ବାଣ ମାନଙ୍କୁ ଚନ୍ଦନ ଦେଇ ।
ତଦନ୍ତେ ଗାଣ୍ଡୀବୀ ଶିବବାଣବେଗ
ନମାନି ପ୍ରବେଶି ପ୍ରତିମୁଖରେ,
ନିଜ ମୁଷ୍ଟିଦ୍ୱୟ ଛେଚିଲେ ସୁଦୃଢ଼େ
୭ଜଟାଧରଙ୍କର ଉର ଦେଶରେ ।
୮ଭଗାତ୍ମା ହୋଇ ଉଦାର ଅନୁନୟ ବ୍ୟବହାର
ପୁନଶ୍ଚ ଉରେ ପ୍ରହାର ବାସବଙ୍କର
ସେହି ବଳଶ ଗଲେ ସହି ମାନସେ କୋପ ନବହି
ରହିଲ୍ଯା କି କେବେ ମହି ଧାଇଁଲେ ହର
ଭକତର ଶକ୍ତି ଗୁହାର
ଭକ୍ତି ଯୋଗୁ ଭବାବ୍ଧିକୁ କରନ୍ତି ପାର ।

୧ ଖଣ୍ଡା ୨ ଖଣ୍ଡା ୩ ଶିବ ୪ ଶିବ ୫ ଶିବ
୬ ଶିବ ୭ ଶିବ ୮ଶିବ

## ଏକାଦଶ ସର୍ଗ

ଅର୍ଜୁନ ମୁଷ୍ଟି ପ୍ରହାରନ୍ତେ ଶଙ୍କର,
ଧନୁ ତୂଣୀର ତେଜି ଲୌହ ମୁଦ୍‌ଗର ।
ସଦ୍ଧୃଶ ବଦ୍ଧ ମୁଷ୍ଟି କରି ରୋଷରେ,
ମସ୍ତକ ମାଡ଼ ଦେଲେ କୃଷ୍ଣ କନ୍ଧରେ ।
ନିବିଡ଼ ମୁଷ୍ଟି ଧ୍ୱନି ହୋଇ ସ୍ଫୁରିତ,
ପାଷାଣ ଶଇପରେ ପ୍ରତିଧ୍ୱନିତ ।
ତହିଁରୁ ଉପୁଜିବା ଘୋର ଯାତନା,
ସହିଲେ ସବ୍ୟସାଚୀ ହୋଇ ଉନ୍ମନା ।
ସୁଖ ଦୁଃଖ ଗଣନା ବୀରାଚରଣେ,
ନଥାଏ କେତେ ହେଲେ ରଣ ପ୍ରାଙ୍ଗଣେ ।
ଅସାଧାରଣ ଧୈର୍ଯ୍ୟସମ୍ପନ୍ନ କୃଷ୍ଣ,
ଯୁଝିବା ଲାଗି ପୁଣି ନିର୍ଭୟେ ଉଷ୍ଣ ।
[1]ଶଶିକଳାମଣ୍ଡଳ ବାହୁ ଯୁଗଳ,
ଧଇଲେ ନିଜ ଭୁଜେ ଦୃଢ଼େ ଚଞ୍ଚଳ ।
[2]ସିଦ୍ଧାନ୍ତକ ଉଠି ଯାନ୍ତେ ନଭକୁ,
ଧଇଲେ ତତକ୍ଷଣେ ତାଙ୍କ ପାଦକୁ ।
ପାଦ ଗ୍ରହଣ ହେତୁ [3]ଭର୍ଗ ତ୍ୱରିତ,
ଆଲିଙ୍ଗି ପାର୍ଥ ହେଲେ ଅତି ମୁଦିତ ।

[4]ଶବର ରୂପ ଛାଡ଼ି ଦେଇ [5]ଶଙ୍କର,
ଧରନ୍ତେ ନିଜ ରୂପ ଶକ୍ର କୁମାର[6]
ପ୍ରଣାମ କଲେ ଧରି ପଦଯୁଗଳ,
ପଡ଼ୁଛି ନେତ୍ରୁ ଝରି ଆନନ୍ଦ ଜଳ ।
ପୂର୍ବପରି ନିଷଙ୍ଗ ନିଜ କାନ୍ଧରେ,
ଥିବାର ଦେଖିଲେ ସେ ପୂର୍ଣ୍ଣ ଶରରେ ।
ବିସ୍ମିତ ହୋଇ ଆରମ୍ଭିଲେ ସ୍ତବନ,
କରିବା ଲାଗି ତାଙ୍କ ମନ ପ୍ରସନ୍ନ ।
ବର୍ଦ୍ଧିଷ୍ୟମାଣ ହଂସେ ପକ୍ଷାଗ୍ର ଭରି,
ବ୍ୟୋମକୁ ଆଲିଙ୍ଗନ କରିଲେ ପରି ।

୧ ଶିବ ୨ ଶିବ ୩ ଶିବ ୪ ବ୍ୟାଧ ୫ ଶିବ ୬ ଅର୍ଜୁନ

## ଅର୍ଜୁନଙ୍କ ସ୍ତୁତି

ଅପରାଜିତ ହେ, ଅଚ୍ଛେଦସ୍ୱାନ୍ତ,
ବର୍ଦ୍ଧମାନ ସୃଷ୍ଟି ସର୍ଜନା କାନ୍ତ ।
ଅକ୍ଷର ତୁମ୍ଭେ ସ୍ୱୟଂ ରକ୍ଷକ,
ଦୁଷ୍ଟ ପୁରୁଷର ମୁକ୍ତି ଦାୟକ ।
ବିନୟ ପ୍ରଣାମ ନକରି ଜନେ,
ହେଉଛନ୍ତି ଘାଣ୍ଟି ସଦା ଜୀବନେ ।
କାମକ୍ରୋଧ ଲୋଭ ମୋହ ମାତ୍ସର୍ଯ୍ୟ,
ଷଡ଼ରିର ହେତୁ ନୁହେ ଆଶ୍ଚର୍ଯ୍ୟ ।
ସର୍ବକ୍ଷୟକାରୀ ହିଂସା ଚକ୍ରର,
ଆଣୁଅଛି ଲୋକେ ଶୋକସମ୍ଭାର ।
ଦମିଅଛ ଶତ୍ରୁ ଯୋଗବଳରେ,
ବଧୂଯୁକ୍ତ ହୋଇ ଅର୍ଦ୍ଧ ଅଙ୍ଗରେ ।
ଅନିଷ୍ଟ ନିବୃତ୍ତି ଇଷ୍ଟ ପ୍ରାପତି,
ଘଟେ ତୁମ୍ଭଠାରେ ଥିଲେ ଭକତି ।
କରି ଅନୁଭବ ଜନ୍ମଯାତନା,
ସେବକରେ ଭକ୍ତ ମୋକ୍ଷ କାମନା ।
ନିସ୍ପୃହ ଆପଣ ପ୍ରଣତ ଜନେ,
ଲଭନ୍ତି କରୁଣା ନଡ଼େ ଲୋଚନେ ।
ଜଗତ୍‌ବନ୍ଦ୍ୟ ବ୍ରହ୍ମା ପ୍ରାତଃ ସଞ୍ଜରେ,
କରନ୍ତି ବନ୍ଦନା ଭକତିଭରେ ।
ପରାର୍ଥ ସାଧନେ ତୁମ୍ଭେ ତତ୍ପର,
ସ୍ୱାର୍ଥ ଅନ୍ୱେଷୀକି ତା ନୁହେ ଗୋଚର ।
ତୁମ୍ଭର ବିଦ୍ୱେଷୀ ନରକ ଗତି,
ଲଭୁଅଛନ୍ତି ସିନା ନ ଶିଖି ନତି ।
ତତ୍ତ୍ୱଜ୍ଞାନ ହୀନ ପୁରୁଷ ଭବେ,
ତୁମ୍ଭର ମହିମା ନଜାଣି ଲବେ ।
ଶତ୍ରୁଭେଦ ନାହିଁ କାହାରିଠାରେ,
ସମଭାବାପନ୍ନ ତୁମ୍ଭେ ସଂସାରେ ।
ତୁମ୍ଭକୁ ଯେ ସେବେ ଭକ୍ତି ପୂର୍ବକ,
ହୁଅ ତାର ତୁମେ ମୁକ୍ତିଦାୟକ ।
ସ୍ୱକର୍ମ ସାଧକ ଲଭେ ନିସ୍ତାର,
ଦୋଷାଦୋଷ ତୁମେ କର ବିଚାର ।

ସର୍ବ ଚରମ ଅଙ୍ଗାଭରଣ,
ଜ୍ୱଳନ୍ମଣି ଅଛ କଟିଭୂଷଣ ।
ଶବଭସ୍ମ କରିଅଛ ଚନ୍ଦନ,
ମସ୍ତକୁ ନିର୍ଗତ ଶଶିକିରଣ ।
ପାପପୁଣ୍ୟ କର୍ମେ ସାକ୍ଷୀସ୍ୱରୂପ,
ନଜାଣି ମଣିଷ କରେ ବିଦ୍ରୂପ ।
ତୁମଠାରେ ପ୍ରୀତିଯୁକ୍ତ ମଣିଷ,
ଲଭଇ କୈବଲ୍ୟ ହେ ଜଗଦୀଶ ।
ନୁହ ଉପମେୟ ବା ଉପମାନ,
କରନ୍ତି ଯୋଗୀଏ ତୁମ ସନ୍ଧାନ ।
ନଥିବାରୁ ତୁମ ଉତ୍ପତ୍ତି-ନାଶ,
"ନିତ୍ୟ" ବୋଲି ଭବେ ପାଅ ବିକାଶ ।
ଦୁରାତ୍ମାମାନଙ୍କ ଆପଣେ ଗତି,
ପଶୁଛି ଶରଣ ଘେନ ବିନତି ।
ହେ ଈଶ, ମୋ ଦୋଷ କର ମାର୍ଜ୍ଜନ,
ଅନୁକମ୍ପା କରି ହୁଅ ପ୍ରସନ୍ନ ।
ଶିବ ନାଟକାନ୍ତେ ଅସ୍ତ୍ର ପ୍ରଦାନ,
କରି ଅର୍ଜ୍ଜୁନର ରଖି ସମ୍ମାନ ।
ଶ୍ୱେତବାହନଙ୍କ ଶୁଣି ବଚନ,
ଆଲିଙ୍ଗନ କରି ଦେଲେ ସାନ୍ତ୍ୱନା ।
ଧନୁର୍ବେଦ ପାଠ ତାଙ୍କୁ ପଢ଼ାଇ,
ପାଶୁପତ ଅସ୍ତ୍ର ଦେଲେ ବଢ଼ାଇ ।
ଇନ୍ଦ୍ରାଦି ପ୍ରବେଶି ଶମ୍ଭୁ ଆଜ୍ଞାରୁ,
ନାନାଅସ୍ତ୍ର ଦେଇ ଗଲେ ସେଠାରୁ ।
ଆଶିଷ ପ୍ରଦାନ କରି ମହେଶ,
ଲେଉଟିବା ଲାଗି ଦେଲେ ଆଦେଶ ।

## ଦ୍ୱାଦଶ ସର୍ଗ

ଅଭୀଷ୍ଟ ସାଧନେ ନିର୍ଭୟେ ଫାଲ୍‌ଗୁନ
ଗମନାନ୍ତେ ଏକୁଟିଆ,
ଅନ୍ୟାନ୍ୟମାନଙ୍କୁ ରହିବାକୁ ତହିଁ
ବୋଧହେଲା ନିଗୁଟିଆ ।
ଗନ୍ଧମାଦନକୁ ଯିବା ଅଭିଳାଷେ
ଛାଡ଼ି ଦ୍ୱୈତ କାନନ,
ବାୟୁବନ୍ଧୁ ସହ ୧ପାର୍ଷତୀଙ୍କ ଘେନି
ଗଲେ ୨ଶ୍ୱସନନନ୍ଦନ ।
ଅର୍ଜ୍ଜୁନ ଦର୍ଶନ ମାନସେ ସେମାନେ
ଗଲେ ବନେ ପଦବ୍ରଜେ,
ବହନ୍ତେ ପବନ ହୋଇଗଲା ବୋଲି
ଅବରୁଦ୍ଧ ୩ରଜବ୍ରଜେ ।
ଯାଉଁ ଯାଉଁ ବ୍ରଜେ (ପଥେ) ପୁଲିନ୍ଦାଧିପତି
ଦେଖି ସ୍ୱରାଜ୍ୟପ୍ରାନ୍ତରେ,
ସେମାନଙ୍କୁ ନେଇ କଲେ ଯଥୋଚିତ
ସତ୍କାର ଅତି ଆଦରେ ।
ପରଦିନ ପ୍ରାତେ ହିମାଦ୍ରି ଶିଖରେ
ପଡ଼ନ୍ତେ ୪ରବିତାନେ,
ବାହାରି ସେମାନେ ବିଷମ ଦୁର୍ଗମ
ମାର୍ଗେ କରିଲେ ଗମନ ।
ପ୍ରବେଶ କରନ୍ତେ ଗନ୍ଧମାଦନରେ
ବହିଲା ବାୟୁ ସହସା,
ଦେଖୁ ଦେଖୁ ଧୂଳି ଶିଳାବୃଷ୍ଟି ସହ
ହେଲା ଅଘୋର ବରଷା ।
ବାତାହତ ୫ଉତ- ପଳୀ ପରି କମ୍ପି
ପଡ଼ନ୍ତେ ପାଞ୍ଚାଳୀ ତଳେ,
ନକୁଳ ସଶୋକେ ଉଠାଇ ତାହାଙ୍କୁ
ଧଇଲେ କୋଳେ ଚଞ୍ଚଳେ ।
ସହଦେବ ଭୀମ ଆସିଲେ ଦଉଡ଼ି
ବିବଶା ଦେଖି ପାଞ୍ଚାଳୀ,
ବିଳପିଲେ ଅତି ୬ପାଣ୍ଡୁପୁତ୍ର ଭୂପ
ପୂର୍ବକଥା ଭାଳି ଭାଳି ।
ଦୁଗ୍ଧଫେନ ପରି କୋମଳ ଶଯ୍ୟାରେ
କରନ୍ତି ଯେହୁ ଶୟନ,
ଧରଣୀଶାୟୀ ହୋଇ ଏବେ ସେ କଷ୍ଟରେ
ବଞ୍ଚନ୍ତି ଅତି ବିବର୍ଣ୍ଣ ।
୭ସଶଲ୍ୟ ଗାତ୍ରକୁ ଆଉଁଷି ମାରୁତି
ସ୍ୱଜନ କଲେ ବ୍ୟଜନ,

୧ ଦ୍ରୌପଦୀ ୨ ବାୟୁନନ୍ଦନ ୩ଧୂଳିସମୂହ ୪କିରଣ
୫ କଦଳୀ ୬ ଯୁଧିଷ୍ଠିର ୭ ପୀଡ଼ାଯୁକ୍ତ

ଚାଲିବାରୁ ଚେଷ୍ଟା ଅଗ୍ରଜ ସଧୀରେ
ଦେଲେ ତାଙ୍କୁ ଆଶ୍ୱାସନ ।
ଗନ୍ଧମାଦନର ଉତ୍ତୁଙ୍ଗ ଶୃଙ୍ଗକୁ
କରିବାକୁ ଆରୋହଣ,
ବହୁ ବାଟ ଚାଲି ବର୍ଷାମାନ୍ତ ଖାଇ
ଅବଶ ପାଣ୍ଡବଗଣ ।
ହୋଇ ଉପଗତ ଘଟୋତ୍କଚ ଦୈତ୍ୟ
କରନ୍ତେ ଭୀମ ସ୍ମରଣ,
ପ୍ରଣମି ସକଳ ମହାଆବେଗରେ
କଲେ ଜଲ୍ପନା କାରଣ ।
କାନ୍ଧେ ନେବା ଲାଗି ଶ୍ରାନ୍ତା ୧ପାଞ୍ଚାଳୀ
ବୋଲନ୍ତେ ୨ପ୍ରେମନନ୍ଦନ,
କରନ୍ତେ ଶ୍ରବଣ ମହା ମୋଦଭରେ
କରିଲା ତାଙ୍କୁ ବହନ ।
ବରଷାକାଳୀନ କମନୀୟ ଶୋଭା
ଦେଖି ଦେଖି ଅରଣ୍ୟର,
ଯାଉଥିଲେ ବାଟେ ପବନଗତିରେ
ହୋଇ ଲସରପସର ।
ପ୍ରମତ୍ତ ୩ଶୁଣ୍ଡାଳ ଶୁଣ୍ଡ ଟେକ ତାର
ଭାଙ୍ଗୁଥିଲା କାହିଁ ଡାଳ,
କେଶରୀ ଗର୍ଜନ ଶୁଣି ଘନ ଘନ
ବ୍ୟାଘ୍ର କ ପକାଏ ତାଳ ।
କଳ କଳ ନାଦେ ଯାଉଥିଲା ବହି
କାହିଁ ବା ଝରଣା ଜଳ,
୪ସାରଙ୍ଗ ସାରଙ୍ଗୀ ଲଟିରୁ ବାହାରି
ଖାଉଥିଲେ କାହିଁ ୫ଦଳ ।
୬ଶତଧାରେ ଝରି ମୃଣ୍ଡ ପୋଡ ପୋଡି
ଅରଣା ମହିଷ ଦଳ,
ଚରୁଥିଲେ ସୁଖେ ବସ୍ତ୍ର ଖା ସଙ୍ଗେ
ଦେଖି ଭୂଇଁ ସମତଳ ।
ଖାଉଥିଲେ ଖୁମ୍ପି ଠାଏ ଠାଏ ଡାଳେ
୭ପତଙ୍ଗୀଏ ପକ୍ୱଫଳ,
ଚଞ୍ଚୁକୁ ପ୍ରସାରି ଥରେ ଥରେ ପିଇ
ନବ ବରଷାର ଜଳ ।
୮କଳପ୍ରିୟ ଡେଇଁ ଏଡାଳୁ ସେ ଡାଳ
ହୁଁ କାର ଶବଦ କରି,
ଖାଉଥିଲେ ବସି ଜଣଙ୍କେ ବୃକ୍ଷରେ
ମୋଦେ ଜାମୁ ଫଳ ଧରି ।
ଧାଉ ଧାଡ଼ ହୋଇ ପାଦପନିଚୟ
ବେଢ଼ାଇ ଲତାବସନ,
ଚଳନ୍ତ ହରଣ ପଥ ଦାରୁଣରେ
ପଥିକ ନୟନ ମନ ।
ବଢାଇ ୯ଶିଖଣ୍ଡୀ ୧୦ଶିଖଣ୍ଡୀର ଦେଖି
୧୧ଶିଖଣ୍ଡିନୀ ଆଗ୍ରହରେ,
ଧରିବାକୁ ତାକୁ କରନ୍ତେ ଉଦ୍ୟତ
ବସିଲା ଶିଖିଶିଖରେ ।
ନରନାରାୟଣ ଆଶ୍ରମ ୧୨ନିକଟ
ହେବାରୁ କଲ୍ଲୁ ଓହ୍ଲାଇ,
ଗଲେ ପଦବ୍ରଜେ ୧୩ଭଦ୍ରା ଅପଘନେ
ଧବଳବାସ ଗୁଡାଇ ।
ବଦରୀ ସର ଦେଖି ରହିଲେ ସେଠାରେ
ଧନଞ୍ଜୟ ଦରଶନେ,
ମହର୍ଷିଏ ଆସି ପାଣ୍ଡୁନନ୍ଦନଙ୍କୁ
ତୋଷିଲେ ଆଶୀର୍ବଚନେ ।
ଛଅ ଦିନଅନ୍ତେ ଶତଦଳଟିଏ
ମରୁତେ ହୋଇ ଆନୀତ,
ଈଶାନଦିଶାରୁ ପାଞ୍ଚାଳୀ ସମ୍ମୁଖେ
ଭୂତଳେ ହେଲା ପତିତ ।
ଗୋଟାଇ ତାହାକୁ ସୁରୁଚିର ଦେଖି
୧୪ପୃଥୁଶୃଙ୍ଗୀକ ଦେଖାଇ,
"କହିଲେ କେତୋଟି ଏପରି ମୋଲାଗି
କରି ଆନୟନ ଯାଇ" ।
ବୋଲି ଏହିପରି ୧୫ନିତ୍ୟଯଉବନା
ଗଲେ ସୁଅଷ୍ଟି ୧୬ନିକଟ,

୧ ଦ୍ରୌପଦୀ ୨ ବାୟୁନନ୍ଦନ ଭୀମ ୩ ହାତୀ ୪ହରିଣ
୫ ପତ୍ର ୬ ଦୁବଘାସ ୭ ପକ୍ଷୀମାନେ

୮ କପି ୯ ମୟୂର ପୁଚ୍ଛ ୧୦ ମୟୂର ୧୧ଦ୍ରୌପଦୀ
୧୨ସମୀପ ୧୩ଦ୍ରୌପଦୀ ୧୪ଭୀମ ୧୫ ଦ୍ରୌପଦୀ୧୬ସମୀପ

୧ସୂକ୍‌ସୂତ ଏଣେ ୨ସୂକ୍ ଆହରଣେ
ପ୍ରସ୍ଥାଣ କଲେ ୩ଅଞ୍ଜସା ।
ଶଇଳ ଉପରେ ବିଚରଣ କରି
ରୌଦ୍ରରେ ନେତ୍ର ବୁଲାଇ,
ହେଲେ ୪ପୁରଃସର ଆଉ କେତେଦୂର
ସନ୍ଧାନ ତାର ନପାଇ ।
୫ଅୟନେ ଅୟନେ ଦେଖି ଅଦ୍ରିଶୋଭା
ଲଭିଲେ ପରମତୋଷ,
ବନ୍ୟଜନ୍ତୁଗଣ ହୋଇ ଭୀତତ୍ରସ୍ତ
କଲେ ଅନୁଭବ ୬ପ୍ରୋଷ ।
ଯାଇ କିଛିଦୂର ସରୋବରଟିଏ
ପାବନ କଲେ ଦର୍ଶନ,
ଯାହାର ତଟେ ଯାର ଘେରି ରହିଥିଲ
ସୁରମ୍ୟ ୭ରମ୍ଭାବନ ।
ପବମାନ ଯୋଗେ ଦୋହଲି ୮ପଲାଶ
ବିଞ୍ଚୁଥିବା ପରସର,
ହେଉଥିଲା ବୋଧ ସେ ଦୃଶ୍ୟ ଦର୍ଶନେ
ମାନସେ ଆଗନ୍ତୁକଙ୍କର ।
ଶୁକ୍ଳ ନୀଳବର୍ଣ୍ଣ ୯ଶତଚ୍ଛଦଭବ
ଫୁଟି ସେହି ସରୋବରେ,
ଆମୋଦିଲେ କ୍ରୀଡ଼ା ମହାବଳବନ୍ତ
୧୦ବୃକୋଦର ହରଷରେ ।
ବହୁକ୍ଷଣ ପରେ ବନରୁ ବାହାରି
କରନ୍ତେ ମହାଶବଦ,
କେଶରୀ ୧୧କୁଞ୍ଜର- ମାନଙ୍କୁ ସେ ନାଦ
ହେଲା ଅତି ଭୟପ୍ରଦ ।
ସେ ୧୨ମୋଚକ ବନେ କରୁଥିଲେ ବାସ
ହନୁମାନ କପିମଣି,
ଭୀମ ଆସିବାର ବାରତା ସେହି
ଅବରୋଧିଲେ ସରଣି ।
ପ୍ରସୁପ୍ତ ପରାଏ ୧୩ପ୍ରସୂବନେ ରହି
ପୁଚ୍ଛ ପିଟି ଥରେ ଥରେ,
ଚମକାଉ ଥିଲେ ମହା ବନ ଦେଶ
ଶଙ୍କାହୀନ ହୃଦୟରେ ।
ସେ ନାଦ ଶ୍ରବଣେ ୧୪ପୃଥୁଶୃଙ୍ଗୀତନୁ
ହେଲା ଅତି ରୋମାଞ୍ଚିତ,
ଜାଣିବା ନିମିତ୍ତ ଦମ୍ଭେ ଉମ୍ନାବନେ
ପ୍ରବିଷ୍ଟ ହେଲେ ତ୍ୱରିତ ।
ପାଚିଲା କଦଳୀ ଦେଖି ହେଲେ ଭୋଳ
ମୋହେ ତୋଳି ତୋଳି ଜବେ,
ଦେଉଥିଲେ ଗିଳି ବୁଭୁକ୍ଷିତ ଭଳି
ନଡ଼ରି କାହାକୁ ଲବେ ।
ଇତସ୍ତତ ତହିଁ ବୁଲି ବୁଲି ଶେଷେ
ଦେଖିଲେ ସେ କପିବର,
୧୫ପରାରୁକ ପରେ ବସିଥିଲେ କରି
ସଙ୍କୁଚିତ କଳେବର ।
ତହୁଁ ୧୬ବୃକୋଦର ୧୭ଗୁଞ୍ଜିଘୋଷ ତୁଲ୍ୟ
କରିବାରୁ ମହାନାଦ,
ସେ ଶବଦ ଶୁଣି ୧୮ମହାନାଦରପୁ
ମଣିଲେ ମହା ପ୍ରମାଦ ।
ବୋଇଲେ ୧୯ଆଞ୍ଜନେୟ ୨୦ଆନନ୍ଦି ଅନାଇଁ
ଛଳନାପୂର୍ଣ୍ଣ ବାକ୍ୟରେ,
"ମାନବ ଜାତିରେ ଜନମି ସଂସାରେ
କୃପାନାହିଁ ହୃଦୟରେ ।
୨୧ଆରାମେ ଆରାମେ ଶୋଇଥିଲୁ ଆମ୍ଭେ
ହୋଇ ଜରା ପ୍ରପୀଡ଼ିତ,
କେଉଁଠାରୁ ଆସି ୨୨ଭ୍ରସଭେ ପ୍ରବେଶି
କଲ ମୋତେ ୨୩ପ୍ରବୋଧିତ ।
ଶିଷ୍ଟାଚାର ଲଙ୍ଘି ବାଳକ ସଦୃଶ
ପଶିଲ ପରବାସରେ,
ଯା ଯୋଗେ ଲୋପିଲ ଲକ୍ଷ୍ମୀନ ଜୀବନ
ଆଶ୍ରିତ ହୋଇ ସ୍ୱାର୍ଥରେ ।
ଶୟାନ ପ୍ରାଣୀଙ୍କି ଉଠାଇବା କେହି
ଅଟଇ ମହା ଅଧର୍ମ,

୧ ଭୀମ ୨ ପଦ୍ମ ୩ ଶୀଘ୍ର ୪ ଅଗ୍ରସର ୫ ପଥ ୬ କ୍ଳେଶ ୭ କଦଳୀବନ ୮ ପତ୍ର ୯ ପଦ୍ମ ୧୦ ଭୀମ ୧୧ ହାତୀ ୧୨ କଦଳୀ ୧୩ କଦଳୀ

୧୪ ଭୀମ ୧୫ ପଥର ୧୬ ଭୀମ ୧୭ ବଜ୍ର ୧୮ସିଂହ ବାଘ ୧୯ ହନୁମାନ ୨୦ ଭୀମ ୨୧ ଉପବନରେ ୨୨ ବଳକ୍ଷାରେ ୨୩ ଉଠେଇଲ

ମାତ୍ତ ବଳଦର୍ପେ ଆରମ୍ଭିଲ ପିନା
ଏତାଦୃଶ କୁତ୍ସିକର୍ମ ।
କହି ଏ ବଚନ ଚାହିଁ ହନୁମାନ
ପଚ୍ଛରନ୍ତେ ପରିଚୟ,
ଦୁହିଁଙ୍କ ମଧ୍ୟରେ ବିସ୍ତୃତ ସମସ୍ତ
ହେଲା ବଚନ ୧ବିମସ୍ତୁ
ହସି ହସି ହନୁ ବୋଇଲେ ଏ ୨ପଥରେ
ଯିବାକୁ କରିଛ ମନ,
ନମାନି ଗମନ କଲେ ଏ ଅପୂନେ
ଘଟିବ ତୁମ ନିଧନ ।"
ଘଟିଯାଉ ଯାହା ଛାଡ଼ିଦିଅ ୩ଅଧ୍ୱ
ଅନ୍ୟଥା ପାଇବ କ୍ଳେଶ,
ବୋଲି ଉତ୍ତରନ୍ତେ ପାବନ, ଭାଷିଲେ
ପ୍ରତ୍ୟୁତ୍ତରେ ୪ପ୍ଳବଗେଶ ।
ବ୍ୟାଧିଯୁକ୍ତ କ୍ଳିଷ୍ଟ ୫ଅଥର୍ବ ପୁଚ୍ଛକୁ
କରିବାକୁ ୬ଉତ୍ସାରିତ,
ବିବିଧ ଉପାୟେ କରିଲେ ପ୍ରୟାସ
ହୋଇ ଭୀମ ଉତ୍ସାହିତ ।
ନପାରିଲେ ତିଳେ ବୃଦ୍ଧ ଲାଙ୍ଗୁଳକୁ
ବୋହିଲା ୭ଖର ଅଙ୍ଗରୁ,
ଅସମର୍ଥ ହୋଇ ଉଭାହେଲେ ପାର୍ଶ୍ୱେ
ଅଧୋବଦନେ ଲଜରୁ ।
ତଦନ୍ତେ ଆନନ୍ଦ କୃତାଞ୍ଜଳିପୁଟେ
ପଚ୍ଛରନ୍ତେ ପରିଚୟ,
ବୋଇଲେ ସେ "ମୋର ନାମ ହନୁମାନ
ଅଟେ ପବନ ତନୟ ।"
ନିଜକୁ ଚହ୍ନାଇ ଜିଜ୍ଞାସନ୍ତେ ଭୀମ
"ଡେଇଁଲ ସିନ୍ଧୁ କି ରୂପେ" ?
ଏ ବଚନେ ହନୁ ଅଙ୍ଗକୁ ପ୍ରସାରି
ଦେଖାଇ ଦେଲେ ଚତୁରେ ।
କରି ତା ଦର୍ଶନ ଭୀମସେନଙ୍କର
ପଶିଲା ଆତଙ୍କ ମନେ,

୧ବର୍ନମୟୁ, ୨ପଥ, ୩ପଥ, ୪ହନୁମାନ, ୫ଅବଶ, ଅକର୍ମଣ୍ୟ, ୬ଟେକିବାକୁ, ୭ ଝାଳ

ସଙ୍କୁଚିତ କରି ତନୁ ହନୁ ବୋଲେ
"ଯାହାହେବ ଭିଣାଙ୍କେ ।"
ଅତଃପର ହନୁ ଧର୍ମ ୮ଆମର୍ଶଣ
ଦେଇ ହେଲେ ଅନ୍ତର୍ହିତ,
୯ବନଜ ୧୦ମାର୍ଗଣେ ଦୁର୍ଗମ ମାର୍ଗରେ
୧୧ମାର୍ଗିକ ଗଲେ ଭରତ ।
ଯାଉ ଯାଉ ବନେ ଦେଖି ଦେଖି ଦୃଶ୍ୟ
ପ୍ରବେଶିଲେ କୈଳାସରେ,
ଯହିଁ କଞ୍ଜନଦୀ ଆସୁଥିଲା ବହି
ମିଶିବାକୁ ସାଗରରେ ।
୧୨ସରୋରୁହେ ନଦୀ ଦିଶୁଛି ଶୋଭନ
ଧାତକୀ ଲତା ତଟରେ,
ବିବିଧ ବିହଗେ କରୁଥିଲେ କେଳି
ରାବ ଲଳିତ କଣ୍ଠରେ ।
କୁନ୍ତୀସୁନୁ ଭୀମ ତା ସମୀପେ ଯାଇ
ପିଇ ସୁଶୀତଳ ଜଳ,
ଦେଖିଲେ ପାରୁଶେ ସରୋବରଟିଏ
୧୩ସମ୍ବଳ ଯାର ବିମଳ ।
୧୪ଶରଦଣ୍ଡଭରା ୧୫ଷଣ୍ଡାଳୀଭିତରେ
୧୬ବଷଣ୍ଡ ଖଣ୍ଡିକୁ ଝାଡ଼ି,
ହଂସକାରଣ୍ଡବେ କରନ୍ତି ବିହର
ଚବ ଚବ କରି ପାଣି ।
୧୭ତରସ୍ୱୀ ୧୮ତରସ୍ୱୀ ତନୟ ସନ୍ତୋଷେ
ପ୍ରବେଶନ୍ତେ ତା ଭିତରେ,
୧୯ତାମିସ୍ର ସମୂହ ଗୋଡ଼ାଇଲେ ତାଙ୍କୁ
୨୦ପଦ୍ୱେସନେ ଦ୍ୱେଷଭରେ ।
ଅନାଦର କରି ସେମାନଙ୍କୁ ଭୀମ
କମଳ ଆଣିଲେ ତୋଳି,
ପଦ୍ମାକରଣରେ ଡେଇଁଲେ ପୁଲକେ
ବଦନେ ପବନ ବୋଲି ।

୮ଉପଦେଶ, ୯ପଦ୍ମ, ୧୦ଅନ୍ୱେଷଣରେ, ୧୧ପଥିକ ଅର୍ଥାତ୍ ଭୀମ, ୧୨ପଦ୍ମ, ୧୩ଜଳ, ୧୪ପଦ୍ମ, ୧୫ପୋଖରୀ, ୧୬ପଦ୍ମନାଡ଼, ୧୭ବଳବାନ, ୧୮ବାୟୁ ୧୯ ରାକ୍ଷସ, ୨୦ ବଧ

[୧]ଏବମ୍ଭୂତଭାବ    ଦେଖି ତାହାଙ୍କର
ଆସି [୨]ନକ୍ତଚର ଚୟ,
ପ୍ରସଭେ ନେବାକୁ    ସେ ଫୁଲ ଗୁଡିକ
ଦେଖାଇଲେ ତାଙ୍କୁ ଭୟ ।
ଜାତିରେ [୩]ରାଜନ୍ୟ    ପୁଣି ବଳୀଶ୍ରେଷ୍ଠ
ଡରିବେ କାହା ଏଥିରେ,
ଶତ ଶତ ଦୈତ୍ୟ    କଲେ ସେ ନିପାତ
ସରସନ୍ନିଧେ ଅଚିରେ ।
କେତେ ରଣଭଗ୍ନ    ନିରୂପାୟ ହୋଇ
ଉତ୍ତୁଙ୍ଗ ଶୃଙ୍ଗକୁ ଯାଇ,
[୪]ଉଡୁ ପଥ ପଥେ    ଧନପତି ପାଶେ
[୫]ତ୍ୱରସେ ଦେଲେ ଜଣାଇ ।
ସେମାନଙ୍କ କଥା    ଶ୍ରବଣ କରି ସେ
“ନିଅନ୍ତୁ ବୋଲି କହନ୍ତେ,
ସେଠାରୁ ସତ୍ୱର    ଅନୁମତି ମାଗି
ଫେରିଲେ ଦନୁଜେ ଅନ୍ତେ ।
ଭୀମ [୬]ବିବର୍ତ୍ତନ    ହେବାରୁ ବିଳମ୍ବ
ମନସ୍ୱୀ ପାଣ୍ଡୁନନ୍ଦନେ,
କରିଲେ ଗମନ    ପାଞ୍ଚାଳୀ ସହିତ
ନଭସ୍ତର ସହ ବନେ ।
ଘଟୋତ୍କଚ ଦୈତ୍ୟ    [୭]ସରସିଜସର
ଆଗୁଁ ଥିଲା ଅବଗତ,
ସେମାନଙ୍କୁ ନେଇ    ପାବନ ନିକଟେ
ହେଲା ଜବେ ଉପଗତ ।
ତୋଳିଥିବା [୮]ସ୍ରକ    [୯]ସ୍ତକସୁତ ନେଇ
ଦିଅନ୍ତେ ପାଞ୍ଚାଳୀ କରେ,
ତା ଶୋଭା ଦର୍ଶନେ    ମାଳଗୁନ୍ଥି ଦେଲେ
[୧୦]ଭବପ୍ରତିମା କଣ୍ଠରେ ।
[୧୧]ପଙ୍କଜମାଳକ୍ଷୀ    କଲେ ପ୍ରଣିପାତ
ଅବନତ ମସ୍ତକରେ,
[୧୨]ପାର୍ଥ ପ୍ରତୀକ୍ଷାରେ    ରହିଲେ ସେଠାରେ
ସରବେ ହରଷଭରେ ।

୧ ଏହାପରେ ୨ ରାକ୍ଷସ ୩ କ୍ଷତ୍ରିୟ ୪ ଆକାଶ ୫ ଶୀଘ୍ର ୬ ଲେଉଟିବା ୭ ପଦ୍ମପୁଷ୍କରିଣୀ ୮ ପଦ୍ମ ୯ ପବନସୁତ ଭୀମ ୧୦ ଶିବଜ ୧୧ ପୁଷ୍କରିଣୀ ୧୨ ଅର୍ଜୁନ

କିଛିକାଳ ଅନ୍ତେ    କୁବେର ସଦନେ
ଗମନେ ବଳାନ୍ତେ ମନ,
ଦୈବବାଣୀ ଶୁଣି    ବଦରିକାଶ୍ରମେ
କଲେ ସେଥୁ ବିବର୍ତ୍ତନ ।
ଦିନେ ଭୀମସେନ    ମୃଗୟା ନିମିତ୍ତ
ଯାଇଥିଲେ ବନଦେଶ,
ଏ ସୁଯୋଗ ନେଇ    ଜଟାସୁର ଦୈତ୍ୟ
ଆଶ୍ରମେ କଲା ପ୍ରବେଶ ।
ଦ୍ରୌପଦୀଙ୍କ ଘେନି    ପାଣ୍ଡବ ସହିତ
କଲାବେଳେ ପଳାୟନ,
ଖସି ତା ହସ୍ତରୁ    କନିଷ୍ଠ ପାଣ୍ଡବ
କଲେ ତାକୁ ଆକ୍ରମଣ ।
ସେକାଳେ ପାବନି    ପହଞ୍ଚି ସହସା
ତାସଙ୍ଗେ କଲେ ସମର,
ତାଙ୍କ ଗଦାଘାତେ    ଉତ୍ତମାଙ୍ଗୁ ତାର
ସ୍ରବିଲା ରୁଧିର ଝର ।
ଜାନୁ ଭାଙ୍ଗିବାରୁ    ପଡ଼ିଲା ତକ୍ଷଣେ
ଦରିମରି ହୋଇ ତଳେ,
କ୍ଷଣକ ମଧ୍ୟରେ    ଯିବାରୁ ଜୀବନ
ଆନନ୍ଦ ଋଷି ସକଳେ ।
[୧]ବ୍ୟାଳାକୀର୍ଣ୍ଣ ବନ    ବୀଥି ଅତିକ୍ରମି
ଏ ଅନ୍ତେ ପାଣ୍ଡବଗଣ,
[୨]ଉଦଗଦ୍ରୀ ପୃଷ୍ଠେ    ହୋଇ ଉପନୀତ
କଲେ ମୋଦେ ବିହରଣ ।
ରମ୍ୟ ଦୃଶ୍ୟ ଦେଖି    ବୃଷପର୍ବାଶ୍ରମେ
ରହିଲେ ସପ୍ତ ଦିବସ,
ଅନ୍ୟତ୍ର ଗମନେ    ବଳାଇଲେ ମନ
ଶତ୍ରୁ କରିବେ ଧ୍ୱଂସ ।
ଭବିଷ୍ୟତବେତ୍ତା    ମନସ୍ୱୀମୁନିଙ୍କ
ଅନୁଜ୍ଞା କରି ଗ୍ରହଣ,

୧ ହିଂସ୍ର ଜନ୍ତୁ ସାପ ପ୍ରଭୃତି ଦ୍ୱାରା ବ୍ୟାପ୍ତ
୨ ହିମାଳୟ

ବାହାରିଲେ ବୀରେ ଉଦୀଚୀ ଦିଗରେ
ସଙ୍ଗେ ଧରି ବିପ୍ରଗଣ,
ଗନ୍ଧମାଦନକୁ ମାଳବାନ ବାଟେ
ଗମନ୍ତେ ପାଣ୍ଡବତନୟ ।
୧ଅଭ୍ରଂଲିହ ଅଦ୍ରି ଉଠି ଉଠି ମାର୍ଗେ
ସର୍ବେଶ୍ରାନ୍ତ ଅତିଶୟ ।
ପୁଷ୍ପିତ ବଲ୍ଲରୀ- ୨ପର୍ଣ୍ଣୀପର୍ଣ୍ଣାବଳୀ
ଦୋହଲି ଦୋହଲି ଧୀରେ,
୩ଅହିକାନ୍ତ ଯୋଗେ ୪ଅଧ୍ୱପଟଳୀକି
ଦେଉଥିଲା ବଞ୍ଚ କରେ ?
ଚତୁଃପାର୍ଶ୍ୱେ ଶୋଭା କରେ ସେମାନଙ୍କ
ବିଷାଦ ଦୁଃଖକଦଣ,
ରସବନ୍ତ ଫଳ ସକଳ ହରଷେ
ବଇନ୍ତ ନିତ୍ୟ ଭକ୍ଷଣ ।
୫ଇନ୍ଦୀବରଭରା ସରସୀ-ନିକର
ଦିଶୁଥିଲା ମନୋହର,
ତହିଁ ଶତଦଳ ଦେଖିବାରୁ ୬ବହ୍ନ୍ୟକ
ଧାଇଁଲେ କେସି ଭ୍ରମର ।
୭ତାମସ-ରସ- ଆସବକୁ ଶୋଷି
ଅଳସେ ପଡ଼ିଲେ ଶୋଇ,
୮ପ୍ରସୂସ୍ୱିନା ଶେଷେ ଚଳାଇଲେ ଉଡ
ମୟୂଖରେ ମୁଖ ଧୋଇ ।
ପଦ୍ମପୁଷ୍ପଫଳେ ପରିପୂର୍ଣ୍ଣ ବନ
ରମିଲା ମନ ତାଙ୍କର,
"ସିଦ୍ଧହେଲୁ" ବୋଲି କହି ଯୁଧିଷ୍ଠିର
ରହିଲେ ସେହି ବାସର ।
ଅର୍ଷ୍ଟିଷେଣାଶ୍ରମେ ଏଅନ୍ତେ ପାଣ୍ଡବେ
ଗଲେ ଉତ୍‌ଫୁଲ୍ଲ ଲୋଚନେ,
ହୋଇ ଉପନୀତ ପୂଜି ମହର୍ଷିଙ୍କି
ତୋଷିଲେ ଅଭିବାଦନେ ।
ଆଭ୍ୟର୍ଥନା କରି ଅର୍ଷ୍ଟିଷେଣ ଋଷି
ନେଲେ ଆଶ୍ରମେ ତାଙ୍କରି,

ବୀଭତ୍ସୁ ଆସିବା ପର୍ଯ୍ୟନ୍ତ ରହିଲେ
ଦେଖି ଦୃଶ୍ୟ ଅରଣ୍ୟର ।
ଏଣେ ୯ଐନ୍ଦ୍ର ଅସ୍ତ୍ର ଲଭି ୧୦ରୁଦ୍ରଠାରୁ
ପ୍ରଣମି ତାଙ୍କ ପଦ୍ମରେ,
ବିଦାମାଗି ତହୁଁ ପ୍ରଫୁଲ୍ଲ ଚିତ୍ତରେ
ଗଲେ ଗନ୍ତବ୍ୟ ମାର୍ଗରେ ।
ଯାଉ ଯାଉ ପଥେ ବାସବ ସହିତ
ହେବାରୁ ଭେଟ ତାଙ୍କର,
ଅମରାବତୀକୁ ନେଇଗଲେ ସଙ୍ଗେ
ଶ୍ରଦ୍ଧାବଦ୍ଧ ପରାଣର ।
ନୃତ୍ୟଗୀତ ପୁଣି ଅସ୍ତ୍ରେ ନିପୁଣତା
ଅରଜି ପାଣ୍ଡୁନନ୍ଦନ,
ଅମରାବତୀରୁ ଲେଉଟିବା ଲାଗି
ବଳାଇଲେ ଏବେ ମନ ।
ବାସବ ଆଜ୍ଞାରେ ମାତଳି ସ୍ୱର୍ଗରୁ
ତାହାଙ୍କୁ ଘେନି ରଥରେ,
ଅର୍ଷ୍ଟିଷେଣାଶ୍ରମେ ହେଲେ ଅବତୀର୍ଣ୍ଣ
ଯୁଧିଷ୍ଠିରଙ୍କ ପାଶରେ ।
୧୧ଜଳପ୍ରିୟ ପରି ରହିଥିଲେ ତହିଁ
୧୨ଶଇଳଭେଦୀକ ସକଳେ,
ହେଲେ ପ୍ରମୋଦିତ କୃଷ୍ଣା ପାଣ୍ଡୁପୁତ୍ରେ
ଲେଉଟିବାରୁ କୁଶଳେ ।
୧୩ଅଗ୍ରଜ ୧୪ଅଗ୍ରଜ ପାଦ ପୂଜା କରି
ଅନୁଜଙ୍କୁ ଆଲିଙ୍ଗନ,
କରି ସବ୍ୟସାଚୀ ୧୫ସତ୍ୟସନ୍ଧା ପାଶେ
ତଦନ୍ତେ କଲେ ଗମନ ।
ଶକ୍ରଦତ୍ତ ଦ୍ରବ୍ୟ ତାଙ୍କ କରେ ଦେଇ
ପ୍ରବୋଧିଲେ ହରଷରେ,
ଅଭ୍ୟର୍ଥିତ ହୋଇ ମାତଳି ସ୍ୱର୍ଗକୁ
ଲେଉଟିଗଲେ ରଥରେ ।
କପିଧ୍ୱଜଠାରୁ ସକଳ ବୃତ୍ତାନ୍ତ
ଶୁଣିବାକୁ ଆଗ୍ରହରେ,

୧ ଅତ୍ୟୁଚ୍ଚ ପର୍ବତ ୨ ବୃକ୍ଷ ୩ ପବନ ୪ ପଥିକ ସମୂହ ୫ ଜଳଚର ପୁଷ୍ପ ୬ ବିକାଶିତ ୭ ପଦ୍ମ ୮ ରାତ୍ରି

୯ ଅର୍ଜୁନ ୧୦ ଶିବ ୧୧ ଚାତକ ୧୨ ଅର୍ଜୁନ ୧୩ ଯୁଧିଷ୍ଠିର ୧୪ ବ୍ରାହ୍ମଣ ୧୫ ଦ୍ରୌପଦୀ

ତାକ ସାୟଂକାଳେ ଭ୍ରାତାମାନେ ତାଙ୍କୁ
ବସାଇଲେ ସମୀପରେ ।
ଦିବାଦନ ଠାରୁ ଲେଉଟିବା ଯାଏଁ
ଘଟିଥିଲା ଯାହା ଯାହା,
ଗୋଟି ଗୋଟି କରି ସେମାନଙ୍କ ଆଗେ
ବର୍ଣ୍ଣିଲେ ବୀଭତ୍ସୁ ତାହା ।

## ତ୍ରୟୋଦଶ ସର୍ଗ

ଭ୍ରମି ଭ୍ରମି ବନେ ପାଣ୍ଡବ ନବଦ୍ଧ
ଫେରନ୍ତେ କାମ୍ୟକ ବନେ,
ସତ୍ୟଭାମା ସହ ଆସିଲେ କଂସାରି
ସେମାନଙ୍କ ଦରଶନେ ।
ହେଲେ ଉପବିଷ୍ଟ ଟାଙ୍କର ପାଞ୍ଚାଳୀ
ଧୂଅନ୍ତେ ପୟେ ପୟର,
ଯାବତ ବିଷୟ ପୁଚ୍ଛିଲେ କେଶବ
କୁତୂହଳେ ଅନନ୍ତର ।
କଥା ହେଉ ହେଉ ହେଲେ ତହାଗତ
ମାର୍କଣ୍ଡେୟ ମହାଋଷି,
ଦରଶନ ଲଭି ୧ତପୋଜ୍ଞାନଙ୍କର
ସକଳ ହୋଇଲେ ଖୁସି ।
ପଚିଶ ବର୍ଷର ଭେଣ୍ଡିଆ ପରି ସେ
ଦିଶୁଥିଲେ ତପୋଧନ,
ସହସ୍ର ସହସ୍ର ବର୍ଷ ଜୀବୀ ବୋଲି
କହନ୍ତି ଗଙ୍ଗା ନନ୍ଦନ ।
ପାଣ୍ଡବ କେଶବ ୨ଉପବୀତି ସର୍ବେ
କରନ୍ତେ ତାଙ୍କ ଅର୍ଚ୍ଚନା,
ସେମାନଙ୍କ ସଙ୍ଗେ କଲେ ସମ୍ଭାଷଣ
ସେ ଅଜର ମହାମନା ।
ତାଙ୍କଠାରୁ ଧର୍ମ କଥା ଶୁଣିବାକୁ
ସର୍ବେ ହେଲେ ଉପବିଷ୍ଟ,
ଆଗ୍ରହୀ ଥିବାରୁ ସେମାନଙ୍କୁ ଜାଣି
ବୋଇଲେ ସେ ବ୍ରହ୍ମନିଷ୍ଠ ।

"ପୂର୍ବେ ପୁରୁଷ ନଥିଲେ ପାଂଶୁଳ
ଅବା ବିଦ୍ୱେଷ ମନରେ,
ପୁଣ୍ୟଶୀଳ ପୁଣି ସତ୍ୟବାଦୀ ହୋଇ
ଚଳୁଥିଲେ ଏ ଭବରେ ।
ଗୁରୁ ସେବାରତ ଶୁଚିବନ୍ତ ହୋଇ
କରି ତପସ୍ୟାନୁଷ୍ଠାନ,
ଆଚରି ସଂଯମ ବ୍ରହ୍ମ ସନ୍ଧାନରେ
କରୁଥିଲେ ସଦା ଧ୍ୟାନ ।
ନଥିଲେ ନାସ୍ତିକ ଅଥବା ୩ସ୍ୱସ୍ତିକ
ପୁଣ୍ୟକର୍ମେ ଥିଲେ ମତ୍ତ,
ମୃତ୍ୟୁ ପରେ ଜୀବ ସ୍ୱକୀୟ କର୍ମରେ
ଲଭଇ ଅମୃତ ଗତି ।
କୃତକର୍ମ ଫଳେ ସୁଖ ଅବା ଦୁଃଖ
ଭୋଗ୍ୟ ସଦା ମଣିଷର,
କ୍ଷୟ ହେଲେ ପ୍ରାଣ ପୁଣି ସୂକ୍ଷ୍ମ ଦେହେ
ମିଳନ ଘଟେ ଜୀବର ।
ବହୁତ ଧନରେ ଅଶୁଭ କର୍ମରେ
ମାତିଲେ ଇହଲୋକରେ,
ଲଭେ ସୁଖ ସିନା ମଣିଷ ମୁହୂର୍ତ୍ତେ
ପ୍ରମାଦ ପର ଲୋକରେ ।
ଧର୍ମ ସମ୍ବନ୍ଧୀୟ ଆମର୍ଶନ ଦେଇ
ମାର୍କଣ୍ଡେୟ ତପୋବ୍ରତ,
କୃଷ୍ଣ ସତ୍ୟଭାମା ଆଶ୍ୱାସନା ଦେଇ
ଗଲେ ଦ୍ୱାରକା ତ୍ୱରିତ ।
ଖରବର୍ଷା ଶୀତ ସହି ପାଣ୍ଡୁସୁତେ
ଯାପନ୍ତି ଦିନ ଦୁଃଖରେ,
ଉଦ୍ୟାନ ଶୋଭନ ୪ସୌଧେ ଦୁର୍ଯ୍ୟୋଧନ
ବିତାଏ କାଳ ସୁଖରେ ।
ଉପଦେଷ୍ଟା ଯେବେ ୫ଭାନୁସୁତ କର୍ଣ୍ଣ
୬ପିଶୁନ ଶକୁନି ପୁଣି
ରାଜା ଦୁର୍ଯ୍ୟୋଧନ ଚଳାଏ ଶାସନ
ସେମାନଙ୍କ କଥା ଶୁଣି ।

୧ ତପୋବୃଦ୍ଧ ୨ ବ୍ରାହ୍ମ

୩ ଲମ୍ପଟ ୪ ଅଟ୍ଟାଳିକା ୫ ସୂର୍ଯ୍ୟପୁତ୍ର ୬ ଖଳ

ଦେଖାଇ ହେବାକୁ ସ୍ୱକୀୟ ବିଭୂତି
ଏମାନେ ବନେ ବିଚର,
ଆଭୀର ପଲ୍ଲୀକି ଯିବାଲାଗି ଗଲେ
୧ପତିବ୍ରତାକୁ ଚେହର ।
ଦ୍ୱୈତ ବନରେ ପାଣ୍ଡବେ ଥିବାର
ଅମ୍ବିକାସୁତ ନୃପତି,
ପୂର୍ବୁ ଅବଗତ ହୋଇ ସେମାନଙ୍କୁ
ଦେଲେ ନାହିଁ ଅନୁମତି ।
କୌଶଳେ ମଗାଇ ତାହାଙ୍କୁ ଶକୁନି
ହସ ହସ ବଦନରେ,
ଲେଉଟି ସେଠାରୁ ଯିବାଲାଗି ଘୋଷେ
ସଜବାଜ ହେଲେ ଖରେ ।
ଉଲ୍ଲାସରେ ମାତି ଗଲେ କୁରୁପତି
ଶକୁନି କର୍ଣ୍ଣ ସହିତ,
ପଛେ ପଛେ ତାର ସୁସଜ୍ଜିତ ଅଟେ
ଗଲେ ଚମୂ ଅପ୍ରମିତ ।
ଦ୍ୱୈତ ବନସ୍ଥିତ ଘୋଷ ଅଭିମୁଖେ
ସେମାନେ କର ପ୍ରୟାଣ,
ବନେ ରହୁଥିବା ଗନ୍ଧର୍ବ ସଙ୍ଗରେ
କଲେ କନ୍ଦଳ ଉଆଣ ।
କ୍ଷଣେ ପରାଙ୍ମୁଖ ହୋଇ କୁରୁବଳ
କରିବାରୁ ପଳାୟନ,
୨ଅଂଶୁମାଳୀ ସୁତ ସୈନ୍ୟଦଳ ସହ
କଲେ ସେଠାରୁ ଗମନ ।
ପୁରୁଷ ବଚନ କହି ସେମାନଙ୍କୁ
କରନ୍ତେ ବାଣ କ୍ଷେପଣ,
୩ଅଦଭ୍ର ଗନ୍ଧର୍ବ ହୋଇ ହତାହତ
କଲେ ପରିହାର ରଣ ।
ଏ ସନ୍ଦେଶ ପାଇ ଚିତ୍ରସେନ କୋପେ
ପ୍ରବୃତ୍ତ ହୋଇ ୪ପ୍ରସରେ,
ଯୁଝନ୍ତେ ମାୟାସ୍ତ୍ରେ କୌରବବାହିନୀ
ପଳାଇଗଲେ ଭୟରେ ।

ଅଚଳ ସଦୃଶ ଅଚଳ ଭବରେ
ରହି ତପନନନ୍ଦନ,
ଲଢ଼ନ୍ତେ ସମର ଦୁର୍ଯ୍ୟୋଧନ ମିଶି
ଗନ୍ଧର୍ବେ କଲେ ବେଷ୍ଟନ ।
ବଧ ଅଭିଳାଷୀ ହୋଇ କର୍ଣ୍ଣଙ୍କର
ଭଙ୍ଗନ୍ତେ ୫ପତ୍ରୀ ତାଙ୍କର,
ଆତ୍ମପରିତ୍ରାଣ ଲାଗି ୬ସୂତସୁତ
ବସି ପୃଷ୍ଠେ ୭ପ୍ରମଥର ।
କଲେ ପଳାୟନ ୮ପ୍ରସର ପ୍ରାଙ୍ଗଣୁ
ନରହି ସେଠାରେ କ୍ଷଣେ,
ତହୁଁ ଅରିନ୍ଦମ ଦୁର୍ଯ୍ୟୋଧନ ଆସି
ଲାଗିଲେ ୯ପତ୍ରୀକ୍ଷେପଣେ ।
ବେଢ଼ି ଚଉପଟୁ ଗନ୍ଧର୍ବ ୧୦ନିବହ
ପକାଇ ତାକୁ ଭୂତଳେ,
ଦୁଃଶାସନ ପାଶେ ହୋଇ ଧାବମାନ
ପ୍ରହାରିଲେ ବକ୍ଷସ୍ଥଳେ ।
ସେ ଦୁଇ ଭାଇଙ୍କି ରାଜରାଣୀ ସହ
ଚିତ୍ରସେନ ଆସି ଖରେ,
ମହାବଳଶାଳୀ ଗନ୍ଧର୍ବଙ୍କୁ ଡାକି
ରଖାଇଲେ ବନ୍ଧନରେ ।
ଏ ଘଟଣା ଦେଖି ହିତୈଷୀ ମନ୍ତ୍ରୀଏ
ଯାଇ ପାଣ୍ଡବ ନିକଟେ,
କରି ପ୍ରଣିପାତ ନିବେଦିଲେ ତୂର୍ଣ୍ଣ
ହେବାକୁ ସାହା ସଙ୍କଟେ ।
ଏବଚନ ଶୁଣି ଭାଷିଲେ ପାବନି
"ଯେ ପାପେ ପର ଅନିଷ୍ଟ,
ଅବହେଳ ଭବେ ଭାବୁଥାଏ ସିନା
ଦଇବ ତାର ଅରିଷ୍ଟ" ।
କହନ୍ତି ଅଗ୍ରଜ ଶୁଣି ଅନୁଜୋକ୍ତି
ନକହ ବାକ୍ୟ ଏପରି,
କରି ଚିନ୍ତା ବସି କୌରବେ ସଙ୍କଟୁ
ଲଭିବେ ମୁକ୍ତି ଯେପରି ।

୧ ଧୃତରାଷ୍ଟ୍ର ୨ସୂର୍ଯ୍ୟସୁତ କର୍ଣ୍ଣ ୩ବହୁଳ ୪ସମରେ

୫ରଥ ୬ସୂର୍ଯ୍ୟସୁତ କର୍ଣ୍ଣ ୭ଅଶ୍ୱ ୮ସମର ୯ଶର ୧୦ଗନ୍ଧର୍ବସମୂହ

ଜ୍ଞାତି ମଧ୍ୟେ ଭେଦ ନକରେ ବିନାଶ
କେତେବେଳେ କୁଳଧର୍ମ,
ପଶିଲେ ଶରଣ ନସ୍ତାରିବା ଶତ୍ରୁ
ମହାଜନର ଏ କର୍ମ ।
ଜାଣେ ଚିତ୍ରସେନ ବହୁଦିନୁ ଏଥି
ରହିଅଛୁ ବାସକରି,
ଆମ୍ଭଙ୍କୁ ଅବଜ୍ଞା ଦେଖାଇ ନେଉଛି
ଲଳନାମାନଙ୍କୁ ଧରି ।
୧କୁଳସ୍ତ୍ରୀ ମାନଙ୍କର ନିପୀଡ଼ନ ହେତୁ
ଲୋକର କୁଳ ବିନଷ୍ଟ,
କୁଳଧର୍ମ ଧ୍ୱଂସ ହେବାରୁ ହେଉଛି
ମନେ ଜାତ ଅତି କଷ୍ଟ ।
ଯାଇ ଅତିଶୀଘ୍ର ବନ୍ଧନୁ ମୋଚନେ
କର କଉରବଗଣ,
ଜ୍ଞାତିର ବିପଦେ ସାହାଯ୍ୟାନୁଷ୍ଠାନ
ମହାମନାର ଲକ୍ଷଣ" ।
ଧର୍ମରାଜଙ୍କର ଏ ବାକ୍ୟ ଶ୍ରବଣେ
ଚଳିଲେ ଆଶୁ ଆହବେ,
ଅସ୍ତ୍ରଶସ୍ତ୍ର ଧରି ୨ତାର୍କ୍ଷ୍ୟପରେ ଚଢ଼ି
ରଥୀ ଶାର୍ଦ୍ଦୁଳ ପାଣ୍ଡବେ ।
ଗନ୍ଧର୍ବମାନଙ୍କୁ ଦେଖି ସମକ୍ଷରେ
୩ସିତାଶ୍ୱ ମୃଦୁବଚନ,
"କହିଲେ ସହାସ୍ୟେ ଚରଦାର ତୁହିଁ
ଅର୍ଜିଲି ଏବେ ନନ୍ଦନ ।
ଦ୍ୱନ୍ଦ୍ୱ ନ ଭିଆଇ ଛାଡ଼ କୌରବଙ୍କୁ
ଲଳନାମାନଙ୍କ ସହ,
ନକଲେ ଏକ୍ଷଣି କୃତାନ୍ତ ସଦନେ
ଯିବେ ଗନ୍ଧର୍ବନିବହ" ।
୪ଅପାର୍ଥ ହେବାରୁ ୫ପାର୍ଥର ବଚନ
ଲଗିଲା ତୁମୂଳ ରଣ,
କୋପଭରେ ୬ଜିଷ୍ଣୁ ସେମାନଙ୍କ ପ୍ରତି
କଲେ ୭ମାର୍ଗଣ ବର୍ଷଣ ।

ଗନ୍ଧର୍ବେ ତତ୍କାଳେ ପରାଜୟ ଲଭି
ଚିତ୍ରସେନଙ୍କୁ କହନ୍ତେ,
ଆସିଲେ ୮ତୂଳରୁ ସେ ଗନ୍ଧର୍ବରାଜ
ମାୟାସ୍ତ୍ର ଧରି ଏ ଅନ୍ତେ ।
ବଜ୍ର ଗଦା ହାଣି କଲେହେଁ ସମର
ପରନ୍ତପ ଧନଞ୍ଜୟ,
ସେ ଗୁଡ଼ିକୁ ଆଶୁ କଲେ ଖଣ୍ଡ ଖଣ୍ଡ
ପେଷି ୯କଙ୍କପତ୍ରଚୟ ।
ସେ ଗନ୍ଧର୍ବରାଜ ଲଭି ପରାଜୟ
ପ୍ରବେଶି ପାର୍ଥ ନିକଟେ,
ତୋଷିଲେ ତାହାଙ୍କୁ ସହାୟ ହେବାରୁ
ଦୁର୍ଯ୍ୟୋଧନର ସଙ୍କଟେ ।
ଲଳନାଙ୍କ ସହ ଫିଟି ସଞ୍ଜନରୁ୧୦
ଦୁର୍ଯ୍ୟୋଧନ ଦୁଃଶାସନ,
ଫେରିଲେ ହସ୍ତିନା ବିଷଣ୍ଣ ବଦନେ
କରି ପାଣ୍ଡବ ଦର୍ଶନ ।
ନୁହଇ ଫଳିତ ମନୀଷ ଏଭବେ
କେବେ ତାର ଇଚ୍ଛାମତେ,
ଯେତେବେଳେ ଯାହା ଘଟଇ ଜୀବନେ
ଦଇବର ଅନୁଗତେ ।
ଦ୍ୱୈତବନ ଛାଡ଼ି କାମ୍ୟକକୁପାନ୍ତେ
ପୁନଶ୍ଚ ପାଣ୍ଡୁନନ୍ଦନେ,
ବ୍ୟାସଦେବ ଆସି ଦେଲେ ଦରଶନ
ସେମାନଙ୍କୁ ସେ କାନନେ ।
କୃଶାଙ୍ଗ ଥିବାର ଦେଖି ପୌତ୍ରମାନେ
ବାଷ୍ପ ଗଦ୍‌ଗଦ ସ୍ୱରରେ,
"କହିଲେ ତପସ୍ୟା ନକର କାଏସେ
ପାଉଛି ସୁଖ ଭବରେ୧୧
ସୁଖ ଦୁଃଖ ଭୋଗ ପର୍ଯ୍ୟାୟ କ୍ରମରେ
ଲଗିଛି ସନ୍ତତ ଭବେ,
ତେଣୁ ସୁଖେ ହୃଷ୍ଟ ନୋହି ବା ଦୁଃଖରେ
ନକରିବ ଶୋକ ଲବେ ।

୧ କୁଳସ୍ତ୍ରୀ ୨ ରଥ ୩ ଅର୍ଜୁନ ୪ ନିଷ୍ଫଳ ୫ ଅର୍ଜୁନ
୬ ଅର୍ଜୁନ ୭ ଶର

୮ ଆକାଶରୁ ୯ ଶର ୧୦ ବନ୍ଧନରୁ
୧୧ ପୃଥିବୀରେ

ସତ୍ୟ ସରଳତା- ସମ ଶୁଦ୍ଧାମ୍ବର
ନବଧ କଲେ ମାନସ,
ଅଧର୍ମରେ ରୁଚି ରହୁଥାଏ ଯାର
ସେ ନୁହେ କେବେ ତାପସ ।
ଇହଲୋକେ କର୍ମ କରିବ ଯେପରି
ସେପରି ପରଲୋକରେ,
ଭୋଗିବ ତା ଫଳ ମନୀଷ ୧ମନସି
ତେଣୁ ରହ ସଂଯତରେ ।
ଦମପରାୟଣ ହୁଅନ୍ତି ନରେଶ
ବ୍ୟସନେ ସଦା ଅରୁଚି,
କଳୁଷ ପଙ୍କରେ ନ ପଶି ରଖନ୍ତି
ମନ ନରେନ୍ଦ୍ର ଶୁଚି ।
ଅନ୍ୟାୟରେ ଧନ ଅର୍ଜ୍ଜି ବାଣ୍ଟିଲେ
ଦାତାର ନୁହେ ମଙ୍ଗଳ,
ବିଶୁଦ୍ଧ ଚିତ୍ତରେ ଦେଲେ ଅଳ୍ପ ଦାନ
ମିଳଇ ଅନନ୍ତ ଫଳ ।
ବୁଝାଇ ବୁଝାଇ ପାଣ୍ଡବ ମାନଙ୍କୁ
ବ୍ୟାସଦେବ ଅନ୍ତର୍ହିତ,
ପାଞ୍ଚାଳୀକି ଛାଡ଼ି ଏମାନେ ତଦନ୍ତେ
ଗଲେ ମୃଗୟା ନିମିତ୍ତ ।

## ଚତୁର୍ଦ୍ଦଶ ସର୍ଗ

ବିବାହ ବେଶରେ ସିନ୍ଧୁଦେଶ ନୃପ
ଏ ସମୟେ ଆସି ବନେ,
ହେଲେ ବିମୋହିତ ଆଶ୍ରମ ଦୁଆରେ
କୃଷ୍ଣାର ରୂପ ଦର୍ଶନେ ।
କୋଟିକାସ୍ୟ ଯାଇ କଲା ସମ୍ଭାଷଣ
ଜୟଦ୍ରଥ ଆଦେଶରେ,
ପରିଚୟ ଲଭି ଯାଜ୍ଞସେନୀଠାରୁ
ଫେରିଲା ଆହ୍ଲାଦଭରେ ।
"କୃଷ୍ଣାକୁ ଦେଖିବା" କହି ଜୟଦ୍ରଥ
ବାହାରି ନିଜ ବିମାନେ,

୧ ମନୁଷ୍ୟ

ଏକାକିନୀ ଥିବା ପୂର୍ବୁ ଜ୍ଞାତହୋଇ
ଗମିଲା ତା ସନ୍ନିଧାନ,
ଶୁଭ ସମାଚାର ପଚାରି ପଚାରି
ସରିବାରୁ ଦୁହିଁଙ୍କର,
ପାଣ୍ଡବଙ୍କ ନିନ୍ଦା ଆରମ୍ଭି ଘୋଷିଲା
ପତ୍ନୀ ହେବାକୁ ତାଙ୍କର ।
ତାଦୃଶ ବଚନ ଶ୍ରବଣେ ପାଞ୍ଚାଳୀ
କୋପଭରେ ଥରି ଥରି,
ଘୋଷିଲା ସଦମ୍ଭେ ନୃପକୁ ଅନାଇଁ
କଟୁ ଭାଷା ଏହିପରି ।
"ରାଜାର କର୍ତ୍ତବ୍ୟ ବୁଝିନାହୁଁ ମୂଢ଼
ଜନମି ରାଜକୁଳରେ,
ଏକାକିନୀ ଦେଖି ଆସିଅଛୁ ଧାଇଁ
ଏଡ଼େ ନିର୍ଲ୍ଲଜ ମୁହଁରେ ।
୨ବିଶ୍ରବାନନ୍ଦନ ଜାନକୀ ହରଣେ
ରାମ ନଥିବା କାଳରେ,
କି ଦଶା ଭୋଗିଲା ହେତୁ କରି ମନେ
ଫେରିଯା ଏଠାରୁ ଦୂରେ ।
ତମତମ ହୋଇ କହେ ପୁନରପି
ଦେଖାଉ କମ୍ପା ଏଛଡ଼,
ମୋର ୩ଅଭିଷଙ୍ଗେ ୪ପୃଷ୍ଠଶୃଙ୍ଗୀ ହୋଇ
ଆଜୀବନ ଥିବୁ ସଢ଼ ।
୫ତାର୍କ୍ଷ୍ୟଗଳେ ହସ୍ତ ଭର୍ତ୍ତିକରି କିଏ
ରହିଛି କି କେବେ ପ୍ରାଣେ,
୬ତାର୍କ୍ଷ୍ୟର ଭୁଜାଗ୍ରୁ ବରଷ ଦିବାକୁ
ଭାବୁଛୁ କି ତୋର ବାଣେ ।
ଶ୍ମଶ୍ରୁଲୋମ କିଏ ଆଣିଛୁ ଉପାଡ଼ି
ପ୍ରସୁପ୍ତ ସିଂହ ମୁଖରୁ,
ଅଥବା ଓଡ଼ାଇ ଖଣ୍ଡେ ଯଷ୍ଟି ଘେନି
ମତ୍ତ ଦନ୍ତୀକି ଯୂଥରୁ" ।
ଈଦୃଶ ବଚନେ ପାପୀ ଜୟଦ୍ରଥ
ପାଞ୍ଚାଳୀକି ଟାଣି ଟାଣି,

୨ ରାବଣ ୩ ଅଭିଶାପ ୪ ନପୁଂସକ ୫ ସର୍ପ
୬ ଅର୍ଜ୍ଜୁନ ୭ ରଥ

ବସାଇ ୧ସ୍ୟନ୍ଦନେ କଲ ପଳାୟନ
ଦ୍ରୁତେ ଧରି ତାର ପାଣି ।
ଏତାଦୃଶ ଦୃଶ୍ୟେ ୨ସୌବନ୍ତିକ ଧୌମ୍ୟ
ଧାଇଁଲେ ପଛେ ୩ଥରି,
ପାଣ୍ଡବେ ସହସା ଫେରିବାରୁ ଧାଇଁ
ଲଭିଲ୍ ହୋଇ କାତର ।
କ୍ଷିପ୍ରେ ଭୀମାର୍ଜ୍ଜୁନ ବାହୁଡ଼ାଇ ପଶୀ୩
ବେଗେ ଗୋଡ଼ାଇ ଗୋଡ଼ାଇ,
ସେ ସିନ୍ଧୁରାଜକୁ ଟାଣି ଟାଣି ଜବେ
ସମାନୁ ଦେଲେ ଗଡ଼ାଇ ।
ଗ୍ଲାନିଆଁ ହୋଇ ସେ ଦଉଡ଼ ଦଉଡ଼
କଲେ କେଳେ ପଳାୟନ,
ସ୍ୟନ୍ଦନୁ ୪ସ୍ୟନ୍ଦନ ନନ୍ଦନ ଓହ୍ଲାଇ
ବହୁତା କଲେ ମର୍ଦ୍ଦନ ।
ଘୋଷାରି ଘୋଷାରି ୫ଶିଉଳିଜ କାଟି
ଅଣାଇଲେ ଆଶ୍ରମକୁ,
ମୁଣ୍ଡିତ ହେବାର ଦେଖି ଯୁଧିଷ୍ଠିର
ଛାଡ଼ିଲେ ଜୟଦ୍ରଥକୁ ।
କାମ୍ୟକ କାନନେ ପାଣ୍ଡବମାନଙ୍କୁ
ହୋଇଥିବାରୁ ଦୁଃଖାବହ,
ପୁନଶ୍ଚପି ଗଲେ ଦ୍ୱୈତ ବନକୁ
୬ଯାଜ୍ଞସେନୀ ସହ ।
୭ଅଗ୍ରଜନ୍ମା ଜଣେ ଦିନେ ଆକୁଳରେ
୮ପୁରୋଜନ୍ମାଙ୍କ ପାଶେ ରି,
ଆସି ନିବେଦିଲ ଅରଣୀ ମନ୍ଥନ
ଦଣ୍ଡ ହରିଣ ଶୃଙ୍ଗରେ ।
ଲାଗି ସେହି ମୃଗ ଅରଣ୍ୟ ମଧ୍ୟକୁ
ପଳାଇଲା କୁଦାମାରି,
ସେ କାଠ ଦୁଇଟି ଆଣି ମୋ ହାତରେ
ଦିଅ ତାକୁ ଭରେ ମାରି ।
୯କଳହଂସ କଥା ୧୦କଳହଂସ ଶୁଣି
ଅନୁଜମାନଙ୍କୁ ଧରି,
ଅରଣ୍ୟ ଭିତରେ ପଶିଲେ ସତ୍ୱରେ
ସେ ହରିଣ ଅନୁସରି ।
ଅନତିଦୂରରେ ବର୍ଷନ୍ତେ ତାହାକୁ
ପ୍ରକ୍ଷେପନ୍ତେ ପକ୍ଷୀରାଜ,
ସେ ଗୁଡ଼ିକ ଯାଇ ପଡ଼ିଲା ଭୂତଳେ
ଶରୀରେ ତାର ନବାଜ ।
ନିମିଷେ ସେ ମୃଗ ହୁଅନ୍ତେ ଅଦୃଶ୍ୟ
ତୃଷାର୍ତ୍ତେ ପାଣ୍ଡବେ ଯାଇ,
୧୦ଯକ୍ଷବାସ ସ୍ଥଳ ତଳେ ମନ ମାରି
ଶୋଇଲେ କୁଶ ବିଛାଇ ।
କିଛିକ୍ଷଣ ପରେ ୧୧ଅର୍ଣ୍ଣ ଆନୟନେ
ଅନୁଜବତଂଶ ଗମି,
ପଲ୍ୱଳ ଗୋଟିଏ ଦେଖିଲେ ଶେଷରେ
ଏଣେତେଣେ ଭ୍ରମି ଭ୍ରମି ।
ଅଦୃଶ୍ୟ ପୁରୁଷ ରହି ସେ ସ୍ଥାନରେ
କରନ୍ତେ ତାଙ୍କୁ ବାରଣ,
ନମାନି ତା କଥା ପିଇବାରୁ ନୀର
ନ ରହିଲା କା ଚେତନ ।
ହେବାରୁ ବିଳମ୍ବ ପୁରୋଜନ୍ମା ତହୁଁ
ଭ୍ରମି ଭ୍ରମି ସେ କାନନେ,
ଦେଖିଲେ ୧୨ପୃଷ୍ଠଜେ ପଲ୍ୱଳ ପାରୁଶେ
ପଡ଼ିଛନ୍ତି ଅଚେତନେ ।
ନପାଇ କାରଣ ଚିନ୍ତା କରୁ କରୁ
କହେ ଦଇବ ପୁରୁଷ,
"ମନା କରୁ କରୁ ପିଇଲେ ଏ୍ୟା ପାଣି
କହି ବଚନ ପରୁଷ ।
ମୋ ପ୍ରଶ୍ନ ଉତ୍ତର ଦେଲେ ନିସ୍ତରିବେ
ଅନୁଜଚୟ ତୁମ୍ଭର",
ଏହା କହି କେତେ ପ୍ରଶ୍ନ ପଚାରିଲେ
ଯୁଧିଷ୍ଠିରଙ୍କୁ ସତ୍ୱର ।
ସଠିକ ଉତ୍ତର ଦେବାରୁ କୌନ୍ତେୟ
ପାଇଲା ମନ ତାଙ୍କର,

୧ରଥ ୨ପୁରୋହିତ ୩ଭୟ ୪ବାୟୁପୁତ୍ର ଭୀମ ୫କେଶ ୬ଦ୍ରୌପଦୀ ୭ବ୍ରାହ୍ମଣ ୮ବଡ଼ଭାଇ ଯୁଧିଷ୍ଠିର ୯ବ୍ରାହ୍ମଣ ୧୦ରାଜଶ୍ରେଷ୍ଠ

୧୧ବଟଗଛ ୧୨ଜଳ

ସଙ୍ଗେ ସଙ୍ଗେ ଲଭି ଜୟନ ଉଠିଲେ
ବୀର [୧]ପୃଷ୍ଟଜ ନକର ।
ହୋଇଲେ ଅଦୃଶ୍ୟ ସେ ମହାପୁରୁଷ
[୨]ପୂର୍ବଜଙ୍କୁ ବରଦେଇ,
ଫେରିଲ [୩]କୌନ୍ତେୟ ନିଜ ଆଶ୍ରମକୁ
ସେମାନଙ୍କୁ ସଙ୍ଗେ ନେଇ ।
ସ୍ୱହ୍ଁ ସ୍ୱହ୍ଁ ବୀର ବରଷ ହୁଅନ୍ତେ
ନିଭୃତ ସ୍ଥାନକୁ ଯାଇ,
ଅଜ୍ଞାତ ନିବାସେ କରିଲେ ମନ୍ତ୍ରଣା
ରାଜ୍ୟଭ୍ରଷ୍ଟ ପାଞ୍ଚଭାଇ ।
ସାର ଆଲୋଚନା ଗୋପନେ ରଖି ତା
ଗଲେ ପାଣ୍ଡବ ପାଞ୍ଚାଳୀ,
ବିରାଟ ଦେଶକୁ [୪]ପ୍ରାଂଶୁ ଶିବାଶିଖେ
ରଖିନିଜ ଅସ୍ତ୍ରାବଳୀ ।

## ପଞ୍ଚଦଶ ଅଧ୍ୟାୟ

ଏକାଗ୍ର ଚିତ୍ତରେ ଦୂର୍ଗାସ୍ତୁତି କରି
ପକାଇ ପ୍ରଚ୍ଛନ୍ନ ବେଶ,
ପରିହରି ଶୋକ ଯାଇ ପାଞ୍ଚଜଣ
ନୃପ ସଭାରେ ପ୍ରବେଶ ।
ଦ୍ରୁପଦ ନନ୍ଦନୀ ଅନ୍ତଃପୁର ପାଶେ
ବୁଲୁଥିଲେ ସତର୍କରେ
[୫]ମହିଷୀଙ୍କ ଦୃଷ୍ଟି କଟ୍ଟିକ୍ଷଣ ପରେ
ପଡ଼ିଲା ତାଙ୍କ ଉପରେ
ପଠାଇ ଧାଇକି ସଙ୍ଗେ ସଙ୍ଗେ ତାକୁ
ଡାକି ନେଲେ ଉଆସକୁ,
[୫]ନୃପାଦେଶ ଲଭି ପୁଲକିତ ମନେ
ରଖିଲେ କେଶ ବେଶକୁ ।
[୬]ଦେବେନ୍ଦ୍ରର ସଖା ହେଲେ ଯୁଧିଷ୍ଠିର
ରାନ୍ଧୁଣିଆ ବୃକୋଦର,
ପାର୍ଥ ତୃତୀୟାକ୍ଷା ତୁରଙ୍ଗମାଧ୍ୟକ୍ଷ
ନକୁଳ ମାଦ୍ରୀକୁମାର ।

ସୈରିନ୍ଧ୍ରୀ ଭାବରେ ରହିଲେ ଦ୍ରୌପଦୀ
ଗୋରକ୍ଷକ ସହଦେବ,
ଏମାନଙ୍କୁ ଲଭି ମହାତୁଷ୍ଟ ହେଲେ
ମତ୍ସ୍ୟଦେଶ ନରଦେବ ।
ସୁରୁଖିରୁ ଭାବେ ଦଶମାସ କାଳ
ଯାପିଲେ ସେଥି ସକଳ,
ହୃଦ କୋଧାନଳେ ଜଳୁଥିଲ ସିନା
ଦେଖାନ୍ତି ଆନନ୍ଦଛଳ ।
[୭]ସୁଭୁଶ [୮]ସୁଭଗା ସୈରିନ୍ଧ୍ରୀକି ଦିନେ
[୯]ଅକାଣ୍ଡେ ଦର୍ଶନ କରି,
ସମ୍ଭୋଗ ମାନସେ ସମ୍ବୋଧି ସ୍ୱସାକୁ
ବୋଲେ କୀଚକ ଏପରି ।
"କିଏ ଏ ଲଳନା ଚଳଲୋଚନା
ସର୍ବାଙ୍ଗ ସୁନ୍ଦରୀ ନାରୀ,
ଦେଖିଲି ବେଳରୁ ଏରୂପ ମାଧୁରୀ
ହେଉଛି ହୃଦୟ ଧାରି ।"
ତଦନ୍ତେ [୧୦]ଦ୍ରାବକ ବଦନ ବୁଲାଇ
ହୋଇ କୃଷ୍ଣା ସନ୍ନିହିତ,
ମନ ବଢ଼ାଇବାକୁ ବୋଲେ ତୋଷାମୋଦେ
"ହେଲା ତୋହର ପଣିତ ।"
ନଖଶୁଣାଙ୍ଗ ଦେଖି ମନ ଗଲା ନାଶି
ଆଙ୍କିଲା ରୂପ ବାଳାର,
ପୁରୁଣାକୁ ଛାଡ଼ି ନୂଆରେ ଆଦର
ଯେସନ [୧୨]ଭାବ ଦେଖିର ।
ମୃଗେନ୍ଦ୍ର ସୁନ୍ଦରୀ ପ୍ରଣୟୀ ହେବାକୁ
ଶୃଗାଳ ଇଚ୍ଛଇ ଯଥା,
ନୃପେନ୍ଦ୍ର ଦେବୀର ସମ୍ଭୋଗ ନିମିତ୍ତ
କୀଚକ ବାଞ୍ଛିଲା ତଥା ।
ବିଷଣ୍ଣ ବଦନା ନିତ୍ୟପଉବନା[୧୩]
ବୋଲନ୍ତି [୧୪]ରାଜକ ରହି,
"ଅଭବ୍ୟ କର୍ମରେ ଭବନ୍ତୀ ଭ୍ରମରେ
ମଙ୍ଗିବା ଶୁଣିଛି କାହିଁ

[୧]ସାନଭାଇ, [୨]ବଡ଼ଭାଇ [୩]ଯୁଧିଷ୍ଠିର [୪]ଡେଙ୍ଗା,ଉଚ୍ଚ [୫]ଶମୀଗଛ [୬]ପଶାଖେଳ

[୭]ଅତିଶୟ ପଞ୍ଚ ଯାହାକୁ,[୮]ଅତିଶୟ ଭଲପାଏ,[୯]ଅକସ୍ମାତ,[୧୦]ଲମ୍ପଟ,[୧୧]ନୀତ,[୧୨]ସଂସାର,[୧୩]—ଦ୍ରୌପଦୀ, [୧୪]ରାଣୀ

ଏଭଳି ବଚନ କେବେ କି ଶୋଭନ
ପୁରୁଷ ୧ପୁଙ୍ଗବ ତୁଣ୍ଡେ ।
ପଶିଲେ କୁକୁରେ ଚଢ଼ିବ ଅବଶ୍ୟ
ଅକାଳ ଚଣ୍ଡକ ମୁଣ୍ଡେ ।"
ମାୟାମୋହେ ଅନ୍ଧ ହୋଇ ଦୁରାଶୟ
ଅନୁଚିତ ଅଭିଳାଷ
କରି ପରିଣାମେ କ୍ଷଣିକ ସୁଖରେ
ଘଟାଏ ନିଜ ବିନାଶ ।
ନିରାଶେ କୀଚକ ସ୍ୱସାର ସମୀପେ
ପୁନଶ୍ଚ କହେ ଏମନ୍ତ
"ଉପାୟ ବିଧାନ କରି ସୈରିନ୍ଧ୍ରୀ
ଅଧୀନ ହେବ ଯେମନ୍ତ" ।
ହେବାରୁ ଅପାର୍ଥ କହଇ ୨ପ୍ରୟାସ
ଭଗିନୀ ସଙ୍ଗେ ଆଳାପ,
କରି ଲେଉଟିଲା ସ୍ୱକୀୟ ଆବାସେ
ମାନସେ ବହି ସନ୍ତାପ ।
ନଥିଲେ ହେଁ ଇଚ୍ଛା ଲବେ ସୈରିନ୍ଧ୍ରୀର
ପେୟ ଆନୟନ ପାଇଁ,
ପେଷିଲା ଭଗିନୀ କୀଚକ ସଦନେ
ପ୍ରସଭେ ତାକୁ ମଙ୍ଗାଇ ।
ଅଗତ୍ୟା ସଶୋକେ କୀଚକ ସଦନେ
ଗଲାବେଳେ ଡରି ଡରି,
୩ପାଂସନ ସହସା ପୁଲକିତ ଚିତ୍ତେ
ପକାଇଲା ତାକୁ ଧରି ।
ଛୁଆଁଡ଼ି ତା କର କଲା ୪ଅପଦମ
ନୃପକୁ କରି ଭରସା
ଗୋଡ଼ାଇ ଗୋଡ଼ାଇ ୫ପାଂଶୁଳ କୀଚକ
ପ୍ରବେଶିଲା ତା ନିକଷା ।
ଭୂପଙ୍କ ସମୀପେ ଆକର୍ଷି କୁନ୍ତଳ
ନିକ୍ଷେପ କଲା ଭୂତଳେ
୬ତୂଷ୍ଣୀମ୍ଭୂତ ହୋଇ ଧର୍ମରାଜଭୀମ
ଦେଖୁଥିଲେ ସଭାସ୍ଥଳେ ।

୭ସଂରମ୍ଭେ ପ୍ରବୁଦ୍ଧ କୀଚକ ପ୍ରହାରେ
ଉତ୍ଥିତ ହୁଅନ୍ତେ ଭୂତରେ
ଧର୍ମରାଜ ତାଙ୍କୁ ଇଙ୍ଗିତେ ବାରଣ
କଲେ ଉଦ୍‌ବିଗ୍ନ ମନରେ ।
ରାଜେନ୍ଦ୍ର ମହିଷୀ ମହୀତଳେ ପଡ଼ି
ସହିଲା ଯାହା ଦୁର୍ଭଗା୮
ସେ ଦୃଶ୍ୟ ଦର୍ଶନେ ପଥର ହୃଦୟ
ତରଳି ଯିବ ନିଶ୍ଚୟ ।
ଦୁରନ୍ତ ଅନ୍ୟାୟେ ମ୍ରିୟମାଣା କୃଷ୍ଣା
ସଭାଦ୍ୱାର ନିକଟରେ,
ରହି ତିରସ୍କାର କଲେ ବିରାଟଙ୍କୁ
ବାଷ୍ପାକୁଳ ଲୋଚନରେ ।
ବଶୀ ଯୁଧିଷ୍ଠିର କଲାରୁ ବାରଣ
ଫେରି ସୁଦେଷ୍ଣା ଭବନେ,
ସକଳ ବୃତ୍ତାନ୍ତ ଭାଷନ୍ତେ ମହିଷୀ
ପ୍ରବୋଧିଲେ ଦୁଃଖ ମନେ ।
ପ୍ରବୋଧନ ଦେଲେ ବୁଝିବ କି ମନ
ନ ପଡ଼ିଲା ତା ପଲକ,
ଉପୁଜିଲା ହୃଦେ ରାଜେନ୍ଦ୍ର ତନୟେ
ହେଲେଣି ତ ନପୁଂସକ ।
ମରମେ ମରମେ ନବାଧେ କାହାକୁ
ଅପରିଭ ପଦାଘାତ,
ବାହୁନି ବାହୁନି କାନ୍ଦଲେ-ବିକଳେ
ଶିରୋପରେ ମାରି ହାତ ।
ଶୟନାବସଥେ ଗଲେ ଭୀମଙ୍କର
ଦେଖି ନିଶୀଥ ସମୟ,
ନିଦରୁ ଉଠାଇ ପାଶେ ବସି ଭାଷେ
କୀଚକ ବଧ ବିଷୟ ।
ବିପତ୍ତି ଖାତରେ ପକାଇ ବିଧାତା
ଦହୁଅଛି ମୋତେ ନିତି,
ମୋ ରୂପ ମାଧୁରୀ ୯ଈକ୍ଷଣେ କୀଚକ
ହୃଦୟେ ଉପୁଜେ ପ୍ରୀତି ।

୧ ଶ୍ରେଷ୍ଠ ୨ ଦୁରାତ୍ମା ୩ ଦୂଷକ ୪ଟଳାପୂନ
୫ ପାପିଷ୍ଠ ୬ ନୀରବ

୭ କ୍ରୋଧ ୮ ମନ୍ଦଭାଗ୍ୟ ଶୟନ+ଆବସର
ଶୋଇବା ଘର ୯ ଦର୍ଶନ

ଶତ ଶତ ଦାସୀ ଖଟୁଥିଲେ ଆସି
ଯାହାର ପଦ୍ମର ତଳେ,
ସେଗଣ୍ଟ ନବରେ ଆଜ ସେ ବଞ୍ଚୁଛି
ମାର୍ଜନ କରି କୁନ୍ତଳେ ।
ଅନୁଭବୀ ବିନା ଜାଣି କେ ପାରିବ
ସୁଖ ଅବା ଦୁଃଖ ଭବେ,
ବିଏ ଯା ଯାତନା ପ୍ରସବ ବେଦନା
୧ଶୂନ୍ୟା କ ଜାଣିବ ଲବେ ।
କେବେ କେଉଁ ପ୍ରାଣୀ କ ଅବସ୍ଥା ଭୋଗେ
ନପଡ଼େ ସହଜେ ଜଣା,
କାଳଗତି ନିତ ଦେଖି ଦେଖି ଲୋକେ
ଭୁଲିଛନ୍ତି ହୁଅନ୍ତି ବଣା ।
ପୁରୁଷ ୨ମୁନ୍ଦକ କୀଚକ ଯାହାକ
ଦେଖିଥିଲା ପରାଭବ,
ପ୍ରତଫଳେ ତାର ଯହାର ନିମିତ୍ତ
ମରିଲେ ବଳୀପୁଙ୍ଗବ ।
ବୁଝାବୁଝି ହୋଇ ଆନନ୍ଦ ପାଞ୍ଚାଳୀ
ନିଶା ଅସିବାରୁ ପାଇ,
୩ଆନର୍ତ୍ତ ସ୍ଥାନଟି ଦେଖାଇ କୃଷ୍ଣାକୁ
ଆବାସେ ଦେଲେ ପଠାଇ ।
ମଦାନ୍ଧ କୀଚକ ନିଶା ଅବସାନେ
ଅସି ସଇରିନ୍ଧ୍ରୀ ପାଶେ,
ଘୃଷ୍ଟ କଥା ଘଷେ ପକାଇବା ଲାଗି
ତାକୁ ପ୍ରଲୋଭନ ପାଶେ ।
ଦାଉ ସାଧିବାକୁ ଛଳେ ମଙ୍ଗିଯାଇ
ସ୍ଥିରକର ବେଳସ୍ଥାନ,
ସଜ ହୋଇଗଲା ଜଣାଇବାକୁ ତା
ବୃକୋଦର ସନ୍ନିଧାନ ।
କୀଚକ ସହିତ କଥୋପକଥନ
ଭୀମସେନଙ୍କୁ ଗୋପନେ,
ଯାଇ କହିବାରୁ ନୃତ୍ୟ ସଦନେ ସେ
ରହିଲେ ପୂର୍ବୁ ପ୍ରଚ୍ଛନ୍ନେ ।

୪ମଧୁମାଧବୀକ ପିଇ ସେ ଲମ୍ପଟ
ସାୟାହ୍ନେ ନୃତ୍ୟ ମନ୍ଦିରେ,
ସତ ବୋଲି ମଣି ସଇରିନ୍ଧ୍ରୀ ବାଣୀ
ପ୍ରବେଶିଲା ଧୀରେ ଧୀରେ ।
୫ଶିଖଣ୍ଡିନୀ ଛନ୍ଦ କିଆଁ ବା ଜାଣିବ
ହୋଇଛି ଅନ୍ଧ ମଦନେ,
ମହମହ ବାସେ ପିନ୍ଧା ଆଭରଣ
ଝୁଙ୍କୁମ ବୋଳା ବଦନେ ।
ମନ୍ଦମନ୍ଦ ହସି ପୁଲକିତ ଚିତ୍ତେ
କରନ୍ତେ ଅଙ୍ଗ ସ୍ପର୍ଶନ,
୬ପ୍ରଭଞ୍ଜନନନ୍ଦନ କୁଣ୍ଠାଇ ତାହାକୁ
ତକ୍ଷଣେ କଲେ ମର୍ଦ୍ଦନ ।
ଧରି ପକାଇଲା କୀଚକ ଏକାଳେ
ତାଙ୍କ ଭୁଜଯୁଗଳ,
ବୋଧ ହେଲା ମନ ଯୁଦ୍ଧ ଥିଲା ଯେହ୍ନେ
ଦେହ ମତ୍ତ ଦନ୍ତାବଳ ।
ବଳିଷ୍ଠ କୀଚକ କଉଶଳ କରି
ପକାନ୍ତେ ଭୀମଙ୍କୁ ତଳେ,
ଉଠି ଭୀମ ତାର ୭ଶିରୋମ୍ଭ ମୋଡ଼ି
ପ୍ରହାରିଲେ ବକ୍ଷସ୍ଥଳେ ।
ବହୁକ୍ଷଣ ଯାଏ ହେଲେ କୋଡ଼ା କୋଡ଼ି
ପରସ୍ପର ବେନି ବୀର,
ଶେଷେ କୀଚକର ମହାବଳୀ ଭୀମ
ବିଦୀର୍ଣ୍ଣ କରିଲେ ଶିର ।
ମୃତକଳ୍ପ ଦେଖି ଭୀମସେନ ତାର
୮ଅସ୍ର କରି ଆକର୍ଷଣ,
ବାହୁଦ୍ୱୟେ ଛନ୍ଦି ଫୋପାଡ଼ି ଦେବାରୁ
ଉଜଳା ଆଶୁ ମରଣ ।
ହସ୍ତପଦ ଶିର ଚୁର୍ଣ୍ଣୀଭୂତ କରି
ମାଂସ ପିଣ୍ଡପରି କରି,
ଦେଖାଇଲେ ଭୀମ ପାଞ୍ଚାଳୀକି ଡାକ
୯ଶମଦ୍ୱୟେ ତାକୁ ଧରି ।

୧ ବାନ୍ଧ୍ୟା ୨ ଅଗାଡ ୩ ନୃତ୍ୟ ୪ ମଦ ୫ ଦ୍ରୌପଦୀ
୬ ବାୟୁନନ୍ଦନ ଭୀମ

୭ ବେକ ୮ କେଶ ୯ ହସ୍ତ

ତହୁଁ ପୁସ୍ତଶୃଙ୍ଗୀ ଧୂଆଧୋଇ ହୋଇ
ପଶିଲେ ୧ସୂଦଶାଳାରେ,
ପ୍ରସ୍ଥୀଭୂତ ହେଲେ ସକଳ ନଗରେ
କୀଚକ ମୃତ୍ୟୁ ବାର୍ତ୍ତାରେ ।
ଲଭନ୍ତି ମରଣ ଏ ଭାବେ ଯେପରି
ରୋଗୀଏ ଅପଥ୍ୟ କରି
ପରପତ୍ନୀ ଠାରେ ମାନସ ରଖିଲେ
ଦୁର୍ଦ୍ଦଶା ଘଟେ ସେପରି ।
ପୋଷ୍ୟବର୍ଗ ଯେତେ କୀଚକର ଅସି
ଦେଖି ଈଦୃଶ ଘଟନା,
ସୈରିନ୍ଧ୍ରୀ ହେତୁରୁ ପ୍ରାଣଗଲା ବୋଲି
କରିଲେ କୁତ୍ସାରଟନା ।
କୀଚକ ମରଣ ସୈରିନ୍ଧ୍ରୀ କାରଣ
ବୋଲି କହି ନୃପତିକି,
୨ଚାଞ୍ଚ ବସ୍ତ୍ର ସଙ୍ଗେ ଦହନ ନିମିତ୍ତ
ଆଣିଲେ ଅନୁମତିକି ।
ପରିବାରେ ତାକୁ ଓଟାରି ଓଟାରି
ବାନ୍ଧିଲେ ଶବ ସଙ୍ଗରେ,
ବାସିତା ହୋଇ ସେ ଡାକିଲେ ଆତୁରେ
ରକ୍ଷିବାକୁ ଗାରବରେ ।
"ଶୁଣିଲିଣି" ବୋଲି କହି ବୃକୋଦର
୩ପ୍ରାକାର ଲଙ୍ଘି ତୁରତେ,
ସେମାନଙ୍କ ପଛେ ପଛେ ଗୋଡ଼ାଇଲେ
ତାଙ୍କ ନିସ୍ତାର ନିମିତ୍ତେ ।
ଦିଶୁଥିଲେ ଭୀମ ଭୀମ ଦିହ ପରି
ଦେଖି ତାଙ୍କୁ ବଂଶଧରେ,
୪ଅନ୍ତଶଯ୍ୟା ପାଶେ ବନ୍ଧନ ଫିଟାଇ
ଛାଡ଼ିଦେଲେ ଭୟରେ ଡରେ ।
ଦ୍ରୌପଦୀ ୫ଦୃଶାରୁ ଲୁହ ପୋଛି ଦେଇ
ସବଂଶେ ସଂହାରି କରି,
ଲେଉଟିଲେ ଭୀମ ଅଣବାଟେ ପଶି
ମୃଦେ ତାଙ୍କୁ ସଙ୍ଗେ ଧରି ।

୧ ରନ୍ଧନଶାଳା ୨ ଶବ ୩ ପ୍ରାଚୀର ୪ ଶ୍ମଶାନ ୫ ଆଖି

କୀଚକ ମରଣ ପରିହାନ ଠାରୁ
ନୃପତି ପୁଣ୍ୟଶ୍ଳୋକଙ୍କୁ,
କରନ୍ତି ଆଦର କୀଚକ ସଦୃଶ
ଦେଖି ସହଜ ଗୁଣକୁ ।

## ଷୋଡ଼ଶ ସର୍ଗ

ତ୍ରୟୋଦଶ ଦିନ ବାକି ଥାଉଅଛି
ପୂରିବାକୁ ନିବାସନ,
ପାଣ୍ଡବ ସନ୍ଧାନେ ଅସମର୍ଥ ହୋଇ
କଲେ ଗୃହରେ ବର୍ତ୍ତନ ।
ଫେରିଲା ଦେଖିକୁ ଚରୋଷଦ ମଧ୍ୟେ
ମନ୍ତ୍ରଣାକାରୀ ସଜନ,
କରୁଥିଲେ ତର୍କ ପାଣ୍ଡବ ସନ୍ଧାନ
ହେବ କିପରି ସଫଳ ।
କିମ୍ବଳ ସନ୍ଦେଶ ଦେବାରୁ ସେମାନେ
ପୂର୍ବଜ ଦୁଃଶାସନର,
ଲେଉଟିଲା ପ୍ରଥମେ ନିରାଶ ମାନସେ
ଆମର୍ଷ କର୍ଣ୍ଣଙ୍କର ।
କର୍ଣ୍ଣ ପରେ ଦ୍ରୋଣ ଭୀଷ୍ମ କୃପାଗ୍ରୟ
ଯେ ଯାହାର ଅଭିମତ,
ଦିଅନ୍ତେ ସୁଶର୍ମା କହେ କରିବାକୁ
ତୂର୍ଣ୍ଣ ମତ୍ସ୍ୟଦେଶାସୂତ୍ର ।
ସ୍ୱୀକୃତ ହେବାରୁ ଦୁର୍ଯ୍ୟୋଧନ ଭୂପ
ସେନାବାହିନୀ ଗହଣେ,
ସୁଶର୍ମା ଆଗରେ ଗଲେ ମତ୍ସ୍ୟଦେଶ
ଗୋଧନ ଅପହରଣେ ।
ପ୍ରବେଶି ସେଠାରେ କରନ୍ତି ଉଦ୍ୟତ
ଗାଈପଲ ନେବାପାଇଁ,
ବିରାଟନୃପଙ୍କୁ ଜଣାଇଲେ ବ୍ୟଗ୍ରେ
ଗବାପ୍ରଜ୍ଞ ଧାଇଁ ଯାଇ ।
ଚତୁରଙ୍ଗ ସେନା ପାଣ୍ଡବ ସହିତ
ଧରି ମତ୍ସ୍ୟଦେଶ ପତି,

ଗଲେ ସେକ୍ଷଣି ଶତାଙ୍ଗେ ଆରୋହି
ଉଡ଼ାଇ କେତନଛତ୍ର ।
ବହୁକ୍ଷଣ ଯାଏ ଉଭୟ ଦଳରେ
ଲାଗନ୍ତେ ଲଢାଇ ଅତି,
ପରାଜୟ କରି ବିରାଟଙ୍କୁ ନେଲେ
ବାନ୍ଧି ତ୍ରିଗର୍ତ୍ତାଧିପତି ।
ଏ ଦୃଶ୍ୟ ଦର୍ଶନେ ଅଗ୍ରଜ ପାଣ୍ଡବ
ପାବନିକି ଠାରି ଠାରି,
ଚେଷ୍ଟିବାରୁ ବ୍ୟଗ୍ରେ ଦୁହିଁଙ୍କ ମଧ୍ୟରେ
ଲଗିଲା ସମର ଘୋର ।
ଅନନ୍ତର ଭୀମ ସୁଶର୍ମାଙ୍କୁ ଧରି
ନିହୁକ ମାଡ ଛଡାଇ,
ମୋଡା ମୋଡି କରି ବାହୁଦ୍ୱୟେ ଜବ
ଭୂମିକୁ ଦେଲେ ଗଡ଼ାଇ ।
ଡେଇଁପଡ଼ି ରଥୁ ସଙ୍ଗେ ସଙ୍ଗେ ତାଙ୍କୁ
ବାନ୍ଧନ୍ତେ ପୁନଃ କବରି,
ତ୍ରିଗର୍ତ୍ତ ରାଜାର ସେନାଏ ତତ୍‌କ୍ଷଣେ
ପଳାଇଲେ ଯୁଦ୍ଧଛାଡ଼ି ।
ଧୂଳିଧୂସରିତ ସୁଶର୍ମାଙ୍କୁ ବାନ୍ଧି
କୌନ୍ତେୟ ନିକଟେ ଆଣି,
ପଚାରିଲେ ତାଙ୍କୁ "କିପାଁଇ ଅକର୍ମେ
ପ୍ରବେଶିଲୁ ଜାଣି ଜାଣି ।
ଯୁଧିଷ୍ଠିର ମୁଖୁ ଶୁଣି ଭୀମସେନ
ମୁକ୍ତ କଲେ ଦୁରାତ୍ମାଙ୍କୁ,
କହିଲେ ଭବିଷ୍ୟେ ଏତାଦୃଶ କର୍ମେ
ନ ପଶିବା ଲାଗି ତାଙ୍କୁ ।
ଭୁଜବଳଶାଳୀ ସଂଯମନଶୀଳ
ପାଣ୍ଡବ ସୋଦର ବୃନ୍ଦ,
ପୁହାଇଲେ ସୁଖେ ପ୍ରସନ୍ନ ପ୍ରାଙ୍ଗଣେ
କୁଣ୍ଠେ ମୋଦ କରି ସ୍ତୁତ ।
ସୁଶର୍ମା ସ୍ୱଗୃହେ ଗମନ୍ତେ ବିରାଟ
ପାଣ୍ଡବମାନଙ୍କ ସହ,
ଫେରି ସେମାନଙ୍କୁ ଦେଲେ ଧନରତ୍ନ
ଜଣିବାରୁ ଏ ବିଗ୍ରହ ।

ଏଣେ ସୁଯୋଧନ ସୈନ୍ୟ ମୁଖୁ ଶୁଣି
ସୁଶର୍ମାର ପରାଜୟ,
ଗୋଧନ ହରଣେ ମାନସେ ଆସିଲା
ଘେନି ମହାରଥିଚୟ ।
ପ୍ରସରେ ପ୍ରହାର କରିବାରୁ ଅଗ୍ରେ
ଗୋପାଳଙ୍କୁ ଗୁହାଳରେ,
ମୁଖ୍ୟ ଗୋରକ୍ଷକ ଧାଇଁଆସି ଦେଲା
ସନ୍ଦେଶ ରାଜନଗରେ ।
ସାରଥି ବହନ ଥିବାର ଉତ୍ତର
ଚିନ୍ତିତ ହେବା କାଳରେ,
ସୈରନ୍ଧ୍ରୀ ଆସି କହିଲେ ସମର୍ଥ
ବୃହନ୍ନଳା ଏ କର୍ମରେ ।
ଏଥନ୍ତେ ଉତ୍ତର ଡାକି ବୃହନ୍ନଳା
ରଥରେ ସାରଥି କରି,
କୌରବ ଗହଣେ ପଶିବାକୁ ଗଲେ
ସଙ୍ଗରେ କୋଦଣ୍ଡ ଧରି ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ମହାରଥୀ ଦେଖି
ଉତ୍ତର ହେବାରୁ ତ୍ରସ୍ତ,
୧ପତାକୀ ଗୃକନେ ଆଦେଶି ତାହାଙ୍କୁ
ହେଲେ ସେ କୋଦଣ୍ଡ ହସ୍ତ ।
ଚଳନ୍ତୁ ଉତ୍ତର ତର୍କ ହୋଇ ରଥୁ
ଓହ୍ଲାଇ ପଳନ୍ତେ ଡରେ,
୨ଶବ୍ଦଭେଦୀ ତାର ଆକର୍ଷି କୁନ୍ତଳ
ଧରି ପକାଇଲେ ଭରେ ।
୩ପିଙ୍ଗୀଶିଖେ ଥୋଇ ଥିବା ଅସ୍ତ୍ରଚୟ
କଟାଇ ତାର ହସ୍ତରେ,
ଗାଣ୍ଡୀବକୁ ଧରି ୪ଅକ୍ଷେ ଚଢ଼ି ହେଲେ
ଉଭା ବସନ୍ତ ଆଗରେ ।
ଅର୍ଜୁନ ବୋଲି ସେ ଦେଇ ପରିଚୟ
ବଜାଇଲେ ୫କମ୍ବୁଥରେ,
ସେ ମହାନାଦରେ ଉତ୍ତର ଭୟରେ
ବସି ପଡ଼ିଲେ ରଥରେ ।

୧ ରଥ ୨ ଅର୍ଜୁନ ୩ ଶମୀଗଛ ୪ ରଥ ୫ ଶଙ୍ଖ

କମ୍ପିଲ ବସୁଧା    ଗିରିଗୁହାମାନ
ଭୟଙ୍କର ଧ୍ୱନି ଶୁଣି,
୧ବର୍ତ୍ତନ ଶକୁନ    ୨ଜମ୍ବୁକ ନିଚୟ
ସ୍ୱରବଲେ ଶଙ୍କିତ ପୁଣି ।
ଚଢ଼ିଲା ସ୍ୱଳେଣି    ବିପକ୍ଷୀୟ ଦଳେ
ଯୁଦ୍ଧ ଦେବାକୁ ଗୋଧନ,
ମୁଖ ପ୍ରସନ୍ନତା    ନଥିଲା କାହାର
ସମସ୍ତେ ଆତଙ୍କେ ସନ୍ନ ।
ଆପଣା ପ୍ରଭୁତ୍ୱ    ଦେଖାଇ କହନ୍ତ
୩ସୂତସୁତ ହର୍ଷମନେ,
ଗଡାଇବ ୪ତାର୍କ୍ଷ୍ୟ    ଏକ୍ଷଣି ୫ତାର୍କ୍ଷ୍ୟକୁ
ଦେଖିବେ ଜଗତ ଜନେ ।
ହୁଅନ୍ତୁ କରିଟୀ    ଅଥବା ବିରାଟ
ଯୁଝି ଯୁଝି ଏକୁଟିଆ,
ମଦୀୟ ହସ୍ତରୁ    ବିମୁକ୍ତ ବିଶିଖେ
ଅବଶ୍ୟ ହେବେ ହାଳିଆ ।
ଅର୍ଜ୍ଜୁନ ହୃଦୟେ    ଏକାଦଶ ବର୍ଷ
ଅନିଶ ଯୋଗ ସାଧନେ,
କାରୁଣ୍ୟ ଉଦୟ    ହୋଇଛି ସଞ୍ଚାର
ବୋଲି ବୋଧ ହୁଏ ମନେ ।
୬ଚକ୍ରୀକ ୭କାଶ୍ୟପି    କରଇ ଆୟତ୍ତ
ଅନାୟାସରେ ଯେମନ୍ତ,
କର୍ଣ୍ଣ ୮ବାଣ ବାଜ    ହେବ ଅବନତ
ଅବାଧେ କୃଷ୍ଣ ତେମନ୍ତ" ।
"ତତ୍ତ୍ୱ କୃପଶ୍ରେଷେ    ବୁଝଇ ସହଜ
ଜିଣିବାକୁ ଧନଞ୍ଜୟ,
ଦେଶକାଳ ଦୁହେଁ    ଅନୁକୂଳ ହେଲେ
ହୁଅଇ ସମରେ ଜୟ ।
ଏକାକୀ ଅର୍ଜ୍ଜୁନ    ପାଞ୍ଚବର୍ଷ କାଳ
ପାଳି ବ୍ରହ୍ମଚର୍ଯ୍ୟ ବ୍ରତ,
ରୁଦ୍ରଙ୍କୁ ଅର୍ଚ୍ଚଣେ    କରିଥିଲେ ତୁଷ୍ଟ
ଜାଣିଛି ଏହା ଜଗତ ।

ଏକାକୀ ଏ ଯୁଦ୍ଧେ    ଗନ୍ଧର୍ବରାଜଙ୍କୁ
ଦେଇଥିଲା ପରାଭବ,
ତାକୁ ହରାଇବା    କୌରବ ପକ୍ଷରେ
ହେବ କି କେବେ ସମ୍ଭବ ।
କହ କର୍ଣ୍ଣ, କେବେ    ଏକାକୀ ସମରେ
କାହାକୁ କରିଛ ବଶ,
ଆପଣା ବଡ଼ାଇ    ଦେଖାଇ କାହିଁକି
କରିବ କୁଳ ବିଧ୍ୱଂସ ।
ଅର୍ଜ୍ଜୁନ ସଙ୍ଗରେ    ଯୁଝିବାକୁ ଶକ୍ର
ଶଙ୍କିତ ହେବେ ନିଶ୍ଚୟ,
୯କରିପ ନଥାଇ    କଶ ପୃଷ୍ଠେ ଯିବା
ସଭିବେ କହନ୍ତି ଭୟ ।
ତା ସହିତ ଯୁଝି    ପଡିବ ମନସି
କରାଳ କାଳ କବଳେ,
କେ ତରନ୍ତି ସିନ୍ଧୁ    ମହାଶିଳା ଗଳେ
ବାନ୍ଧି ନିଜ ଭୁଜବଳେ ।
ତୁମର ମନ୍ତ୍ରଣେ    ହେଉଗନ୍ତି କଷଣ
କୁରୁକୁଳ ଅବତଂସ,
ନ ଶୋଧିଲେ ମନା    ସମୂଳେ କୌରବେ
ଲଭିବେ ଜବେ ବିଧ୍ୱଂସ ।
ଯୁଦ୍ଧ ଜୟ କରି    ଲଭଇ ସନ୍ତୋଷ
ଏ ଭବେ ବୀର ପୁରୁଷ,
ପରମନା ସିନା    କହୁଥାଏ ବସି
ସଦା ନିଜ ପଉରୁଷ ।
ନିର୍ଦ୍ଦୋଷ କରିମ    କରି ବସୁଧାରେ
କରିଧନ ଉପାର୍ଜ୍ଜନ,
ଜନ ନେବେ ଘୃଣ୍ୟ    ଚୌର୍ଯ୍ୟବୃତ୍ତି ସଦା
କରିଲେ ଅବଲମ୍ବନ ।
୧୦କ୍ରବ୍ୟ ଜୀବୀବ୍ୟାଧ    ତୁଲ୍ୟ ଦୁର୍ଯ୍ୟୋଧନ
ନିରୁର ସ୍ୱଭାବ ହେଉଛ,
କପଟ ଉପାୟେ    ଅର୍ଜିଅଛ ରାଜ୍ୟ
ଲାଞ୍ଛନା ପ୍ରଦାନ ଗୁରୁ ।

---

୧ ଶାଗୁଣା ୨ ଶୃଗାଳ ୩ କର୍ଣ୍ଣ ୪ ରଥରୁ ୫ ଅର୍ଜ୍ଜୁନ
୬ ସର୍ପ ୭ ଗରୁଡ ୮ ଶର

୯ ମାହୁନ୍ତ    ୧୦ ମାଂସ

ପାଣ୍ଡବମାନଙ୍କ ଆନନ୍ଦ ତରୁର
ମୂଳକୁ ଛେଦନ କରି,
ଓଠାର ଓଠାର ପୁରୁଷ ସଙ୍ଗକୁ
ଆଣିଲ ପାଞ୍ଚାଳୀ ଧରି ।
ସତେକ ସେକଥା ଯାଉଛି ପାସୋର
ଏବେ ଅର୍ଜୁନ ମନରୁ,
ନଶୋଭେ ବଡମା ଷାନ୍ତ ହୁଅ କର୍ଣ୍ଣ
ନିଷ୍ଫଳ ଯୁକ୍ତିତର୍କରୁ" ।
୧ଶିବେତର ଚିହ୍ନ ଦିଶିଲେହେଁ ତଦା
ନମାନି କୃପବଚନ,
ଅନାଇଁ ତାହାଙ୍କୁ "କାପୁରୁଷ" ବୋଲି
ଝିଙ୍ଗାସିଲ ଦୁଃଶାସନ ।
ନବୁଝି ନହୋଇ ୨ଆହାବୁ କୌରବେ
ହେଲେ ଦଳବଦ୍ଧ [illegible]ରେ,
ଏକାକେ ଅର୍ଜୁନ ଆକର୍ଣ୍ଣ ୩[illegible]ଶ୍ୱାସ
କଲେ ଘୋଷ ଉଚ୍ଚୈଃସ୍ୱରେ ।
୪ସ୍ୟନ୍ଦନ ନିକ୍ୱଣ୫ ମର୍କଟ ନିନାଦ
ପୁଣି ଗାଣ୍ଡୀବର ଧ୍ୱନ,
ମିଶି ୬ଦରଘୋଷ କୁରୁବଳଙ୍କର
ହୃଦୟ କଲା ମନ୍ଥନ ।

## ସପ୍ତଦଶ ସର୍ଗ

"କହୁଛନ୍ତି ଦ୍ରୋଣ ହେଉଅଛି ବୋଧ
ଦୁଇ ଦୁଇ ଆସି ଶର,
ପଦକର୍ଣ୍ଣ ଛୁଇଁ ପଡ଼ିଲେଣି ତଳେ
ଗ୍ରହଣ କର ଆମ୍ଭର ।
ବହୁଦିନ ପରେ ଦେଉଛନ୍ତି ଦେଖା
ପ୍ରିୟଶିଷ୍ୟ ଧନଞ୍ଜୟ,
ଘୃତଧାରାଯୁକ୍ତ ବହ୍ନି ତୁଲ୍ୟ ରୂପ
ଦେଖି ପ୍ରଫୁଲ୍ଲ ହୃଦୟ" ।
"ଚଳାଅ ୭ବଶିଖ ଯେଉଁଠାରେ ଅଛି
ଅଭିମାନୀ ଦୁର୍ଯ୍ୟୋଧନ,
କହିଲେ ୮ସିତାଶ୍ୱ ୯ସୂତପତିକ ଏହା
ଦେଖାଇ ୧୦ଅସ୍ର ଲେଚନ ।
ଧ୍ୱଜମା ଉଠରେ ଗଲବେଳେ ୧୧ତାର୍କ୍ଷ୍ୟ
୧୨ତାର୍କ୍ଷ୍ୟମାନଙ୍କ ଗର୍ଜନ,
ଶୁଭନ୍ତେ ସେ ଶବ୍ଦ କଉରବଙ୍କର
କଲାକ ଗର୍ବଗଞ୍ଜନ !
୧୩ପୁଷ୍କରେ ୧୪ପୁଷ୍କର ୧୫ପ୍ରକର ପ୍ରକ୍ଷେପେ
୧୬ପୁଷ୍କର ହେଲା ଆଚ୍ଛନ୍ନ,
ଆତ୍ମପର କଛି ନ ହେବାରୁ ବାଛି
ମଣିଲେ ସୈନ୍ୟେ ନିଧନ ।
ଲୋଭେ ପଡ ମତ୍ସ୍ୟ ଗ୍ରାସି ବଡ଼ିଶୀକ
ମରଣ ଲଭଇ ଯଥା,
ଗୋଧନ ଆଶାରେ ପୁଷ୍କରେ ପ୍ରବେଶି
ଦୁର୍ଯ୍ୟୋଧନ ସୈନ୍ୟ ତଥା ।
ବୀଭତ୍ସୁ ତାର୍କ୍ଷ୍ୟରୁ ଭୂତମାନଙ୍କର
ଶୁଣି ଅମାନୁଷ ସ୍ୱନ,
ପୁଚ୍ଛ ଟେକି ଟେକି ହେଲେ ଧାବମାନ
ଅବାଟୀ ଦଗେ ଗୋଧନ ।
ଗାଣ୍ଡୀବ କୋଦଣ୍ଡେ ଗୁପ୍ତକର ଏଣେ
କୌରବ ପକ୍ଷୀ ସକଳ,
ଖୋଜୁଥିଲେ ରଣ୍ଡ ଗାଣ୍ଡୀବୀ କର୍ଣ୍ଣକୁ
ପରଖିବାକୁ ତା ବଳ ।
କର୍ଣ୍ଣର ସୋଦର ଏକାକେ ହାବୁଡ଼େ
ପଡନ୍ତେ ଅର୍ଜୁନଙ୍କର,
ଗୋଟିଏ ପକ୍ଷୀରେ ପଡ଼ିଲା ଭୂଇଁରେ
ହୋଇ ଛିନ୍ନ କଳେବର ।
ସୋଦର ନିଧନେ ବ୍ୟସ୍ତବ୍ୟସ୍ତ ହୋଇ
ଛଦନ୍ତେ ଆସିଲ କର୍ଣ୍ଣ,
ଅର୍ଜୁନ ଦର୍ଶନେ ସନ୍ନ ହୋଇ ଅବା
ଦିଶିଲ ଅନ୍ତ ବିବର୍ଣ୍ଣ ।
ବହୁକ୍ଷଣ ଧରି ବେନି ଭାଇ ମଧ୍ୟେ
ଲାଗିଲା ଘୋର ପ୍ରସର,

୧ ଅମଙ୍ଗଳ ୨ ଯୁଦ୍ଧରୁ ୩ ଧନୁ ୪ ରଥ ୫ ଶଙ୍ଖ ୬ ଶଙ୍ଖଶବ୍ଦ ୭ ରଥ

୮ ଅର୍ଜୁନ ୯ ସାରଥି ୧୦ ରକ୍ତ ୧୧ ଅର୍ଜୁନ ୧୨ ଅଶ୍ୱ, ୧୩ ଯୁଦ୍ଧ ୧୪ ଶର ୧୫ ସମୂହ ୧୬ ଆକାଶ

୧ସୂତ ସୁତ ଏଣେ — କଲେ ପଳାୟନ
ବାଜିବାରୁ ତୀକ୍ଷ୍ଣ ଶର ।
ଏକ କର୍ଣୀ ପକ୍ଷୀ — ଲାଗି ରହିବାରୁ
କର୍ଣ୍ଣର କର୍ଣ୍ଣ ମୂଳରେ,
ତାଙ୍କ ୨ପତାକିନୀ — ଦେଖି ଦେଇ ତାହା
ଯୁଦ୍ଧୁ ପଳାଇଲେ ଡରେ ।
କର୍ଣ୍ଣ ପଳାୟନ — ଦେଖି ଦୁର୍ଯ୍ୟୋଧନ
ଚିନ୍ତାଗ୍ରସ୍ତ ହୋଇ ଅତି,
ପ୍ରାଣ ବିକଳରେ — ପିତସର୍ପ ପ୍ରତି
ନିକ୍ଷେପିଲେ ୩ପକ୍ଷପତି ।
ହାସ କରି ତାକୁ — ନିବାରଣ ଲାଗି
୪ଇଷ୍ୱାସେ ଗୁଣ ଚଢ଼ାଇ
କ୍ଷଣକ ମଧ୍ୟରେ — ବିନ୍ଧିଲେ କାଦମ୍ବ ୫
ପ୍ରସରୁ ଗଲେ ପଳାଇ ।
ଅସ୍ତ୍ର ଜର୍ଜରିତ — କୌରବ ଶରୀର
ପିତସର୍ପ ଶରାଘାତେ,
ଦିଶୁଥିଲା ଅବା — ପଳାଶ ପାଦପ
ହୋଇଛି ମଣ୍ଡି ଲତାନ୍ତେ ୬
ବିଜୟ ୭ଅବ୍‌ଜର — ୮ଭୈରବ ରବରେ
ବ୍ୟାଘ୍ରଭୟେ ପକ୍ଷୀ ପରି,
ବିପକ୍ଷ ବାହିନୀ — ଗଲେ ଇତସ୍ତତ
ନିଜନିଜ ରାହା ଧରି ।
ଅରାତି ରୂପକ — ପାଦପ ଉପାଡ଼ି
ଦେବାରୁ ଶ୍ୱେତବାହାନ,
୯ପ୍ରାଜକ ଉତ୍ତର — ଆନନ୍ଦ ବିଭୋର
ହୋଇ ଚଳାଇଲେ ସ୍ୟନ୍ଦନ ।
ଯୁଦ୍ଧାଙ୍ଗନେ ବୁଲି — ଉଗ୍ର ହୋଇ ତହିଁ
କୃପଙ୍କ ୧୦ଅନ୍ତ ଲଗରେ,
ଛୁଣ୍ଡାଇ କୋଦଣ୍ଡ — ବିନ୍ଧି ତୀକ୍ଷ୍ଣ କାଣ୍ଡ
କଲେ ଖଣ୍ଡ ଖଣ୍ଡ ଶରେ ।
ମହାକୋପେ କୃପ — ଡେଇଁ ପଡ଼ି ରଥୁ
ରହ ରହ ବୋଲି କହି,

୧ସୂର୍ଯ୍ୟପୁତ୍ର-କର୍ଣ୍ଣ ୨ ସେନା ୩ ଅର୍ଜ୍ଜୁନ ୪ ଧନୁ ୫ଶର ୬ଫୁଲ ୭ଶଙ୍ଖ ୮ଭୟଙ୍କର ୯ସାରଥି ୧୦ରଥ

ଫୋପାଡ଼ିଲେ ଗଦା — ସେଥିଲେ ବାଟରେ
ତାର୍କ୍ଷ୍ୟପରେ ଭାର୍କ୍ଷ୍ୟ ଉକ୍ତି
ଛେଦିଲେ ବିଜୟ — କୃପ ଅସ୍ତ୍ରାଷ୍ଟି ୧୧
କରିବାରୁ ଖଣ୍ଡ ଖଣ୍ଡ
ସକଳ ଉଦ୍ୟମ — ମହା କୁନ୍ତବିଦ୍ୟ ୧୨
କୃପଙ୍କର ହେଲା ପଣ୍ଡ ।
ଅକ୍ଷଚ୍ୟୁତ କୃପ — ପାଇ ପରାଭବ
ଲେଉଟିଲେ ନିଜ ଲୋକରେ,
ନ୍ୟାୟେ ନିପୁଣ — ଭରଦ୍ୱାଜ ସୂତ
ଦ୍ରୋଣ ପ୍ରବେଶିଲେ ବ୍ୟୂହେ ।
ଭକ୍ତିଭରେ ବନ୍ଦି — ତାହାଙ୍କୁ ଅର୍ଜ୍ଜୁନ
ଭାଷିଲେ ତାଙ୍କୁ ବିନୟେ,
ବହୁ ଦିନ ପରେ — ଆସିଛି ବିଜୟ
ଯୁଦ୍ଧକୁ ଆସି ନିର୍ଭୟେ
ଗୁରୁଶିଷ୍ୟ ଦୁହେଁ — ହେଲେ ମୁହାଁମୁହିଁ
ଯେ ଯାହା କୋଦଣ୍ଡ ଧରି,
ସବ୍ୟସାଚୀ ପ୍ରତି — ପ୍ରକ୍ଷେପିଲେ ପକ୍ଷୀ
ଗୁରୁଦ୍ରୋଣ ଆଗକରି ।
ଦୂରରୁ ଗାଣ୍ଡୀବୀ — କଲେ ଖଣ୍ଡ ଖଣ୍ଡ
ନିକ୍ଷେପି ଅବ୍ୟର୍ଥ ଶର
ରଚେଇବା ଲାଗି — ତାଙ୍କୁ ଗୁରୁ ପୁଣି
ବିନ୍ଧିଲେ ୧୩ମୁଞ୍ଜନିକର ।
ଗୁରୁ ଶିଷ୍ୟଙ୍କର — ସଂଗ୍ରାମ ଦର୍ଶନେ
୧୪ବୃନ୍ଦାରକେ ହେଲେ ରୁଣ୍ଡ ।
ଦୁହିଁଙ୍କ ଯୁଦ୍ଧରେ — ଉଡ଼ିଗଲା ଜବେ
କେତେ ସେନାଙ୍କର ମୁଣ୍ଡ ।
ଜୟ ଆଶା ତଳେ — ନଥିବାରୁ ଦ୍ରୋଣ
ଗମନ୍ତେ ୧୫ଆଜିକୁ ଛାଡ଼ି
ବୀର ଅଶ୍ୱତ୍ଥାମା — ଆସିଲେ ସେଠାକୁ
ଡରେ ମୁଣ୍ଡ ଲଡ଼ଲଡ଼ ।
ଭ୍ରୂଭଙ୍ଗ ଦେଖାଇ — ଦ୍ରୋଣାତ୍ମଜ ଆଗେ
ଗାଣ୍ଡୀବର ଗୁଣ କାଟି

୧୧ ରଥଦଣ୍ଡା ୧୨ ସର୍ବବିଦ୍ୟାରେ ନିପୁଣ ୧୩ଶର ୧୪ ଦେବତାମାନେ ୧୫ ଯୁଦ୍ଧ

ପ୍ରଶଂସିତ ହେଲେ କୌରବ ପକ୍ଷରୁ
ଶୁଭିଲ ବିଜୟ ଘାଟି ।
ଏକାକୀ ଯୁଦ୍ଧରେ କୋହ୍ମ କ୍ଳାନ୍ତ ତଳେ
ନୂତନ ୧ମୌର୍ବୀ ଲଗାଇ,
ନ୍ୟାସି ୨ଅସ୍ତ୍ରକଣ୍ଠ ଅଶୁଚ୍ଛ ଆମାଙ୍କର
୩ସ୍ୟନ୍ଦନ ଦେଲେ ଛଡ଼ାଇ ।
ଦ୍ରୋଣାଙ୍ଗଜଙ୍କର ପରାଜୟ ଦେଖି
ପୁନର୍ବାର କର୍ଣ୍ଣବୀର,
ଆସିବାରୁ କୃଷ୍ଣ ୪ପଦ୍ମମାନ ବନ୍ଧି
ତାହାଙ୍କୁ କଲେ ଅସ୍ଥିର,
"କୋପାବିଷ୍ଟ ହୋଇ ଭାଷିଲେ ବିଜୟ
ପାଷାଣ୍ଡ ଭଳ ବଚର,
କରିଥିଲୁ ବୋଲି ପଶାଖେଳ ବେଳେ
କଉରବ ଆଗେ ସ୍ପର୍ଦ୍ଧାର ।
ପଳାଇ ଯୁଦ୍ଧରୁ ପରାଜୟ ଲଭି
ଆସିଅଛୁ ଆଉଥରେ,
କଙ୍କନ ଧାରଣ କରିଛୁ କପଟ
ନମର ଲଜ୍ଜା ଭୟରେ ।
ବଞ୍ଚିଅଛୁ ଭବେ ଦୁର୍ଯ୍ୟୋଧନଙ୍କର
୫ଲଞ୍ଜାକୁ ଲେହନ କରି
ଦେଖାଉଛୁ ମୁହଁ ଆତ୍ମଶ୍ଳାଘା କରି
ସପକୁ ତଳେ ନଡରି ।"
ପରୁଷ ବଚନ ଶୁଣି ସାଭସ୍କୁତ
ବନ୍ଧିଲା ଗୋଟାଏ ଶର,
ଇଚ୍ଛି ଥିଲ ପର କପିକେତନର
ଛିଣ୍ଡାଇ ଦେବାକୁ କର ।
କୋପାନଳେ ଜଳ ସିଦ୍ଧଲକ୍ଷ୍ୟ ଧନ୍ୱ୬
ନ୍ୟାସିବାରୁ ଇଷୁଚୟ,
କୋଦଣ୍ଡ ଶଙ୍କଷ ଗୁପ୍ତକର ପୁଣି
ଭେଦିଲ କର୍ଣ୍ଣ ହୃଦୟ ।
ଛଟପଟ ହୋଇ ପଳାନ୍ତେ ସପଦ୍ବ୭
ଶୁଣି ଅତ ତୁଟତ୍କାର,
ଖ୍ୟାତ ପାଶେ ଚଳୁଁ ଗଲେ ୮ପଦ୍ମୀ ସେନ
ଦେବାକୁ ତାଙ୍କୁ ପ୍ରହାର ।
ସ୍ୟନ୍ଦନ ଗ୍ରହଣେ ଅସମର୍ଥ ଯେଣୁ
ଲାଗୁଅଛି ବାଧା ଅତ,
ବୋଲ ଫାଲ୍ଗୁନଙ୍କୁ କହନ୍ତି ଉତ୍ତର
ନଥିବା ଚେତ ଶକତ ।
"ଚକ୍ରମଂସ ପୁଣି ମସ୍ତକ ଉପର
ଦୁର୍ଗନ୍ଧେ ହୋଇ ମୂର୍ଚ୍ଛିତ
୯କମ୍ବୁଧ୍ୱନ ପୁଣି ଗାଣ୍ଡୀବ ନାଦରେ
ହେଉଅଛି ବଚଳତ ।
୧୦ଭୂଙ୍ଗୀଶ ସଦୃଶ ୧୧ପତ୍ରୀ ବୃଷ୍ଟି ଦେଖି
ହୁଏ ଖ୍ୟାତ ଅତଶୟ,
ଭ୍ରମୁଥିଲ ପର ଦଶେ ଭୂମଣ୍ଡଳ
କରେ ସ୍ପନ୍ଦନ ହୃଦୟ" ।
ଏତାଦୃଶ ଭାବ ଦେଖି ଉତ୍ତରର
କହନ୍ତି ଚଳୁଁ ବିଜୟ,
"ରାଜବଂଶେ ଜନ୍ମି ନହୋଇ କାତର
ଚଳାଅ ଭୟେ ବିଜୟ ୧୨
ଯୁଦ୍ଧେ ଏକୁଟିଆ କୌରବ ସଙ୍ଗରେ
ନକର ତଳେ ଖାତର,
କାପୁରୁଷ ପର ରହିବ ଶମ୍ପରେ୧୩
ନୁହଇ ଧର୍ମ ଆମ୍ଭର ।
ସମ ବା ବିଷମ ୧୪ଉଳଜେ ମଡିଷ
ମଭିପ୍ସେ ରହିବ ସଦା
କୃଷ୍ଣ ବାଙ୍କ ବାକ ବିପକ୍ଷଙ୍କ ମତ
କୁତ କୁତ ହେବ ଗଦା ।"
ଦଅନ୍ତେ ଉତ୍ତର କୃଷ୍ଣ ଉତ୍ତରକୁ
ଚଳାଇଲେ ସେ ବିମାନ,
ପକାଇଲେ କାଟି ଶମ୍ପରେ ଖ୍ୟାତଙ୍କ
୧୫ସ୍ୟନ୍ଦନ କେତନମାନ ।
ଏକାଣ୍ଡ ଦର୍ଶନ କରି ଦୁଃଶାସନ
ଆସନ୍ତେ ଆଜ ସ୍ଥଳକୁ ।

୧ ଗୁଣ, ୨ ଶର, ୩ ରଥ, ୪ ଶର ୫ ପାଦ ୬ ଅର୍ଜୁନ, ୭ ଶୀଘ୍ର

୮ ରଥ ୯ ଶଙ୍ଖ ୧୦ ଶିଳ୍ପ ୧୧ ଶର ୧୨ ରଥ ୧୩ ଯୁଦ୍ଧରେ ୧୪ ଯୁଦ୍ଧରେ ୧୫ ରଥ

ଅର୍ଜ୍ଜୁନ ପ୍ରହାରେ ସନ୍ଧାଯିଲା ଶର
ଆକର୍ଷି କର୍ଣ୍ଣମୂଳକୁ ।
ସରୋଷେ ୧ନିରାସ କଲେହେଁ ନାରାଚ
ପଡ଼ିଲା ଭୂତଳେ ଯାଇ,
ଦେଖି ତା ପ୍ରାଜକ* ବାହୁଡ଼ିଲା ଆଶୁ
ସ୍ୟନ୍ଦନକୁ ଲେଉଟାଇ ।
ତଦନ୍ତେ ସକଳ କୌରବ ପକ୍ଷୀୟ
ହୋଇ ଚୂର୍ଣ୍ଣୀଭୂତ ଶରେ,
କରିବାକୁ ଯୁଦ୍ଧ ଫାଲ୍‌ଗୁନ ନିକଟେ
ପ୍ରବର୍ତ୍ତିଲେ ନିର୍ଭୟରେ ।
ଏମାନଙ୍କୁ ଦେଖି କ୍ଷିପ୍ରହସ୍ତ କୃଷ୍ଣ
ଜାଳୁଥିଲେ କ୍ରୋଧନିଆଁ,
ତତ୍‌କ୍ଷଣେ ତାଙ୍କର ତେଜସ୍ୱାନ ରୂପ
ସକଳେ ହେଲେ ଗୁନିଆଁ ।
ଭୟ ପ୍ରଦର୍ଶନ ଲାଗି ଧନଞ୍ଜୟ
ତୁରିତେ କ୍ଷେପନ୍ତେ ଶର,
୨ବାଜୀରାଜି ବାଜି ଭୂମିତଳେ ଭାଙ୍ଗି
ପଡିଲେ ୩ବାଜୀନିକର ।
ଏଥନ୍ତେ ସେ ପୁଣି ହସି ସେମାନଙ୍କୁ
ଐନ୍ଦ୍ରାସ୍ତ୍ର କଲେ ସନ୍ଧାନ,
ତହିଁରୁ ବାହାରି ହୁତାଶନ ଶିଖା
ଜାଳିଲା ସବୁ ବିମାନ ।
ପବଣ ବଳରେ ପଳାଇଲେ ଗୁଡ଼ା
ଯୁଦ୍ଧ ଭୂଇଁରୁ ସକଳେ.
ମାତ୍ର ଗଙ୍ଗାସୂନୁ ରଥ ଶୂନ୍ୟ ହୋଇ
ରହିଲେ ସଂଗ୍ରାମସ୍ଥଳେ ।
ମର୍ମଭେଦୀ ୪ସାୟେ ୫ତାପତ୍ୟକୁ ଧୃଷ୍ଟ
କରିବାରୁ ଆକ୍ରମଣ,
ସେବାର ତାହାକୁ ପ୍ରାଣାନ୍ତଦ ପତ୍ରୀ
କଲେ କୃଷ୍ଣ ପ୍ରକ୍ଷେପଣ ।
ସୁବର୍ଣ୍ଣ ମଣ୍ଡିତ କୋଦଣ୍ଡକୁ ତୂର୍ଣ୍ଣେ
କରନ୍ତେ ତାର୍କ୍ଷ୍ୟ ଛେଦନ,

ଅନ୍ୟ କାର୍ମୁକକୁ ଧରି ୬ମୁରବୈରି
କଲେ ୭ବିଶିଖବର୍ଷଣ ।
ବଇର ଗଞ୍ଜନ ଫାଲ୍‌ଗୁନ ପୁଲକେ
କୃଷ୍ଣଙ୍କୁ କରି ପ୍ରଣାମ,
ଗାଣ୍ଡୀବ କୋଦଣ୍ଡେ ତାଙ୍କୁ କ୍ଷିପ୍ରେ କଲେ
କାଣ୍ଡ ବୃଷ୍ଟି ଅବିରାମ ।
ସ୍ୟନ୍ଦନର ୮ସୂତ ପୂର୍ବବସୁଙ୍କର
ସିତାଶ୍ୱ ସାୟ ଘାତରେ,
ମହାନଦ୍ରାଭଜ ଟଳନ୍ତେ ତଳକୁ
ପଳାଇଗଲେ ସେ ଡରେ ।

## ଅଷ୍ଟାଦଶ ସର୍ଗ

ନିରାଶ ହୃଦୟେ ଯୁଦ୍ଧରୁ ଓହରି
ଗାଙ୍ଗେୟ ଯିବାରୁ ଫେରି,
ଅବସନ୍ନ ଦେଖି ତାଙ୍କୁ ସେ ସମୟେ
କଉରବେ ଗଲେ ଘେରି ।
ଏକୁଟିଆ ଯୁଦ୍ଧେ ଯୁଝି ଶୁଝି ଧର୍ମ୍ମ
କୌରବ ରଥୀ ସହିତ,
ଅକ୍ଷତ ଶରୀର ଥିଲା ତାହାଙ୍କର
ଦିଶୁଥିଲେ ଉଲ୍ଲସିତ ।
ପରାଜୟ ଲଭି ସକଳ ଗଲେହେଁ
ପୁନର୍ବାର ଦୁର୍ଯ୍ୟୋଧନ,
ସଂଗ୍ରାମ ଅଙ୍ଗନେ ଆସିଲା ସତ୍ୱର
ଜିଷ୍ଣୁକୁ କରି ଗର୍ଜ୍ଜନ ।
୧୦ଅକାଣ୍ଡେ କାଣ୍ଡଟେ ବିନ୍ଧନ୍ତେ ବାଜିଲା
୧୧କଣ୍ଠୀ ଲଲାଟପଟେ,
ତହୁଁ ସେ କ୍ରୋଧରେ ନ୍ୟାସନ୍ତେ ପଡ଼ିଲା
ଦୁର୍ଯ୍ୟୋଧନ ବକ୍ଷପଟେ ।
ଆଡ଼େଣି ଦେଖାଇ ହୋଇଲା ଧାବମାନ
ପୁନଶ୍ଚ ଫାଲ୍‌ଗୁନ ପାଶେ,
ଦେଖି ତାକୁ ୧୨ଜିଷ୍ଣୁ ବଜାଇ ୧୩ଅମ୍ଭୋଜ
ବୋଲେ ଅତି ପରିହାସେ ।

---

୧ନିକ୍ଷେପ ୨ଶର ୩ଅଶ୍ୱ ୪ଶର ୫ଅର୍ଜ୍ଜୁନ *ସାରଥି

୬ କୃଷ୍ଣ ୭ଶର ୮ ସାରଥି ୯ ଅର୍ଜ୍ଜୁନ ୧୦ ଅକସ୍ମାତ
୧୧ଅର୍ଜ୍ଜନ ୧୨ଅର୍ଜ୍ଜୁନ ୧୩ଶଙ୍ଖ

୧ଅଦଭ୍ର ବଧାନ୨ ଠାକୁର ପାଶେ
ଶୁଭୁନାହିଁ ଜୟ ନାଦ,
ସୁଝାଇବ ଆଜ ଫଣା କାଣ୍ଡା ବେଳେ
ଦେଉଛୁ ଯା ପରିବାଦ ।
ପ୍ରାଣ ଠାରୁ ବଳ ଅଛୁକ ପ୍ରଜେ
ଆନ୍ଦଜ ପ୍ରିୟ ପଦାର୍ଥ,
କଲୁ ଯୁଦ୍ଧ ହାର ଲେଉଟିଲେ ତୋତେ
କ ବୋଲିବେ ପ୍ରଜାସାର୍ଥ୩ ?
ଦୁର୍ଯ୍ୟୋଧନ ନାମ ବ୍ୟର୍ଥ ହେବ ସିନା
ପାର୍ଥର ଶିର ଘାତରେ,
ଆସିଅଛୁ କମ୍ପା ୫ ତାରକ ନଥାଇ
ଆଗରେ ଅବା ପଛରେ ।
୪ବାସବର ବଳ ଜାଣିଛ ତ ତୁମ୍ଭେ
ଗନ୍ଧର୍ବ ଯୁଦ୍ଧ ସମୟେ,
ନଜ ନେତ୍ରେ ଦେଖି ଆଜ ଏ ସଂଗ୍ରାମେ
ଆସିଲ କମ୍ପା ନର୍ଭୟେ ?
ପ୍ରାଣରକ୍ଷା ଲାଗି ପଳାଅ ସପଦ୬
ଆଜ ଏ ୭ଆଜ କ୍ଷେତ୍ରରୁ ।
ଘଡ଼ଛକ ପରେ ପଳାଇବ ବର୍ତ୍ତି
ଏକ୍ଷଣି ପାର୍ଥ ହସ୍ତରୁ ।
କାହିଁ ସେ ଶକୁନ ଯାହାର ଭଣ୍ଡାମି
ଉବ ଉବ ବାଜେ ଭବେ ?
ଭଣଜାକୁ ଦେଖି ଏକୁଟିଆ ରଣେ
ନମାଉଡ଼େ କ ଲାଜ ଲଭେ,
୮ଗଚାକ୍ଷ ବାଞ୍ଛୁ ତୋ ଜାଣି ଜାଣି ସବୁ
ତୋ କଥାରେ ସଦା ବଶ,
ହେବାରୁ ନକଟ ଅନ୍ତକାଳ ତୋର
ଘଟିଲାଣି ବୁଦ୍ଧିଭ୍ରଂଶ ।
କୁଳବୁଡ଼ା ବୋଲି ପଡ଼ଲାଣି ହୁରି
ପଶିଲା କ ତୋ ୯ଶ୍ରବଣେ,
ଜୀବନ ଧରି ତୁ ରହିଛୁ କପରେ
ସତ କଲୁଷ ସାଗରେ୧୦

ଭୀମସେନ ଗଦା କରିଦେବ ତୋ
୧୧ଟକ୍ରୋକରସ୍ଥଳ୍କୁ ଚଣେ,
ସଂଗ୍ରାମକୁ ଲାଗି ନଥିବେ କେ ତାର
ବନ୍ଧୁବାନ୍ଧବରୁ ଜଣେ ।
ଧିକ ତୋ ଜୀବନ ଅନ୍ୟର ନନ୍ଦନ
କର ପାଞ୍ଚୁ ଅମଙ୍ଗଳ,
୧୨ଟକ୍ର ବୋଲି କପି ହେଉଅଛୁ ଠେକ
ଭିଆଇ ନାନା କଉଶଳ ।
ଫୁଟାଇଲେ ବାଣ ଫିଟି ଯାଉଅଛୁ
ହେଲାଣି କାଳ ନର୍ବାଣ,
ଲୋକ ଅପବାଦେ ଡର ଡର ସିନା
ଦେଖାଉ ମୁହଁରେ ଟାଣ ।
୧୩କାଣ୍ଡାରୀ ବହ୍ନନ ଦଦର ଉଡ଼ୁପେ୧୪
ଦୁସ୍ତର ଭବ ସାଗର,
ପାରି ହେବା ଲାଗି କରୁ ମନ ଆଣ୍ଟ
ତଣ୍ଟି ଚପି ଅପରର ।
ଥରୁଅଛୁ ହାତ ଟେକିବାକୁ ଧନୁ
ବନ୍ଧିବୁ ୧୫ଶଙ୍କୁ କପର,
କୁଳର ମହତ୍ଵ ବୁଡ଼ାଇଲୁ ସିନା
ପରଦ୍ରବ୍ୟ ଅପହର ।
ଲଜ୍ଜା ନାହିଁ କାର ରହିବ ନାହିଁଟି
ତୋର ଟାଣପଣ ଲବେ,
ଅଭିମାନ ବପେ ଲଭିବୁ ବନାଶ
ଲୁଚିଲେ ହେଁ କାହିଁ ଭବେ ।
ଭକ୍ତି ନେଇ ଯେତେ ମତ୍ତି ହୋଇଅଛୁ
ଦିବନାହିଁ ତୋ ସଙ୍ଗରେ,
ଧରମ ସହାକୁ ଗ୍ଲାଉଦେଇ ଏଣେ
ପଶିଲୁ ଅଣବାଟରେ ।
ପାଶେ ଥିବା ଲୋକ ପାଉଥିବେ ଯେବେ
ଗାଉଥିବେ ଗୁଣ ସିନା,
କହ ଦେଖି କୁଢ଼େ୧୬ ବସୁନ୍ଧରା ତଳେ
କଏ ବଶ ଅର୍ଥବନା ।

୧ ବଧୂତ ୨ ସମ୍ପତ୍ତି ୩ ସମୂହ ୪ ଅର୍ଜ୍ଜୁନ ୫ ଶର ୬ ଶୀଘ୍ର ୭ ଯୁଦ୍ଧ ୮ ଅନ୍ଧ ୯ କାନ ୧୦ ସମୁଦ୍ରରେ

୧୧ ଖଳ ୧୨ ସମ୍ରାଟ ୧୩ ନାବକ ୧୪ ନୌକା ୧୫ ଶର ୧୬ ମୂର୍ଖ

ପ୍ରାଣରୁ ଅଧିକ ଯାହାଙ୍କୁ ତୁ ମଣୁ
ସାଥି ସେହି ସମପୁରେ,
ଆପତ୍ତି ପଡ଼ିଲେ କେ ନୁହେ କାହାର
ହୁଏ କି ନେତ୍ରଗୋଚର ।
୧ଲକ୍ଷାଗୃହ କଥା ପଡ଼ିଲା ମନରେ
ହୃଦୟେ ହୁଏ କରତ,
୨ମଣ୍ଡା ପେଟେ ପିଇ ଭୁଣ୍ଡ କରୁଥିଲେ
ଟିକୁ କି ଦଣ୍ଡୁ ୩ବରତ ।
ଭୀମଙ୍କୁ ମଣ୍ଡାରେ ୪ମଧୁର ଦେଇ ତୁ
ଭସାଇଥିଲୁ ନୀରରେ,
ସେହି ତୁ ୫ମର୍କୁଣ ମାରୁତ ହାତେ ତୋ
ଉଡ଼ିବ ଶ୍ୱାସ ଅଚିରେ ।
୬ଅନ୍ଧଦାସ ଯେତେ ଅଛନ୍ତି ତୋ ପାଶେ
ହିତକୁ ମଣି ଅହିତ,
ଫୋଡିବେ ଯା କାନେ ନକରି ବିଚାର
ଶ୍ରବଣେ ହେଉ ମୁଦିତ ।
୭ପରେତର ଯେତେ ଆଣିଛୁ ୮ଆନର୍ତ୍ତେ
ଦଶନ୍ତି ୯ବିଷ ପରି,
ଭୁଛାକୁ ବାଉଳ ହେଉଅଛୁ ସିନା
ଅକର୍ମେ ପ୍ରବେଶ କରି ।
ମନା କରୁ କରୁ ୧୦ସଉରଜସ୍କା ନାରୀ
ଟାଣିଲୁ ସଭା ପ୍ରାଙ୍ଗଣେ,
ତୋଭଳି ୧୧ଲମ୍ପଟକୁ କଟକେ ତୋହର
ନଥିବେ ତ କେହି ଜଣେ ।
ତାର ପ୍ରାୟଶ୍ଚିତ ତୋ ୧୨ଲୋହିତେ କରି
କରିବ ପାପ ଖଣ୍ଡନ,
ବୋଲି ପାଞ୍ଚୁଥିଲି ବହୁକାଳୁ ହୃଦେ
ମିଳିଲା ଏବେ ଦର୍ଶନ ।
୧୩ସ୍ୱର୍ଗାପଗା ୧୪ସ୍ୱଜ କର୍ଣ୍ଣ ଭରଦ୍ୱାଜ
ଚଳାଇଲେ ଖସି ଧୀରେ,

୧୫ବନ୍ଦନବର୍ଗ ଲୋଡ଼ୁଛୁ ଯେତେକ
ପଡ଼ିବେ କି ତୋ ପିଠିରେ ।
ତୋର ଦୁର୍ବୃତ୍ତିରେ ଭଦ୍ରା ସ୍ୱପ୍ନରେ
ଉପୁଜିଲା ଶୂନ୍ୟ କାନ୍ତି,
ଶତ ଶତ ପ୍ରାଣ ଭଜିଲେ ନିର୍ବାଣ
ବାଜି ଖ୍ୟମାନୁଜ କାଣ୍ଡ ।
ରାଜକୁଳେ ଜନ୍ମି ରାଜପୁତ୍ର ହୋଇ
ଧଇଲୁ ତସ୍କର ବୃତ୍ତି,
କଳ୍ପଦ୍ରୁମରେ ୧୬କୃଶ ଫଳଥିବା ଯାଏ
ନଘଟୁ ପୁନରାବୃତ୍ତି ।
ବକବ୍ରତୀ ୧୭ ବୋଲି ୧୮ନଭସ୍ୱାନ୍ ତୋତେ
ଜାଣନ୍ତି ଉଚ୍ଚେ ସଜ୍ଜନ,
କୁଳୁକୁଳୁ କ୍ଷୟ କରିବୁ ବୋଲି ତୁ
ବସିଲାଣି ଜଳଜଳ ।
ମୋ ବଚନ ମାନି ଆଜ ଏ ଆଜରୁ
ନଗଲା ଏକ୍ଷଣି ଘୁଞ୍ଚ,
ମଦ୍ଦାଳଏ ଯେତେ ଆଶ୍ରିଛନ୍ତି ତୋତେ
ହାଲୁ ଶଙ୍କା ଦେବେ କାଢ଼,
ପରକଥା ଶୁଣି ଏଠାରେ ପ୍ରବେଶି
ଗଲୁଣି ନିଧାରେ ବୁଡ଼,
ଅର୍ଜୁନ ହାବୁଡ଼ୁ ଜୀବନ ଧରିକି
କଟକେ ପିବୁ ବାହୁଡ଼ ।
ଯେତେକ କଟଣ ଦେଇଛୁ ପାଣ୍ଡବେ
ନନେଲେ ତା ପ୍ରତିଶୋଧ,
ଆଜ ଏ ୧୯ଆହବେ କପିକେତନର
ହେବକି ଶମିତ କ୍ରୋଧ ।
ମଉଳି ଗଲାଣି ବଦନ ତୋହର
ଦେଖିଲୁଣି କରେ ଘଇ !
ଘୁଞ୍ଚିଦେଇ ଏବେ ଚଳିଯା ନଗରେ
ବେଗେ ବଜାଇ ଗାଲ ।
ଦେଖୁଛି ତ ଭାଇ ଆଗପଛ ହୋଇ
ମିଶନ୍ତି ସବେ ମାଟିରେ,

୧ଜଉ ୨ମଦ ୩ଯୁଦ୍ଧ ୪ବିଷ ୫ଦାଢ଼ିନଥିବା ପୁରୁଷ ୬ଭାଉଆ ୭ଆତ୍ମୀୟ ୮ଯୁଦ୍ଧ ୯ମୃତ ୧୦ରଜସ୍ୱଳା ୧୧ଲମ୍ପଟ ୧୨ରକ୍ତ ୧୩ଗଙ୍ଗା ୧୪ପୁଷ ୧୫ଖଳ

୧୬ଦାପିତୁ ୧୭ସ୍ୱାର୍ଥପର ୧୮ ଯୌବନରୁ ୧୯ ଯୁଦ୍ଧ

ଭାବିଲ କି ସବେ — କି କର୍ମ କରୁଛ
ଥିବାଯାଏଁ ଏ ମହୀରେ ।
ସୁଖ ବୋଲି ଯାହା — ଦେଖୁ ବର୍ତ୍ତମାନ
ଭବିଷ୍ୟେ ଦୁଃଖର କେନ୍ଦ୍ର,୧
ଘଟି ଯାଉଛି ଯା — ଜୀବନେ ତୁମର
କରି ବାରବାର ହେତୁ ।
କେ କରୁଛି ଚିନ୍ତା — ପ୍ରପଞ୍ଚ ଭିତରେ
ଅକିଞ୍ଚନ ପେଟଲାଗି,
ଅହଂମଦ ବଶେ — ପରସ୍ପର ଜନେ
ହୁଅନ୍ତି ସିନା ଅନୁରାଗୀ ।
ଅର୍ଜ୍ଜୁନ-ବଚନ- — ଅଙ୍କୁଶ ଆଘାତେ
ହୋଇ ମତ୍ତଦନ୍ତୀ ପରି
ପାପୀ ଦୁର୍ଯ୍ୟୋଧନ — ସଇନ ସହିତ
ଆସିଲା ଗର୍ଜନ କରି ।
ଚଢ଼ି ୨ଶତାଙ୍ଗରେ — ପ୍ରବେଶ୍ଟି ହୁଅନ୍ତେ
ଅର୍ଜ୍ଜୁନ ତା ପାଶେ ଯାଇ,
ଲେଉଟାଇ ଦେଲେ — ୩ସପ୍ତିଧ୍ୱଜ ୪ପଣୀ
କିସ୍ତୁକ ମାଡ଼ ଦିଆଇ ।
ଖର୍ବ ହେଲା ଗର୍ବ — ଦଉଡ଼ ଦଉଡ଼
ଫେରିଲେ ସର୍ବେ ହତାଶେ
ଲେଉଟିଲେ ପାର୍ଥ — ଉତ୍ତର ସହିତ
ଗୋଧନ ଧରି ଉଲ୍ଲାସେ ।

ଶମୀ ଶିଖେ ରଖି — ଅସ୍ତ୍ରମାନ ଦୁହେଁ
ପ୍ରବେଶ କଲେ ନଗରେ,
ଉତ୍ତରଙ୍କ ଜୟ — ବାଇଦ ବାଜିଲା
ତକ୍ଷଣେ ଚଉଦଗରେ ।
ତିନ ଦିନ ପରେ — ଆକର୍ଣ୍ଣି ବୃତ୍ତାନ୍ତ
ଘଟିଥିଲା ଯାହା ଯାହା,
ଭାଷନ୍ତେ ଉତ୍ତର — ଶଂସିଲେ କୃଷ୍ଣଙ୍କୁ
ମତ୍ସ୍ୟାଧିପ ଶୁଣି ତାହା ।
ନିର୍ବାସନ କାଳ — ପୂରିଯିବା ଅନ୍ତେ
କରିଲେ ଆତ୍ମ ପ୍ରକାଶ,
କଳୁ ପରିଣାମେ — ବ୍ୟର୍ଥ ହେଲା ସବୁ
ଦୁର୍ଯ୍ୟୋଧନ ଅଭିଳାଷ ।
ଚୈରଚ୍ୟୁ ଲଭି — ପାଣ୍ଡବ ମାନଙ୍କ
ବିରାଟ ସୁତାଙ୍କ ବାହ,୫
୬ସିତ ସପ୍ତି ସୁତ — ଅଭିମନ୍ୟୁ ସହ
ତଦନ୍ତେ କଲେ ନିର୍ବାହ ।
୭ଦାରକର୍ମ ଶେଷେ — ପ୍ରଭୂତ ୮ପ୍ରାଭୃତ
ଦେଇ ମତ୍ସ୍ୟଦେଶ ପତି,
ଦୁର୍ଯ୍ୟୋଧନ ରାଜ୍ୟ — ଫେରାଇ ଦେବାକୁ
ପେଶିଲେ ଦୂତ ତତ୍ପତି ।

---

୧ ଉତ୍ପତ୍ତିସ୍ଥଳ ୨ ରଥ ୩ ଅଶ୍ୱ ୪ ରଥ
୫ ବିବାହ ୬ ଅର୍ଜ୍ଜୁନ ୭ ବିବାହ ୮ ଯୌତୁକ

# ପଢ଼ ବା ନପଢ଼

କପିଳ ଗୌତମ ନାମେ ଏ ଭାରତେ
ଥିଲେ ଜଣେ ମହାଋଷି,
ବିନୟୀ ସ୍ୱଭାବ ଦେଖି ତାହାଙ୍କର
ହେଉଥିଲେ ସର୍ବେ ଖୁସି ।
ରାଗେଇଲେ ତାଙ୍କୁ ରାଗୁ ସେ ନଥିଲେ
କହୁଥିଲେ ମିଷ୍ଟକଥା,
ଥିବାରୁ ସହିଷ୍ଣୁ କାହା ମନେ କେବେ
ଦେଉ ନଥିଲେ ସେ ବ୍ୟଥା ।
[1]କାବ୍ୟ [2]ଅଙ୍ଗୀରସ ସମ ଥିଲା ବୁଦ୍ଧି
ଜୀବନ ମଣି ଅସାର,
ହିମାଦ୍ରି ସମୀପେ ଆଶ୍ରମ ନିର୍ମାଣି
କଲେନ୍ତି ମୋକ୍ଷ ପ୍ରବୃତ୍ତ ।
ଆଶ୍ରମ ସମୀପେ ଅବ୍ଜ ସରୋବର
ପବିତ୍ର ତୀର୍ଥ ସ୍ୱରୂପ,
ଥିବାରୁ ଚୌଦିଗୁଁ ବିହାର ଇଚ୍ଛାରେ
ଯାଉଥାନ୍ତି କେତେ ନୃପ ।
ଆଶ୍ରମର ଶୋଭା କରୁଥିଲା ବୃଦ୍ଧି
ପ୍ରଚୁର କୁସୁମ ଫଳ,
ବେଦ ପାରାୟଣ କରୁଥାନ୍ତି ତହିଁ
ଅବିରତ ଶିଷ୍ୟଦଳ ।

ସିଂହମୃଗ ବ୍ୟାଘ୍ର ଭ୍ରମନ୍ତି ଏକତ୍ର
ଅହି ସହିତ ନକୁଳ,
ଅହିଂସାର ମନ୍ତ୍ର ଶିଖାଇ ଥିଲେ ବା
ତଟସ୍ଥ ତପସ୍ୱୀକୁଳ ।
ଇକ୍ଷ୍ୱାକୁ ବଂଶୀୟ ରାଜପୁତ୍ର କେତେ
ଆଶ୍ରମ ବାସୀ ହେବାକୁ,
ପିତା ମାତାଙ୍କର ଅନୁମତି ନେଇ
ଅଚିରେ ଗଲେ ସେଠାକୁ ।
ଅତି ଆନନ୍ଦରେ ଏମାନଙ୍କୁ ମୁନି
ଆଶ୍ରୟ ଦେଇ ମଠରେ,
ଶିଖାଇଲେ ନୀତି ଭଢ଼ିବ କପରେ
ମହତ୍ତ୍ୱ ରାଜବଂଶରେ ।
ରାଜପୁତ୍ରଙ୍କର ସମୃଦ୍ଧି ଇଚ୍ଛାରେ
ଜଳଘଟ ହାତେ ଧରି,
ଆକାଶକୁ ଉଠି ଭାଷିଲେ ତାପସ
ଏମାନଙ୍କୁ ଲକ୍ଷ୍ୟ କରି ।
"ଏହି କଳସରୁ ଯେଉଁ ଜଳଧାର
ପଡ଼ିବ ଧରା ପୃଷ୍ଠରେ,
ତହିଁ ଚିହ୍ନ ରଖି ସ୍ଥାପିବ ନଗର
ମୋହର ମରଣ ପରେ ।"

୧ କାବ୍ୟ—ଶୁକ୍ର ୨ ଅଙ୍ଗୀରସ—ବୃହସ୍ପତି

କାଳକ୍ରମେ ମୁନି ସ୍ୱର୍ଗୀୟ ହୁଅନ୍ତେ
ଏଣୁ ରାଜପୁତ୍ରଗଣ,
ଯୌବନ ଉନ୍ମତ୍ତ ହୋଇ ଗଜତୁଲ୍ୟ
କଲେ ସୁଖେ ବିଚରଣ ।
ସେ କାନନ ଗୁଡ଼ି ତାପସଙ୍କର
ବୃକ୍ଷାଯାନ୍ତେ ହିମାଳୟ,
ରାଜପୁତ୍ରବୃନ୍ଦ ସେ ଆଶ୍ରମ ପାଶେ
ସ୍ଥାପିଲେ ବହୁ ନିଳୟ ।
ରାଜପଥ ପୁଣି ବିଶାଳ ପ୍ରକାର
ସ୍ତରପଟେ ତାର ତୋଳି,
ବଢ଼ାଇଲେ ଶୋଭା ସେ ପୁରର କ୍ରମେ
ଗଡ଼ଖାଇମାନ ଖୋଳି ।
ଦୀର୍ଘ ଦର୍ଶୀଦକ୍ଷ କୁଟୁମ୍ବୀମାନଙ୍କୁ
ବସତି ଦେଇ ଏଠାରେ,
ସଚିବ ରୂପରେ ସଦାଶୟ ବ୍ୟକ୍ତି
ରଖିଲେ ଶାସନଘରେ ।
ନଥିଲେ ଉଦ୍ଧତ ଅବା ଅବିଦ୍ୱାନ
ଏ ନଗର ଅଧିବାସୀ,
ବୁଦ୍ଧି ପରାକ୍ରମ ଭିନ୍ନ ଭିନ୍ନ ଗୁଣେ
ଉଠିଲା ଯଶ ବିକାଶି ।
ଏ ନଗର ଥିଲା ଧନର ନିଧାନ
ପୁଣି ତେଜର ଆଧାନ,
ବିଦ୍ୟାର ମନ୍ଦିର ଗୁଣୀଙ୍କ ନିବାସ
ବାହୁଶାଳୀଙ୍କ ଆଳୟ ।
କପିଳ ଋଷିଙ୍କ ଆଶ୍ରମ ସ୍ଥାନରେ
ହେବାରୁ ପୁର ସ୍ଥାପିତ,
କପିଳ ବାସ୍ତୁଏ ବୋଲି ଚଉଦିଗେ
କ୍ରମଶଃ ହେଲା ବିଦିତ ।
ବୟସରେ ବଡ଼ ଗୁଣରେ ଗରିଷ୍ଠ
ଶ୍ରେଷ୍ଠ ପୁଣି ଆଚରଣେ,
ଅଭିଷିକ୍ତ କଲେ ଧୃତ ରାଜପଦେ
ରାଜପୁତ୍ର ମଧ୍ୟୁଁ ଜଣେ ।

ଆଧାନ — ଉତ୍ପାଦନ ଆଳୟ — ଗୃହ

## ଦ୍ୱିତୀୟ ସର୍ଗ

କେତେକାଳ ଅନ୍ତେ ଜନ୍ମିଲେ ଏଠାରେ
ଶୁଦ୍ଧୋଧନ ନାମେ ନୃପ,
ସାତ୍ତ୍ୱିକ ଗୁଣେ ସେ ଥିଲେ ବଳବାନ
କମନୀୟ ତାଙ୍କ ରୂପ ।
ଅସହନଶୀଳ ଅଭିମାନୀ ଅବା
ନଥିଲେ କେବେ ଉଦ୍ଧତ,
ପ୍ରଜାଙ୍କର ଦୁଃଖ ଶୁଣିବା ନିମିତ୍ତ
ସତତ ଥିଲେ ଜାଗ୍ରତ ।
ଅପ୍ରିୟ ହେଲେହେଁ ହିତକର କଥା
ଶୁଣୁଥିଲେ ମନ ଦେଇ,
ଶାସୁଥିଲେ ରାଜ୍ୟ ଉଦାରତା ଗୁଣେ
କାହାକୁ ପୀଡ଼ା ନଦେଇ ।
ଶରଣାଗତଙ୍କୁ ଆଶ୍ରୟ ପ୍ରଦାନ
ଆପଣାକୁ ରକ୍ଷା କରି,
ଗୌରବ କେତନ ଉଡ଼ାଇଲେ କ୍ରମେ
ଶାନ୍ତିମାର୍ଗ ଅନୁସରି ।
ସୌଜନ୍ୟ ଦେଖାଇ ବିଦ୍ୱାନମାନଙ୍କୁ
ବୃଦ୍ଧଙ୍କ ବଚନ ମାନି,
କରୁଥିଲେ କାର୍ଯ୍ୟ ତେଜି ଅଭିମାନ
ନକରି ସମ୍ମାନ ହାନି ।
ସଙ୍କଟ ସମୟେ ଧୈର୍ଯ୍ୟ ଅବଲମ୍ବି
ମିତ୍ରଙ୍କୁ କରି ପ୍ରସନ୍ନ,
ଧର୍ମରୁ ନ ଟଳି ପରାକ୍ରମ ବଳେ
କରନ୍ତି ଶତ୍ରୁ ଦମନ ।
ଶୂରତାରେ ସାରା ବସୁନ୍ଧରା ଜିଣି
ନିଜ କୁଳ ଟେକ କରି ବିସ୍ତାର,
ଦୁଃଖୀଜନଙ୍କର ଦୁଃଖ ମୋଚନାର୍ଥେ
ବାଣ୍ଟୁଥିଲେ ନିତି ଧନ ଅପାର ।
ମାୟା ନାମେ ଥିଲେ ରାଣୀ ତାହାଙ୍କର
ଯାରଗର୍ଭୁଁ ଜାତ ଦୁଇ କୁମାର,
ଯଥା ସମୟରେ ସେ ବେନି ଜଣଙ୍କ
ଉପନୟନାଦି ହେଲା ସଂସ୍କାର ।

ଅଗ୍ରଜ ନାମକୁ ରଖିଲେ ଗୌତମ
ଅନୁଜର ନାମ ରଖିଲେ ନନ୍ଦ,
କମନୀୟ କାନ୍ତି ଦେଖି କନିଷ୍ଠର
ହେଉଥିଲେ ସର୍ବେ ମହା ଆନନ୍ଦ ।
ଆସନ୍ତେ ବୟସ ସିଦ୍ଧାର୍ଥ ହୃଦୟେ
ବୃଦ୍ଧ ରୋଗୀମୃତ କରି ଦର୍ଶନ,
ଅର୍ଦ୍ଧ ରଜନୀରେ ନିର୍ବାଣ ଇଚ୍ଛାରେ
ଗୃହତେଜି କଲେ ବନ ଗମନ ।
ଏ ଦୁଃଖ ସମ୍ବାଦ ଶୁଣନ୍ତେ ସକଳ
ରାଣୀ ମାୟାଦେବୀ ଅନ୍ତଃପୁରରୁ,
ପଡ଼ିଲେ ଧରାରେ ହୋଇ ମୂର୍ଚ୍ଛିତା
ଅଶ୍ରୁଧାର ଝରେ ବେନି ନେତ୍ରରୁ ।
ଏ ଘୋର ବାରତା ଜାଣନ୍ତେ ନୃପତି
ଅସ୍ଥିର ମନରେ ଚର ଡକାଇ,
ପଠାଇଲେ ଚର ବଗିଲୁ ସହସା
ଆଣିବାକୁ ତାଙ୍କୁ ବାଟୁଁ ଫେରାଇ ।
ଅବିନାଶୀ ନିତ୍ୟ ପଦାର୍ଥ ଦର୍ଶନେ
ଯା ମନ ଧାଇଁଛି ବାଲ୍ୟ କାଳରୁ,
ଶୁଣିବକି ସେହି କାହା ଉପଦେଶ
ଲେଉଟିଲେ ଚରେ ଅଧ ବାଟରୁ ।
ନିର୍ଜନ ବନରେ ପ୍ରବେଶି ଗୌତମ
ଖୋଜା ଖୋଜି କରି ତପସ୍ୟା ସ୍ଥାନ,
ନିର୍ଭୟ ମାନସେ ପ୍ଲକ୍ଷ ବୃକ୍ଷ ମୂଳେ
ନିଷ୍ଠାଳେ କଲେ ସେ ଦୁଷ୍କର ଧ୍ୟାନ ।
ବହୁକାଳ ପରେ ସିଦ୍ଧି ଲାଭ କରି
ଜିଣିଲେ ମାରର ଉଗ୍ରସେନାକୁ,
ପୁଣି ସେ ଲଭିଲେ ଦୃଢ ତପୋବଳ
ଶେଷେ ଅବିନାଶୀ ପରମାର୍ଥକୁ ।
ଶାଶ୍ୱତ ଅମୃତ ଦର୍ଶନ ଲଭି ସେ
ଗମି ଗୟା କାଶୀ ବାରାଣସୀକୁ,
ରହି କିଛି କାଳ ଧର୍ମ ଆମର୍ଶନେ
ତୋଷିଥିଲେ ସେଠା ଅଧିବାସୀଙ୍କୁ ।

ପ୍ଲକ୍ଷ—ପିପ୍ପଳୀ ମାର—କନ୍ଦର୍ପ

ନିଜ ଜନ୍ମଭୂମି କପିଳ ବାସ୍ତୁକୁ
ଲେଉଟିବା ଲାଗି ବଳାଇ ମନ,
ବହୁ ଶିଷ୍ୟ ସହ ପ୍ରବେଶି ଆନନ୍ଦ
ପିତା ମାତାଙ୍କର ଲଭି ଦର୍ଶନ ।
ସମ୍ମାନ ବଧାନ କଲେ ଗୌତମଙ୍କ
ରାଜା ଶୁଦ୍ଧୋଧନ ଡାକି ଜନତା,
ନିଜ କର୍ମଫଳ ଭବିଷ୍ୟତ ପ୍ରାପ୍ତି
ବୋଲି ପ୍ରଚାରିତ ହେଲା ବାରତା ।
ସଦ୍‌ଗୁଣ ବିମୁଖ ଥିଲେହେଁ ଅନେକ
ବୁଦ୍ଧବାଣୀ ଶୁଣି ମହା ହରଷେ,
ମୁନି ସନ୍ନିଧାନେ ଆସୁଥିଲେ ନିତି
ଉପଦେଶ ପ୍ରାପ୍ତି ଲାଗି ମାନସେ ।
କପିଳ ବାସ୍ତୁରେ ଯେବେ ତପୋଧନ
ଦେଉଥିଲେ ଆସି ଧର୍ମୋପଦେଶ,
କାମାସକ୍ତ ନନ୍ଦ ରହି ନିଜ ଘରେ
ନକରନ୍ତି ତହିଁ ମନୋନିବେଶ ।

## ତୃତୀୟ ସର୍ଗ

ଅନୁପମ ରୂପ ପତ୍ନୀର ଦେଖି ନନ୍ଦ ହରଷେ,
ମାତୁଥିଲେ ରତି କ୍ରୀଡ଼ାରେ ଅବିରତ ଦିବସେ ।
ବିଭୂଷିତ କରି ପତ୍ନୀକି ନବ ନବ ଭୂଷଣେ,
ଶୋଭା ପାନ ଲାଗି କେବେ ବା ଦେଖୁଥିଲେ ଦର୍ପଣେ
ଏକ ଅନ୍ୟ ପ୍ରତି ଆକୃଷ୍ଟ ହୋଇ ପ୍ରେମୀ ଯୁଗଳ,
କେ କାହାର ସଙ୍ଗ ନ ଛାଡ଼ୁଥିଲେ ସ୍ନେହ ବିହ୍ୱଳ ।
ଜଣେ ଜଣକର ଅଭାବେ ହେଉଥାଏ ଆକୁଳ,
ବୋଧ କରିବାକୁ ସହସା ଲୋକେ ହୁଅନ୍ତି ଠୂଳ ।
ଦେବ ଅଟ୍ଟାଳିକା ସଦୃଶ ଉଚ୍ଚ ରମ୍ୟ ହର୍ମ୍ୟରେ,
ସତତ ଯାପନ୍ତି ସମୟ ପତ୍ନୀ ସହ ସୁଖରେ ।
ତଥାଗତ ବୁଦ୍ଧ ପ୍ରବେଶି ଗୃହ ଭିକ୍ଷା ସକାଶେ,
ସତ୍କାର ଅଭାବୁଁ ନନ୍ଦଙ୍କ ବାହୁଡ଼ିଲେ ନିରାଶେ ।
ସେତେବେଳେ ଜଣେ ରମଣୀ ହର୍ମ୍ୟ ଉପରେ ଥାଇ,
ବୁଦ୍ଧ ଫେରିବା ଦେଖନ୍ତେ ତୂର୍ଣ୍ଣେ ଦେଲେ ଜଣାଇ
ମହର୍ଷି ଆସିବା ଶ୍ରବଣେ ନନ୍ଦ ଦୁଃଖିତ ମନେ,
ପ୍ରିୟାଙ୍କ ଅନୁଜ୍ଞା ମାଗିଲେ ଦିବାଲାଗି ଦର୍ଶନେ ।

ଲୋତକ ଲୋଚନେ ସୁନ୍ଦରୀ ବିଦାୟ ମାଗିଲେ,
ଜଳେ ଫେରି ବୋଲି ସ୍ୱାମୀଙ୍କି ବାରମ୍ବାର ଭାଷିଲେ ।
ନିଜ ପୟୋଧରେ କରକୁ ସ୍ୱାମୀଙ୍କର ଲଗାଇ,
ବିଦାଦେଲେ ତାଙ୍କୁ ଯିବାକୁ ମୁଖ ଅତି ଶୁଖାଇ ।
ଗନ୍ତବ୍ୟମାର୍ଗକୁ ସୁନ୍ଦରୀ ଅନିମେଷ ନୟନେ,
ଦେଖୁଥିଲେ ପ୍ରିୟ ଯିବାର ବୁଦ୍ଧଙ୍କର ଦର୍ଶନେ ।
ମୁନିଙ୍କ ଦର୍ଶନ ଇଚ୍ଛାରେ ବ୍ୟଗ୍ର କଲେ ଗମନ,
ପାସୋର ନଗଲା ମନରୁ ନିଜ ପତ୍ନୀ ବଦନ ।
ଟାଣୁଥିଲା ତାଙ୍କୁ ଆଗକୁ ବୁଦ୍ଧ ପ୍ରତି ଭକତି,
କିନ୍ତୁ ପତ୍ନୀ ପ୍ରେମ ପଛକୁ ଝିଙ୍କେ ତାଙ୍କର ମତି ।
ପ୍ରତିକୂଳ ସ୍ରୋତେ ନଦୀର ନାବ ଅଥବା ମଣ୍ଡ,
ବାର ବାର ତାର ସଲିଳେ ଗତି ହେଉଅଛି ମୋଡ଼ ।
ହଜି ଯାଉଅଛି ମୁହୂର୍ତ୍ତେ ପ୍ରିୟା ହସ ବଦନ,
ପୁଣି ଦେଖୁଛନ୍ତି ଆଗରେ ଗୌତମଙ୍କ ଗମନ ।
ଗୌରବ ସହିତ ଆଗକୁ ମନ୍ଦ ମନ୍ଦ ଭାବରେ,
ଯାଇ ପ୍ରଣମିଲେ ବୁଦ୍ଧଙ୍କୁ ମହା ହରଷଭରେ ।
କମଳପଲାକ୍ଷ ସୁଗତ ଅନୁଗ୍ରହ ଦେଖାଇ,
ଆଶୀର୍ବାଦ ଦେଲେ ନନ୍ଦଙ୍କୁ ଶିରେ କର ଲଗାଇ ।
ଘେନି ଯାଇ ତାଙ୍କୁ ସଙ୍ଗରେ ନିଜ ମଠକୁ ଖରେ,
ସଂସାର ବିଷୟ ଭାଷିଲେ ଉପଦେଶ ଛଳରେ ।

**ଉପଦେଶ**

କାହାକୁ ନଛାଡ଼େ ମୃତ୍ୟୁ ଧରଣୀ ମଧ୍ୟରେ,
ଉଜୁଳାଏ ମହାଶକ୍ତି ପ୍ରତି ମୁହୂର୍ତ୍ତରେ ।
ନ ଦେଖିଛୁ କହି କିଏ ବହୁ ରୂପ ତାର,
ପ୍ରସରିଛି ଜଗତରେ ମହା ଶକ୍ତି ତାର ।
କ୍ଷଣକେ ଓଟାରି ନିଏ ଲକ୍ଷ ଲକ୍ଷ ପ୍ରାଣୀ,
ନଶିଖେ ମନିଷ ଲବେ ଏ ସକଳ ଜାଣି ।
ଅଜ୍ଞତା ଅନ୍ଧାର ଯୋଗୁଁ ନ ଦିଶଇ ବାଟ,
ସ୍ୱାର୍ଥ ସିଦ୍ଧି ଲାଗି ହିଂସା ଲଗାଇଛି ନାଟ ।
ଅର୍ଥ ଚିନ୍ତା କରି କରି ସରୁଛି ଆୟୁଷ,
ନିଜ ଇଚ୍ଛାଇ ପିଇବାକୁ ଧରମ ପୀୟୂଷ ।
ଦୁନିଆଁ ଭିତରେ ନାହିଁ କେହି ବଡ଼ ସାନ,
୧ଦାହସର ସନ୍ନିକଟେ ସରବେ ସମାନ ।

ଅବଲମ୍ବି ନାନାବିଧ କୌଶଳ ଜୀବନେ,
ଲାଗିଅଛି ମନ ସଦା ଧନ ଉପାର୍ଜନେ ।
ଖାଲିହାତେ ଲେଉଟିବା ଦିନେ ନ ବିଚାରି,
ମମତା ଜାଲରେ ପଡ଼ି ହେଉଅଛି ଘାରି ।
ଯାହା ପାଇଁ ପାପରାଶି ଲଦୁଛ ମୁଣ୍ଡରେ,
ହେବକି ସାହାଯ୍ୟ ସେହି ଅନ୍ତିମ କାଳରେ ।
ସହଜ କି ପାରି ହେବା ଏ ଭବ ସାଗର,
ଅସାର କଳ୍ପନା କର କଣ ନିରନ୍ତର ?
ମାୟାଜାଲେ ପଡ଼ି ସିନା ହୁଅ ଛଟପଟ,
କେ ନୁହେ ଚେଷ୍ଟିତ ଜାଣିବାକୁ ଏ କପଟ ।
ପ୍ରମଦା ବିହାର ସିନା କରୁଅଛ ଧ୍ୟାନ,
କଲକି ଜୀବନେ କେବେ ସତ୍ୟର ସନ୍ଧାନ ।
ଛପି ଛପି ଆସୁଅଛି ନିକଟକୁ କାଳ,
କେ ସମର୍ଥ ନିବାରଣେ ତାହାର ଜଞ୍ଜାଳ ।
ସ୍ୱପ୍ନ ସମ ଅସାର ଏ ପ୍ରମଦା ବିଳାସ,
ଆଧ୍ୟାତ୍ମ ତତ୍ତ୍ୱରେ ଦିଅ ଜୀବନକୁ ଝାସ ।
ରୂପ ବିନାଶକ ଜରା ଯୌବନକୁ ତଡ଼ି,
ଯାଉଅଛି ଦୁଃଖେ କାଳ ଘରକରଣ ପଡ଼ି ।
ମୃତ୍ୟୁ ସମ ଭୟ କିଛି ନାହିଁ ଧରଣୀରେ,
କେତେ ରୋଗ ପଶି ଦିଏ ଯାତନା ଶରୀରେ ।
ସଂସାର ରୂପ ଅରଣ୍ୟେ ହୋଇ ତୁମ୍ଭେ ଲୀନ,
କଲ୍ୟାଣକାରୀ ମାର୍ଗକୁ ଦେଖୁଅଛ ଭିନ୍ନ ।
କେ ଏଡ଼ି ପାରିବ ଲବେ ପ୍ରିୟାର ବିଯୋଗ,
ଏଥିଲାଗି ନକରି କେ ନିତ ଶୋକ ଭୋଗ ।
ସ୍ନେହ ସମାନ ବନ୍ଧନ କିଛି ନାହିଁ ଭବେ,
ମୁକ୍ତ କରିବାକୁ ତହିଁରୁ ଦେଖ ପଥ ଜବେ ।
ମିତ୍ରମଧ୍ୟେ ଶ୍ରେଷ୍ଠ ସେହି ଯେ କରେ ମଙ୍ଗଳ,
ଇନ୍ଦ୍ରିୟ ଦାସ ନୋହିଲେ ଜୀବନ ସଫଳ ।
ପରର ଅଧୀନ ହୋଇ ନ ଅର୍ଜ ବିପତ୍ତି,
ମହାଭବଜାଲେ ଚୋଡ଼ ଶୁଦ୍ଧକର ମତି ।
ପ୍ରଜ୍ଞା ରୂପ କବଚକୁ କରିଣ ଧାରଣ,
ହସି ହସି ଶେଷେ କର ମୃତ୍ୟୁକୁ ବରଣ ।
ବନର ଆଶ୍ରୟ ନେଇ ରହେ ଯେଉଁ ଜନ,
ନପାରେ ପ୍ରବେଶ କରି ତା ପାଶେ ମଦନ ।

୧ ଶ୍ମଶାନ

ମିଳୁଥିଲା ଶାନ୍ତି ବଦଳିଲା ରୂପ
ପାଳନ୍ତେ ବ୍ରତ ସଂଯମ ।
ହର୍ଷ ଅବା ଦୁଃଖ ନଥିଲା ମନରେ
ହୋଇ ସ୍ୱଭାବସଂପନ୍ନ,
ବୀତରାଗ ପର ରହୁଥିଲେ ସ୍ଥିର
ନଟଣିବ ଆଉ ମଦନ ।,
ଆସକ୍ତି ବିମୁଖ ହେବାରୁ ସେ ଜାଣି
କହିଲେ ତହୁଁ ଗୌତମ,
"ହୋଇଛ ସମର୍ଥ ଇନ୍ଦ୍ରିୟ ନିଗ୍ରହେ
ଆଚରି ସାଧନସୂମ ।
ମାନସିକ ରୋଗ ଥିଲା ବଳବାନ
ହୋଇଛି ଏବେ ବିନଷ୍ଟ,
ଅନାର୍ଯ୍ୟ ବ୍ୟକ୍ତିର ସାଧୁ ଆଚରଣ
ଜଗତେ ଅତୀବ କଷ୍ଟ !
ସଦା ହିତକାଂକ୍ଷୀ ମିତ୍ରର ବଚନ
କରିବ ସିନା ପାଳନ,
ସୁଖେ ଦୁଃଖେ ଯେହୁ ସମଭାବାପନ୍ନ
କହନ୍ତି ତାକୁ ସଜ୍ଜନ ।
ଦେଖିଛ କି କାହିଁ ବସୁନ୍ଧରା ତଳେ
ଲୋଭୀ ମଣିଷର ଦାନ,
ଦୁର୍ବଳ ପାଖରେ ଲୁଆଁଇଛି ମୁଣ୍ଡ
କେବେ କରେ ବଳବାନ ?
ମାନସିକ ଦୋଷ ନଗଲେ ହୃଦୟୁ
ମିଳେ କି କାହିଁ ଆନନ୍ଦ ?
ପ୍ରେମ ବଶୀଭୂତ ହୋଇ ଲୋକ କେବେ
ନ ଜାଣଇ ଭଲମନ୍ଦ ।
ବସିବା ନିମିତ୍ତ ଯେସନ ମଣିଷ
ପଥର ବୁହେ କାନ୍ଧରେ,
କାମ ଉପଭୋଗ ପାଇଁ ତୁମ୍ଭେ ମଧ୍ୟ
ଉଦ୍ୟତ ଧର୍ମ କାର୍ଯ୍ୟରେ ।
ଯେସନ କୃଷକ ଫଳପ୍ରାପ୍ତି ଲାଗି
କରଇ ବୀଜ ବପନ,
ବିଷୟ ତେସନ ଲକ୍ଷ୍ୟ ରଖି ଏବେ
କରୁଛ ଧର୍ମ ବର୍ଜନ ।

ଲାଭ ଆଶା ରଖି ବଣିକ ଯେସନ
ପଣ୍ୟଦ୍ରବ୍ୟ କରେ କ୍ରୟ,
ତେସନ ଜାଣୁଛି ଭୋଗଲାଗି ତୁମ୍ଭେ
ଧରମେ ରଖିଛ ଲକ୍ଷ୍ୟ" ।
କାମାଗ୍ନିରେ ତୁମ୍ଭ ହୃଦୟ ଜଳୁଅଛି ସତତ,
ବୃଥା କ୍ଲେଶ ସହି କାହିଁକି ତୁମ୍ଭେ ଆଚର ବ୍ରତ ।
ଇଚ୍ଛାକାହିଁ ତଳେ ମାନସେ ବ୍ରହ୍ମଚର୍ଯ୍ୟ ପାଳନ,
ବାହ୍ୟରେ ଦେଖାଇ ହେଲେ ବା ଅଛି କି ପ୍ରୟୋଜନ
ଅଭିଳାଷ ସିଦ୍ଧ ହେବ କି ଅପ୍‌ସରାଙ୍କୁ ପାଇଲେ ?
ଲଭିବ ପରମ ଆନନ୍ଦ ତୃପ୍ତି ସିନା ଆସିଲେ ।
ସୁଖ ବା କପରେ ଆସିବ ଶାନ୍ତି ନଥିଲେ ମନେ
ପ୍ରୀତି ବିନା ରତି (ଆନନ୍ଦ)କପରି ହେବ ଲାଭ ଜୀବନେ
ଆଧ୍ୟାତ୍ମ ଚିନ୍ତାରେ ମନକୁ ଅଗ୍ରେ କର ନିବେଶ,
ନ ରହିବ ତୃଷ୍ଣା କଦାପି ଜବେ ଘୁଞ୍ଚିବ କ୍ଲେଶ ।
ସଳିଳରେ କେବେ ସିନ୍ଧୁର ତୃପ୍ତି ଆସେ କି ଭବେ,
ଅବା କାଷ୍ଠଦ୍ୱାରା ସନ୍ତୋଷ ଅଛି ବହ୍ନିର ଲବେ ।
ଯେ ପର୍ଯ୍ୟନ୍ତ ତୃଷ୍ଣା ରହିଛି ମନେ ରହିବ ଦୁଃଖ,
ଛିନ୍ନ କଲେ ତାକୁ ପ୍ରଥମେ ଖଳେ ଆସିବ ସୁଖ ।
ସମ୍ପଦେ ଅଥବା ବିପଦେ ଦିବସରେ ରାତିରେ,
ତୃଷ୍ଣାରେ ଆସକ୍ତ ବ୍ୟକ୍ତିକ କେବେ ଶୁଏ ଶାନ୍ତିରେ ?
ବିଷୟର ଅନ୍ୱେଷଣରେ ଦୁଃଖ ଉପୁଜେ ସଦା,
ତାର ପ୍ରାପ୍ତି ମଧ୍ୟ ସନ୍ତୋଷ ଦେଇ ନଥାଏ କଦା ।
ଦୁଷ୍କର କର୍ମରେ ମଣିଷ ସ୍ୱର୍ଗ ପ୍ରାପ୍ତ ହୁଅଇ,
ପ୍ରବାସୀ ପରାଏ ଲୋକକୁ ପୁନରପି ଫେରଇ ।
ସ୍ୱର୍ଗ ଭ୍ରଷ୍ଟ ହେବା ଲୋକର ପୁଣ୍ୟ ନଥାଏ ଲବେ ।
ପଶୁପକ୍ଷୀ ଅବା ବାନର ଜନ୍ମ ଲଭଇ ଭବେ ।
ସ୍ୱର୍ଗର ଉତ୍ତମ ପଦାର୍ଥ ଭୋଗ କରିବା ପରେ,
ସେଠୁ ଖସି ଦୁଃଖ ଭୋଗଇ ଲୋକ ମୃତ୍ୟୁ ଲୋକରେ ।
ପ୍ରାଣୀଠାରେ ଦୟା ହେବାରୁ ଶିବିରାଜ ବାଜକୁ
ସ୍ୱଶରୀର ମାଂସ ପ୍ରଦାନ କରି ଗଲେ ସ୍ୱର୍ଗକୁ ।
ଏ ଦୁଷ୍କର କର୍ମ କବେହେଁ ପୁଣ୍ୟ ହେବାରୁ ଊଣା,
ଖସିଗଲେ ସ୍ୱର୍ଗୁଁ ନପାଇ ପରମେଶ କରୁଣା ।
କେତେ ନୃପତି ଆପଣା କର୍ମୁଁ ଯାଇ ସ୍ୱର୍ଗକୁ
କର୍ମକ୍ଷୀଣ ପରେ ଲେଉଟିଛନ୍ତି ମୃତ୍ୟୁ ଲୋକକୁ ।

ମୃତ୍ୟୁ ସମୟରେ ଦେହର ଦେଖି ଦେହ ଲକ୍ଷଣ,
ପ୍ରାଣଥିବାଯାଏ କରନ୍ତା ମନେ ମନେ ସ୍ମରଣ ।
କ୍ଷଣିକ ସୁଖରେ କାହାକୁ ଦିଅ ନାହିଁ ପ୍ରଶୟ,
ସୁଖାବହ ହେବ ଅନ୍ତେ ମୋକ୍ଷମାର୍ଗ ଆଶ୍ରୟ ।
ସ୍ୱଭାବରୁ ପକ୍ଷୀ ଲେଉଟେ ଯାଇ ଦୂରକୁ ଯଥା,
ଅଜ୍ଞାନ ସ୍ୱଭାବରେ ଆବଦ୍ଧ ଲୋକ ଫେରଇ ତଥା ।
ନକର ପ୍ରବେଶ ବନ୍ଧନେ ସୁଖ ଭୋଗ ଆଶାରେ,
ମୋକ୍ଷମାର୍ଗେ ଶାନ୍ତି ମିଳଇ ସଦା ବସୁନ୍ଧରାରେ ।
ପ୍ରତ୍ୟକ୍ଷରେ ଦେଖି ଜନ୍ମର ଦୁଃଖ ଅନବରତ,
ପୁନରପି ଜନ୍ମ ନହେବା ଲାଗି ହୁଅ ଜାଗ୍ରତ ।

## ଷଷ୍ଠ ସର୍ଗ

## ( ବିବେକ )

ଏବମ୍ବିଧ ଉକ୍ତି ଶ୍ରବଣେ ହେଲେ ଲଜ୍ଜିତ ନନ୍ଦ.
କାମଲିପ୍ତ ହୃଦେ ନଥିଲା ଏବେ ତଳେ ଆନନ୍ଦ ।
ବୈରାଗ୍ୟ ସମ୍ଭୂତ ଜାଗ୍ରତ ହେଲା ହୃଦେ ତାଙ୍କର,
ଅନିତ୍ୟ ଏ ଧରା ବିଦୁର ହେଲେ ଭୟେ କାତର ।
ସାରଥିର ରଥ ଲୁମାରୁଁ ଆସେ ବାହୁଡ଼ି ଯେସନେ,
ନନ୍ଦ ମନୋରଥ ବିଷୟୁ ହେଲା ନିବୃତ୍ତ ତେସନେ ।
ଅପଥ୍ୟରୁ ରୋଗୀ ବିରତ ହୋଇ ସୁସ୍ଥ ଯେସନ,
ସ୍ୱର୍ଗ ତୃଷ୍ଣା ନଷ୍ଟ ହେବାରୁ ନନ୍ଦ ହୃଷ୍ଟ ତେସନ ।
ମନ୍ଦଗାମୀ ଗଜ ସଦୃଶ ଯାଇ ଗୁରୁଙ୍କ ପାଶେ,
ଅଶ୍ରୁବିଗଳିତ ନେତ୍ରରେ ନନ୍ଦ ଏମନ୍ତ ଭାଷେ ।
"ଅପସରାଙ୍କ ପ୍ରାପ୍ତି ବିଷୟେ ଇଚ୍ଛାନାହିଁ ମନରେ,
ସଂସାରର ଗତି ବିଚିତ୍ର ଦେଖି ହୃଦୟ ଥରେ ।
ସକଳ ସନ୍ତାପ ବିନାଶେ ହେଲି ଶରଣାପନ୍ନ,
ଧର୍ମର ସରଣୀ ଦେଖାଅ ତୁମ୍ଭେ ହୋଇ ପ୍ରସନ୍ନ ।
କ୍ଷଣ ଭଙ୍ଗୁର ଏ ସଂସାର ତାକୁ ବିଷମଗତି,
ଇନ୍ଦ୍ରିୟ ଦମନେ ସକ୍ଷମ ହେଉ ଏବେ ମୋ ମତି" ।

## ଉପଦେଶ

ସନ୍ମାର୍ଗ ପ୍ରବୃତ୍ତି ନନ୍ଦଙ୍କୁ ଅନାଇଁ
କହନ୍ତି ଗୌତମ ମୃଦୁ ବଚନେ
"ଇନ୍ଦ୍ରିୟ ରୂପକ ଚପଳ ଅଶ୍ୱଙ୍କୁ
କରିଛ ଆୟୂତ୍ତ ରଖି ବନ୍ଧନେ ।
ଅନିତ୍ୟ ବିଷୟ ଉପଭୋଗେ ଲୋକ
ହୁଅଇ ଆସକ୍ତ ସାରା ଜୀବନ,
ଅବିନାଶୀ ସୁଖ ଲଭିବା ନିମିତ୍ତ.
କେ ନେଉଛି କାହିଁ ତାର ଯତନ ।
ଦୂଷିତ ସଲିଳ ଦର୍ଶନେ ପିପାସୁ
ପଥିକ ହରାଏ ଧୈର୍ଯ୍ୟ ଯେସନ,
କ୍ରୋଧ ହେତୁ ଲୋକ ଉଚ୍ଛୃଙ୍ଖଳ ଚିତ୍ତେ
ବିବେକ ବିଚ୍ୟୁତ ହୁଏ ତେସନ,
ତମୋଗୁଣ ହାରା ଆଜଯାଏଁ ଯିନା
ଥିଲା ଅବରୁଦ୍ଧ ବୁଦ୍ଧି ତୁମ୍ଭର,
ଚଣ୍ଡ ଅନଳର ଉତ୍ଥିତ ଗଗନେ
ଯେମନ୍ତ ଆବୃତ ପ୍ରଭା ସୂର୍ଯ୍ୟର ।
ମୁଖେ ପ୍ରିୟକଥା ହୃଦେ କୁଟିଳତା
ଆଚରଣ କରି ମଣିଷ ଭବେ,
ସ୍ୱାର୍ଥ ସାଧନରେ ତତ୍ପର ହେଲେହେଁ
ପାଉଛି କି ଯଶ ଜୀବନେ କବେ ?
ବିଷୟ ଲାଳସା ବିନାଶ ନିମିତ୍ତ
ହୋଇଛି ସମର୍ଥ ତୁମ୍ଭର ବୁଦ୍ଧି,
ଅଧୁନା ଜାଣୁଛି ଉପୁଜୁଛି ଶ୍ରଦ୍ଧା
ଧର୍ମତତ୍ତ୍ୱେ କରି ଅନ୍ତର ଶୁଦ୍ଧି ।
ଭୂମିରୁ ଉତ୍ପନ୍ନ ହେଉଅଛି ଅନ୍ନ
ଏ ଶ୍ରଦ୍ଧା ନଥିଲେ କୃଷକ ମନେ,
ଅଥବା ଅନ୍ନରେ ତାର ପ୍ରୟୋଜନ
କରନ୍ତା କି ଶ୍ରମ ବୀଜ ବପନେ ।
ସଦ୍ଧର୍ମକୁ ଶ୍ରଦ୍ଧା କରୁଛି ଗ୍ରହଣ
ଯଥା ହସ୍ତକରେ ଦାନ ଗ୍ରହଣ,
ତେଣୁ ତା ଅଙ୍କୁର ବଢାଇଲେ ଲୋକ
ଅକ୍ଲେଶେ କରିବ ତତ୍ତ୍ୱ ବୀକ୍ଷଣ" ।
ବୁଦ୍ଧଙ୍କ ବଚନେ ପ୍ରୋତ୍ସାହିତ ହୋଇ
ନିଜକୁ ମଣିଲେ କୃତାର୍ଥ ନନ୍ଦ,
ବିଷୟାନୁରାଗ ଅନ୍ତର୍ହିତ ହୋଇ
ଉପୁଜିଲା ଧୀରେ ମହା ଆନନ୍ଦ ।
ଇନ୍ଦ୍ରିୟ ଯୋଗରୁ ସକଳ ଏ ମର୍ତ୍ତ୍ୟ
ପାଉଛନ୍ତି ପୀଡା ସାରାଜୀବନ,

ସମସ୍ତାନୁଯାୟୀ ଦେଉଥିଲେ ବୃଷ୍ଟି
ଖ୍ୟାଷଣ ସନ୍ତାପ ହୁଏ ଖଣ୍ଡନ ।
କମଳରୁ ଜାତ କମଳ ପତର
ହୁଏ ନାହିଁ ଲିପ୍ତ କମଳେ ଯେସନ୍ତେ,
ସଂସାରୁ ଉତ୍ପନ୍ନ ସଂସାରରେ ରହି
ମୁନିଏ ବିମୁକ୍ତ ବିଷୟୁଁ ତେସନ୍ତେ ।
ନୋହି ସ୍ୱାର୍ଥାନ୍ୱେଷୀ ଉପଦେଶ ଛଳେ
ପ୍ରିୟ ଅବା ରୁକ୍ଷ ଦେଇ ଭାଷଣ,
ଲୋକଙ୍କୁ ଦୁଃଖରୁ ପରିତ୍ରାଣ ଲାଗି
କରନ୍ତି ସେମାନେ ଜୀବନେ ପଣ ।
ଅନନ୍ତର ବୃଦ୍ଧ ବୁଝାଁଇଲେ ତାଙ୍କୁ
ଯେପରି ନିର୍ଦ୍ଦୋଷ ହେବ ଆଶ୍ରମ,
ନିର୍ମଳ ହୃଦୟେ କାଟିବାକୁ କାଳ
ସଦା ସନ୍ଥ ସଙ୍ଗେ କରି ସଂଶ୍ରମ ।
ଶୁଦ୍ଧ ଆଚରଣେ ଅର୍ଜିତ ଜୀବିକା
ସ୍ୱଳ୍ପାହାରୀ ହେବ ପ୍ରାଣ ଧାରଣେ,
କପଟାଦି ଦୋଷ ବିସର୍ଜ୍ଜନ କରି
ନେଉଥିବ ଯତ୍ନ ଦୁଃଖ ୧ପ୍ରହାଣେ ।
ସନ୍ତୁଷ୍ଟ ଚିତ୍ତରେ ସଦ୍‌ବୃତ୍ତି ଆଚରି
ହେବ ଅବିରତ ମଧୁର ଭାଷି,
ହିଂସା ପ୍ରବୃତ୍ତିକି ପ୍ରଶ୍ରୟ ପ୍ରଦାନ
ନ ମୁଣ୍ଡାଅ କେବେ ପାତକରାଶି ।
ଦୁଃଖର ନିବୃତ୍ତି ନହେବା ପର୍ଯ୍ୟନ୍ତ
ମୁକ୍ତ ନାହିଁ ବୋଲି କରି ଚିନ୍ତନ,
ମୋକ୍ଷ ସମୀପରେ ପହଞ୍ଚିବା ପାଇଁ
କରୁଥିବ ଶିକ୍ଷା ଜ୍ଞାନ ଦର୍ଶନ ।
ପରାଧୀନ ବୋଲି ଭାଷୁର ଜୀବିକା
ନକରି ଶୋଚନା ମାନସେ ତିଳେ,
ଶ୍ରେଷ୍ଠ ଜୀବନକୁ ଆଚରିଲେ ସିନା
ନିଶ୍ଚିତ ପରମ ଆନନ୍ଦ ମିଳେ ।
ଶାରୀରିକ ଅବା ମାନସିକ ସୁଖ
ଶିଖାଇବ ବ୍ରହ୍ମଚର୍ଯ୍ୟ କେବଳ,
ଶୁଦ୍ଧଶୀଳ ସିନା ଧରଣୀ ମଧ୍ୟରେ
ମଣିଷର ବନ୍ଧୁ ଶରଣବଳ ।
ସୂକ୍ଷ୍ମ ଦୋଷ ଦେଖି କରୁଥିବ ଭୟ
ନିଜବ୍ରତ ଦୃଢ଼େ କରି ପାଳନ,
ଦୁଃଖର ନିବୃତ୍ତି ଆସିବା ନିମିତ୍ତ
କର ଆଚରଣ ଶ୍ରେଷ୍ଠ ଜୀବନ ।
ନିଷ୍ଠାମରୂପକ ଚକ୍ଷୁର ମଧ୍ୟରେ
ଧୈର୍ଯ୍ୟରୂପୀ ଧନୁ ଧରି ଦୃଢ଼ରେ,
ସ୍ମୃତି କବଚକୁ ପରିଧାନ କରି
କରି ଅବରୋଧ ତୃଷ୍ଣାକୁ ଶରେ ।
ଇନ୍ଦ୍ରିୟ ବଇରି କଲେତ ନିଗ୍ରହ
ସ୍ୱଚ୍ଛନ୍ଦେ ସଂସାରେ ସୁବିଧା ମିଳେ,
ଇନ୍ଦ୍ରିୟ ଅଧୀନ ହୋଇ ବିଷୟରେ
ନରଖ ଆକାଂକ୍ଷା ହୃଦୟେ ତିଳେ ।
ଇନ୍ଦ୍ରିୟ ନିକର ଯେ ଯାହା କ୍ଷେତ୍ରରେ
ରହିଛନ୍ତି ଛପି ଅନବରତ,
କଲ୍ୟବଳ କରି ମଣିଷକୁ ଭବେ
ଉଦ୍ଦେଶ୍ୟ ସଫଳ ଲାଗି ଉଦ୍ୟତ ।
ଯେମନ୍ତ ସାଗର ନ ଲଭଇ ତୃପ୍ତି
ଜଳରାଶି ଧରି ନିଜ ବକ୍ଷରେ,
ତେମନ୍ତ ଇନ୍ଦ୍ରିୟ ବିଷୟୋପଭୋଗେ
ନପାଏ ସନ୍ତୋଷ କେବେ ୧ଖବରେ ।
ଇନ୍ଧନ ଅନଳ ସଂମିଶ୍ରଣ ହେତୁ
ବହ୍ନି ପ୍ରଜ୍ୱଳିତ ହୁଅଇ ଯଥା,
ବିଷୟ କଳ୍ପନା ଦୁଇଟିର ଯୋଗେ
ହୁଏ ଉଦ୍ଦୀପିତ କ୍ଲେଶାଗ୍ନି ତଥା ।
ଏ ଭବେ ମନୁଷ୍ୟ ରହେ ବାନ୍ଧିହୋଇ
ଅସାର କଳ୍ପନା ଫାନ୍ଦରେ ପଡ଼ି,
ଦୃଷ୍ଟି ଘ୍ରାଣ ସ୍ପର୍ଶ ଶ୍ରବଣ ଆସ୍ୱାଦ
ଦେଖୁଚ ଉନ୍ମତ୍ତ ଘଡକ ଘଡ଼ି ।
ଧର୍ମପ୍ରତି ପ୍ରୀତି ରଖୁଥିବ ନିତି
ମରଣ ଅବଶ୍ୟ ହୃଦୟେ ଜାଣି,

୧ ବିନାଶେ ।
୧ ପୃଥ୍ୱୀରେ

ଅନନ୍ତ ସନ୍ତାପ ଆସି ବାର ବାର
ପୀଡ଼ୁଅଛି ଦେଖ ଲୋକଙ୍କୁ ଟାଣି ।
ମରଣ ଅବଶ୍ୟ ରଖି ହୃଦୟରେ
ପରମାର୍ଥ ଚିନ୍ତା କର ଜୀବନେ,
ନିଜ ଶ୍ରେୟ ଲଗି ବିଘ୍ନ ଜାତ କରି
ଦିଅ ନାହିଁ ଦୁଃଖ ଅନ୍ୟର ମନେ ।
ଅକୁଶଳ ଚିନ୍ତା ଅକୁଶଳ କର୍ମ
କରି ଲୋକ କିଏ ଲଭଇ ସୁଖ,
ଜରା ବ୍ୟାଧି ମୃତ୍ୟୁ ଚଉଦିଗେ ଘେରି
ଶରୀରମାନଙ୍କୁ ଦେଉଛି ଦୁଃଖ ।
ଏ ଭବେ ଅଛି କି ଏହାପରି ସ୍ଥାନ
ଯହିଁ ନାହିଁ ବ୍ୟାଧି-ଜରା-ମରଣ ?
ତେଣୁ ଆସକ୍ତିରୁ ନିବୃତ୍ତ ନିମିତ୍ତ
ସଦା ଜୀବଲୋକ ଅସାର ମଣ ।
ସୁଖ ଦୁଃଖ ଦ୍ୱନ୍ଦ୍ୱ ଦୁନିଆଁ ଭିତରେ
ଲାଗିଛି ସତତ ପଡ଼େ ନୟନେ,
ଅମୃତ ସମାନ ପ୍ରଜ୍ଞାରସ ପିଇ
ତୃପ୍ତି ହୃଦୟରେ ଚଳ ଭବନେ" ।

## ଇନ୍ଦ୍ରିୟ ନିଗ୍ରହ

ଇନ୍ଦ୍ରିୟ ଉପଭୋଗ ନ ଦେଇ ମନ,
ସମୂଳେ ନାଶ ଲାଗି କର ଯତନ ।
ଭସ୍ମାଚ୍ଛାଦିତ ବହ୍ନି ତୁଲ୍ୟ ଇନ୍ଦ୍ରିୟ,
ରହି ଦେହ ଭିତରେ ସାଧେ ଅପ୍ରିୟ ।
ସଲିଳେ ଶିଖୀ ଶାନ୍ତ ହେବା ସଦୃଶ,
ସଂଯମ ବଳେ ସିନା ସେମାନେ କୃଶ ।
ମଣିଷର ବଇରି ଇନ୍ଦ୍ରିୟଚିତ୍ତ,
ଏମାନଙ୍କ ହେତୁରୁ ଘୋଟେ ବିପତ୍ତି ।
ଆବିଳ ଜଳ ସ୍ୱଚ୍ଛ କତକେ ଯଥା,
ସଂଯମେ ଚିତ୍ତଶୁଦ୍ଧି ହୁଅଇ ତଥା ।
ଦୂଷିତ ନିଜ ହୃଦ ହିଂସା କ୍ରୋଧରେ,
ଜନ୍ମାନ୍ତି ବିଘ୍ନ ଦୁହେଁ ସିନା ଶ୍ରେୟରେ ।
ଅମୃତ ଛାଡ଼ି ବିଷ କଲେ ଭକ୍ଷଣ,
ସଙ୍ଗେ ସଙ୍ଗେ ଘଟଇ ନିଜ ମରଣ ।
ପ୍ରିୟ ଅପ୍ରିୟ କଥା ବୃଥା ଚିନ୍ତନ,
ଆଜ ଯେ ହୁଏ ଶତ୍ରୁ କାଲି ସ୍ୱଜନ ।
ବ୍ୟାଘ୍ର ସଦୃଶ ଛପି ଛପି ଅନ୍ତକ,
ଓଟାରି ନିଏ ବଳବାନ ଯୁବକ ।
ତାହାକୁ ଜିଣିବାକୁ କେ ଅଛି ଭବେ,
ଯାର ଖାତିର ନାହିଁ କାହାକୁ ଲବେ ।
ପିଲା ବା ବୁଢା ବୋଲି ଯେ ଭାବୁ ନାହିଁ,
ବିଶ୍ୱାସ ତାହାଠାରେ ରହିବ କାହିଁ ?
ଜଳ ବୁଦ୍‌ବୁଦ୍‌ ତୁଲ୍ୟ ଜାଣି ଜୀବନ,
କୁମାର୍ଗରୁ ନିବୃତ୍ତ ହେଉ ଏ ମନ ।
ଅକୁଶଳ ବିତର୍କେ ନମିଳେ ଫଳ,
ଦୋଷଯୁକ୍ତ ଚିତ୍ତକୁ କର ନିର୍ମଳ ।
ତତ୍ତ୍ୱ ପରୀକ୍ଷା ଲଗି ନିଜ ମନରୁ,
ଚିତ୍ତମଳ ପ୍ରହାଣ କର ଆଗରୁ ।
ଔଷଧର ଉତ୍ପତ୍ତି ଭୂମି ଯେପରି,
ବିପତ୍ତିର କାରଣ ଜନ୍ମ ସେପରି ।
ସାଂସାରିକ ପ୍ରବୃତ୍ତି ଥିବା ଜୀବର,
ବୃଦ୍ଧାବସ୍ଥାଦି ସଦା ହେତୁ ଦୁଃଖର ।
ଶମୀତରୁରୁ ବହ୍ନି ଉତ୍ପନ୍ନ ଯଥା,
ସନ୍ତାପ ଉପୁଜଇ ଚିତ୍ତରୁ ତଥା ।

## ଅମୃତ ପ୍ରାପ୍ତି

ନନ୍ଦ ତତ୍ତ୍ୱମାର୍ଗ ଉପଦେଶ ପାଇ,
ଏକାନ୍ତ ସ୍ଥାନରେ ପ୍ରବେଶିଲେ ଯାଇ ।
ଚିତ୍ତରୂପୀ କର୍ମ ଭୂମିରେ ବିଚରି,
ହେଲେ ଯୋଗାରୂଢ଼ ଦୃଢ଼ ଧୈର୍ଯ୍ୟଧରି ।
ମୋକ୍ଷ ପ୍ରାପ୍ତି ଲଗି ଜାପି ଦିନରାତି,
କରିଲେ ନିଗ୍ରହ ଇନ୍ଦ୍ରିୟ ଅରାତି ।
ତତ୍ତ୍ୱରୂପୀ ଦୀପ ଜାଳି ହୃଦୟକୁ,
କରିଦେଲେ ଦୂର ଅଜ୍ଞାନ ତମକୁ ।
ଦୁଃଖ ବୋଲି ବୁଝି ଅନିତ୍ୟ ସଂସାର,
କଲେ ଧୀରେ ଧୀରେ ହୃଦୟ ସଂସ୍କାର ।
ଶୁଦ୍ଧଶୀଳ ଯାନେ କରି ଆରୋହଣ,
ଚିତ୍ତଭଣାଙ୍ଗନେ କଲେ ବିଚରଣ ।

ମାନସିକ କ୍ଳେଶ କରନ୍ତେ ବିନାଶ,
ଉପୁଜଇ ଧୀରେ ହୃଦୟେ ଉଲ୍ଲାସ ।
ରାଗନାମ ମହା ଅଗ୍ନି କ ଖରେ,
କଲେ ସେ ବିଶାନ୍ତି ଯୌଗିକ ଅସ୍ତ୍ରେ ।
ଯେସନ ମଣିଷ ନିଦାଘ ପୀଡ଼ିତ,
ଅବଗାହନରେ ହୁଏ ଅମୋଦିତ ।
କାମାଗ୍ନି ଦାହରୁ ଯୋଗବଳେ ନର,
ମୁକ୍ତି ଲଭି ହେଲେ ତେସନ ଆନନ୍ଦ ।
ରବିରେ ନିଷ୍ଟିନ୍ତେ ଶୋଇଥିବା ଜନ,
ଶବ୍ଦେ ବାଧାପ୍ରାପ୍ତ ହୁଅଇ ଯେସନ ।
ଏକାଗ୍ରତା ପ୍ରାପ୍ତ ଆଧ୍ୟାତ୍ମିକ ବ୍ୟକ୍ତି,
ହୁଏ ହଠହଠା ଘୋଟିଲେ ଆସକ୍ତି ।
ଶାନ୍ତ ସମାଧିରୁ ଉପୁଜଇ ସୁଖ,
ବିତର୍କେ ସତତ ହୁଏ ଜାତ ଦୁଃଖ ।
ଶାନ୍ତ କାମ୍ୟ ବ୍ୟକ୍ତି ସୁଖକୁ ବିକାର,
ବୋଲି ମନେକରି କରେ ପରିହାର ।
ସୁଖ ଦୁଃଖ ବୋଲି କିଛୁ ନାହିଁ ଭବେ,
ମନୋବିକାର ତା ଜାଣନ୍ତି ସରବେ ।
ପ୍ରଜ୍ଞାରୂପୀ ତରବାରି କରେ ଧରି,
ସଂସାର ବନ୍ଧନ ଦେଲେ ଛିନ୍ନ କରି ।

ଦୁର୍ଲଭସ୍ଥ ମର୍ତ୍ତ୍ୟକୁ ଜନ୍ମି ଜୀବନରେ,
ସାଗରଣୀ ହୁଅ ଅନନ୍ତ ଭବରେ ।
ରାଜସିକ ଗୁଣ ଯୁକ୍ତ ଜଗତରେ,
କୃତଜ୍ଞତା ନାହିଁ କାହା ହୃଦୟରେ ।
ସଂସାର ଚକ୍ରରେ ପଡ଼ି ଜୀବଗଣ,
ଦୁଃଖ ଦୁର୍ଦ୍ଦଶାରେ ପାଆନ୍ତି କଷଣ ।
ଚକ୍ଷୁଷ୍ମାନ୍ ବୋଲି କହିବା କେମନ୍ତେ,
ପ୍ରଜ୍ଞାଚକ୍ଷୁ ଯାର ନାହିଁ ଏ ଜଗତେ ।
ଏଭବେ ଅଧମ ଅର୍ଥଭୋଗ ପାଇଁ,
ଯାପଇ ସମସ୍ତ ସଦା ଧାଇଁ ଧାଇଁ ।
ମହାଦୁଃଖ ଜାଲୁଁ ମୁକୁଳିବା ଲାଗି,
ସନ୍ମାର୍ଗ ପ୍ରବେଶେ କେବା ଅନୁରାଗୀ ।
ସଦ୍ଜ୍ଞାନ ରୂପକ ଧନୁଧରି କରେ,
ଇନ୍ଦ୍ରିୟ ନିଗ୍ରହେ କେ ବାହାରେ ଖରେ ।
ଶୋଷଣକୁ କରି ଭୂଷଣ ସମ୍ମତ,
ଦେଖାଏ କଏ ବା ନିଜ କରାମତି ।
ଏ ଜୀବନ ପ୍ରତି ନରଖ ବିଶ୍ୱାସ,
କେ ଜାଣେ କେବେ ବା ଘଟିବ ବିନାଶ ।



# ନୈଷଧ

## ଉପକ୍ରମ

ମରଣ ଡାକରା କେ ପାରୁଚ ଏଡ଼ି,
ନିଅଇ ଯେ ଟାଣି ଗୋଡ଼େ ଦେଇ ବେଡ଼ି ।
ଆଖି ଆଗେ ରଖ ମୃତ୍ୟୁକୁ ପ୍ରଥମେ,
ଦିନ ସାରିଦିଅ ସଦା ପରିଶ୍ରମେ ।
ମରଣ ସମୟେ କି ବୋଲିବେ ଜନେ,
ବେଳ ଥାଉଁ ଥାଉଁ ଗୁଣୁଛ କି ମନେ ?
ଯୌବନ ଭଙ୍ଗିମା କେତେ ଦିନ ପାଇଁ,
ଯାଉ ପଛେ ପଛେ ଜରା ଆସେ ଧାଇଁ ।
ଦିଶଇ ବିକୃତ ଯେତେ ଅବୟବ,
କରିଦିଏ ଚୂନା ରୂପଶ୍ରେଷ୍ଠ ଗର୍ବ ତବ ।
ଯା ଆଶ୍ରୟେ ଦିନ ସରିବ ତୁମରି
ବୋଲି ବିଚାରୁଚ ସେ ହେଲଣି ପର ।
ଯାହାକୁ ଡାକୁଥିଲ ତୁମେ ଦିନେ,
ସେ ତ ଶୁଣୁନାହିଁ ତୁମ କଥା ଟନେ ।
ଦେଖ ଚଉଦିଗେ କୃତଘ୍ନତା ଫଣି,
ଲୋକର ମହତ୍ତ୍ୱ ଦେଉଛି ବିଧ୍ୱଂସି ।
ନ୍ୟାୟ ଲାଗି ସିନା କରୁଛ ଲଢାଇ
ପାଅ ଅପଯଶ ବିପକ୍ଷ ହରାଇ ।



## ନୈଷଧ

ପୁରୁଣା ନୂଆରେ ଲଗାଇ କଳହ,
ଦେଖୁଛି ଶୁକୁଟି ଖଳ ଅହରହ ।
ବିଶ୍ୱାସଘାତକ ଟେକିଲେଣି ମୁଣ୍ଡ,
ମିଛ ଗର୍ଜିବାକୁ ନଡରେ ପାଷଣ୍ଡ ।
ଓଲଟ ବିଲୋମ ସତତ ଦୁନିଆଁ,
ଟିକକ କଥାରେ ଜଳୁଅଛି ନିଆଁ ।
ଜନମି ଏ ଦେଶେ କେତେ କେତେ ଋଷି
ମାତି ପାଳି ନିତି ହେଉଥିଲେ ଖୁସି ।
ହେଲେ ଅନସୂଆ ଦୁଶ୍ଚିନ୍ତା ପ୍ରବେଶ,
ନ ଆସଇ ନିଦ ନୟନକୁ ଲେଶ ।
ଉପୁଜ ତହିଁରୁ ନାନାବିଧ ରୋଗ,
ଆଣଇ ଅବଶ୍ୟ ପ୍ରାଣେ କ୍ଳେଶ ଭୋଗ ।
ସେତେବେଳେ ସବୁ ମଣିବ ଅସାର,
ବୃଥା ହେବ ଯେତେ ତୁମ କାରବାର ।
କା'ର ଲୀଳାଭୂମି ନୁହେ ଏ ସଂସାର,
କର ନାହିଁ କେବେ ବଳୁଆ ବିଚାର ।

ହାତେ ମାପି ଦେଇ ଶୃଙ୍ଖଳ ଶୃଖଣ୍ଡେ,
ବିଚାରିବ ସଦା "ଜୀବନଟା ଦଣ୍ଡେ" ।
ଭୋଗ ବିଳାସରେ ଦିଅ ନାହିଁ ମନ,
ମହତେ ଖଟାଅ ଉପାର୍ଜିତ ଧନ ।
ଗ୍ରାସି ଅଛି ଯାକୁ ମାୟା ମୋହ ଭବେ,
ଅଛି କି ତାହାର ହୃଦେ ଶାନ୍ତି ଲବେ ?
ଆପଣା ଛିଦ୍ରକୁ ଘୋଡାଇ ଜୀବନେ,
ପରଛିଦ୍ର ଖୋଜ ସଦା ମନେ ମନେ ।
ଦିନର କରମ ବିଚାରି ଶୟନେ,
ଭୁଲଥିଲେ କର ଯତ୍ନ ସଂଶୋଧନେ ।
କର୍ତ୍ତବ୍ୟ କର୍ମରେ ନହୁଅ ବିମୁଖ,
ଅଭିଳାଷ ଥିଲେ ପାଇବାକୁ ସୁଖ ।
ବିଚସ ନିଜିତ ଦୁନିଆଁ ବେପାର,
ଛନ୍ଦ ତେଜ ବେଳୁଁ ହୁଅ ହୁସିଆର ।
ଟାଣୁଅଛି ଯାକୁ ସ୍ୱାର୍ଥର ଦଉଡ଼ି,
ପରର କଥା ସେ ଯାଉଅଛି ହୁଡି ।
ଯାହାକୁ ମଣୁଛ ହୃଦୟର ମଣି,
ସେ ତ ପରିଣାମେ ତୁମ କାଳ ଫଣୀ ।
ସମ୍ପଦେ ବିପଦେ ତୁମ ସାହା ଯିଏ,
ନାମ ତାର ତୁଣ୍ଡେ ନଧରି କିଏ ।
ଢାଳଇ ଯାହାକୁ ଅବିରଳ ଲୋଭ,
ଅକର୍ମ କରଣେ ଅଛି କି ତା କ୍ଷୋଭ ?
ଧନ ଧନ ବୋଲି ଲୋକେ ହୋଇ ବାଇ,
କୁଳର ଗୌରବ ଦିଅନ୍ତି ବୁଡାଇ ।
ଧନ ଲାଗି ହୃଦେ ଜନ୍ମିଲେ ନୈରାଶ୍ୟ,
କଳେବର ଜୀର୍ଣ୍ଣ, କି ବିବର୍ଣ୍ଣ ଆସ୍ୟ ?
ବାତୁଳ ପରାୟେ ହେଉଥାନ୍ତି ନିତି,
ନ ଶୁଣି କା କଥା, ଅର୍ଜନ୍ତି ଅପ୍ରୀତି ।
ଦେଖାଇ କିଏ ବା ଆପଣାର ଛଟା,
ମୁଠାକ ପାଇଁକି କରୁଅଛି ହଟା ।
ଅବିରତ ମାତି ଧନ ଗରବରେ,
ଶତ ଶତ ଲୋକ ପଡ଼ନ୍ତି ଖାଲରେ ।
କେତେ ନୃପତିଏ ବିବେକ ହରାଇ,
ପାଇଛନ୍ତି ନିନ୍ଦା ଅପକର୍ମେ ଯାଇ ।
ଦେଖ ନୃପ ନଳ ଭୋଗିଲେ କି ଦଶା,
ହରାଇ ସର୍ବସ୍ୱ ଖେଳି ଖେଳି ପଶା ।
ଧନ ଲୋଭେ ଯିବା ମାତିଲେ ବ୍ୟସନେ,
ଯୁଗେ ଯୁଗେ କଥା ରହିଲା ଭୁବନେ ।

## ପ୍ରଥମ ସର୍ଗ

ନିଷଧ ଦେଶରେ [1]କୃତ ଯୁଗେ ଥିଲେ
ନଳ ନାମେ ନୃପ କୀର୍ତ୍ତିସମ୍ପନ୍ନ,
[2]ଷଡଙ୍ଗ ବେଦରେ ଦକ୍ଷତା ଅର୍ଜି
କରୁଥିଲେ ନିତି ପ୍ରଜାପାଳନ ।
[3]ସଙ୍ଗରାଙ୍ଗଣରେ [4]ପ୍ରତ୍ୟର୍ଥୀ ଭୂପାଳେ
ହୁଅନ୍ତି ଉପୁରେ ଶରଣାପନ୍ନ.
ଅନଳ ସଦୃଶ ଉଜ୍ଜ୍ୱଳ କାନ୍ତିକି
ପାଉଥାଏ ଶୋଭା ହୃଷ୍ଟ ଆନନ ।
[5]କବିବୁଧ ସଙ୍ଗ ଯୁକ୍ତ ହୋଇ ମୋଦେ
ଦେବ ଖଗେଶ୍ୱର ଉଦିତ ଯେହ୍ନେ,
[6]କବିବୁଧ ମେଳେ ଲଭନ୍ତି ଆନନ୍ଦ
ନୃପ ନଳ କାଳ ଯାପନେ ତେହ୍ନେ ।
[7]ଦିଗୀଶବୃନ୍ଦାଂଶ ଧାରଣରୁ ଅବା
ମୁଖର [8]ପ୍ରତିମା ନଥିଲା ଭବେ,
ପୀନତା ଧାରଣ କରି ବାହୁବେନି
ଦୁର୍ଦ୍ଧର୍ଷ ବୈରିଙ୍କି ଦମନ୍ତି ଜବେ ।
ସୁଗଠନ ବପୁ ବୀକ୍ଷଣେ ଜନଙ୍କ
କାମଦେବ ବୋଲି ଉପୁଜେ ଭ୍ରାନ୍ତି,
ନିର୍ନିମେଷ ନେତ୍ରେ [9]ତ୍ରିଦଶୀଏ ଅବା
ଦେଖୁଥିଲେ ତାଙ୍କ [10]ତ୍ରିଦଶ କାନ୍ତି ।
କ୍ଷିତୀନ୍ଦ୍ରାଗ୍ରଣୀ ନଳ ଏ ସମୟେ
ଅନୁରୂପ କାନ୍ତ ଦମୟନ୍ତୀର
ଜନମୁଖୁଁ ଶୁଣି ପରିଣୟ ଲାଗି
ଚିନ୍ତା କରି କରି ହେଲେ ଅସ୍ଥିର ।

---

୧ ସତ୍ୟଯୁଗ ୨ ମିମାଂସା, ନ୍ୟାୟ, ପୁରାଣ, ଧର୍ମଶାସ୍ତ୍ର ୩ ଯୁଦ୍ଧଭୂମିରେ ୪ ବିପକ୍ଷ ୫ ଶୁକ୍ର ଓ ବୁଧଗ୍ରହ ୬ କବି ଓ ପଣ୍ଡିତ ୭ ଇନ୍ଦ୍ରାଦିଦିକ୍‌ପାଳ ସମୂହର ଅଂଶ ୮ ଉପମା ୯ ଅପ୍ସରାମାନେ ୧୦ ଯୌବନ

୧ଆଶ୍ରମ ବିହାର ୨କୈତବେ ନୃପତି
ଯିବାକୁ ସମ୍ପ୍ରତି ବୋଲାଇ ପତି,
୩ମନ୍ଦୁରା ଭିତରୁ ୪ଚଟୁଳ ୫ବାଜୀଙ୍କି
ଅଣାଇଲେ ଦେଖି ୬ଚଟୁଳ ଗତି ।
୭ସୂତବର୍ଗ ହିତେ ସେମାନଙ୍କୁ ଯୋଚି
ନୃପଙ୍କୁ ବସାଇ ଗମନ୍ତେ ଖରେ,
ନଗରବାସୀଏଁ ସ୍ପୃହାନ୍ୱିତ ହୋଇ
ସମ୍ବର୍ଦ୍ଧିଲେ ତାଙ୍କୁ ସମ୍ଭ୍ରମଭରେ ।
୮ଧୂଳି ପଟଳରେ ବିସ୍ତୃତ ଘୋଡାଇ
ନିବେଶନ୍ତେ ରଥ ଉପବନରେ,
ଅବରୋହି ନୃପ କରିଲେ ବୀକ୍ଷଣ
୯ବି-ଯୁକ୍ତ ବିଟପୀ ଚଉଦିଗରେ ।
ପାଦପପ୍ରସୂନ ସୌରଭେ ସମ୍ପଦ
ବନାନିଳ ଆଣି ସେବନ୍ତେ ନଳ,
ମହା ମୋଦଭରେ ଶ୍ରାନ୍ତି ଦୂର କରି
ଭକ୍ଷିଲେ ଏ ଅନ୍ତେ ୧୦ମାଲୂର ଫଳ ।
ମଲ୍ଲିକା କୁସୁମ ସମ ବିକଶିତ
ଚମ୍ପକ କୋରକେ ଭୃଙ୍ଗ ଝଙ୍କାର,
ପୁଣି ରସାଳରେ ପିକ ସ୍ୱନ କଲି
ମନ ଉତ୍କଣ୍ଠିତ ନଳ ରାଜାର ।
କିଛିକ୍ଷଣ ପରେ ବନେ ଭ୍ରମି ଭ୍ରମି
ଦେଖିଲେ ସମ୍ମୁଖେ ଗୋଟିଏ ସର,
ଯାର ତଟ ପ୍ରାନ୍ତେ କରିଲେ ବିଶ୍ରାମ
ନିଷଧ ନୃପତି ୧୧ହୟନିକର ।

## ସର ଦର୍ଶନ

୧୨ସିତାସିତ ସରୋଜେ ୧୩ଭରିତ ସେ,
ଯହିଁ କ୍ରୀଡନ୍ତି ମୋଦେ ୧୪ଭ୍ରମରଭର ।
ମୃଣାଳଖଣ୍ଡ ଲାଗି ୧୫ମୃଣାଳବଳୀ,
କେବେ ବା ପରସ୍ପର ଲଗନ୍ତି କଳି ।

୧ ଉପବନ ୨ ଛଳରେ ୩ ଅଶ୍ୱଶାଳା ୪ ମନୋହର
୫ ଅଶ୍ୱ ୬ ଚଞ୍ଚଳ ୭ ସାରଥିସମୂହ ୮ ଧୂଳିସମୂହ
୯ ପକ୍ଷୀଯୁକ୍ତ ୧୦ ବେଲ ୧୧ ଘୋଡ଼ା ସମୂହ
୧୨ ଶୁକ୍ଳକୃଷ୍ଣ ୧୩ ପୂର୍ଣ୍ଣ ୧୪ ସମୂହ ୧୫ ହଂସ

ତା ମଧ୍ୟେ ହିରଣ୍ମୟ ଗୋଟିଏ ହଂସ,
ଦର୍ଶନେ ଲୋଭିଗଲା ନୃପମାନସ ।
କୁତୂହଳ ଅବସ୍ଥା ତାଙ୍କର ଜାଣି,
ପକ୍ଷ ଘୋଡାଇ ଦେଲା ଶିରକୁ ଆଣି ।
ନିଦ୍ରାଗତ ଅବସ୍ଥା ଦେଖି ହଂସର,
କାୟକୁ ଖର୍ବ କରି ଗମି ସତ୍ୱର ।
ଧରିବାକୁ ତାହାକୁ ବଢ଼ାନ୍ତେ କର,
ଦଂଶିଲା ତାଙ୍କୁ କରି ବିକୃତ ସ୍ୱର ।
ପରନ୍ତୁ ନୃପ ତାକୁ ଆଣନ୍ତେ ଧରି,
ରହିଲା ମଉନେ ସେ କାତରେ ଥିରି ।
ଖଗସଙ୍ଘ ସକଳ ଉଡ଼ି ଝଟିଛି,
ଏସନ ଭାଷିଥିଲେ ନୈଷଧ ପ୍ରତି
ନିଦ୍ରାଣ ପତତ୍ରୀକି ଧରିବା ପାଇଁ,
୧ଜାତରୂପ ଲୋଭରେ ଆସିଲ ଧାଇଁ ।
ପୟଃପାନ କରାଇ ପୋଷିଲେ ସାପ,
କେବେ ହେଲେ ଆପଦେ ନାଶେକି ତାପ ।
ସଧାଗର ଧରାର ଯେହୁ ପାଳକ,
ସେ ପୁଣି ହୋଇଅଛି ପକ୍ଷୀବାଧକ ।
ବିଧାତା ଇଚ୍ଛା ଧାଏଁ ଯେଉଁ ଦିଗରେ,
ତାକୁ କେ ଲଙ୍ଘିପାରେ ମହୀ ମଧ୍ୟରେ ।
ନୈଷଧ କରସ୍ଥିତ ହଂସ ଏପରି,
ବିଧୁରେ ଭାଷୁଅଛି ଲବେ ନଡ଼ରି ।
"ମୋ ହୈମ ପକ୍ଷ ଦେଖି ଆଶାରେ ବଶ,
ଯେଣୁ ଘଟିଲା ତବ ବିବେକ ଭ୍ରଂଶ ।
କେତେ ବା ହେବ ୨ଛନ୍ଦେ ୩କମଳୋଦୟ,
ଏତେଡ଼ ଆଶାପ୍ଲୀ କର ନୃପ ହୃଦୟ ।
ତେଣ ଉଦ୍ଭଟ ୪ଭଟଙ୍କର ଏ ଭବେ,
୫ଶକୁନଠାରେ ହିଂସା ନଥାଏ ଲବେ ।
୬ବାରିରୁହଭୂରୁହ ମୂଳେ ପରାଣ,
ଧରିଛି ଯେତ୍ତୁ ତାର କରି କଲ୍ୟାଣ ।
ଏବମ୍ଭୂତ ଭାଷିତ ଶୁଣି ଖଗର,
ହୃଦୟ ତରଳିଲା ନଳ ନୃପର ।

୧ ସୁନା ୨ ପକ୍ଷରେ ୩ ଶ୍ରୀବୃଦ୍ଧି ୪ ରାଜା ୫ ପକ୍ଷୀ
୬ ବାରିରୁହ + ଭୂରୁହ = ପଦ୍ମ, ବୃକ୍ଷ ଆଦି

## ହଂସ ବିଳାପ

ବିଧାତାକୁ ନିନ୍ଦା କରି    ଉର୍ଦ୍ଧ୍ୱରେ ହଂସ ଏପରି
ଜନନୀକି ସ୍ମରି ସ୍ମରି କରେ କ୍ରନ୍ଦନ,
"ଅଛଇ ସେ ଜରାତୁରା    ମୁହିଁ ଅତି ଅଚତୁରା
ବିନାଶେ ହେବ ଆତୁରା ତାର ନନ୍ଦନ
୧ବରଟା ମୋ ନବ ପ୍ରସୂତି
କୃପାଳୁ ହୋଇ ଶ୍ରବଣ କର କାକୂତି।
ନପାଇ ମୋର ୨ଈକ୍ଷଣ    ୩ଚହମ୍ଭ ୪ଚଂକ୍ରମଣ
କରି କରି ଅନୁକ୍ଷଣ ପ୍ରିୟା ବିକଳେ
ନଲଭି ଶୋକ ବିରତି    ରାବ ରାବ ପତି,ପତି
ହେବ ଛଟ ପଟ ଅତି ଭାସି ପଲ୍ୱଳେ
୫ଅପ୍ରସ୍ଫୁଟିତେକ୍ଷଣ ଶାବକ
ମରଇ ପାଇବ ନିନ୍ଦା ହୋଇ ପାଳକ।
ମୃଣାଳ ଧରି ଥଣ୍ଟରେ    ଆସି ମରାଳ ସଞ୍ଚରେ
ମୋ ବାରତା ଦେଲେ ଖରେ ମୃତ୍ୟୁ ବରଣ
କରିବ ପ୍ରିୟା ୬ତରସା!    ନରଖି ପ୍ରାଣ ଲାଳସା
ହେବ ତୁମେ ଲୋକହସା କପାଁ କୃପଣେ,
ନିଅ ନାହିଁ ମୋର ପରାଣ,
ତୁମ ବିନା କିଏ ମୋତେ କରିବ ତ୍ରାଣ।
ତାପରି ସଙ୍ଗୀ ଭବରେ    ନଥିବେ ପକ୍ଷୀକୁଳରେ
ଅନାଇଁଥିବ ପଥରେ ମୋ ଆଗମନ,
ଅଜାଣତେ କିଛି ଦୋଷ    କରିଥିଲେ ତେଜ ରୋଷ
ମାନସେ ବହି ସନ୍ତୋଷ ରଖ ଜୀବନ,
ଅତୁଟ ତା ପତି ଭକତି
ତାବିନା ଭବସାଗରେ ନାହିଁ ମୋ ଗତି।
ଭବର ଅନିତ୍ୟ ଗତି    ଜାଣି ମାନବସନ୍ତତି
ନିପ୍ଲୁତ ସମ୍ପତ୍ତିମତ୍ତ ପରଦ୍ରବ୍ୟରେ,
ଆଶାବଳେ ନିରନ୍ତର    ପୁରିଥାଇ ଗନ୍ଧାଘର
ନଜାଣି ଅନ୍ତରପର ପଡି ଲୋଭରେ
ଛାଡ଼ନାହିଁ କାଳ କାହାକୁ
ମୋତେ ମାରି କି କହିବ ମୋର ମାତାକୁ।

୧ ଭାର୍ଯ୍ୟା ୨ ଦର୍ଶନ ୩ ମଣ୍ଡଳଆବୃତ୍ତ ୪ ଭ୍ରମଣ
୫ ଆଖି ଫିଟି ନଥିବା ୬ ଶୀଘ୍ର,ହଠାତ୍

ମୋ ବିନାଶେ ୧ଅମ୍ବା ଶୋକେ ନଖାଇ ରହିବ ଭୋକେ
କି ବୋଲିବେ ତୋତେ ଲୋକେ ହେବ କି ଯଶ
ଶୁଣିଲେ ପ୍ରିୟା ମୋ ଦଶା    ସହସା ହୋଇ ବିବଶା
ଚିର ଶମନ ନିକଟା ନିପାତବଶ
ଜନନୀବିଯୋଗେ ୨ପରାସୁ
ହେବେ କ୍ଷୁଧାକୁଳେ ତାର ଶିଶୁଏ ଆଶୁ।
କରି ମୁଖ ପ୍ରକମ୍ପନ    ପୁନଶ୍ଚ ଚୂଂକୃତସ୍ୱନ
କା' ଆଗେ ଦୁଃଖ କଥନ କହିବେ ଆଜ
ମୋ ବିନାଶ ସମାଚାର    ୩କୁଳିଶ ତୁଲ୍ୟ ପ୍ରହାର
ଲଭିଛି କିଏ ନିସ୍ତାର ବିଧାତା ଦାଉ।"
ମରାଳ ଭାଷନ୍ତେ ଏସନ
ଦୟାର୍ଦ୍ର ରାଜନ କଲେ ତାକୁ ମୋଚନ।

## ଦ୍ୱିତୀୟ ସର୍ଗ

ଅନନ୍ତରେ ୪ଦ୍ୱିଜ ମୁକତ ଲଭି ହରଷ ଭରେ,
୫ତନୂରୁହଯୁକ୍ତ ତନୁକୁ ଝାଡ଼ିଦେଲା ବ୍ୟଗ୍ରରେ।
କରି ୬ବିଲେଖନ ୭ପକ୍ଷତି ୮କ୍ରୋଡିପୁଟେ ତ୍ୱରିତ,
କଲା ନିବାରଣ କୀଟଙ୍କୁ ୯ତନୁକଣ୍ଡୂ ପଣ୍ଡିତ।
ତଡାଗ ନିଡ଼ଜନକର ଗଲେ ବେଢି ହଂସକୁ,
ଉଚ୍ଚ ରବେ ରାବ ସଙ୍କୁଳ ଲେଉଟିଲେ ସରକୁ।
ଏଅନ୍ତେ ସେ ଦ୍ୱିଜ ପଲ୍ୱଳ ଆସି ନୈଷଧ କରେ,
କୁତୂହଳ ହୋଇ ଭାଷିଲା ବସି ପ୍ରମୋଦଭରେ।
„ହେ ନେସ୍ୱର ସୁନ୍ଦର ରାଜନ! ଧର୍ମ ଆଗମ ମର୍ମ
ବୁଝି ମୋତେ ଛାଡ଼ି ଅର୍ଜିଲ ଏବେ ସୁକୃତ କର୍ମ।
୧୦ଆଖେଟ ନୁହଇ କ୍ଷତ୍ରୀର କେତେବେଳେ ଦୁଷ୍କୃତ
ସ୍ୱଆଶ୍ରୟ ଦ୍ରୁମ କରନ୍ତି ଦେଖ ଖଗେ ବିକୃତ।
ଦୁର୍ବଳ ସ୍ୱକୁଳ ଘାତକ ୧୧ଝଷବର୍ଗ ନିରତ
୧୨ଅନବଦ୍ୟ ତୃଣ ଭକ୍ଷଣ ନୁହେ ୧୩ଏଣ ବିରତ
ଅପ୍ରିୟ ବଚନ ତୁମ୍ଭଙ୍କୁ କହି ଅର୍ଜିଛି ପାପ,
ତବ ହିତ ଲାଗି ଆସିଛି କରିବାକୁ ଆଳାପ।

୧ ମାଆ ୨ ମୃତ ୩ ବଜ୍ର ୪ ପକ୍ଷୀ ୫ ଲୋମଯୁକ୍ତ
୬ ଖୁଣ୍ଟିବା ୭ ପକ୍ଷମୂଳ ୮ ଥଣ୍ଟ ୯ ଶରୀର ହୁଣ୍ଡାଇ
ବ୍ୟାତର ଦକ୍ଷ ୧୦ ମୃଗୟା ୧୧ ମାଛମାନେ ୧୨ ନିର୍ଦ୍ଦୋଷ
ନିଡ଼ଜନକର—ପକ୍ଷୀ ସମୂହ ଏଣ—ମୃଗ

ଆନନ୍ଦବର୍ଦ୍ଧକ ମୋ ଉକ୍ତି ନୋହେ ୧କୀରଗୀ ପରି,
କରିବ ଯତନ କାମନା ସିଦ୍ଧ ହେବ ଯେପରି ।
ପରଗ ନହେଲେହେଁ ଜାଣରେ କରି ପ୍ରତ୍ୟୁପକାର,
ଋଣ ବନ୍ଧନରୁ ମୁକୁଳି ଯିବ ବୋଲି ବିଚାର ।
ବିଦର୍ଭ ଦେଶର ନୃପତି ଭୀମଙ୍କର ତନୟା,
ଲୋକ ସମସ୍ତ ଗୁଣ ପ୍ରକର୍ଷା ସଦା ହୃଦୟେ ଦୟା ।
ଦମୟନ୍ତୀ ନାମ ତାଙ୍କର ଜନମୁଖେ ବନ୍ଦିତା,
ତନୁର ସୌନ୍ଦର୍ଯ୍ୟ ଦର୍ଶନେ ସୁରଙ୍ଗନା ଚକିତା ।

୨ପୃଷତ ନୟନୁଁ ଅଧିକ ରମ୍ୟ ନେତ୍ର ଯୁଗଳ,
ଚମରୀ ପୁଚ୍ଛକୁ ଜିଣିଛି ତାର ମୂର୍ଦ୍ଧା କୁନ୍ତଳ ।
୩ଅଞ୍ଜନ ଅଙ୍କିତ ହୁଅନ୍ତେ ନେତ୍ରେ ଦମୟନ୍ତୀର,
କରେ ସଙ୍କୁଚିତ ଗର୍ବକୁ ଖଞ୍ଜରୀଟ ପକ୍ଷୀର ।
ଦମୟନ୍ତୀ ଆସ୍ୟ ନିର୍ମାଣେ ଇନ୍ଦୁମଣ୍ଡଳୁଁ ରସ
କଲେ ଅପହୃତ ଧାତାକ ତେଣୁ ଏଡ଼େ ସରସ ।

ବହୁ ଜନପଦ ଭ୍ରମିଛି ରହି ୪ଭୂଚର ସଙ୍ଗେ,
ଏପରି ପ୍ରତିମା ସୁନ୍ଦରୀ ପଡ଼ିନାହିଁ ନେତ୍ରରେ ।
ବିଶଦ ବଚନ ଅମୃତ ପାନ କରି ନୃପତି
ଦମୟନ୍ତୀ ଲାଭ ଆଶାରେ ମତ୍ତ ବଳନ୍ତି ଅତି ।
୫ଦ୍ୱିଜାଧିପଠାରୁ ଶୁଣନ୍ତେ ନୃପ ଚିତ୍ତ ଏମନ୍ତ,
ତାଙ୍କ ବଶ ହେବେ ପୁଚ୍ଛିଲେ ଦମୟନ୍ତୀ କେମନ୍ତ ।
ବଢ଼ାଇବା ପାଇଁ ଆଗ୍ରହ ମୃଦୁ ସୁଧା ବଚନ,
କହି ଆଉଁଶିଲେ ତା ପକ୍ଷ ଧୀରେ ଧୀରେ ରାଜନ ।
"ରେ ହଂସ ତୋହର ଆକୃତି ଅସଦୃଶୀ ଏ ଭବେ,
ହେଉ ନାହିଁ ଦୃଷ୍ଟିଗୋଚର ଦୋଷ ସ୍ୱଭାବେ ଲବେ ।
୬କନ୍ଦର୍ପ ଶରାର୍ତ୍ତିଜଳଧି ନିମଜ୍ଜିତ ରାଜାକୁ
ପୋତତୁଲ୍ୟ ଅବଲମ୍ବନ ହୁଅ ଉଦ୍ଧାରିବାକୁ ।
ତୁମ୍ଭର ଗମନ ଏଥି ହେଉ ଶୁଭଦାୟକ,
ଲେଉଟିବ ନୃପ ନିକଟେ କରି କାର୍ଯ୍ୟସାର୍ଥକ ।
୭ସଲିଳସମ୍ଭୃତ କଳଶ ଆଗେ ଦେଖି ସେ ହଂସ,
ସିଦ୍ଧି ସୂଚକ ତା ବିଚାରି ଗଲା ନଭେ ୮ରଭସ ।

ପତଙ୍ଗପୁଙ୍ଗବ ଗମିଲା ଯେବେ ଅମ୍ବରତଳେ
ତହୁଁ ଉପାଶ୍ରିତ ନଗକୁ ହେଲା ପାରି ଅଗ୍ରେ ।
କଲା ଅତିକ୍ରମ ଦୃକ୍‌ପଥ ସେହୁ କ୍ଷଣ କାଳରେ,
ସବେଗବଳ ଗତି ଏଡ଼ିଲା ପଥେ ଗୁରୁ କାର୍ଯ୍ୟରେ
ଭୀମଭୂପଭୁଜ ପାଳିତ ପୁର କଲା ଈକ୍ଷଣ
ହେମ ଶୈଳୋପମ ସଉଧମାନ ଯହିଁ ପୁରଣ ।

## କୁଣ୍ଡିନ ନଗର ଦର୍ଶନ

ପୁର ଚଉପାଶେ ପୂରି ରହିଥିଲା
ପଲ୍ୱଳ ଦୀର୍ଘିକାମାନ,
ଅଭ୍ରଭେଦୀ ଚୂଡ଼ ୯ଉତ୍କାର ମନ୍ଦର
ଯାଉକୂଳେ ବିଦ୍ୟମାନ ।
ଶୋହେ ୧୦ପଣ୍ୟବୀଥୀ ରାଜପଥ ପାର୍ଶ୍ୱେ
ଅଛି ୧୧ଶୈଳୀମଣ୍ଡଳ,
୧୨ପିତୃପ୍ରସୂକାଳେ ପଣ୍ୟଦ୍ରବ୍ୟ ସମସ୍ତେ
କରୁଥାନ୍ତି କୋଳାହଳ ।
୧୩ଇନ୍ଦୂପଳେ ଗଢ଼ା ୧୪କ୍ଷିତିଭୃନ୍ମନ୍ଦିର
ସଗର ଉପାନ୍ତ ରହି,
ପୂର୍ବପୁରୁଷଙ୍କ ଯଶ ଗଉରବ
ଦେଉଥିଲେ ଅବା କହି ।
ଚଟାଣ ବିଗ୍ରହ ସ୍ଫଟିକ ପାଷାଣେ
ହୋଇଥିଲା ସମତଳ,
ମଣି,୧୫ରାକାତିଥି ପରି ଦିଶୁଥିଲା
ଅବିରଳ ସମୁଜ୍ଜଳ ।
ରହିଥିଲା ଘେରି ଅତ୍ୟୁଚ୍ଚ ୧୬ପ୍ରାକାର
ଉପକଣ୍ଠେ ପ୍ରାସାଦର,
ଯହିଁରେ କୃତ୍ରିମ ୧୭ପୁତ୍ତଳିକା ପ୍ରକର
ଆଙ୍କିଥିଲା ୧୮କାରୁକର ।
ଶିଖର ଦେଶରେ ହୋଇଥିଲା ଖଞ୍ଜା
୧୯ଅର୍କକାନ୍ତମଣି ରାଜ,

୧ ଶୁକ ବଚନ ୨ ମୃଗୀ ୩ କଜଳ ଲଗାଇଲେ ୪ ବନ୍ଧୁ ୫ ଶ୍ରେଷ୍ଠ ପକ୍ଷୀ ୬ କାମବାଣଜନ୍ୟ ପୀଡ଼ାରୂପୀ ସମୁଦ୍ରରେ ମଗ୍ନ ୭ ଜଳପୂର୍ଣ୍ଣ ୮ ଶୀଘ୍ର

୯ ଶିବ ମନ୍ଦିର ୧୦ ଦୋକାନଶ୍ରେଣୀ ୧୧ କଣିବା ଲୋକସମୂହ ୧୨ ସଞ୍ଜବେଳେ ୧୩ଇନ୍ଦୁ+ଉପଳ ଚନ୍ଦ୍ରକାନ୍ତ ମଣି ୧୪କ୍ଷିତିଭୃତ୍+ମନ୍ଦିର—ଉଆସ ୧୫ ପୂର୍ଣ୍ଣିମୀ ୧୬ ପ୍ରାଚୀର ୧୭ କୁଣ୍ଢେଇ ସମୂହ ୧୮ ଶିଳ୍ପୀ ୧୯ ସୂର୍ଯ୍ୟକାନ୍ତମଣି ନଗ—ପର୍ବତ

ଝଲସି ଉଠଇ ଦର୍ଶକ ଲୋଚନେ
୧ସପ୍ତାଶ୍ୱମୟୂଖ ରାଜ ।
ସନ୍ନିଧିରେ ତାର ସୁରୁଚି ଉପବନେ
ବିବିଧ ପାଦପ ଦେଲ,
ସହଚରୀ ମେଳେ ହୋଇଥିଲା ଯାହା
ଭୀମଜା ବିହାରସ୍ଥଳ ।
କନକ ପତତ୍ର ହଂସ ଅନନ୍ତର
ଦେଖି ଦୃଶ୍ୟ କଣ୍ଟକର,
ଉଦ୍ୟାନ ମଧ୍ୟକୁ ଗଲା ଉଡ଼ି ଉଡ଼ି
ଦର୍ଶନେ ବୈଦର୍ଭୀଙ୍କର ।
ଫଳପୁଷ୍ପଭରା ସାନ୍ଦ୍ର ଉପବନେ
ପକ୍ଷୀ ଉତ୍ସୁକ ମନରେ,
ଦେଖିଲା ଭୈମୀକି କ୍ରୀଡ଼ୁଥିବା ତହିଁ
ସହଚରୀଙ୍କ ସଙ୍ଗରେ ।
ନଭୋବିହାରରୁ ଓହ୍ଲାଇ ପଡ଼ନ୍ତେ
ରାଜସୁତା ସମୀପରେ,
କ୍ଷିତିତଳୁ ଧ୍ୱନି ଉପୁଜିଲା ଖରେ
ପକ୍ଷପୁଟ ଆଘାତରେ ।
୨ଜାମ୍ବୁନଦଚ୍ଛଦ କରି ଦରଶନ
୩ପୁରୋବର୍ତ୍ତୀ ମରାଳର,
ଧରିବାକୁ ଇଚ୍ଛା କଲାଇ ବୈଦର୍ଭୀ
ବଢ଼ାଇଲେ କ୍ଷିପ୍ରେ କର ।
ବ୍ୟାକୁଳିତା ହେବା ଦର୍ଶନେ ସଖୀଏ
ହସିଦ୍ୟନ୍ତେ ମାରତାଳ,
ମୋ ସହ ନ ଆସ କହି ଦମୟନ୍ତୀ
ସେମାନଙ୍କୁ ଦେଲେ ଗାଳି ।
୪ପତତ୍ରରଥ ଆଗଲୁ ଗଲା ଛଳରେ
ବୈଦର୍ଭୀ ଗୋଡ଼ାଇଲେ ତାର ପଛରେ ।
କରି କରି ପ୍ରେକ୍ଷଣ ୫ସୁଦତୀଗତ,
ଗଲା ସେ ଯହିଁ ରାଜେ ବ୍ରତତୀତତ ।
ନିଜକୁ ଗୁପ୍ତ୍ୟା ପରି ଅନୁସରଣ,
କରିଥିବା ଭୈମୀକି ଭାଷେ ଏସନ,

୧ ସୂର୍ଯ୍ୟକିରଣ ୨ ସୁବର୍ଣ୍ଣପକ୍ଷ ୩ ସମ୍ମୁଖରେଥିବା ୪ ପକ୍ଷୀ ୫ ସୁନ୍ଦରୀ ସ୍ତ୍ରୀ

"ବସୁଧା ଗାମିନୀ ତୁ, କେଉଁ ସାହାସ,
ପତତ୍ରୀ ଧରିବାକୁ ବଳେ ମାନସ ।
ଆମର ପ୍ରକୃତିରୁ ଯାଅ ଓହରି,
ବୃଥା ଅପଥେ ପଦକ୍ଷେପ ନକରି ।
ସ୍ୱକୃତ କର୍ମଫଳ ଏ ଜୀବ ଲୋକେ,
ଅନବରତ ପିନା ଭୋଗନ୍ତି ଲୋକେ ।
୬ବନାଳିଅଳି ଦେଖି କରନ୍ତି ମନା,
ଫେରିଯାଅ ସଦନେ ଆହେ, ସୁମନା ।
ଅବ୍‌ଜାସନ ବାହନ ହଂସ ବଂଶରେ,
ଜନମି ଅଛୁ ଆମ୍ଭେ ଏହି ମର୍ତ୍ତ୍ୟରେ ।
ମୃଣାଳାଗ୍ର ଗୁଡ଼ିକ ଖାଦ୍ୟ ଆମରି,
ଶୋଭେ ରୂପ ୮ଋଦ୍ଧି ବ୍ରହ୍ମାଙ୍କ ବର ।
ସ୍ୱର୍ଗଗାମୀ ହେଲେହେଁ ଅନବରତ,
ପଥଶ୍ରାନ୍ତ ଖେଦରୁ ମୁଁ ତ ମୁକତ ।
କେ ନାହିଁ ଭବେ ମୋତେ ଧରିବା ପାଇଁ,
ବୃଥା ପ୍ରୟାସ କର । ମୋ ପଛେ ଧାଇଁ ।
କାଞ୍ଚନ ପକ୍ଷ କେଶୀ ପଡ଼ି ଲୋଭରେ,
ଛୁଡ଼ି ଆସିଲି ଘର ବହୁ ଦୂରରେ ।
ବ୍ୟାଧାଦି ବନ୍ଧନରେ ନାହିଁ ମୋ ଭୟ,
ବିରିଞ୍ଚି ବରେ ମୋର ୯ବିରଳୋଦୟ ।
୧୦ସାଧୁ ବିଭକ୍ତ ଚିନ୍ତା ଜନ୍ମିଲା ମନେ,
ଏକାକିନୀ ହେଲି ତ ଏ ଘୋର ବନେ ।
ନିଷଧ ଦେଶ ନୃପ ନଳଙ୍କ ଗୁଣ,
ଚିତ୍ତ କରିଣ ଅୟି ମୋଠାରୁ ଶୁଣ ।
ତାଙ୍କ ସମାନ କେହି କ୍ଷମା ଗୁଣରେ,
ନାହାନ୍ତି ବୋଲି ସ୍ୱର ପଡ଼େ ଭବରେ ।
ତାଙ୍କର ବାଣ ଧାରା ରଣସ୍ଥଳରେ,
ରାଜବ୍ରଜଙ୍କ ଅସୁ ହରନ୍ତି ଖରେ ।
ପକ୍ଷୀହେବାରୁ ଲାଜ ନକରି ନାଶ,
କାର୍ଯ୍ୟ କରନ୍ତି ସଦା ମୋତେ ପକ୍ଷେଶ ।
ଭ୍ରମରକୁଳ ଛଳେ ତାହାଙ୍କ ଶ୍ରାନ୍ତି,
ଦୂର ମୁଁ କଲେ ସେହୁ ଲଭନ୍ତି ଶାନ୍ତି ।

୬ ବନର ଭ୍ରମର ସମୂହ ୭ ବ୍ରହ୍ମାଙ୍କ ବାହନ ହଂସ
୮ ସମୃଦ୍ଧି ୯ ଦୁର୍ଲଭ ଜନ୍ମ ୧୦ସାଧୁମାନଙ୍କଠାରେ
ବିଶେଷ ଭକ୍ତ ଚିନ୍ତା ଅସୁ—ପ୍ରାଣ

ବହୁ ପରବସ୍ତୁମାନଙ୍କୁ ଭୁଜ ବଳରେ
ମିଶାଇଛନ୍ତି ନିଜ ରାଜ୍ୟ ଭିତରେ ।
୧ଦାରିଦ୍ର୍ୟଦାରୀ ସେହୁ ନଳ ରାଜନ
ଧନ୍ୟ ବିଧାତା ସୃଜି ସୌମ୍ୟବଦନ ।
୨ପର୍ବରେ ପୂର୍ଣ୍ଣେନ୍ଦୁଙ୍କୁ ଜିଣିଛିପରି
ଯାକାନ୍ତି ଦର୍ଶନରେ ମୁଗ୍‌ଧ ଅପସ୍‌ର ।
ବକ୍ତ୍ରାନ୍ତ ନବରର ଭାତି ରାଜନ
ନିଶା ଶଶାଙ୍କ ଯୋଗେ ଯଥା ଶୋଭନ ।
ଅଦ୍ୟାପି ରହିଛୁ ତୁ ଅବିବାହିତା,
ଇଚ୍ଛାଥିଲେ ତାଙ୍କର ହୁଅ ବନିତା ।
କଲେ ବରଣ ନଳେନ୍ଦ୍ରର ପତିକି,
ହସିବେ ଲୋକେ ଦେଖି ତୋର ସାଂକ ।
ବିଧିର ଇଚ୍ଛା କେ ଜାଣେ ଭବେ,
କରିଯିବା କରମ ନ ଥକ ଲବେ ।
ଚିତ୍ତବୃତ୍ତି ଜାଣିବା ଲାଗି ଭୈମୀର,
ମାରବ, ହଂସ ଭାଷି ଏମନ୍ତ ଗିର ।

## ତୃତୀୟ ସର୍ଗ

## ହଂସ ଦମୟନ୍ତୀ କଥୋପକଥନ

୩ଦ୍ୱିଜରାଜପାଣିଗ୍ରହ ଅଭିଳାଷ,
ମୈବକ୍ଷେକନ୍ୟା ବାଳାଙ୍କରେ କି ବିକାଶ ?
ବ୍ୟର୍ଥକ ଭାଷିତ ଶ୍ରବଣେ ଭୈମୀର,
ସନ୍ଧାନ ହଂସ ଭାଷିଲ ଏ ଗିର ।
ଅସମ୍ଭବ କୋଳିବାର ନାହିଁ ଲବେ,
ଅସାଧ୍ୟସାଧନ ଦେଖୁ ସଦା ଭବେ ।
ଯତନ କଲେତ ମିଳଇ ରତନ,
ନିତ୍ୟ ନିରୁତ୍ସାହ ଅଳସୁଆ ମନ ।
ଜାତରେ ତିର୍ଯ୍ୟକ ହେଲେହେଁ ଅନୃତ,
କହୁନାହିଁ କେବେ ଲଭ ବା ଅମୃତ" ।

୧ ଦରିଦ୍ରତା ଦୂର କରିବା ବ୍ୟକ୍ତି ୨ ପୂର୍ଣ୍ଣମୀରେ ୩ ଚନ୍ଦ୍ରଙ୍କୁ ହାତରେ ଧରିବା ଅଭିପ୍ରାୟ ହେ ଦ୍ୱିଜ (ପକ୍ଷୀ) ରାଜପାଣିଗ୍ରହ (ନଳରାଜାଙ୍କୁ ବିବାହ କରିବା ଅଭିପ୍ରାୟ)

୪ଚକ୍ରାଙ୍ଗ ପତଙ୍ଗ କହନ୍ତେ ଏମନ୍ତ,
ଭାଷେ ଭୈମୀ ନଳେ ଚିତ୍ତ ମୋ ସନ୍ତତ ।
୫ଅନଳ ପୁରୁଷେ ପଶିଲେ ଶରଣ,
ଅନଳଙ୍କୁ ଆଶ୍ରି ଲଭିବ ମରଣ ।
ନକର ଆଶଙ୍କା କହୁଛି ମୁଁ ଯାହା,
ବେଦବାଣୀ ବୋଲି ହୃଦେ ଘେନ ତାହା ।
ଅର୍କ ସମ୍ପର୍କଙ୍କୁ ଛାଡେ କି ପଦ୍ମିନୀ
କୁମୁଦବାନ୍ଧବ ଅବା କୁମୁଦିନୀ ?
ମୋ ଶରୀର ପ୍ରଭୁ ଅଟନ୍ତି ମୋ ତାତ,
କିନ୍ତୁ ନଳ ମୋର ଗତି ପ୍ରାଣନାଥ ।
କିନ୍ତୁ ମୋର ସ୍ପୃହା ନାହିଁ ନଳଭିନ୍ନ,
ତାଙ୍କୁ କରି ଚିନ୍ତା ଏ ଶରୀର ଶୀର୍ଣ୍ଣ ।
ନାଚୁଛି ନିରତ ନଳାସ୍ୟ ହୃଦୟେ,
ନଳଭିନ୍ନେ ତାଙ୍କୁ ମତ ୬ଅସୁବ୍ୟୟେ ।
କର ନାହିଁ ତିଳେ ବିଶଙ୍କା ସଂଶୟ,
ଶ୍ରେୟ କର୍ମ ଲାଗି କର ୭ତୂର୍ଣ୍ଣେ ଲୟ ।
ତୁମ୍ଭେ ୮ଆର୍ତ୍ତିମୁଦ, ତୁମ୍ଭେ ମୋର ପ୍ରାଣ,
ସିଦ୍ଧିଲାଭେ କର ତ୍ୱରିତେ ପ୍ରୟାଣ ।
୯ଅମୁଦ୍ର ଦାରିଦ୍ର୍ୟ ସମୁଦ୍ରେ ମଗ୍ନ,
କରନାହିଁ ମୋର ମନୋରଥ ଭଗ୍ନ ।
ଜଣାଅ ଚଞ୍ଚଳ ଦମୟନ୍ତୀ ୧୦ଭାତି,
କରୁଥିବ ଗାନ ସଦା ତବ ଖ୍ୟାତି ।"
ଭୈମୀଙ୍କ ଭାଷିତ ନହେଉଣୁ ଶେଷ,
ହେଲା ପୁଲକିତ ମରାଳ ବିଶେଷ ।
ଆଳାପ ସମୟେ ହଂସ ଭୈମୀଙ୍କର,
ପ୍ରବେଶିଲେ ଆସି ସଖୀଏ ତାଙ୍କର ।
ସେମାନଙ୍କୁ ଦେଖି ହଂସ ଅନନ୍ତର,
ବିଦାମାଗି ତାଙ୍କୁ ଫେରିଲା ସତ୍ୱର ।

## ହଂସର ପ୍ରତ୍ୟାବର୍ତ୍ତନ

ଆକାଶପଥେ ଦେଖି ହଂସ ଗମନ,
ଲୋତକେ ପୂର୍ଣ୍ଣ ହେଲା ଭୈମୀନୟନ ।

୪ ହଂସ ୫ ନଳଭିନ୍ନ ୬ ପ୍ରାଣତ୍ୟାଗ, ୭ଶୀଘ୍ର ୮ ଆର୍ତ୍ତିପ୍ରିୟ ୯ ଅପରିମିତ ୧୦ ଶୋଭା

ବୟସ୍ୟାଗଣ ତାଙ୍କୁ ନେଲେ ଗୃହକୁ,
ଫେରିଲା ସେ ମରାଳ ସର ତଟକୁ ।
ନଳଙ୍କୁ ଦେଖି କହେ ନରଖି ଛନ୍ଦ,
ଶ୍ରବଣେ ନରପତି ମହା ଆନନ୍ଦ ।
ଦେବେଙ୍ଗିଙ୍କ ପୀଡ଼ିତ ସିତାଂଶୁ ପରେ
ଦିଶିଲେ ମ୍ଲାନ ଏଣେ ଭୈମୀ ସୁନ୍ଦରୀ
୧ଶଙ୍କିଣିଖା ପାଦରେ କରି ପ୍ରବେଶ,
ଅନବରତ ତାଙ୍କୁ ଦେଲା କି କ୍ଳେଶ ?
ସହଚରୀ ନ ଜାଣି ଏମନ୍ତ ଦଶା
ଭୂପଙ୍କୁ ଜଣାଇଲେ ଯାଇ ଭରସା ୨
ଏ ବିଷୟ ଶ୍ରବଣେ ଭୀମ ନୃପତି
ସ୍ୱୟମ୍ବର ଯୋଗାଡ଼ କଲେ ଝଟିତି ।

## ଇନ୍ଦ୍ରଙ୍କୁ ନାରଦ ସ୍ୱୟମ୍ବର ବିଷୟରେ ଜଣାଇବା

ସୁତା ସ୍ୱୟମ୍ବର କରିବେ ବୋଲି ଭୀମ ରାଜନ,
ଆନନ୍ଦ ୩ମନ୍ଦାକ୍ଷ ଅବଧିରେ ଭୈମୀ ହେଲେ ମଗନ
ଏ ଉଦନ୍ତ ପାଇ ନାରଦ ଯାଇ ତ୍ରିଦଶଧାମ,
ପ୍ରବେଶିଲେ ୪ଦ୍ୱନ୍ଦ୍ୱ ୪ନାକଷା ନାଶି ପ୍ରଥମ ଯାମ ।
ଅତିଥି ମୁନିକ ମଘବା ବହୁ ସତ୍କାର କରି,
ଆଗମନ ହେତୁ ପୃଚ୍ଛିଲେ ତାଙ୍କୁ ପାର୍ଥିବ ପରେ ।
"ପୁଣ୍ୟ ବିଭବର ବ୍ୟୟରେ ଲବ୍ଧ ହେବା ସମ୍ପଦ,
ବିଗ୍ରହ ଦୃଷ୍ଟିରେ ହେବକି ତୁମ୍ଭେ କେବେ ବିପଦ ?
ବିନୟାବନତ ଦେଖାଇ ମୌନ ୫ପାକଶାସନ,
ପ୍ରମଦ ଗଦ୍ଗଦ ହର୍ଷିଲେ ତନ୍ତ୍ରୀ ମୁନିବଚନ
୬ଷଡ଼ମଖ କରି ଅର୍ଜିଲ ତୁମ୍ଭେ ଯେଉଁ ସୁକୃତ,
ଅବଜ୍ଞା ହେବୁରୁ ତହିଁରୁ ଉପୁଜଇ ଦୁଷ୍କୃତ ।
ଆଣଇ ସଂପଦ ହୃଦୟେ ଅଭିମାନ ନିରତ,
ତେଣୁ ସୁଧୀବୃନ୍ଦ ତହିଁରୁ ହୋଇଥାନ୍ତି ବିରତ ।
ଆମ୍ଭେମାନେ କିନ୍ତୁ ବାଞ୍ଛିତ ସଦା ଅହିତକରି,
ଜ୍ଞାନଚକ୍ଷୁ ବଳେ ବ୍ୟୟୁହିଁ ଯଥାତଥ ଲୋକରି ।
କାମନାୟ ତବ ୭ନୈଃସର୍ଗ ପ୍ରୀତି ହେଲା ଦର୍ଶନେ,
ଦେଖାଅ ସତତ ସାଧୁତା ସୁରାଳୟ ଶାସନେ" ।

୧ କଣ୍ଟକାଗ୍ର ୨ ଶୀଘ୍ର ୩ ଲଜ୍ଜା ୪ ନିକଟ ୫ ଇନ୍ଦ୍ର
୬ ଶତଯଜ୍ଞ ୭ ପ୍ରକୃତ

ଏମନ୍ତ ଭାଷିଣ ଶକ୍ରଙ୍କୁ ଦମୟନ୍ତୀ ବିଷୟ
କଲେ ଉତ୍ଥାପନ, ତଦନ୍ତେ ଖରେ କୁଟିଳାଶୟ ।

## ନାରଦ ଉକ୍ତି

ଭୂପୃଷ୍ଠ ବିଦର୍ଭେ ଭୀମ ଭୂପଙ୍କର
ଦମୟନ୍ତୀ ନାମେ କନ୍ୟାରତନ,
୮ଅନୂଢ଼ା ଥିବାରୁ ସ୍ୱୟମ୍ବର ଲାଗି
ପ୍ରେରିଲେଣି ବାର୍ତ୍ତାମାନ ରାଜନ ।
ଯୌବନ ଉଦୟ ହେଲାପରେ ଏବେ
ଦିଶୁଅଛି ଅବୟବ ପ୍ରାଞ୍ଜଳ,
ଆୟତ୍ତା ଥିବାର ଜଣେ ଯୁବା ପ୍ରତି
ଦେଉଅଛି କହି ମୁଖମଣ୍ଡଳ ।
ଭୈମୀଅନୁରାଗ ନ ରହିବ କିଏ
ଦେଖି ତା ଲାବଣ୍ୟମୟ କାନ୍ତିକ,
ତବ ଅନୁମତି ଲଭିଲେ ଏକ୍ଷଣି
ସ୍ୱୟମ୍ବର ଦେଖିଯିବ ୯ଉର୍ବୀକ ।
୧୦କଶ୍ୟପନନ୍ଦନ ନାରଦ ବଚନ
ଶୁଣି ଜନ୍ମିବାରୁ ତାଙ୍କ ଆଗ୍ରହ,
ଗଲେ ୧୧କାଶ୍ୟପୀକ ଦିବଧାମ ତେଜି
କୃତାନ୍ତ ହୁତାଶ ବରୁଣ ସହ ।
୧୨ସୁଭଗମାନିନୀ ୧୩ମଘୋନୀ ଆନନ
ଦିଶିଲା ୧୪ନବାଣ ଆଲାତ ପରି,
ସୌନ୍ଦର୍ଯ୍ୟାଦି ଗୁଣେ ରଞ୍ଜିତା ଉର୍ବଶୀ
ହେଲେ ୧୫ଭୁଷ୍ମୀଂଭୂତା ଗର୍ବ ସମ୍ବରି ।
ଅରଣ୍ୟ ଭିତରେ ଆସୁଥିବା ବେଳେ
ଇଥେ ନଳରୂପ କରି ଦର୍ଶନ,
ତୃଷ୍ଣୀଭୂତ ହୋଇ ୧୬କୌଶିକ ନଳଙ୍କୁ
୧୭ଜଉଡ଼ିକ ବୋଲି କଲେ ସ୍ତବନ ।
ପ୍ରବଞ୍ଚନା ଚେଷ୍ଟା ୧୮ଶକ୍ର ଏ ସମୟେ
ବଳିତା ଆଚରେ ଭାଷିଲେ ନଳ
"ତବ ଆଗମନେ ଆମ୍ଭ ଅଭିଳାଷ
ଅବଶ୍ୟ ସଫଳ ହେବ ଚଞ୍ଚଳ ।

୮ ଅବିବାହିତା ୯ ପୃଥିବୀ ୧୦ ଇନ୍ଦ୍ର ୧୧ ପୃଥିବୀ
୧୨ସୁନ୍ଦରୀ ଅଭିମାନବତୀ ୧୩ ଶଚୀ ୧୪ ଅଙ୍ଗାର
୧୫ ନୀରବ ୧୬ ଇନ୍ଦ୍ର ୧୭ ଉଲ୍ଲୁକ ୧୮ ଇନ୍ଦ୍ର

ଅଛଇ ମୁଁ ଇନ୍ଦ୍ର ସଙ୍ଗରେ ଅନ୍ତକ
୧ଯାଦଃପତି ୨ଜ୍ୱାଳଜିହ୍ୱ ଜଟିଳ,
ଅବଲମ୍ବେ କାର୍ଯ୍ୟ କର ସମ୍ପାଦନ
୩ବମୀପୂକ ପ୍ରତି ନୋହ୍ୱ କୁଟିଳ ।"
୪ବଜ୍ରୋଜା କୌଟିଳ ବୁଝି ପାରି ନଳ
ପ୍ରୟୋଜନ ହେତୁ ବୁଝିବାରୁ ସେ,
"ଦମୟନ୍ତୀ ପାଣି ପୀଡ଼ନ ନିମିତ୍ତ
କର ଦୂତକର୍ମ ଗମି ଉଲ୍ଲାସେ ।'
ଏବଂବିଧ ଉକ୍ତି ୫ମଘବାଙ୍କ ଶୁଣି
ଉତ୍ତରିଲେ ତାଙ୍କୁ ବଚନ୍ତ୍ରମନେ ,
"ସର୍ବଜ୍ଞ କେବେ କି ଦିଅନ୍ତି ଏ ଆଜ୍ଞା
ଯେ ଯାଉଛି ଦମୟନ୍ତୀ ବରଣେ ।''
ମୂର୍ଖ ତୁଲ୍ୟ ଭ୍ରମ ମୂର୍ଖତୁଲ୍ୟ ମୁକ୍ତ
ହୁଅଇ ଯାଲାଗି ତାକୁ କହରେ ?
କ୍ଷତ୍ରିୟ କୁଳରେ କଳଙ୍କ ଲଗାଇ
କହିବ ପରାର୍ଥେ କଦା ଆଚରେ ।
ନୈଷଧ ବଚନ କଶ୍ୟପ ନନ୍ଦନ
ଶ୍ରବଣେ ଚକିତେ ପୁରୁନ୍ତ ନଳ,
ଅର୍ଥୀ ମନୋରଥ ନକର ପୂରଣ
ସ୍ୱାର୍ଥସାଧନେ କି କର କୌଶଳ ?"
କ୍ଷଣସ୍ଥାୟୀ ପ୍ରାଣ ଯିବ କେତେବେଳେ
କହି ପାରିବ କେ ଏ ଭୂମଣ୍ଡଳେ,
୬ଅମ୍ବୁପୃଷ୍ଟ ଲାଗି ଯାଚନ୍ତି ରେ ଘନ
୭ଗ୍ରାହକକୁ ଦିଏ ତୋୟ ଅଞ୍ଜଳେ ।
୮ସର୍ଗ ୯ନିସର୍ଗକୁ କେ ଲଙ୍ଘି ପାରିବ
ଦୈବାଧୀନ କ୍ରିୟା ସଦା ଜଗତ,
ଦୁଃଖମୟ ବୋଲି ଲୋକଙ୍କୁ ନମସ୍ତି
ଦାନରୁ ମାନସ କର୍ପା ବିରତ ।
ବମୀପୂକ ପ୍ରତି ଅଦୃଷ୍ଟି ରଖି
୧୦ମୁଖମୁଦ୍ରା ହେବା ଲଜ୍ଜା ଜନକ.
୧୧ଅବିତଥ ଧର୍ମ ଅଭଙ୍ଗୁର ଯଶ
ପରିହାର ସଦା ଦୁଃଖ ଦାୟକ ।

୧ ବରୁଣ ୨ ଅଗ୍ନି ୩ ଯାଚକ ୪ ଇନ୍ଦ୍ର ୫ ଇନ୍ଦ୍ର
ଅନ୍ତକ—ଯମ ୬ ଜଳ ୭ ଗ୍ରାହକ ୮ଧୂର୍ତ୍ତି ୯ପ୍ରକୃତି
୧୦ ମୌନ ୧୧ ଯଥାର୍ଥ

ବରପ୍ରାପ୍ତି ଲାଗି ଏ ପ୍ରପଞ୍ଚେ ଲୋକେ
ଉପାସନା ମୋର କରନ୍ତି ନିତି,
ଇଷ୍ଟଲାଭ ଲାଗି ମହାପ୍ରୁ ପ୍ରାର୍ଥନା
ନକର ବିଫଳ ଅର୍ଜି ଅପ୍ରୀତି" ।

## ନଳଙ୍କୁ ଇନ୍ଦ୍ରଙ୍କର ବର ପ୍ରଦାନ

"ଗୌରବେ କରି ମାଧବ ୧ବାସବଙ୍କୁ ୨ଅଭିଭବ
ଦେବାକୁ କପଟ ତବ ମାନସ ବଳେ
ହୋଇଛି ମୋହ ବିକାର ତେଣୁ ଉପୁଜେ ବିକାର
ନକର ଲବେ ବିଗ୍ରହ ମନ୍ତ୍ରିବ ଛଳେ
ନ ତେଜ ଅକ୍ଷୟ କୀରତି,
ଶୁଦ୍ଧ ୩ସ୍ୱାନ୍ତେ ସିଦ୍ଧି କର ଗମି ଝଟତି,
ହର୍ଷି ସୁରେନ୍ଦ୍ର ଏସନ "ଇଚ୍ଛାନୁସାରେ ଗମନ"
ବର ପ୍ରଦାନ ରାଜନ କାପଟ୍ୟ ପୂରଣେ,
ପ୍ରବର୍ତ୍ତାଇ ବାଟେବାଟେ କରାଇ ଦୂତ୍ୟାଙ୍ଗୀକାର
ଶିଖାଇ ଗୁପ୍ତ ସଞ୍ଚାର ସିଦ୍ଧି କରଣେ
ପଠାଇଲେ ସ୍ୱର୍ଗାଧୀନଳ
ସ୍ୱପ୍ନମତେ ହେବା ଲାଗି କାର୍ଯ୍ୟ ସଫଳ ।

## ଚତୁର୍ଥ ସର୍ଗ

## ନଳଙ୍କ ବିଦର୍ଭ ଦେଶ ଗମନ

ଦୂତକର୍ମ ଲାଗି ନଳ ବାହାରିଲେ ରଥେ,
ଅନାଇଁ ରହିଲେ ତାଙ୍କୁ ଦେବତାଏ ପଥେ ।
କଲେ ଅତିକ୍ରମ ଅବଲମ୍ବେ ବହୁଦୂର,
୪ଅମରାବତୀ ସନ୍ନିଭ ଭୀମଭୂପ ପୁର ।
କୁଣ୍ଡିନ ନଗରେ ଶେଷେ କଲେ ସେ ପ୍ରବେଶ,
୫ଅଧ୍ୱକ୍ଳାନ୍ତ ଯାତ୍ରୀଙ୍କର କ୍ଳେଶ ନାହିଁ ଲେଶ ।
ଦକ୍ଷିଣନୟନ ତାଙ୍କ ହେବାରୁ ସ୍ପନ୍ଦନ,
ମଙ୍ଗଳ ୬ଶକୁନ ବୋଲି କଲେ ସେ ଗଣନ ।

୧ ଇନ୍ଦ୍ର ୨ ଅପମାନ ୩ ଚିତ୍ତ ୪ ସ୍ୱର୍ଗ ସଦୃଶ
୫ ପଥକ୍ଳାନ୍ତ ୬ ଚିହ୍ନ

ସାରଥି ସନାଥ ରଥୁଁ ଅବତରି ବ୍ୟଗ୍ରେ,
ରାଜଭବନରେ ଦୃଷ୍ଟି ନିକ୍ଷେପିଲେ ଅଗ୍ରେ ।
ବୈଦର୍ଭୀ ଦର୍ଶନ ଇଚ୍ଛା ରଖି ହୃଦୟରେ,
ଚତୁର୍ଦ୍ଦିଗ ଦୃଷ୍ଟି ଦେଇ ଶଙ୍କିତ ଭାବରେ
ଗୁପ୍ତ ପ୍ରବେଶନ୍ତେ ଅନ୍ତଃପୁର ଅଭ୍ୟନ୍ତରେ,
[1]ଅସଂବୃତା ବାଳା କେତେ ଅବଗାହନରେ,
ମଜ୍ଜିଥିବା ଦର୍ଶନରେ ଚମତ୍କୃତ ନଳ,
ଭାବିଲେ ତା ଅଙ୍ଗନାଙ୍କ କ୍ରୀଡ଼ାର ପଲ୍ୱଳ ।
ତୀବ୍ରବେଗେ କରନ୍ତେ ନିର୍ନିମେଷ ଦୃଷ୍ଟିପାତ
ସୁରଙ୍ଗନା ବୋଲି ତାଙ୍କ ହୃଦେ ହେଲା ଜାତ ।
ଶୃଙ୍ଗାଟକ ପାଶେ ଉଭା କରନ୍ତି ଲୋକନ,
ଦମୟନ୍ତୀ କୁଞ୍ଜ କାହିଁ ନୟନେ ଆନନ ।
କକ୍ଷ୍ୟାମାନଙ୍କରେ ଧୀରେ କଲେ ସେ ପ୍ରବେଶ,
[2]ବହସ୍ତ ସେ ଦେବାଳଟି ବାଗୀଶ ସଂଦେଶ ।
ନ ଉତ୍ସୁକ ଅନୁରାଗ ବାମାକ୍ଷୀ ଦର୍ଶନେ,
ଥିଲା ଲକ୍ଷ୍ୟ ଏକମାତ୍ର ଆଦେଶ ପାଳନେ ।
କେଶପାଶ ବାନ୍ଧୁଥିବା କୌଣସି ବାମାକ୍ଷୀ,
ନିଷଧ ପ୍ରଧାନଙ୍କର ପଡ଼ିଗଲା ଆକ୍ଷି ।
ନିମୀଳିତ ନୟନରେ କିଛିକ୍ଷଣ ରହି,
[3]ବାସବ-ବାଚିକ ମୃଦୁସ୍ୱରେ ଦେଲେ କହି ।
ଅଦୃଶ୍ୟବାଣୀ ଶ୍ରବଣେ ଖର୍ଷିତା ଯୁବତୀ,
କଳ କଳ ନାଦେ ଉଠି ପଡ଼ିଲେ ଝଟତି ।
[4]ଉଟକାରିକା ମଧ୍ୟରେ ଶୁଚିଶୁଭାନାସା,
ଗୁଡ଼ିଏ ଦେଖି ଭୈମୀକି ନ ପାରିଲେ ବାରି ।
ନଳମାଦଳରେ ଲେଖି ଭୈମୀର ରୂପକୁ,
ଏଥିପୂର୍ବେ ଦେଇଥିଲା ହଂସ ନୈଷଧକୁ ।
ଉପହାର ରୂପେ ତାହା ରାଜା ଥିଲା ଗଳେ,
କାଢ଼ିଦେଲେ କଣ୍ଠଦେଶୁଁ ଦର୍ଶନ ଛଳେ ।
[5]ତାରୁଣ୍ୟପୂର୍ଣ୍ଣା ବୈଦର୍ଭୀ [6]ଅଭିଖ୍ୟା ଦର୍ଶନେ,
ନହେବ ବିସ୍ମୟ ଜାତ କେଉଁ ଜନମନେ ?
[7]ଅନାତପ ରେଖା ଦେଖି ଏବେ ନଳଙ୍କର
ରାଜଦାରବୃନ୍ଦ ରୁଣ୍ଡ ହେଲେ ନବଭର ।

[1] ଆବୃତ୍ତ ହୋଇନଥିବା [2] ବହ୍ନି [3] ଇନ୍ଦ୍ର ସଂଦେଶ ବାକ୍ୟ [4] ରାଜବାଟୀ [5] ଯୌବନ ମନୋଜ୍ଞ [6] ଶୋଭା [7] ଛାୟା ଖର୍ଷିତା—ଭୀତ

[8]ପ୍ରସୂ ପ୍ରସାଦରୁ ଭୈମୀ ପ୍ରସୂନ ହସ୍ତରେ,
ଆଲିଙ୍ଗନ ଦେଇ ଦେଖିଲେ ନଳଙ୍କୁ ପଥରେ ।
ସେଗୁଡ଼ିକ ନଳପରେ ନିକ୍ଷେପ କରନ୍ତେ,
ଭୈମୀ ବୋଲି ଜାଣିଲେ ସେ ତାହାଙ୍କୁ ଏ ଅନ୍ତେ ।
ପରସ୍ପର ଆଲିଙ୍ଗନେ ହେଲେ ପୁଲକିତ,
ଉଦନ୍ତେ ଗମିଲେ ଦାହେ ଆକାଶେ ଭ୍ରମିତ ।
[9]ଅଭ୍ରଂକଷ ପ୍ରାସାଦର [10]ପ୍ରତୋଳୀ ମଧ୍ୟରେ,
କିଛିକ୍ଷଣ କଟାଇଲେ ମଧୁ ଗଳପରେ ।
ଆକୁଳ ଦେଖି ଏହା ଭାଷିଲେ ଭୈମୀକି,
ପରିହାର କର ବୋଲି ସର୍ବ ଆର୍ତ୍ତିକି ।
ବାର୍ତ୍ତିକ ସୁଭ୍ରୂ ହୃଦୟୁ ତୁଟିଲା ବିଷାଦ,
ଲଭନ୍ତେ ନୈଷଧଙ୍କର ଅତୁଟ ପ୍ରସାଦ ।
ଦେବରାଜ ଦୂତକର୍ମ କରିବା ନିମିତ୍ତ,
ଆସିଅଛୁ ବୋଲି ନଳ ଭାଷିଲେ ତ୍ୱରିତ ।
"ତବ ଆଲିଙ୍ଗନ ଲାଗି କରନ୍ତି ଅପେକ୍ଷା
ସମୀଚୀନ ନୁହେ ଦେବ କାର୍ଯ୍ୟରେ ଉପେକ୍ଷା ।
ଇନ୍ଦ୍ର କଣ୍ଠେ ମାଳଦେଲେ ସ୍ୱୟମ୍ବର ସ୍ଥାନେ,
ହୃଷ୍ଟହେବେ ତବପ୍ରତି ଆଦିତେୟମାନେ"
ଦୁଃଶ୍ରବ ବଚନଶୁଣି ବୈଦର୍ଭୀ ନଳଙ୍କ,
ଧୈର୍ଯ୍ୟହୀନା ହୋଇ ମନେ ମଣିଲେ ଆତଙ୍କ ।
ପାତିବ୍ରତ୍ୟ ଲୋପ ଭବେ ଅତୀବ ଦୁଷ୍କୃତ,
ବୋଲି ଉତ୍ତରିଲେ ଭୈମୀ "ନହେବ ପ୍ରବୃତ୍ତ"
ନଳଙ୍କ ଠାରେ କରିଛି ଅର୍ପଣ ଶରୀର,
ଅନ୍ୟଥା ନୋହିବ କେବେ ଦମୟନ୍ତୀ ଗିର,
ଯେଉଁ ପନ୍ଥା ଦେଇଛନ୍ତି ମୋତେ ପରମାତ୍ମା,
ସେ ପଥ ଅନୁଗାମିନୀ ହେବ ଅନ୍ତରାତ୍ମା ।
[11]ତ୍ରିବର୍ଗର ପରିହାରେ କେ ସରାଗୀ ଭବେ,
ମୋକ୍ଷପ୍ରତି ଅନୁରାଗ ନାହିଁ ମୋର ଲବେ ।
ପତିବ୍ରତା ନିୟମକୁ କରିବ ମାର୍ଜିତ,
ଅବଶ୍ୟ ଜୀବନେ ହେବ ଦୁର୍ଗତି ଖଣ୍ଡିତ ।"
ନଳାନୁରାଗ ବଚନ ଶ୍ରବଣେ ଭୈମୀର,
ପ୍ରେମେ ରୋମାଞ୍ଚିତ ହେଲା ନୈଷଧ [12]ଅଙ୍ଗର ।

[8] ମାତା [9] ଅତ୍ୟୁଚ୍ଚ [10] ଅଭ୍ୟନ୍ତର ପଥ [11] ଧର୍ମ ଅର୍ଥ କାମ [12] ଶରୀର

## ନଳଙ୍କ ଗୋପନ ପ୍ରକାଶ ପାଇବା

ଦୌତ୍ୟକର୍ମେ ଯୁକ୍ତ — ନୈଷଧ ନୃପତି
ନ ପାରିଲେ ରଖି ତନୁ ଗୁପ୍ତରେ,
୧ପଲ୍ଲବ ପ୍ରକର — ଛନ୍ଦ ୨ପ୍ରାସାଦକୁ
ଟାରିଇ କ ରଖି ଆଚ୍ଛାଦନରେ ।
ବର୍ଷାକାଳେ ଯଥା — ଶିଖୀ ପୁଚ୍ଛ ଟେକ
ମହାମୋଦଭରେ ବୁଲଇ ବନେ,
ଦମୟନ୍ତୀ ତଥା — ହସିଲେ ତତ୍କ୍ଷଣେ
ପ୍ରମଦ ଜଳରେ ନଳ ଦର୍ଶନେ ।
ଲଜ୍ଜାନମ୍ରମୁଖୀ — ହୋଇ ସେ ପୁଚ୍ଛିଲେ
"ଦୂତ୍ୟବେଶ ଅନ୍ତଃପୁର ଭିତରେ,
ପଶିଲ କପରେ — କହ ନରଶ୍ରେଷ୍ଠ
ଥାଉ ଥାଉ ରକ୍ଷୀ ପ୍ରତି ଦ୍ୱାରରେ ।
କନକ କାନ୍ତିକ — ଜିଣିଥିବା ତବ
ଦିଶୁଅଛି କଳେବର ଭୁମ୍ବର,
କନ୍ଦର୍ପ ଦର୍ପକୁ — ଖର୍ବ ଅଭିଳାଷେ
ଗଢ଼ିଲେକି ଧାତା କରି ସୁନ୍ଦର ।
୩ସିତାସିତ ରୂପ — ବିବଧି ଚଷକେ
ଗତା ହୋଇଥିବା ତବ ନୟନ,
ଏବ ଜଗତରେ — ଅନୁପମ ଯୋଗୁଁ
ଦେଉଅଛି ପରାଜୟ ଖଞ୍ଜନ ।
ଲାବଣ୍ୟାତିଶୟ — ରୂପ ଦେଖି ତବ
ନଳ ବୋଲି ମନେ ହୁଏ ପ୍ରତୀତ,
ଅନୁକମ୍ପା ବହ୍ନି — ତବ ପରିଚୟ
ପ୍ରଦାନେ ହେଉ ମୋ ଚିତ୍ତ ପ୍ରଶାନ୍ତ (ପ୍ରୀତ)
ପ୍ରିୟା ବଦନରୁ — ପ୍ରିୟ ବାକ୍ୟ ଶୁଣି
କହନ୍ତି ନୈଷଧ ହରଷଭରେ,
୪ଆଗାମିନୀ ଦିନ — ମଘବାଦି ଦେବେ
ଦେଉଛନ୍ତି ଯୋଗ ସ୍ୱୟମ୍ବରରେ ।
ସେମାନଙ୍କ ମଧ୍ୟୁ — ଜଣକୁ ବରଣ
କଲେ ମୋ ଦୂତତ୍ୱ ହେବ ସଫଳ,

୧ତୃଣ ସମୂହ ୨ ଗଳା ୩ ଶୁକ୍ଳ କୃଷ୍ଣ
୪ ଆସନ୍ନା କାଳି

ମର୍ତ୍ତ୍ୟଧାମ ତ୍ୟଜି — ସ୍ୱର୍ଗେ କଲେ ବାସ
ଭବିତବ୍ୟ ତବ ହେବ ମଙ୍ଗଳ ।

## ପଞ୍ଚମ ସର୍ଗ

## ହରି ଚଉତିଶା ବାଣୀ

ଅନନ୍ତର ଭୈମୀ — ନଳ କଥା ଶୁଣି
କହିଲେ ତାଙ୍କୁ ଦୁଃଖେ,
"ସାର୍ଥକ ଉତ୍ତର — ନ ଦେଇ କପରେ
ଏକଥା ଧଇଲ ମୁଖେ ହେ ସୁଧୀ ?
ଅଗୁଁ ଜାଣି ଜାଣି ମୋର ଶୁଦ୍ଧି (ନିର୍ମଳମ୍ମା)
ନେଉଁ ନାହିଁ ଏ ଅବଳା ଋଦ୍ଧି । (ସମୃଦ୍ଧି)
ବାରିପାନେ ଯିନା — ଯିବ ପିପାସୁତା
ନୁହଇ ଦୁଗ୍ଧ ପାନରେ
କୁଳ ନାମ ତ୍ୟଜି — ଯା ଦେଲ ଉତ୍ତର
ବିଷ ହେଲା ମୋ ପକ୍ଷରେ ସେ ଉକ୍ତି
ବେଳନାହିଁ ବାଢ଼ିବାକୁ ଯୁକ୍ତି
ଅମୃତରେ କେ ପାଉଛି ମୁକ୍ତି ।
ଶ୍ରବ ସୁଧା ତୁଲ୍ୟ — ତବ କଥା ଶୁଣି
ନାମ ଶ୍ରବଣେ ଉନ୍ମୁଖ
ହୋଇ ଶ୍ରୁତିପ୍ରାନ୍ତ — ହେରିଥିଲା ଯା
ବିଲୋମ ହେଲା ଉତ୍ତର ସେ ଛଳେ
ବଜ୍ର ପଡ଼ିଲା କି ବକ୍ଷସ୍ଥଳେ !
ପତିବ୍ରତା କି ସନ୍ମାର୍ଗେ ଟଳେ !
ତୁଷ୍ଟୀମ୍ଭୂତା ହୋଇ — ରହନ୍ତେ ବୈଦର୍ଭୀ
କହନ୍ତି ନଳ ନୃପତି,
"ପ୍ରେଷ୍ୟ ହୋଇ ଆସି — ନାମ ପ୍ରକାଶିବା
ଆଣିବ ଶେଷେ ଦୁର୍ଗତି ସେ କର୍ମ
କେବେ ନୁହଇ ସଂସାର ଧର୍ମ
ଗୁଣୀ ଯିନା ଜାଣିବ ଏହା ମର୍ମ ।
ପ୍ରୟୋଜନ ସିଦ୍ଧ — ହେବ ନାହିଁ ତବ
ନାମ ଦେଲେ ପ୍ରକଟାଇ

ଅନିଚ୍ଛୁକ ହେତୁ ନ ଲେଖୁଁଛି ଜାଣ
ନକହ ଆଉ ବଳାଇ ସେ କଥା
ବଢ଼ାଇଲେ ଘୁରୁଅଛି ମଥା
ରଖିବାକୁ ହେବ ପୂର୍ବ ପ୍ରଥା (ପ୍ରସିଦ୍ଧି)
ତଥାପି ତୁମ୍ଭର ସ୍ପୃହା ଦୂର ପାଇଁ
କହିବି ସ୍ୱଳ୍ପ ବଚନ
ହିମାଂଶୁ ବଂଶର କଣ୍ଟର ଜାଣିଲେ
ସନ୍ତୁଷ୍ଟ ହେବ ତୋ ମନ ରେ ସଖି ?
ନିଜ ନାମ ଧରେ ଯିନା ଅନ୍ଧ (ଜନ)
ଭଲ ଫଳବ କ ନାମ କହି" ।
ନ କହିବା ନାମ ଚିରଂତନ ଆମ
ସାଧୁଏ ଚଳନ୍ତି ମାନି,
ଅଗ୍ରୂର ସ୍ତ୍ରୀନତା ପ୍ରକଟେ ସର୍ବଥା
ସ୍ୱନାମ ଧଇଲେ ଜ୍ଞାନୀ ରେ ବାଳା ?
[1]ଯାମନେମିକ ଦେବୁ ତୁ ମାଳ,
ହେଲେ ଅନ୍ୟଥା ଭୋଗିବୁ ଜ୍ୱାଳ" ।
ଶ୍ରବଣେଚ୍ଛା ହେତୁ ଅନୁରାଗ ଯୁକ୍ତା
ବୈଦର୍ଭୀ କହେ ଏସନ
"ବଞ୍ଚନା ବୃଭୁଷା ଶୁଣି ମୋର ମନେ
ଉପୁଜେ ନାନା ଭାବନ ହେ ଧୀର ?
ଆଗୁଁ ଅର୍ପିଛି ଏ ଶରୀର,
ଭଙ୍ଗି ପାରିବ କ ଏବେ ଗିର ।
ନଜାଣିଲେ ନାମ ମୋର ପରିଚୟ
ଦେବ କ ତୁମ୍ଭଙ୍କୁ ଏବେ,
କୁଳ ଅବଳାକ କହିଛି ସ୍ୱନାମ
ପରପୁରୁଷକୁ କେବେ ହେ ଜ୍ଞାନୀ
କହ । ହୁଅ ଏତେ ଅଭିମାନୀ
ନାମ କହିବ ମୋ କଥା ମାନି" ।
ମାଣିକ ସଦୃଶ ପ୍ରିୟା ଭାରତୀକେ
ନକର ଗ୍ରହଣ ନଳ,
"କହିଲେ ପୁନଷ୍ଟ ଦେବ ଆଲିଙ୍ଗନେ
ହୋଇବ କାର୍ଯ୍ୟ ମଙ୍ଗଳ ରେ ବାଳା ?
କର ଜୀବନର ଗଳମାଳ,
କ୍ଷୀଣ ହେବ ଯିନା ଅଙ୍ଗ ଭାଳ ।
ମୋର ଅଦକ୍ଷତା ପାଇବ ପ୍ରକାଶ
ମନ୍ତ୍ରର ଘଟିଲେ ଭର୍ମ,
ପରପ୍ରେଷ୍ୟ ହୋଇ ସ୍ୱକାର୍ଯ୍ୟ ସାଧିଲେ
ଅବଶ୍ୟ ହେବ ଅଧର୍ମ ରେ ସଖି ?
କାର୍ଯ୍ୟ କର କପଟ ନରଖି,
ପଥେ ଯିବ ବଳମ୍ବେ ଅଟକି ।
ମତିବନ୍ତ ହୋଇ ଅମାତ୍ୟ ଆଶ୍ରୟେ
କ ବୋଲିବେ ମୋତେ ଜନେ,
ଦିବୌକସ ପ୍ରତି କଲେ ଅନୁଗ୍ରହ
ଐଶ୍ୱର୍ଯ୍ୟ ଭୋଗ ଜୀବନେ ରେ ତର୍କି ?
କାଳନିପାପ କୁଥାରେ ଭକ୍ତି,
ସୁଖ ପାଅ ସେମାନଙ୍କୁ ମଣ୍ଡି ।
ଉତ୍ତର ଦେବାକୁ ଯାଇ ଦମୟନ୍ତୀ
କହିଲେ ତାଙ୍କୁ ଏପରି,
"ସୁରାଙ୍ଗନା ଆଗେ ମାନବୀକ କେବେ
ହେବ କେତେବେଳ ସରି ଏ ଭବେ
କହ । ଧାଇଁଛି ମନ ଲଘବେ
ଆଞ୍ଚ ଆଣଇ ଦେବ ଗୌରବେ ।
ଚିତ୍ତବୃତ୍ତି ମୋର ନଳନୃପ ଭିନ୍ନ
ଇତର ପୁରୁଷ ଠାରେ
ରହିଛି କ କେବେ ସର୍ବ ଅନ୍ତର୍ଯ୍ୟାମୀ
ଶଙ୍କ ବସ୍ତୁରନ୍ତୁ ବାରେ ସେ ମନ
କହ । କରୁଛି ଅବଗମନ
ଦେବ ପକ୍ଷେ କ ଏହା ଶୋଭନ ।
ମଣିଷକୁ କୃଧା କରିବା ସୁପର୍ବା
ଦେଇ ବାର୍ତ୍ତା ଅନୁଚିତ
ଆପଣା ଠେକକୁ ଗୋଡ଼ରେ ଆଡେଇ
ହେଲେ ଭୂଷଣ ନିନ୍ଦିତ ହେ ଗୁରୁ !
ଏତ ନୁହଇ ସାଧୁ ଆଚାର
ଲୋକେ ସଢ଼ୁଛି ଅବଳ ଘୃର ।
ପରିପନ୍ଥୀ ବୋଲି ଜାଣି ଜାଣି ମୋତେ
ନ ଦେଖାଇ ଅନୁଗ୍ରହ

---

[1] ଇନ୍ଦ୍ର

କଣ୍ଟକ ବାଟରେ  ପ୍ରବେଶିଲେ ହେବ
ଚରଣାମ ଦୁଃଖାବହ ହେ ଶୂର
ସାହା ସତତ ମୋର ୧ଓଙ୍କାର,
ପଣ ଜାଣନ୍ତୁ ଦେବେ ବାଳର ।
୨ଆଦିତେୟାବଳୀ  କାହିଁକି ଆସକ୍ତ
ପ୍ରତିକୂଳ ବ୍ୟବହାରେ
୩ଜାତରୂପ ଗୁଡ଼  ୪ଆରକୂଟେ ସ୍ପୃହା
କରୁଛି କଏ ସଂସାରେ ହେ ଗୁଣି ?
ଲାଗେ ଆଶ୍ଚର୍ଯ୍ୟ ଏକଥା ଶୁଣି
କଏ ରହିବ ତୃଷ୍ଣା ନ ଖୁଣ୍ଟି ।
୫ଦିଗୀଶମାନଙ୍କ  ୬ଦୁର୍ବାଚକ ସୂଚୀ
ପଡ଼ିଲା ଯାହା ଶ୍ରୁତିରେ
ମରଣ ବାଧାରୁ  ବଳି ଏ ଯାତନା
ସହିବ କଏ ମହିରେ ହେ ଦୂତ ?
କରିଥିଲି ବା କେବେ ଦୁଷ୍କୃତ
ପୋଡ଼ା କପାଳେ ସିନା ଯା ଶ୍ରୁତ ।
କୀଟ ଦଂଶନର  ଉତ୍କଟ ପୀଡ଼ାକୁ
ଦେଉଛି ତୁମ ବଚନ
ଯାହା ମୁଁ ସହିଲି  ନକର ପ୍ରଶଂସା
ଅବାଚ୍ୟରେ ଦେଲ ମନ ହେ ୮ପ୍ରେଷ୍ୟ
କଏ ଶୁଣିବ ତୁମ ଉଦ୍ଦେଶ୍ୟ
ଆଉ ନଦିଅ ହୃଦୟେ ପ୍ରେଷ (କ୍ଲେଶ)
ପ୍ରାଣ ବାୟୁ ମୋର  ଯାଉଅଛି ଉଡ଼ି
ହେବାରୁ କୃତାନ୍ତ ଶୂର
ମନ୍ତ୍ରକୁ ନଜାଣି  ସାପ ଗାତେ ହାତ
ଦେଉଅଛ ବାର ବାର ହେ ଶୂର
ଆଉ ନକର ଅନ୍ୟ ବିଚାର
ଶୁଣ ଭଷିତ ଏବେ ୮ପ୍ରେଷ୍ୟାର ।
ଯାହା ଇଚ୍ଛା ତାହା  କରନ୍ତୁ ଗୀର୍ବାଣେ
ବୋଲି ଭଷିଣ ଶେଷରେ,
"ମୋ ପାଣି ଗ୍ରହଣ  ନକଲେ ନୈଷଧ
ତେଜିବ ପରାଣ ଖରେ ସେ ଯାଇ

ଉଦବନ୍ଧନେ ଗଳା ଲଗାଇ,
ହୁତାଶନରେ ଦେହ ମିଶାଇ,
ଅବା ସଳିଳେ ନେବ ଭସାଇ ।
ଆତ୍ମହତ୍ୟା ଦୋଷ  ମହା ପାପ ବୋଲି
କହନ୍ତି ସିନା ଲୋକରେ।
ତେବେ ସାଧୁ କପାଁ  ଯାଉଛି ଅବାଟେ
୯ଜମ୍ବାଳ ଦେଖି ବାଟରେ ହେ ଦୂତ !
କହ ପଡ଼ିଥିବ ଯଦି ଶ୍ରୁତ
ଶୁଣି ଶ୍ରବ ହେବ ମୋର ପୂତ ।"
"ଆହେ ଚନ୍ଦ୍ରମୁଖି ?  ବାସବାନୁରାଗେ
ପରାଙ୍ମୁଖୀ ହେଲ ସିନା,
ମାନୁଷୀ ହୋଇ ବା  କି ସୁଖ ପାଇବ
ଦେବ ଅନୁଗ୍ରହ ବିନା ଏ ଭବେ
ମୋର ମନ ପାଉନାହିଁ ଲବେ
ତୁମ ପିତାଙ୍କୁ ପଚାର ଜବେ ।
କ୍ଷତ୍ରିୟ କୁଳରେ  ଜନ୍ମଲଭ କରି
ଜୀମୂତ ବାହନ ଗୁଢ଼,
ଅନ୍ୟ କାହାଠାରେ  ନ ବଳାଇ ଇଚ୍ଛା
ସଂଶୟ ଦିଅ ଉପାଡ଼ି ସେ ମନୁ
ବନ୍ତ କମନୀୟ ତାଙ୍କ ଧନୁ
ପୁଣି ଅନୁପମ ବଜ୍ର ହନୁ୧୦ ।
ନଳ ବିନା ଯଦି  ଅନଳେ ପ୍ରବେଶ
କରିବ ନିଜ ଇଚ୍ଛାରେ
ତେବେ ଆଗ୍ରହରେ  ତୁମକୁ ଗ୍ରହଣ
କରିବେ ବିନା ବିଚାରେ ସେ ନିଆଁ
କଥା ନସରୁ ହୁଅ ଗୁନିଆଁ
ନିନ୍ଦା କରିବ ତୋତେ ଦୁନିଆଁ ।
ଚତୁର ଅଟଥି  କରିଥିବ ଯେବେ
ପରେତରାଟଙ୍କୁ ବର,
ମରଣ ଆଶଙ୍କା  ନ ରହିବ ହୃଦେ
ଦଶିବ ତ ମନୋହର ସେ ନିତ
ତୋର ବଢ଼ିବ ଅବଶ୍ୟ ୧୧ସ୍ଥିତି
ପୂଜା କରିବ ସତତ କ୍ଷିତି ।

୧ଶିବ ୨ଦେବତା ସମୂହ ୩ସୁନା ୪ପିତଳ ୫ଦିକ୍ପାଳମାନଙ୍କର ୬ମନ୍ଦ ବଚନ ୭ଶୁଣି ୮ଦାସୀ

୯ କାଦୁଅ ୧୦ ଅସ୍ତ୍ର ୧୧ ମର୍ଯ୍ୟାଦା

ପ୍ରାପ୍ତ ନାଥଙ୍କ କେ    ନିଷେଧ କରିଛି
ଦେଖିଛ କି କେଉଁଠାରେ
ନିଶ୍ୱାସ ଧାରାକୁ    ନାସା ରନ୍ଧ୍ର ଛାଡ଼ି
ନଛାଡ଼ି ଆନନ ଦ୍ୱାରେ ରେ ସଖି !
ଅବିଶ୍ୱସିତ ବଚନେ କହି,
କରି ସ୍ୱୀକାର ସନ୍ତୋଷ ବହି ।
ଜାମ୍ବୁରସ ଛାଡ଼ି    ୧ସୁଖଦାସିତାଗ୍ର
୨କଟିଭ ଖାଏ ଯେସନ,
ଚିରତେଜ ମଣି    କାଚରେ ଆଗ୍ରହ
କରୁଛ ତୁମ୍ଭେ ତେମନ ରେ ମୂଢ଼ା !
କେତେ କାଳ ରହିବୁ ୩ଅନୂଢ଼ା ?
ମ୍ଲାନ ଦିଶିବ କ୍ରମଶଃ ୪ଚୂଡ଼ା ।
ବହୋଲ୍ଲି ବୃତ୍ତୁଷି    ଶୁଣି ମୋର ମନେ
ବିସ୍ମୟ ହେଉଛି ଜାତ,
୫ମଘବାଙ୍କ ପ୍ରତି    ଆଗ୍ରହ ଜନ୍ମିଲେ
ଅବଶ୍ୟ ମଙ୍ଗିବେ ତାତ ରେ ସତି,
ହେବ ଖଣ୍ଡନ ସବୁ ବିପତ୍ତି,
ପରେ ଲଭିବୁ ପରମ ଗତି ।
ସରସ୍ୱତୀ ହଂସ    ପ୍ରବାହ ଚହରେ
ପଡ଼ି ମୁଁ ହୁଏ ବ୍ୟାକୁଳ,
କାହାକୁ ବରିବ    ନିଜ ଛାଡ଼ି କହ
କିନ୍ତୁ ଏବେ ନ ଲୁଚାଇ ସେ ଖବର
ନିଜ ନକରି ବ୍ୟବହାରେ
ସୁଖ ଯେପରି ଅନ୍ୟ ଜନ୍ମରେ ।
ମାନବତା ଛାଡ଼ି    ଦେବତ୍ୱ ପାଇଲେ
ନୋହିବ କିଏ ଆନନ୍ଦ ?
ପୀୟୂଷରସର    ମାଧୁର୍ଯ୍ୟ ନଜାଣି
କହୁଛ ବଚନ ଛନ୍ଦ ହେ ସଖି
ମଣି ଅସାର ୬ସସାର ମଣି
ଥକି ଗଲାଣି ତୁମକୁ କହି ।
ଦୈବୀଲିପି କଣ    ପଢ଼ିବା ସହଜ
ନୁହଇ ପ୍ରପଞ୍ଚେ କେବେ

ତେଣୁ ମୋତେ ଗୁରୁ    କରି ପଠାଇଲେ
ମହେନ୍ଦ୍ରାଦି ଦେବେ ଏତେ ଏବାଣୀ
କରି ଗ୍ରହଣ ଅମର୍ତ୍ତ୍ୟ ପାଣି
କାର୍ଯ୍ୟ ନକରି କିଛି ନଜାଣି ।
ନୈଷଧ ବଚନେ    ସରନ୍ତେ ଭୀମଜା
ତୂଷ୍ଣୀ ହୋଇ କିଛିକ୍ଷଣ,
ହଂସ ଦେଇଥିବା    ରୂପ ଧରି ତାଙ୍କୁ
ତତକ୍ଷଣେ କଲେ ଅର୍ପଣ ସେ ସତୀ
"ଶୁଣ ଆଗୁ ମୁଁ ବରିଛି ପତି,
ଅନ୍ୟଠାରେ ନାହିଁ ମୋର ମତି ।
୭ଅସମ୍ଭ୍ରମ କଥା    କହି ମୋ ହୃଦୟେ
ଦିଅ ନାହିଁ ଆଉ ପୀଡ଼ା
ଏଣୁ ତେଣୁ ଶୁଣି    ବଳୁଛି ସମସ୍ତ
ଲାଗୁଅଛି ସିନା କ୍ରୀଡ଼ା ସେ ହଂସ
ଆଗେ ଜଣାଇଛି ମୋ ମାନସ,
ଯୁଗେ ଯୁଗେ ରହିଥାଉ ପଣ ।
ପରି ଇଚ୍ଛା ରୂପ    ଫଳ ଭକ୍ଷଣ କି
କେତେବେଳେ ଶୋଭନୀୟ,
ବିବେଚନା କରି    ଯାହାକୁ ବରିଛି
ପୂର୍ବରୁ ସେ ହୋଇଛି ପ୍ରିୟ ସେ ମନ
ଯେତେ ଥୋଇଲେ ତା ଆଗେ ଧନ
କିଏ କରିବ ପରିବର୍ତ୍ତନ ।
ଈପ୍ସିତ ପ୍ରିୟକୁ    ନ ପାଇଲେ ମୁହିଁ
ଶ୍ରେୟସ୍ତ ହେବ ମରଣ
ଅନ୍ତରାତ୍ମା ମୋର    ନୈଷଧଙ୍କ ଠାରେ
ପଶିଛି ପୂର୍ବୁ ଶରଣ ହେ ବିଧି ?
କରି ଦୁଃଖିନୀ କାମନା ସିଦ୍ଧି
ସେତ ଲୋଡ଼ୁନାହିଁ କେବେ ନିଧି ।
ବିଡ଼ିବାକୁ ମନ    ଦୁହାଇ ଦୁହାଇ
କହନ୍ତେ ନଳ ଛଳରେ,
ଉତ୍ତରିଲେ ଭୈମୀ    ପାଳିବ ଯା ସତ୍ୟ
କରିଛି ହଂସ ଆଗରେ ହେ ବୀର,

---

୧ଶମୀଗଛର କଣ୍ଟା (ସୁଖଦା-ଶମୀଗଛ) ସତାଗ୍ର କଣ୍ଟା
୨ଓଠ ୩ଅବିବାହିତା ୪କେଶ ୫ଇନ୍ଦ୍ର ୬ସାରବନ୍ତ

୭ ମାନହାନ

ମନ୍ଦ ମନ୍ଥର ଛନ୍ଦ ବେଣ୍ଟର,
କମ୍ପା ପଦ୍ମର ବାଗଲୁ ବାଈ ।
ପତିବ୍ରତା ରୂପ ସଙ୍କାଲେ ଜବନ
ହୋଇଛୁ ଯାଉ ମର୍ଜିତ,
ଦକ୍ପାଳମାନଙ୍କୁ ବରଣ କରିବା
ତା ପକ୍ଷେ ଅସମ୍ଭବତ ହେ ଶୁକ ?
ଶୁଣି ପାରୁଛ କି କଥା କାନ୍ତ,
ଅଛ ନ ଠେକ ବିଷଯ୍ୟାସାର ।
ଗୋଟିଏ କ୍ଷଣ ମୋ ସୁଗ୍ନ ତୁଲ୍ୟ ବୋଲି
ପ୍ରତୀତ ହୁଏ ମନରେ
ମୋ ତାପ ନାଶନେ ନଳ ବିନା ଅନ
ସମର୍ଥ କିଏ ଭବନରେ ରେ ବୃର
ପୂର୍ବ ବୁଝାଇଛୁ ବାର ବାର
ଜାଣୁନାହିଁ ତୋ ଦୟା ଥିବାର ।
ଦୃଢ଼ଧର୍ମ୍ମୀ ନଳ ନହୋଇ ବିରତ
ପଶୁରଲେ ଆଜ୍ଞ ଥରେ
କାର୍ଯ୍ୟ ବିଘାତକ ହେଲେ ଦେବାୟେ ଏ
କି କରିବୁ ସ୍ୱସ୍ନରେ ରେ ବାଳ ?
ପଛେ ଶୁଣିବୁ କେବଳ ଗାଳ
ନିନ୍ଦା କରିବେ ତୋ ଆଳ ଆଳ" ।
"ତବ ତୁଣ୍ଡୁ ଯାହା ଅପ୍ରିୟ ବଚନ
ଶୁଣିଲି ଏବେ ମୋ ଶ୍ରବ
କେଉଁ ବାଳା ଭବେ ସହିବ ଏକଥା
ଲାଘବ କର ଗୌରବ ହେ ଶୁକ
ନଳ ଅନ୍ତେ ମୋ ଗଳହାର,
ଆଉ ନକହ ଅନ୍ୟ ବେଭାର" ।
୧ଭିଲ୍ମର୍ମା ଭୈମୀ ଶୁଣି ଏ ବଚନେ
ନଳମୁଖୁଁ ବାର ବାର
ସମ୍ଭାଳି ନପାରି ନୟନ ଦ୍ୱୟରୁ
ଗଡ଼ାଇଲେ ଅଶ୍ରୁ ଧାର ସେ କାଳେ
ବୁଡ଼ିଗଲ୍ କି ଦୁକୂଳ ଝାଳେ
ଧାତା ଲେଖିଛୁ ଯାହା କପାଳେ ।

କାହିଁକରେ ପ୍ରାଣ ନ ଯାଇ ରହିଛୁ
ବୃଥା ସୁଖାଶାଲୁ ଲୋଡ଼ି
ଯେତେବେଳେ ତୋର ଆବାସ ସଦୃଶ୍ୟ
ହୃଦୟ ଯାଉଛୁ ପୋଡ଼ି ସେ ମାୟା
ବିକା ହୋଇଛୁ ଅଗୁଁ ଏ କାୟା
ଶାନ୍ତ କରିବେ ଏଥିରୁ ଛାୟା( ଦୁର୍ଗା ) ।
'ଯେଉଁ ହଂସ ମୋତେ କଲ୍ ନବେଦନ
ସେ ନାହିଁ ଦୈବ ବଶରେ
ନ ହୋଇ ନିର୍ଦ୍ଦୟ ମୋ ପରେ ଅବଶ୍ୟ
ଦେଖାଦେବ ସ୍ୱସ୍ନରେ ହେ ବୀର !
ତବ ଚରଣେ ମାରୁଛୁ ଶିର,
ହେବ ଦର୍ଶନେ ମୋ ମନ ସ୍ଥିର ।
ଆହେ, ଦେବଗଣ ହେଲେ କି ନିଦ୍ରାଣ
ନ ଶୁଭଇ ମୋ ରୋଦନ
କୃପା ଅକୂପାର କରିଦେଇ ପାନ
ନିଶ୍ଚିନ୍ତ ହେଲ୍ କି ମନ ହାମରେ(ହା+ଅମରେ)
ଡାକ ନଶୁଣ ଆର୍ତ୍ତ କାଳରେ
ଭାସି ଯାଉଛୁ ଦୁଃଖ ଧାରରେ ।
୨ଛିଦଂଘ୍ରି ଶରଣ ମୋର ମନ ବୋଲି
ଜାଣ ଆହେ କୃପାନିଧି,
ନ କରିବା ଦୟା ସ୍ତ୍ରୀର ଅବଳାକୁ
ଅଟଇ ସିନା ଅବଧି ତୋ କର୍ମ
ସଦା ଶିଖାଏ ଲୋକକୁ ଧର୍ମ
ବୁଝିପାରେ କି ନାସ୍ତିକ ମର୍ମ ।
ତବ ଶ୍ରୋତ୍ର ପଥେ ପଶିଲେ ମୋ ବାଣୀ
ଅବଶ୍ୟ ହେବ ମଙ୍ଗଳ,
ଅଜ୍ଞାନେ ବା କିଛୁ କରିଥିଲେ ଦୋଷ .
ମାର୍ଜ୍ଜନ କର ଚଞ୍ଚଳ ହେ ହର ?
ଦୟା ନକଲେ ଯିବଟି ସରି,
ତୁମ୍ଭେ ଦୁସ୍ତର ସିନ୍ଧୁର ତରି ।

୧ ବିଦୀର୍ଣ୍ଣ ହୃଦୟା

୨ ଚୂନ୍ନପାଦ

## ଷଷ୍ଠ ସର୍ଗ

### ନଳଙ୍କ ଆତ୍ମଗୋପନ ପ୍ରକାଶ

ନୈଷଧ ଆତ୍ମ ଗୋପନେ   ଜବେ କଲ ବିସର୍ଜନ
ଆଖିରୁ ଅଶ୍ରୁ ମାର୍ଜନ କଲେ ଭୈମୀର
ପ୍ରସନ୍ନ କରି ବଦନ   କହି କୋମଳ ବଚନ
ପ୍ରବୋଧନ୍ତେ ବନଚର ମାନସ ସ୍ଥିର
ହେଲା କ୍ରମେ ଖ୍ରମକାଙ୍କର
ଆଶୁ ମୁଦାଜାତ କଲେ ଚୁମ୍ବି ଅଧର ।

### ହରି ଚନ୍ଦଉଷା ବାଣୀ

ସ୍ୱରୂପ ପ୍ରକାଶ   କରି ଏତେବେଳେ
ବ୍ୟଥିତ ହୁଅନ୍ତେ ନଳ
ଭୈମକେ ହଂସ   ପୁନରପି ନଭୁଁ
ଆଗତ ହୋଇ ଚଞ୍ଚଳ ସେ ସ୍ଥଳେ
ହେଲା କ ଦୋଷ ଆତ୍ମ ପ୍ରକାଶେ
ଏବେ କାନନେ ଫେରି ଉଲ୍ଲାସେ ।
ନକର ନରଣ   ବଦଳ ଜନ୍ମାକୁ
ସୁର କାର୍ଯ୍ୟ ସିଦ୍ଧି ଲଗି,
ଉଡ଼ିଯିବ ପ୍ରାଣ   ବାୟୁ ଏହିକ୍ଷଣି
ନହେଲେ ତା ଅନୁରାଗୀ ହେ ନଳ
ହେଉ ତବ କାମନା ସଫଳ
ବଡ଼ ବଳିଷ୍ଠ ଦେବତା ଛଳ ।
ଦେବ ଅନୁରକ୍ତା   ହେବା ଲଗି ତୋତେ
କହୁଛୁ କଥା ଗର୍ବିତ,
ବୋଲି ଖ୍ରମକାକୁ   କହି ନଳ ନୃପ
ମଣିଲେ ସେ କଥା ହିତ ସେ ପରେ
ବନେ ଅଛନ୍ତି ଏବେ ଅମରେ,
ସମଦୁଃଖୀ ତୋ ମନସ୍ତାପରେ ।
ଦୂତକାର୍ଯ୍ୟ ସାରି   ନୈଷଧ ରାଜନ
ଅନ୍ତର୍ଦ୍ଧାନ ହୋଇ ତ୍ୱରେ,
ଦେବତାଙ୍କୁ ଯାଇ   ସକଳ ବୃତ୍ତାନ୍ତ
କହିଲେ ସ୍ପଷ୍ଟ ଭାବରେ ସେ ବନେ
ଶୁଣି କ୍ଷୁବ୍ଧ ହେଲେ ମନେ ମନେ
ଦେବ ମାୟା କ ବୁଝିବେ ଜନେ ?

ନଳଙ୍କ ପ୍ରସ୍ଥାଣ ପରେ   ଜମିଲେ ସେ ସ୍ୱୟମ୍ବରେ
ଦମୟନ୍ତୀ ଉଦ୍ଦେଶ୍ୟରେ ରାଜନ୍ୟାବଳୀ
୧ଦଣ୍ଡଧର ୨ଆଖଣ୍ଡଳ   ୩କୃଶାନୁ ବରୁଣ ନଳ
ଧରି ସଙ୍ଗେ ୪ନାଗଦଳ ଭଳକ ଭଳ
ବାଜୁଅଛୁ ବାଜା ସତତ,
୫ବଶ୍ୱାବସୁ ଦଶୁଅଛୁ ବିବସବତ ।
ନପାଇ ଉପାୟାନ୍ତର   ଇନ୍ଦ୍ରାଦି ଗୁରୁ ଅମର
ପ୍ରତାରଣେ ଧ୍ରୁବ୍ଧର ନଳ ରୂପରେ,
ମୁଖ ଦେଖି ଦର୍ପଣରେ   ଅତି ଉତ୍ସୁକ ମନରେ
ବସିଲେ ସଭାସ୍ଥଳରେ ଶୋଭେ କଣ୍ଠରେ
ଇନ୍ଦ୍ରମାଳ ମଣିଜାଳବ୬
କୃତ୍ରିମତା କରିବ କ କେବେ ସାର୍ଥକ ।
ଦୋଷଶୂନ୍ୟ ନଳଠାରେ   ଦୋଷାରୋପ କରିବାରେ
ହେଲା ତତ୍ପର ସଭାରେ କେହି ମହାନ୍ତ,
ଅସତ୍ୟ ରୂପ ଧାରଣେ   କରିଥିବା ଦେବଗଣ
ଦମୟନ୍ତୀକ ବରଣ କରିବା ପରି
ଜଣା ପଡୁଥିଲେ ଏକାଳେ
ଅତଥି ସତ୍କାରେ ବ୍ୟସ୍ତ କେହି ଭୂପାଳେ ।
ନିକୃଷ୍ଟ ବ୍ୟକ୍ତି ଭବରେ   ଉତ୍କୃଷ୍ଟଙ୍କ ସହିତରେ
ଅନାଇତ ସଂଘର୍ଷରେ ପ୍ରତିଷ୍ଠା ଲଗି
ଲଗିଥାଏ ନିରନ୍ତର   ହୀନତା ଦେଖି ଅନ୍ୟର
ନଭାବି ଆପଣା ପରି ଶେଷେ ବୈରାଗୀ
ଆପଣା ମହତ୍ତ୍ୱ ପଦାରେ
ପଡ଼ ହୁଏ କଳଙ୍କ ସଦା ଧରାରେ ।

### ହରି ଚଉତିଶା ବାଣୀ

ସ୍ୱୟମ୍ବରାଗତ   ରାଜନ୍ୟ ମଣ୍ଡଳୀ
୭ତ୍ରୈବିବର୍ଗ ବର୍ଗ ସଙ୍ଗରେ,
ମେ ଯାହା ଆସନେ   ବସିଛନ୍ତି ଧୀରେ
ଦମୟନ୍ତୀ ଉଦ୍ଦେଶ୍ୟରେ ସେ କାଳେ
କେବା ନଳରୂପ ଦେଖି ଭାଳେ,
ଲେଖା ଅଛୁ ଯା ଯାଉ କପାଳେ ।

---

୧ ଯମ ୨ ଇନ୍ଦ୍ର ୩ ଅଗ୍ନି ୪ ହସ୍ତୀ ୫ ଗନ୍ଧର୍ବ
୬ ସମୁଦ୍ର ୭ ଦେବତାମାନେ

କୁଳ ଗୋତ୍ର ଗ୍ରାମ ଜାଣିବା ନିମିତ୍ତ
ରଥାଙ୍ଗ ପାଣି ସ୍ମରନ୍ତେ,
ଦ୍ୱାପର ହୋଇ ତାଙ୍କ ସରସ୍ୱତୀ
ପଠାଇ ଥିଲେ ଏ ଅନ୍ତେ ସେ ହରି
ଜନେ ଜନନେ ଯା ନାମ ଧରି
ଭବ ସାଗରୁ ଯାଆନ୍ତି ତରି ।
ଉପସ୍ଥିତ ହୋଇ ସ୍ୱଭାବେ ତକ୍ଷଣେ
ଭେଟିଣ ଭୀମ ରାଜାଙ୍କୁ ।
"ବିଷ୍ଣୁଙ୍କ ଆଦେଶେ ଆସିଅଛୁ ମୁହିଁ
କୁଳ ଗୋତ୍ର କହିବାକୁ ସେ ବାଣୀ
ଘେନି ଆତ୍ମଜା ରାଜନ୍ୟ ଠାଣି
ମୁଦ୍ରିତ କଲେ ସକଳ ଜାଣି ।
ଯଦୁକୁଳଙ୍କ ମଧ୍ୟରେ ଆସିଲେ
ଛବି ଦର୍ଶି ସଭା ସ୍ଥଳକୁ
ନୀଳକଣ୍ଠ ନଗ୍ନ ଖଚିତ ଭୂଷଣେ
ଲଜ୍ଜି ଆତ୍ମଜା କଣ୍ଠକୁ ସେ ଜବେ
ଯାର ଗୁଣରେ ମୁଗ୍ଧ ମାନବେ
ଯାର ମାଧୁରୀ ଅନୁଭବେ ।
ନମ୍ରାନନା ହୋଇ କୁମାର ମାନଙ୍କୁ
କୁରନ୍ତେ କଟାକ୍ଷ ପାତ,
ଦେଖି ତା ୧ଅଜିର ହେଲେ ପୁଲକିତ
୨ଅଜିରସ୍ଥ ନୃପବ୍ରାତ ସେ ବେଳେ
ଦେଖି ନଥିଲେ ଏ ରୂପ କେବେ
ଅବା ଚିନ୍ତିଲେ ୩ସ୍ୱପନେ କେବେ ?
ନଟସ୍ୟା ହୋଇ ଦମୟନ୍ତୀଙ୍କର
ଦକ୍ଷିଣପାର୍ଶ୍ୱେ ରହି
ରାଜନ୍ୟମାନଙ୍କ କୁଳ ଗୋତ୍ର ନାମ
ଯାଉଥିଲେ କହି କହି ସେ ଧୀରେ,
ମଙ୍ଗୁ ନଥିଲେ ବାନା ସେଥିରେ
ମନ ସ୍ଥିର ରଖି ଅଚରେ ।
ଦମୟନ୍ତୀଙ୍କର ଦେବତାଙ୍କଠାରେ
ସେ ଭକ୍ତିଭାବ ନ ଥିବାରୁ,

ଜାଣିପାରି ବ୍ୟଗ୍ରେ ଯାଆନ୍ତି ଆଗକୁ
ଭକ୍ତି କରି ନମସ୍କାର ସେ ବାଣୀ,
କହି ଦେଲେ ବର ଗୃହିଣୀ,
ନଳ ପାଶକୁ ନେଲ କି ଠାଣି ।
ରାଜପୁତ୍ରଙ୍କର ହେଲେ ପରିଚୟ
ଗୋଟିକ ପରେ ଗୋଟିଏ
ମୁହଁ ମୋଡ଼ିଦେଇ ଭୈମୀ ଅଗ୍ରସର
ପଛରେ ତାଙ୍କ ସଖୀଏ ସେ ଯାଇ,
ଇଚ୍ଛାମତରେ ବର ସେ ପାଇ
କହେ ଦଅନ୍ତି ମୁହଁ ଶୁଖାଇ ।
କଠୋର ପ୍ରସ୍ଥିତି ହୁଅଇ କଷ୍ଟକ
ଭଙ୍ଗ୍ୟ ହେଲେ ପ୍ରତିକୂଳ,
ଜାଣି ଜାଣି କହ । ଭୁକ୍ତାକୁ ମଣିଷ
ଅର୍ଥ ବଚ୍ଚନ ଏ ଭବେ
ହୋଇ ପ୍ରବୃତ୍ତ ବୃଥା ଉତ୍ସବେ
ତହିଁ ଉପକାର ନାହିଁ ଲଭେ ।
ସର୍ବଜନ ପୂଜ୍ୟ ଶବ୍ଦ ସନ୍ତାପକ
ଅନ୍ୟ ଜଣଙ୍କୁ ଦେଖାଇ,
ଦଅନ୍ତେ ବାଗ୍ଦେବୀ ନତାନନା କରି
ହେଲେ ସେ ମୁଣ୍ଡ ବୁଲାଇ ସେ ଖ୍ୟରେ
ମନ ଲଗିଛି ନଳ ପାଶରେ
ଭ୍ରମୁ ଅଛନ୍ତି ସିନା ବ୍ୟାଜରେ ।
ଦେଖି ଓଜଣାକୀ ନେପାଳ ଭୂପାଳ
ଠାରିଦେଇ ତତ୍କ୍ଷଣେ ବାଣୀ
କହିଲେ ଆଦରେ ଏ ଗୁଣବନ୍ତଙ୍କ
ଗ୍ରହଣ କରିଲେ ପାଣି ସେ ଏବେ
ଯାହା ଲୋଡ଼ିବୁ ମିଳିବ ସେବେ
ଦୁଃଖ ନଥିବ ଜୀବନେ କେବେ ।
ଏପରି ସମୟେ ପାଶେ ପାଶେ ଥିବା
ହାସ୍ୟ ରସିକା ସଖୀଟେ,
ବହୁ ମୂଲ୍ୟ ରତ୍ନ ହୋଇଛି ଖଚିତ
ଦେଖ ଏହାଙ୍କ କଣ୍ଠେ ସେ ବ୍ୟଙ୍ଗ
କଲ ରୂପକୁ ନୁହ ଅମଙ୍ଗ,
ଥିଲେ ଭାଗ୍ୟରେ ଲୋଡ଼ିବ ସଙ୍ଗ ।

୧ ଶଙ୍ଖ ୨ ପ୍ରାଙ୍ଗଣ ୩ ଅଳଙ୍କାର

ବଦନ ଚନ୍ଦ୍ରମା                    କର ଦମୟନ୍ତୀ
ସେଠାରୁ ଗମନ୍ତେ ତ୍ୱରେ,
୧ବେଦାଗ୍ରଣୀ ତାହା                    ଜାଣିପାର ଗଲେ
ଆଗକୁ ଧୀରେ ଲାଜରେ ସେ ଲାଗିଲେ
ଦେଖି ବିଷଣ୍ଣ ହେଲେ ଭୂପାଳେ
ପିକ ସାକ୍ଷୀକ ଉତ୍ତାଳ ତାଳେ ।
ଏ ଅନ୍ତେ ଜନୈକ                    ବୟସ୍ୟା କହିଲା
ଏହାର ନୟନ ଭଙ୍ଗି,
ଦେଉଛି ଜଣାଇ                    ଅନ୍ୟ ଯୁବା ଠାରେ
ପୂର୍ବରୁ ଯାଇଛି ମନ ଏ ନାରୀ
ତୁମେ ହେଉଛ ତୁଚ୍ଛାକୁ ଧାରି
ବୁଝି ଏହାକୁ ଏବେ ପରିହରି ।
ନଳାକୃତ ପର                    ବସିଥିଲେ ଛଳେ
ଇନ୍ଦ୍ର ଅଗ୍ନି ଯମ ବରୁଣ,
ଚତୁର ବୈଦର୍ଭୀ,                    ଲକ୍ଷ୍ମୀ ଦେଇ ଚକ୍ଷେ
ଦେଖାଏ ହୋଇ କରୁଣ ହେ ରୂପ
ମୁଁ ତ ବରଛି ନୈଷଧ ନୃପ
ଦେବ ସେବୁଛି ପ୍ରଦାନ ଧୂପ ।

## ସପ୍ତମ ସର୍ଗ

ଦେବାଧୀଶ ପାର୍ଶ୍ୱେ ଯାଇ କହିଲେ ବରଦା,
ଅବହେଳନ କନ୍ୟାର ଅଟନ୍ତି ଏ ସଦା ।
୨ଇଭାନନ ୩ଦାନବାର ଯାହାର ସହାୟ,
୪ଣୀଗଣେ ଜିଣିବାକୁ ନାହିଁ କା ଉପାୟ ।
ସହସ୍ର ନେତ୍ର ଲୁଚାଇ ଗୋପନ ଆଚରେ,
ବସିଛନ୍ତି ସଭା ମଧ୍ୟେ ନିଜ ରୂପ ଧରି ।
ଅନୁରାଗେ ଝଲେକ ତାଙ୍କ ପାର୍ଶ୍ୱ ବା ଚରଣ,
ନ ରହିଲେ କିମ୍ପା ଲେଖି ଜଣାନ୍ତି ଧାରଣ ।
ତଦନ୍ତେ ପବନ ସଖା ବହ୍ନିକୁ ହସ୍ତରେ,
ନର୍ଦ୍ଦେଶ କଲେ ଭାରତୀ ଅତ୍ୟନ୍ତ ସ୍ୱରେ ।
ଜଗତଲୋକେ ଦୀପ୍ତିମାନ ଅଟନ୍ତି ପାବକ,
ନୁହନ୍ତି ଛାୟା ସର କେବେ କୌଣସି ଯୁବକ ।

୫ଉଷଉବୁଧ ନୈଷଧ ମଧ୍ୟରେ ଏକାଳେ,
ତାରତମ୍ୟ ନ ଥିବାରୁ ଦମୟନ୍ତୀ ଭାଳେ ।
ଘଟିବ ଅବଶ୍ୟ ଯାହା ବିଧାତା ଲିଖନ,
କି ହେବ କଲେ ମଣିଷ ତୁଚ୍ଛାକୁ ଭାବନ ।
ସନ୍ଦେହାତନୀ ଭୂମିଜା ଜଳ ବା ଅନଳ,
ବାହୁଡ଼ି ନପାର ଆଗକୁ ଗମିଲେ ନିଶ୍ଚଳ ।
ସକଳ ଜୀବର ହନ୍ତା ଅନ୍ତକ ଦୂରରେ,
ବସିଥିବାରୁ ଦେଖିଲେ ଲଳନା ଭୁକ୍ତରେ ।
ଛଦ୍ମବେଶୀ ବୋଲି ଭାବ ଦମୟନ୍ତୀ ଖରେ,
ନ ହୋଇ ରାଜ ତେଜକଲେ ତାଙ୍କୁ ଅନାଦରେ ।
ଏ ଅନ୍ତେ ପାଦପତକେ ଲକ୍ଷ କରି ବାଣୀ,
ବନ୍ତୁଥିଲେ ଧୀରେ ଧୀରେ ଯେତେ ଥିଲେ ଜାଣି ।
ସଖି ସାଧ୍ୱୀ ବରିଅଛି ଆଗରୁ ଯାହାକୁ,
ସେ କି କେବେ ଶୁଣିଥାଏ ଅନ୍ୟର କଥାକୁ ।
ମଦ୍ଧ୍ୟମହେନ୍ଦ୍ରେ ନଳକୁ ଦେଖି ସରସ୍ୱତୀ,
ଭାବ ଭାବ ଭୈମୀ ଆଶା ହେବ ଫଳବତୀ ।
"ବତ୍ସାଇ ଦର୍ଶନ କର ଦେଖ ଦେଖ ବୋଲି,
ହର୍ଷ ମନ ପାଉଛିକି କହ ହୃଦ ଖୋଲି ।
ବଦାନ୍ୟ ନୈଷଧ ନୃପ ବସିଛନ୍ତି ଦେଖ,
ଯାହାଙ୍କର ଚଉଦର୍ଗେ ବଢ଼ିଅଛି ଟେକ ।
ସନ୍ତତ ପ୍ରଜାବତ୍ସଳ ପୁଣି ସେ ଉଦାର,
ରଖନ୍ତି ତାଙ୍କଠାରେ ନକର ବିସ୍ତର ।
ପ୍ରସରିଛି ଯା ଔଜ୍ଜ୍ୱଲ୍ୟ ଦିଗ ଦିଗନ୍ତରେ,
ନିରଖ ଅନ୍ୟ ଭାବନା କରୁନାହିଁ ଅନ୍ତରେ ।
ନୈଷଧ ପ୍ରାର୍ଥିନୀ ବୋଲି ଶୁଣିଅଛି ଆଗେ,
ପିନ୍ଧାଅ ଗଳେ ତାଙ୍କର ମାଳା ଅନୁରାଗେ ।
ପ୍ରଥମୁ ନଚୁଁଥିସ୍ଥାନେ ଆସିତ ପୂରୁଷେ,
ତୁମ୍ଭ ଅଭିମତ ନଳ ନୁହନ୍ତି ପୌରୁଷେ ।
ବୈଷମ୍ୟ ନଜାଣି ପାରସାଧ୍ୱୀ ଦମୟନ୍ତୀ,
ସଙ୍କୁଚିତ ହୋଇ ଏଣେ ବିଷଣ୍ଣେ ଚିନ୍ତନ୍ତି ।
ଦିବୌକସ କୁହଟ ଭାବ, କେ ବୁଝିବ ଲବେ,
ତୁଚ୍ଛାକୁ ମଣିଷ ସିନା ମାତୁଛି ଗରବେ ।

୧ ସରସ୍ୱତୀ ୨ ଗଣେଶ ୩ ବିଷ୍ଣୁ ୪ ଦେବତା

୫ ଅଗ୍ନି କାନ୍ତିର—ଜ୍ୟୋତି

ଯାହା ଲେଖିଅଛୁ ଧାତା ଲଲାଟ ପଟରେ,
ଅନ୍ୟଥା କରିବ କିଏ ଧରଣୀ ମଧ୍ୟରେ ।
ଦେଖି ଭ୍ରମ ନଳନଳକୁ ଅଟଇ ତାପକ,
ରତିଚାପ ତା' ପକ୍ଷରେ ଆନନ୍ଦଦାୟକ ।
ଅସମ୍ମତ ପଣ୍ଡ ଏବେ କଲେ ମୁଁ ବରଣ,
ସାରା ଜୀବନଟା ମୋର ହେବ ଅକାରଣ ।

## ଦମୟନ୍ତୀଙ୍କ ନଳ ଚିହ୍ନଟ

ନଳଙ୍କୁ ନିର୍ଣ୍ଣୟ କରିବା ଲାଗି ଭୀମଜା ସତୀ,
ଦେବ ଆରାଧନା ନିମିତ୍ତ ଯୋଗାଡ଼କଲେ ଝଟତି ।
ଜଳପୁଷ୍ପ ଧୂପ ଗନ୍ଧରେ ନିର୍ଜରଙ୍କ ଅର୍ଚ୍ଚନା,
କଲେ ବହୁକ୍ଷଣ ବିଶ୍ୱାସେ ଅନନ୍ୟ ଦୃଢ଼ ସାଧନା ।
ସଭାସଦବର୍ଗ ଅନାଇଁ ରହିଥାନ୍ତି ବସିଣ ତେ,
ଇନ୍ଦ୍ରାଦି ଦେବତା ପ୍ରସନ୍ନ ହେଲେ ସନ୍ତୁଷ୍ଟ ଚିତ୍ତେ
ନଳରୂପଧାରୀ ଅମରେ ଯେଝା ରୂପ ଧଇଲେ,
ପଞ୍ଚମ ସ୍ଥାନରେ ନୈଷଧ ଉପବିଷ୍ଟ ଦେଖିଲେ ।
ନୟନ ନିମେଷ ପାତକୁ ଘର୍ମୋଦକ ଶରୀର,
ଦେଖି ନଳ ବୋଲି ଏମାନେ କଲେ ତକ୍ଷଣେ ସ୍ଥିର ।
ସତ୍ୟ ନଳ ବୋଲି ନିଶ୍ଚୟ କରି ବୈଦର୍ଭୀ ସତୀ
ବରଣ ମାଳକୁ ଗଳାରେ ଦେବାଲାଗି ଝଟତି,
ଗଲାବେଳେ ଲଜ୍ଜା ପଛରୁ କଲା ତାଙ୍କୁ ବାରଣ,
ଥକଗଲା ବାଳା ଲଭିଲେ ନ କରିଣ ଅର୍ପଣ ।
ହିପାବନ୍ତୀ ଭୈମୀ କଣ୍ଠରେ ରୁଦ୍ଧ ନଳ ବଦନ,
ମାଳା ଅର୍ପିବାକୁ ବାଣୀକ ଅନୁରୋଧ ବଚନ ।
କହନ୍ତେ କୌତୁକେ ବାଗ୍‌ଦେବୀ ନେଲେଣିହସମୀପ
ତା ଦର୍ଶନେ ଲଜ୍ଜା ପାଇଲା ଏବେ ନିଷଧାଧିପ ।
ନିର୍ବାଧରେ ଗତ କରିଛୁ ଆଗୁଁ ମାନସ ଯାର,
ଶୁଣିବ କପରି ସମ୍ପ୍ରତି ସେହୁ କଥା କାହାର ।
ସହସା ବୈଦର୍ଭୀ ଲେଉଟି ଆସି ନଳଙ୍କ ପାଶେ,
ଲମ୍ବାଇ ଦେଲେସେ ମାଳକୁ ତାଙ୍କ କଣ୍ଠେ ଉଲ୍ଲାସେ
ଦେବଙ୍କ ଅନୁଜ୍ଞା ନପାଇ ମାଳ ନଳଙ୍କୁ ଦେଇ,
କଲି ଦୋଷବୋଲି ଭାଷିଣ ବାଣୀ ଭୈମୀକନେଇ
ଅମରମାନଙ୍କ ପାଶକୁ ଗୋଟି ଗୋଟିକ ପରେ,
ପ୍ରଣାମ କରାଇ ଆଣିଲେ ତାଙ୍କୁ ଅତି ଆଦରେ ।

ମନ୍ଦାକ୍ଷ ନିଷ୍ପନ୍ଦା ଭୀମଜା ଅନ୍ୟ ମାଳ ଅଣାଇ,
ବସୁଧା ସୁଧାଂଶୁ ନୈଷଧ ଗଳେ ଦେଲେ ଗଳାଇ
ଉଲ୍ଲୁ ଧ୍ୱନିରେ ସଖୀଏ ଦେଲେ କମ୍ପାଇଧରା,
ପ୍ରସୂନ ବର୍ଷଣ କରିଲେ ସ୍ୱର୍ଗୁ ମୁଦେ ଅପ୍‌ସରା ।
ରୋମାଞ୍ଚିତ ହେଲା ଶରୀର ଏବେ ବୈଦର୍ଭୀଙ୍କର,
ଲେଉଟି ଯିବାକୁ ତତ୍ପର ଏଣେ ଦେବନିକର ।
ଛଳଛଦ୍ମ ଦୂତ କରମ କରିଥିବାରୁ ନଳ,
ଶୁଭାଶିଷ ଦେଲେ ବାସବ ମୁଦେ ହୋଇ ବିହ୍ୱଳ ।
ଅମୃତ ସଦୃଶ ସୁସ୍ୱାଦୁ ହେବ ତବ ରନ୍ଧନ,
ବୋଲି ବର ଦେଲେ ହରଷେ ଆସି ହବ୍ୟବାହନ
"ଦଣ୍ଡଧରପାଙ୍କରେ ତୁମ୍ଭର ରତି ଧର୍ମରୁ ଲଭେ,
ଭ୍ରଷ୍ଟନୋହୁ ବୋଲି ପରେପ୍ରେତ ଭାଷିଲେ ଜବେ"
"ଏଅନ୍ତେ ୧ପ୍ରଚେତା କହିଲେ ତୁମ୍ଭ ହାତ ବାଜିଲେ
କୁସୁମ ଅମ୍ଳାନ ରହିବ ଯେତେବେଳେ ଦେଖିଲେ"
ପୁଣ୍ୟଶ୍ଳୋକ ବୋଲି ସଭିଏ ଘୋଷୁଥିବେପ୍ରାତଃରେ
ବୋଲି ସରସ୍ୱତୀ ଭାଷିଲେ ଶେଷେ ଯିବା କାଳରେ
ଇନ୍ଦ୍ରାଦି ଦେବତା ସକଳ ସରସ୍ୱତୀ ସଙ୍ଗରେ,
ଡାକି ବୈଦର୍ଭୀକି କହିଲେ ପାତିବ୍ରତ୍ୟ ବଳରେ ।
ଯେତେବେଳେ ଯେଉଁ ଆକୃତି ତୁମ୍ଭେ ମନାସୁ ଥିବ,
ସେତେବେଳେ ସେହି ରୂପକୁ ଅକ୍ଳେଶରେ ପାଇବ ।
ଅନନ୍ତର ଦେବ ଇନ୍ଦ୍ରାଦି ଫେରିଗଲେ ସ୍ୱର୍ଗକୁ,
ଲେଉଟିଲେ ପଛେ ତାଙ୍କର ବାଣୀ ନିଜ ଧାମକୁ ।
ନିର୍ନିମେଷ ନେତ୍ରେ ନାରୀଏ କରି ଦର୍ଶନ ନଳ,
ହେଲେ କୁହାକୋହି ଭୈମୀର ପୂର୍ବ ତପସ୍ୟା ଫଳ ।
ବରିବାରୁ ଭୈମୀ ନଳଙ୍କୁ ଚରିତେକ ଦୈବତ,
ସ୍ୱୟମ୍ବରଗତ ରାଜାଏ ଖୁସି ହେଲେ ତାବତ ।

## ପାଣିଗ୍ରହଣ

କନ୍ୟା ଅନୁରୂପ ବର ବରଣରେ
ଆନନ୍ଦେ ଭୀମ ରାଜନ,
ପାଣିଗ୍ରହଣର ସକଳ ସାମଗ୍ରୀ
ତତ୍‌ କ୍ଷଣେ କଲେ ଆୟୋଜନ ।

୧ ବରୁଣ

ବୈଦର୍ଭୀ ପ୍ରଦତ୍ତ ବରଣ ୧ସ୍ରଜକୁ
ଲମ୍ବାଇ ନଳ କଣ୍ଠରେ,
ବନ୍ଧୁ-ବାନ୍ଧବ-୨ବ୍ରଜେ ଅତ୍ୟଧିକ ବସୁ
ଶିବିରକୁ ଗଲେ ତ୍ୱରେ ।
ଜ୍ୟୋତିର୍ବିଦମାନେ ଅନନ୍ତର ଆସି
ଶୁଭ ଲଗ୍ନ କରି ସ୍ଥିର,
ନୈଷଧାଗମନ ପ୍ରତୀକ୍ଷାରେ ସର୍ବେ
ହୋଇଥିଲେ ବା ଅସ୍ଥିର ।
ଯାଚକମାନଙ୍କ ମନୋରଥ ସିଦ୍ଧି
କରିବା ନିମିତ୍ତ ନଳ,
ବହୁଧନ ରତ୍ନ ଆଣିଥିଲେ ସଙ୍ଗେ
ନ ବର୍ତ୍ତିର ମନେ ଛଳ ।
ଗୁରୁପୁରୋହିତ ବ୍ରାହ୍ମଣମାନଙ୍କୁ
ନମସ୍କାର କରି କରି,
ମହା ସମାରୋହେ ଆସୁଥାନ୍ତି ଧୀରେ
ସଙ୍ଗେ ଗଜବାଜୀ ଧରି ।
ଜନମୁଖରିତ ନାନାବିଧ ବାଦ୍ୟ
ନାଦେ କୁଣ୍ଡିନ ନଗର,
କମ୍ପି ଦେଉଥିଲା ପ୍ରତିଧ୍ୱନି ଛଳେ
ଦମୟନ୍ତୀ ସ୍ୱୟମ୍ବର ।
ଆସିବାରୁ ବର ବରଯାତ୍ରୀ ବର୍ଗ
ଯାଗ୍ରେଣି ଆଣି ରାଜନ,
ସତ୍କାର କରିଣ ବସାଇଲେ ନେଇ
ପ୍ରଧାନ ଦିବ୍ୟ ଆସନ ।
ନେତ୍ରପ୍ରୀତି ଜାତ କରୁଥିଲେ ମଧ
ଆଗତ ଅତିଥିଙ୍କର,
ମନେ ଲଜ୍ଜାବୋଧ ପ୍ରବେଶିଲା ଦେଖି
ସ୍ୱୟମ୍ବର ଆଡ଼ମ୍ବର ।

## ବିବାହ

ବରକନ୍ୟା ନେଇ ପ୍ରବେଶ କରି ଭୀମ ହର୍ମ୍ୟରେ,
ପରିଣୟ ଲାଗି ବିତର୍ଦ୍ଧୀ ପରେ ବସିଲେ ଖରେ ।
ଡକାଇ ଆଣିଲେ ଆଗତ ନୃପଗଣଙ୍କୁ ତଦା,
ବୀକ୍ଷଣ ଆଶାରେ ଜମିଲେ ଆସି ବହୁ ପ୍ରମଦା ।
ଉଲ୍ଲୁଳି ନିକ୍ୱଣେ କମ୍ବୁ ଏବେ ବିଦର୍ଭ ୩ଅଭ୍ର,
ନୃପତିଏ ଦେଉଥାନ୍ତି ଆଶୀର୍ବାଦ ୪ଅଦଭ୍ର ।
ବେଦସୂକ୍ତମାନ ବୋଲନ୍ତି ସମବେତ ପଣ୍ଡିତେ,
ପ୍ରବେଶିବା ଭଳି ସେତକ ବରକନ୍ୟାଙ୍କ ଚିତ୍ତେ ।
ବରବଧୂ କର ବନ୍ଧନ କଲେ କର୍କଶ ଦର୍ଭେ,
ହୁଳହୁଳି ଦେଲେ ତାହାତ ଜମି ବନିତା ସର୍ବେ ।
ବାଜିକୁମ୍ଭୀସହ ଯୌତୁକ ଶାତକୁମ୍ଭ ବିପୁଳ,
ଦିଅନ୍ତେ ଆଶ୍ଚର୍ଯ୍ୟ ମଣିଲେ ଦେଖି ରାଜନକୁଳ ।
"ପାଷାଣ ସଦୃଶ ସୁଦୃଢ଼ା' ହୁଅ ବୋଲି ଭୈମୀକି,
କହନ୍ତେ ନୈଷଧ ଗଲେ ସେ ଗ୍ରାଭ୍ରେ ଜବେ ଦେଖାଇ ।
କରିବାରୁ ତାଙ୍କୁ ତୁଳନା ପୁନ ଅଶ୍ମ ସଙ୍ଗରେ,
ନୈଷଧ ପାଶରୁ କି ଅବା ପଳାଇଲେ ଲାଜରେ ।
ପୁରୋହିତ ଯାଇ ନିରତେ ଠାଣି ଆଣନ୍ତେ ତାଙ୍କୁ,
ଦେଖାଇଲେ ନଳ ଗଗନେ ଅରୁନ୍ଧତୀ ତାଙ୍କୁ ।
ଯେହେତୁ ବିବାହ ଶେଷରେ ଅରୁନ୍ଧତୀ ଦର୍ଶନ,
ବରବଧୂଙ୍କର ମଙ୍ଗଳ ବୋଲି ବେଦ ବଚନ ।
କର୍ମ ଅନୁଷ୍ଠାନ ଶେଷରେ ପୁରନ୍ଧ୍ରୀଏ ଖୁସିରେ,
ପରିହାସ ଛଳେ ଭାଷିଲେ ୧ସୁଭଗା ଏ ମନ୍ତ୍ରରେ ।
ଭୀମସୁତେ ନଳ ଆନନ୍ଦେ ପାଣିଦାନ କରାଇ,
ଗଲେ ଭୈମୀସହ ସ୍ୱଦେଶେ ସମସ୍ତଙ୍କୁ କହାଇ ।
ଗଲାବେଳେ ଭୀମ ପୁତ୍ରୀକି କହିଥିଲେ ଏମନ୍ତ,
"ପତିଠାରେ ମତି ରଖିବୁ ତୁଷ୍ଟ ହେବେ ସେମନ୍ତ ।
ହୋଇଛନ୍ତି ପତି ତୋହର ସର୍ବଧର୍ମ ଜୀବନେ,
ନ କରିବୁ ହେଳା କଦାପି ତାଙ୍କ ପଦ ସେବନେ ।
କେବେହେଲେ ତାଙ୍କ ମନରେ ଦେବୁନାହିଁ ବେଦନା
ସମ୍ପୁଷ୍ଟି ଭାବକୁ ନଷ୍ଟାନ୍ତ ବୃଥା ହୋଇ କୋଣନା ।
ହୋଇଛନ୍ତି ପତି ସତତ ୨ଅନାପଦ ଶରୀର,
ବିବାହାନନ୍ତର ଜନକ କହୁ ନୁହେ ସୁଧୀର ।
ସର୍ବସ୍ୱ ଅଟନ୍ତି ବଲ୍ଲଭ ତୋର ଜୀବନେ ଭବେ,
ଅର୍ଜିବୁ ଦୃଢ଼ଣ ତାଙ୍କର କଥା ଭାଙ୍ଗିଲେ ଲଭେ ।

ବାଜି-ଅଶ୍ୱ, କୁମ୍ଭୀ-ହସ୍ତୀ, ଶାତକୁମ୍ଭ-ସୁନା,
ପୁରନ୍ଧ୍ରୀ-ସଖୀ, ୧ ମାଳ ୨ ଯୂଥ ୩ଆକାଶ ୪ ଅଧିକ

୧ ସୁନ୍ଦରୀ ୨ ସର୍ବ ସମ୍ପଦ

ଗୋସ ନିବୃତ୍ତିରୁ ସକଳ ଘଟେ ନିବୃତ୍ତି ସିନା,
ଗତି ନାହିଁ କେବେ ଚହ୍ରୀର ଭବେ ଭରତା ବିନା" ।
୧ଉତ୍କଳକାକୁଳ ଅମାତ୍ୟେ ଗୃହିଁଥିଲେ ପଥକୁ,
ପୁର ଉପକଣ୍ଠେ ପାଛୋଟି ନେଲେ ଭୈମୀନଳଙ୍କୁ ।
ଅନନ୍ତର ପୁରବାସିନୀ କୁମାରୀଏ ମାର୍ଗରେ,
ଲାଜାନିକ୍ଷେପିଲେ କୌତୁକେ ମାତି ପ୍ରମୋଦଭରେ ।
ସୌଧ ବାତାୟନ ବିବର ମାର୍ଗେ ପୁରନ୍ଧ୍ରୀଗଣ,
ନିଷେଧ ନୃପଙ୍କ ମୁଖେନ୍ଦୁ କରିଥିଲେ ଈକ୍ଷଣ ।

## ସପ୍ତମ ସର୍ଗ
## ଦେବତାମାନଙ୍କ ପ୍ରତ୍ୟାବର୍ତ୍ତନ

ସ୍ୱୟମ୍ବର ଶେଷେ ଶକ୍ରାଦି ଦୈବତ
ଲେଉଟିବା ବେଳେ ରଥେ,
କଳିଲ ଦର୍ଶନ ବ୍ୟଗ୍ରେ ଆସୁଥିବା
ଲୋଭ କ୍ରୋଧ ମୋହ ପଥେ ।
ଇନ୍ଦ୍ରିୟବର୍ଗର ସଦ୍‌ବୃତ୍ତି ନିରୋଧେ
ପାରଙ୍ଗମ ଯେଉଁମାନେ,
ଅଜ୍ଞତା ଦୋଷରୁ ପଥ୍ୟ ତଥ୍ୟ ଅବା
ନପଡ଼େ ଯାହାଙ୍କ କାନେ ।
ଶାସ୍ତ୍ରଜ୍ଞମାନଙ୍କୁ ମୂର୍ଖ କରିଦିଏ
ସଦା ଯାହାଙ୍କର ଯୁକ୍ତି,
ଶୁଣିଲେ ଦୈବତ ସେମାନଙ୍କ ଠାରୁ
ବେଦରୁ ବିରୁଦ୍ଧ ଉକ୍ତି ।
ସତ ବୋଲି ଯାହା ମଣଇ ମଣିଷ
ଇହଲୋକେ ତା କ୍ଷଣିକ,
ସ୍ୱେଚ୍ଛାବୃତତାକୁ ଆଚରିବ ଯେଣୁ
ଅନ୍ୟାନ୍ୟ ସବୁ ଅଳୀକ ।
ତୀର୍ଥସ୍ନାନାଦିରେ ଅଭିରୁଚି ରଖି
କରି ବ୍ରତ ଉପବାସ,
ପ୍ରୟାସ କଲେହେଁ ନହେବ କଦାପି
ବ୍ୟଭିଚାର ଦୋଷନାଶ ।

ପଥ୍ୟ-ହିତ, ତଥ୍ୟ-ସତ୍ୟ, ଦୈବତ-ଦେବତାସମୂହ
ଅଳୀକ-ମିଥ୍ୟା

ପରଲୋକେ ଲୋକ ପାଉଅଛି ଦୁଃଖ
କଲେ ପାପ ଆଚରଣ,
ପ୍ରତ୍ୟକ୍ଷ କି ଏହା ? ବେଦବାକ୍ୟ ତେଣୁ
କରିବ କିଏ ଗ୍ରହଣ ?
ପାପପୁଣ୍ୟ କର୍ମେ ସୁଖ ଦୁଃଖ ଭୋଗ
ବୋଲିବାଟା ଅନୁଚିତ,
ଯେଣୁ ଏ ପ୍ରତ୍ୟକ୍ଷ ନୁହଇ ଜୀବନେ
କର୍ତ୍ତବ୍ୟ ସିନା ୧ଈଡ଼ିତ ।
ଯୁକ୍ତାଯୁକ୍ତ ଅବା ଯୁକ୍ତି ହୀନ ହେଉ
ସ୍ୱମତ ସ୍ଥାପନେ ଲାଗି,
ନକରି ବିଚାର ଆନକଥା ହୃଦେ
ସକଳ ସଦା ସରାଗୀ ।
ନିଜ ଆତ୍ମାସାକ୍ଷୀ ନିଜର କାର୍ଯ୍ୟରେ
ନଭାବେ ଏହା ଯେ ମନେ,
ସେକି କେତେବେଳେ ହୋଇବ ସମର୍ଥ
ଅନ୍ୟର ଶୁଭ ସାଧନେ ।
ଫୁଲଟି ବୃନ୍ତକୁ ଧରିଥିଲେ ସିନା
ହୋଇଥାଏ ଫଳପ୍ରଦ,
ତାକୁ ତୋଳି ଅଣି ଶାଳଗ୍ରାମେ ଦେଲେ
ହୁଏ କି କେବେ ଶୁଭଦ ।
ଆଦର୍ଶ ରୂପରେ ନିଜକୁ ନରଖି
ଦିଅ ବୃଥା ଉପଦେଶ,
ନାରୀର ରୂପକୁ ତୁଚ୍ଛ ବୋଲି ଦେଇ
କରୁଛ ହୃଦେ ପ୍ରବେଶ ।
ଶମଗୁଣ ଶିକ୍ଷା ଦେଲେହେଁ ଦୁର୍ବାସା
ଅଟନ୍ତି ମହାକ୍ରୋଧନ,
ଧନାଗମୋପାୟ ଶିଖାଏ ଯେ ପୁଣି
ଅଟଇ ସ୍ୱୟଂ ନିର୍ଦ୍ଧନ ।
ଦାତା ବୋଲି ମଣି ନିଜକୁ ସର୍ବଦା
କି ସୁଖ ମିଳେ ଜୀବନେ,
ଲକ୍ଷ୍ମୀ ଅନୁଗ୍ରହେଁ ନଦେବା ଲୋକର
ଭଣ୍ଡାର ଭରନ୍ତ ଧନେ ।

୧ ପ୍ରଶଂସିତ

ସକଳ ପଦାର୍ଥ ନଦେଇ କୁକ୍ଷୀକୁ (ପେଟକୁ)
ଠକିବ କାହିଁକି ତାକୁ,
ନ ଗେହୁଁଥିଲା କିଏ କେତେବେଳେ ଉବେ
ଚଉଚ ଦରିଦ୍ରତାକୁ ।
ଏବଂବିଧ ବାଣୀ ଶୁଣି ଶତକ୍ରତୁ
ଉତ୍ତରିଲେ ତତକ୍ଷଣେ,
ବେଦ ପୁରାଣର ପ୍ରାମାଣିକ କଥା
କରି ନିନ୍ଦା ଅକାରଣେ ।
ପୂର୍ବ ଆଚରିତ ସୁକୃତ ଦୁଷ୍କୃତ
ନକର ନିତ ସ୍ମରଣ,
ଧୂର୍ତ୍ତବାର୍ତ୍ତା ଦେଇ ଯାପିଲେ ସମସ୍ତ
ଜୀବନଟା ଅକାରଣ ।
ନାସ୍ତିବାଦୀଙ୍କୁ ସିନା ସ୍ୱବଂଶରେ ଦୋଷ
ସଞ୍ଚିର ହୁଅଇ ଉବେ,
ତେଣୁ କେତେବେଳେ ସ୍ତ୍ରୀ ସ୍ୱେଚ୍ଛାଚାରିତା
ନୁହଇ ଶୋଭନ ଲବେ ।
ଧର୍ମ ପ୍ରତିକୂଳ ବାକ୍ୟ ଉଚ୍ଚାରଣ
ନୁହଇ କେବେ ଶୋଭନ,
ସନ୍ଦେହରେ ପଡ଼ି ଘୂରୁଥିବା ବୁଦ୍ଧି
ହେବ କି ପରିବର୍ତ୍ତନ ।
ରେ ପ୍ରଚ୍ଛନ୍ନ ପାପି ! କ୍ଷୁଦ୍ର ବୁଦ୍ଧିରେ କି
କରିବୁ ଧର୍ମ ଖଣ୍ଡନ,
ବୃଥାରେ ଗର୍ଜିଲେ କଣ୍ଠ ଓଷ୍ଠ ହସ୍ତ
କରିବ ଏବେ ଛେଦନ ।
କହୁ କହୁ ଏହା କଳି ଓ ଦ୍ୱାପର
ଠିଆ ହୋଇ ସମ୍ମୁଖରେ,
"କୁଶଳ ପଚ୍ଛର ଭାଷିଲେ ଯାଉଛୁ
ଦମୟନ୍ତୀ ସ୍ୱୟମ୍ବରେ ।
ଦେବତାଏ ତହୁଁ ଶ୍ରବଣେ ହସ୍ତର
ଅହେତୁକ ଅହଂକାର,
"କହିଲେ ଠେକୁଛ ବିବାହ ବିଷୟ
କରି ଅଯଥା ବିଚାର ।
ଯୁବ ଜନଙ୍କର ସୌନ୍ଦର୍ଯ୍ୟ ଗର୍ବକୁ
ଖର୍ବ କରୁଥିବା ନଳ,

ଦମୟନ୍ତୀ ପାଣି ଗ୍ରହଣ କଲେଣି
ଗମନ ହେବ ନିଷ୍ଫଳ" ।
ଶୁଣିବାରୁ କଳି ଏକଥା ସହସା
କହିଲେ ଭୌମୀକି ବଳେ,
"ଆଣିବୁ ଓଟାରି ନଳ କବଳରୁ
ଯାଇ ନିଷଧ ଦେଶରେ ।
ଅନାଦର କରି ଦେବତାଙ୍କୁ ଭୈମୀ
ବରିଲା ଯେବେ ନୈଷଧ,
ଉଦାସୀନ ହୋଇ ରହିଲ କପରି
ନକରି ଦୁହିଁଙ୍କୁ ବଧ ।
ଅବଜ୍ଞାତ ହୋଇ ଗୃହକୁ ଫେରିବା
ହେବ କି କେବେ ଉଚିତ ?
ଆନ୍ତରିକ ଖେଦ ଗୋପନ କରିବା
ଅବଶ୍ୟ ସଦା ଗର୍ହିତ ।
ଦେବତା ସକଳ ବାରଣ କଲେ ହେଁ
ନଶୁଣି କାହା ବଚନ,
ନିଷଧାଭିମୁଖେ ଗଲେ ଛଦ୍ମବେଶେ
ଦ୍ୱାପର କଳି ବହନ ।
ଇନ୍ଦ୍ରାଦି ଦୈବତ ଛଦନ୍ତେ ସ୍ୱପୁରେ
ଗଲେ ଆନନ୍ଦ ମନରେ,
ଏହୁହେଁ ନିଷଧ ଦେଶରେ ପ୍ରବେଶି
ବୁଲିଲେ ଶୂନ୍ୟ ମାର୍ଗରେ ।
ନିବର୍ତ୍ତିବା ଲାଗି ପାପରୁ ମଣିଷ
ଠାବେ ଠାବେ ଯଜ୍ଞଗଣ,
ବେଦ ପଢ଼ୁଥିବା ଦରଶନ କରି
ନ ଦେଲେ ତଳେ ଚରଣ ।
ନଳଶ୍ରୀମନ୍ତଙ୍କ ହାନି କରିବାକୁ
ଖୋଜିଲେ ହେଁ ଛିଦ୍ରମାନ,
ଭ୍ରମି ଭ୍ରମି ପୁରେ ହେଲେ ବିଚଳିତ
ନପାଇ କାହିଁ ସନ୍ଧାନ ।
ଏ ଅନ୍ତେ ପ୍ରବେଶି ନଳଗୃହାରାମେ
ଦେଖି ତରୁ ବିଭୀତକ (ବାହାଡ଼ା)
ଆରୋହି ସେଥିରେ ନେଲେ ଆଲମ୍ବନ (ଆଶ୍ରୟ)
ଜାଣିବାକୁ ଇନ୍ଦ୍ରଜିତ ।

ଯେତକ ସଦ୍ଗୁଣ ବସା ବାନ୍ଧି କଳି
ରକ୍ଷଣ କଲି ଦ୍ରୁମରେ (ବାହାଡାଗଛ)
ନଳ ଦମୟନ୍ତୀ ଛିଦ୍ର ଖୋଜି ରହିଁ
ସୌଧ ଗବାକ୍ଷ ପଥରେ ।
ରହିଥାଏ ବ୍ୟସ୍ତ ଦ୍ୱାପର ଭୂତଳେ
ଦୋଷଚ୍ଛିଦ୍ର ଅନ୍ୱେଷଣେ,
ଜାଣିବାକୁ ଏବା କଳି ହିତ ଲାଗି
ନଳ ଅନିଷ୍ଟ କରଣେ ।
କେତେ ପ୍ରଶଂସିତ ହେଲେହେଁ ମଣିଷ
ରହିଛି ଦୋଷ ତା ଠାରେ,
ପର ଦୋଷ ବାଛି ପରାଭବ ଦିଆ
ଅନବରତ ସଂସାରେ ।

## ନବମ ସର୍ଗ

ଛିଦ୍ରାନ୍ୱେଷୀ କଳି ନୈଷଧ ଦେଶରେ
ଦ୍ୱାଦଶ ବରଷ ରହି ଗୁପ୍ତରେ,
ଦେଖିଲା ନଳଙ୍କୁ ନ ଧୋଇ ଚରଣ
ବସିବାର ପୂଜା ଲାଗି ସଞ୍ଜରେ ।
କରି ତା ଦର୍ଶନ ନୈଷଧ ଶରୀରେ
ଗୋଟିଏ ରୂପରେ ପଶି ଚରସା,
ଅପର ରୂପରେ ପୁଷ୍କରଙ୍କୁ କହେ
ଭାଇ ସଙ୍ଗେ ଯାଇ ଖେଳିଲେ ପଶା,
ଅନୁକୂଳ ଦାନ ପଡ଼ିବ ତୁମର
ସର୍ବସ୍ୱ ହରାଇ ନଳ ରାଜନ,
ଯିବେ ରାଜ୍ୟ ଛାଡ଼ି ରାଜା ହୋଇ ତୁମ୍ଭେ
କରିବ ସୁଖରେ ପ୍ରଜା ପାଳନ" ।
ଏ ବଚନ ଶୁଣି ଲୋଭେ ପଡ଼ି ଛଦା
ନୈଷଧ ସମୀପେ ଯାଇ ପୁଷ୍କର,
ଭୀମଜା ସମକ୍ଷେ ଡାକେ ଘନ ଘନ
"ଅକ୍ଷକ୍ରୀଡା ଲାଗି ଆସ ସତ୍ୱର" ।
ପୁଷ୍କର ଆହ୍ୱାନ ସମ୍ଭାଳି ନପାରି
ବାଜି ରଖି ପଶା କଲେ ଆରମ୍ଭ,
ଦୈବବାଣୀ ବୋଲି ବଗୃର ବଗୃର
ପୁଷ୍କର ହୃଦୟେ ଧଇଲା ଦମ୍ଭ ।

ନଳ ଦେହେ କଳି ଥିବାରୁ ଦୁଷ୍କର୍ମେ
ପ୍ରବେଶ କରନ୍ତେ ଏବେ ରାଜନ,
ମନ୍ତ୍ରୀ ପୁରବାସୀ କରିଲେହେଁ ମନା
ନ ପଶିଲା କାନେ କାହା ବଚନ ।
ଅନନ୍ତର ¹ସୂତ ଅନ୍ତଃପୁରେ ଯାଇ
କହନ୍ତେ ଏ ବାର୍ତ୍ତା ଦମୟନ୍ତୀଙ୍କ,
ଅବିଳମ୍ବେ ଆସି କହିଲେ ନଳଙ୍କୁ
"ନଛୁଅଁ ²ଅଶିବ ପଶା ପାଲିକ" ।
ଜୁଆ ଖେଳି ମାତ୍ର କେ ପାଏ ଗୌରବ
ଧରଣୀ ମଧ୍ୟରେ କେଉଁ ଯୁଗରେ ?
ବିଧି ହେଲେ ବାମ ଏ ଭଳି କରମ
କରୁଅଛି ଲୋକ ଅସଂଯତରେ ।
ଦମୟନ୍ତୀ ବାଣୀ ନୈଷଧ ନଶୁଣି
ମାସ ମାସ ଧରି ଖେଳନ୍ତେ ପଶା,
ସନ୍ତାନ ମାନଙ୍କୁ ମାତୁଳାଳୟକୁ
ପଠାଇ ଦେଲେ ସେ ଦୁଃଖେ ତରସା ।
ବିପୁଳ ସମ୍ପତ୍ତି ରାଜ୍ୟ ସହ ନଳ
ହରାଇ ଶେଷରେ ଦେବୀ ସହିତ,
ଏକ ବସ୍ତ୍ର ପିନ୍ଧି ଗଲେ ବନ ଦେଶ
ମୁଣ୍ଡ ପୋତି ପୋତି ହୋଇ ଲଜ୍ଜିତ ।
କେତେ ଦିନ ପରେ ସ୍ୱର୍ଣ୍ଣପକ୍ଷଧାରୀ
କେତେକ ପକ୍ଷୀଙ୍କୁ କରି ବୀକ୍ଷଣ,
ଧରିବାକୁ ନଳ ପିନ୍ଧିଥିବା ବାସ
ଅଙ୍ଗରୁ ଫିଟାଇ କଲେ କ୍ଷେପଣ ।
ମହା ମୋଦଭରେ ବିହଙ୍ଗମମାନେ
ସେ ଖଣ୍ଡିକ ଧରି ଯାଆନ୍ତି ପଳାଇ,
ହୋଇ ବିବସନ ବସନ୍ତେ ବିଷଣ୍ଣ
ଭୀମଜା କାନିରୁ ଖଣ୍ଡେ ଛିଣ୍ଡାଇ,
ଦେବାରୁ ତକ୍ଷଣେ ଅଣ୍ଟାରେ ଗୁଡ଼ାଇ
କାନ୍ଦି ପକାଇଲେ କ ହେଲା ବୋଲି,
ଆଶ୍ୱାସିତ କରି ବିଦର୍ଭ ଯିବାକୁ
କହିଲେ ଭୀମଜା ହୃଦୟ ଖୋଲି ।

¹ ସାରଥି ² ଅଶୁଭ

ନ ମିଳି ସେଥିରେ ବସି ପଡ଼ନ୍ତେ ସେ
ପୂର୍ବ କଥାମାନ ଭାବି ମନରେ,
ବରାରୋହା ଭୈମୀ ତାଙ୍କ ସନ୍ନିଧାନେ
ବିଳପିଲେ ଅତି କରୁଣ ସ୍ୱରେ ।
ବିଭାବରୀ କ୍ରମେ କରନ୍ତେ ପ୍ରବେଶ
ଦଶଦିଶ ହେଲା ଅନ୍ଧାରମୟ,
ଦିନଯାକ ବୁଲି ଶ୍ରାନ୍ତା ଭୀମଜାକୁ
ନିଦ୍ରାଦେବୀ ଆସି କଲା ଅଥୟ ।
ଭର୍ତ୍ତା ସମୀପରେ କଲେ ସେ ଶୟନ
ସଚେତନ ଅତି ନିଷଧପତି,
ଭାବିକଲେ ସ୍ଥିର ପଳାଇବା ପାଇଁ
କରି ବିସର୍ଜନ ବୈଦର୍ଭୀ ସଙ୍ଗ ।
କଲି ଆକର୍ଷଣ କରେ ଏକ ଦିଗେ
ସ୍ନେହ ଆକର୍ଷଣ ଅନ୍ୟ ଦିଗରେ,
ଏପଟ ସେପଟ ହୋଇ ପରିଶେଷେ
ପଳାଇଲେ ଛାଡ଼ି ଜାୟା ବନରେ ।
ହେବାରୁ ଜାଗ୍ରତ ଦେଖିଲେ ଭୀମଜା
ନଥିବାର ନଳ ପାଶେ ତାହାର,
ଅତିତ୍ରସ୍ତା ହୋଇ କାନ୍ଦିଲେ ବିକଳେ
ବିଧାତାକୁ ନିନ୍ଦା କାରିକୁବାର ।
ବେଳେ ବେଳେ ଶୂନ୍ୟ ଅନାଇଲେ ଅତି
କାହିଁ ଅଛ ପ୍ରାଣେଶ ବୋଲି ବିକଳେ,
କରନ୍ତି ରୋଦନ ଦୀର୍ଘଶ୍ୱାସ ଛାଡ଼ି
ଧୂସରିତା ହୋଇ ଲୋଟି ଭୂତଳେ ।
ଏଣେ ତେଣେ ବୁଲି ଦୁର୍ଗମ ବନରେ
ଅବସନ୍ନା ହୋଇ ଶିଳା ଉପରେ,
ବସି ବିଳପିଲେ ପତି ଗୁଣ ଗୁମ୍ଫି
ଭର୍ତ୍ତୃମୁଖା ନାରୀ ପରି କାତରେ ।
କମ୍ପିତ ସମସ୍ତ ବିଳପି ଏପରି
ପତି ବିଚ୍ଛେଦରେ ହୋଇ ଦୁଃଖିତା,
ଅରଣ୍ୟ ଭିତରେ ଚଉଦିଗେ ବୁଲି
ଯାଉଥାନ୍ତି ରାଜ ବନିତା ।
ସୁଖର ସମୟ ଜାଣିଥିବା ଯାଏ
ନ ଘଟଇ କେବେ କାହା ଜୀବନେ ।

ଉତ୍ଥାନ ପତନ ଲାଗିଛି ସତତ
ଭାଗ୍ୟ ଅନୁଗତ ସର୍ବ ଭୁବନେ ।
ନିର୍ଜନ କାନନେ ତିନ ଦିନ ବୁଲି
ଦେଖିଲେ ଗୋଟିଏ ତାପସାଶ୍ରମ,
ନିସ୍ପୃହୀ ଋଷୀଏ ରହୁଥିଲେ ଯହିଁ
ଜଳ ପତ୍ର ଖାଇ ଆଚରି ଦମ ।
ଆଶ୍ୱସ୍ତ ହୋଇ ସେ ପ୍ରବେଶି ତହିଁରେ
ନଳ ସମାଚାର ଆଗ ପୁଚ୍ଛନ୍ତେ,
ଭବିଷ୍ୟ ମଙ୍ଗଳ ହେବ ବୋଲି କହି
ଅନ୍ତର୍ହିତ ଋଷିଗଣ ଏ ଅନ୍ତେ ।
ଶୋକାକୁଳା ଭୈମୀ ଦର୍ଶନ କରି ତା
ବିସ୍ମିତ ଚିତ୍ତରେ ଛାଡ଼ି ସେ ସ୍ଥାନ,
ଗଲେ ଖୋଜି ଖୋଜି ବହୁଦୂର ଶେଷେ
ପଡ଼ିଲା ଲୋଚନେ କେତନମାନ ।
ସେ ପୁର ମଧ୍ୟରେ ପ୍ରବେଶ କରନ୍ତେ
ଅଛନ୍ତି ଆଗରେ ରାଜପ୍ରାସାଦ,
ଗଲେ ଭିତରକୁ ସେ ଭୀମ ନନ୍ଦନୀ
ଲଭି ଅବଲମ୍ବେ ରାଜପ୍ରସାଦ ।
ସମାଦର ପାଇ ସମସ୍ତଙ୍କଠାରୁ
ରହିଲେ ସେଠାରେ ନିରୁଦ୍‌ବେଗରେ,
ନିଷଧପତିଙ୍କ ଦୁର୍ଦ୍ଦଶା ଘଷନ୍ତେ
ଗଲେ ଅନ୍ୱେଷଣେ ରାଜକଙ୍କରେ ।
ଏଣେ ବୈଦର୍ଭୀକ କରି ପରିତ୍ୟାଗ
ପ୍ରବେଶି ନୈଷଧ ଗହନ ବନେ,
କଲେ ସନ୍ଦର୍ଶନ ଯାଉ ଯାଉ ବ୍ୟଗ୍ରେ
ଶୋଇଥିବା ନାଗରାଜ ୧ଅୟୁନେ ।
ନାରଦାଭିଶାପେ ପଡ଼ିଥିବା କଥା
କହି ସ୍ଥାନାନ୍ତର କରିବା ପାଇଁ,
ଅନୁରୋଧ କରି କହନ୍ତେ ନଳକୁ
ଅନ୍ୟାସ ନେଲେ ସେ ବିଶ୍ୱାସେ ଧାଇଁ ।
ଅନ୍ୟାସ କେଉଣୁ ଦଂଶନ କରି ସେ
ନଳ ରୂପ କରି ଅପହରଣ,

୧ ପଥ

"କହିଲ, ଯା ହେତୁ ପାଉଛ କଷଣ
ଏ ବିଷଜ୍ୱାଳାରେ ତାର ମରଣ,
ଅକ୍ଷବିଦ୍ୟା ଦକ୍ଷ ଅଯୋଧ୍ୟା ଭୂପତି
ଋତୁପର୍ଣ୍ଣଙ୍କର ହୋଇ ସାରଥି,
ଅଶ୍ୱ ବିଦ୍ୟା ଦେଇ ଅକ୍ଷବିଦ୍ୟା ଶିକ୍ଷି
ବୋଲାଇବା ପରେ ପାଶକରଥି" ।
ଦୁଇ ଦିବ୍ୟବସ୍ତ୍ର ପ୍ରଦାନି ନଳକୁ
ଭାଷିଲେ ପୁନଶ୍ଚ "ପିନ୍ଧ ଏ ବାସ,
ସ୍ମରଣେ ମୋ ନାମ ପାଇବ ସ୍ୱରୂପ
ଏକଥା ନକର କାହିଁ ପ୍ରକାଶ" ।
ଏମନ୍ତ ବଚନ କହି ନାଗରାଜ
ହେଲେ ଅନ୍ତର୍ହିତ ସେସ୍ଥାନୁ ତ୍ୱରେ,
ନିଷଧାଧିପତି ଅଯୋଧ୍ୟାଭିମୁଖେ
ଗମିଲେ ନିର୍ଜନ ବନ ପଥରେ ।
ନଗରେ ପ୍ରବେଶି ଦଶମ ଦିନରେ
ହୋଇ ଉପସ୍ଥିତ ନୃପନିକଟା,
ଅଶ୍ୱ ଚାଳନାରେ ଧୁରୀଣ କହନ୍ତେ
ସେ କର୍ମେ ନିଯୁକ୍ତ ହେଲେ ଭରସା ।
ନଳଦମୟନ୍ତୀ ଦୁର୍ଦ୍ଦଶାରେ ଭୀମ
ବିଚଳିତ ହୋଇ ଡାକି ବିପ୍ରଙ୍କୁ,
ଅନ୍ୱେଷଣ ଲାଗି ପଠାଇଲେ ଖଚର
ପାଥେୟ ପ୍ରଦାନ ଚଉଦିଗକୁ ।
ସୁଦେବ ନାମକ ଜନୈକ ବ୍ରାହ୍ମଣ
ଚେଦି ରାଜ୍ୟ ଗଲା ସନ୍ଧାନ ପାଇ,
ପତି ବିଚ୍ଛେଦରେ ମ୍ଲାନା ଭୀମଜାକୁ
ରାଜପ୍ରାସାଦରେ ଭେଟିଲା ଯାଇ ।
ରାଜାରାଣୀ ଦୁହେଁ ଆଶ୍ୱାସିତ କରି
ନରଯାନେ ତାଙ୍କୁ ଦେଲେ ପଠାଇ,
ପିତାଳୟେ ଆସି ବଦଳିଲା ମନ
ଜନକଜନନୀ ଦର୍ଶନ ପାଇ ।
ପ୍ରୀତ ଭୀମ ପିତା ତନୟାକୁ ଦେଖି
ନଳ ବିନା ଭୈମୀ ହୋଇଲେ କାତର,
କହିଲେ ତାହାଙ୍କୁ ନ ଆଣିଲେ ଖୋଜି
ଅବଶ୍ୟ ଅଚିରେ ତେଜିବ ଧରା ।

ଏ ଧମକ ତାଙ୍କ ଅଶନି ସଦୃଶ
ତତ୍କ୍ଷଣେ ଭେଦିଲା ହୃଦ ମଧ୍ୟରେ,
ଡକାଇ ବ୍ରାହ୍ମଣ ପ୍ରେରିଲେ ଚୌଦିଗେ
ନଳ ଅନ୍ୱେଷଣେ ଜନକ ଖରେ ।
ଶିଖାଇଲେ ଯା ଭୈମୀ ସେମାନଙ୍କୁ
ଗଲାବେଳେ ଖୋଜି ନିଷଧେଶ୍ୱର,
ସେତିକ ସେମାନେ ସଦା ଉଚ୍ଚସ୍ୱରେ
ଗାଉଥାନ୍ତି ବୁଲି ଗ୍ରାମନଗର ।
ଅଯୋଧ୍ୟା ନରେଶ ସୂତ କାନେ ଦିନେ
ପଡନ୍ତେ ବିପ୍ରଙ୍କ ସବୁ ବଚନ,
ଭାଷିଲେ, "କୁଳସ୍ତ୍ରୀ ଦୁଃଖ ପାଇଲେ ହେଁ
ରଖନ୍ତି ହୃଦୟେ କରି ଗୋପନ ।
ନ ବହନ୍ତି କୋପ ସ୍ୱାମୀ ବିଚ୍ଛେଦରେ
କବଚ ସଦୃଶ ତାଙ୍କ ଚରିତ,
କରେ ପ୍ରାଣ ରକ୍ଷା ଆପଦ କାଳରେ
ଥାଉ ବା ନଥାଉ ସମୀପେ ମିତ ।
କରୁ ବା ନକରୁ ସତ୍କାର ପତ୍ନୀକି
ପତି ପ୍ରତି କୋପ ସଦା ଅବଧି,
ପତିହିଁ ଦେବତା ନାରୀର ଏ ଭବେ
ଥାଉ ବା ନଥାଉ ପାଖରେ ନିଧି ।
ସାରଥିଠାରୁ ଏ କଥାମାନ ଶୁଣି
ବ୍ରାହ୍ମଣ ଲେଉଟି ଭୈମୀ ସମ୍ମୁଖେ,
ଗୋଟି ଗୋଟି କରି ବଖାଣିବାରୁ ତା
ଲୋତକ ଲୋଚନେ ମଜ୍ଜିଲେ ଦୁଃଖେ ।
ଏ ଅନ୍ତେ ଭୀମଜା ସୁଦେବକୁ କହେ
ସେ ନୃପ ନିକଟ ଯାଇ ସତ୍ୱର,
ପୁଣି ସ୍ୱୟମ୍ବର ଭୀମ ଦୁହିତାର
ହେବ କାଲି ବୋଲି ଦିଅ ଖବର ।
ଏ ଆଦେଶ ପାଇ ଅଯୋଧ୍ୟାକୁ ଯାଇ
ଦିଅନ୍ତେ ବାରତା ମୋଦେ ଭୂପତି,
ସାରଥି ନଳକୁ ଡାକି ଆଦେଶିଲେ
"ଅଶ୍ୱ ଯୋଚି ରଥ ଆଣ ଝଟତି" ।
ଏ ଆଦେଶ ମାନି ଅଶ୍ୱଶାଳାରୁ ସେ
ଚଞ୍ଚଳ ଘୋଟକ ଆଣି ରଥରେ,

ଯୋଚି ନଳପତି ପାଶେ ରଖିବାରୁ
ଆରୋହି ବିଦର୍ଭ ଗଲେ ବ୍ୟଗ୍ରରେ ।
ଯାଉଁ ଯାଉଁ ପଥେ କହନ୍ତେ ନୃପତି
ତନ୍ତୁଙ୍କ ସେ ଅତି ଦ୍ୟୂତ କ୍ରୀଡାରେ,
ଉତ୍ତରିଲେ ତାଙ୍କୁ ନଳ ସଙ୍ଗେ ସଙ୍ଗେ
ଧୁରନ୍ଧର ସେହି ଅଶ୍ୱ ବିଦ୍ୟାରେ ।
ଆଗ୍ରହେ ନୃପତି ଅଶ୍ୱବିଦ୍ୟା ଶିଖି
ଶିଖାଇଲେ ତାଙ୍କୁ ପାଶକ କ୍ରୀଡ଼ା,
ଦଂପତିର ମଧ୍ୟେ ଆଦାନେ ପ୍ରଦାନେ
ନ ଜନ୍ମିଲା କା'ର ମାନସେ ପୀଡା ।
ଶିଖିବାମାତ୍ରକେ ଅକ୍ଷବିଦ୍ୟା ନଳ
କଳି ନଳମୁଖୁଁ ହୋଇ ନିର୍ଗତ
ଅଭିଶାପ ଭୟେ କୃତାଞ୍ଜଳିପୁଟେ
ନଳଙ୍କର ହେଲା ଶରଣାଗତ ।
ନିଜ ରୂପ ନଳ କରିଲେ ଧାରଣ
ବିଦାୟ ମାଗି ଗଲା ତଦନ୍ତେ କଳି
ନେଲେ ନୃପତିଙ୍କ ସ୍ୟନ୍ଦନ ଚଳାଇ
ନୈଷଧ ଚଞ୍ଚଳେ ଚଞ୍ଚଳା ଭଳି ।
କୁଣ୍ଡିନ ନଗରେ ପ୍ରବେଶିଲା ବେଳେ
ଘୋର ଘୋଷ ଜାତ ହେଲା ରଥର,
ନଳ ରଥ ବୋଲି ଦମୟନ୍ତୀ ମନେ
ଉପୁଜେ ସନ୍ଦେହ ଥରକୁ ଥର ।
ଭୀମ ସମୀପକୁ ନୃପ ଋତୁପର୍ଣ୍ଣ
ଗଲେ ଅନନ୍ତର ରଥୁଁ ଓହ୍ଲାଇ,
ବସିଲେ ନୈଷଧ ସ୍ୟନ୍ଦନ କ୍ରୋଡରେ
ତତ୍ପର ହୋଇ ଅଶ୍ୱ ଫିଟାଇ ।
ଦୁଇଦେଶ ପତି ମିଶାମିଶି ହୋଇ
କଲେ ସମ୍ଭାଷଣ କିଛି ସମୟ,
ବିବାହର ଚିହ୍ନ ନ ଦେଖନ୍ତେ ନୃପ
ମିଥ୍ୟା ବୋଲି ତାଙ୍କୁ ହେଲା ପ୍ରତ୍ୟୟ ।
ଏକାନ୍ତେ ଭୀମଜା କେଶିନୀକି ଠାରି
ରଥହାଙ୍କେ କିଏ ବୋଲି ପୁଚ୍ଛନ୍ତେ,
ବୁଝାବୁଝି କରି କହିବ ବୋଲି ସେ
ଗଲା ରଥପାଶେ ତୂର୍ଣ୍ଣେ ତଦନ୍ତେ ।

ପୁଚ୍ଛନ୍ତେ କେଶିନୀ ଯାଇ ନଳପାଶେ
ଜାତି କୁଳ ନାମ ଭୈମୀ ଆଜ୍ଞାରେ,
ଉତ୍ତରରେ ନଳ ବିଷମାବସ୍ଥାରେ
କୋପ ଅଶୋଭନ ସଦା ସତୀରେ ।
ଆହୁରି ଆଶ୍ଚର୍ଯ୍ୟ କରମ ଦର୍ଶନେ
ସେ ସବୁ ଲେଉଟି ଭୈମୀ ଆଗରେ,
କହନ୍ତେ ସେ ମନେ ନଳ ବୋଲି ଭାବି
କହିଲେ ମାତାକୁ ଦ୍ରୁତ ସ୍ୱରରେ ।
"ଆସିଛନ୍ତି ନଳ ଡକାଇ ଆଣନ୍ତୁ
ବୋଲି ଭାଷିବାରୁ ଅନୁଜ୍ଞା ପାଇ,
ଆଣିଲା ସଙ୍ଗରେ କରି ନିବେଦନ
କେଶିନୀ ତରସା ସେଠାକୁ ଯାଇ ।
କର୍କୋଟକ ନାଗ ସ୍ମରଣ କରନ୍ତେ
ନିଜରୂପ ପାଇ ସେଠାକୁ ନଳ,
ଯାଇ ମିଶାମିଶି ହେଲେ ପତିପତ୍ନୀ
ନଗର ଭିତରେ ପଡ଼େ ଚହଳ ।
ଶୀତାଂଶୁ ଉଦୟେ ବିଭାବରୀ ଦେବୀ
ପ୍ରସନ୍ନତା ଲଭ କରେ ଯେମନ୍ତ,
ପତିଙ୍କ ମିଳନେ ସେ ଭୀମନନ୍ଦିନୀ
ପ୍ରମୁଦିତ ଚିତ୍ତ ହେଲେ ତେମନ୍ତ ।
ମିଳିତ ହୁଅନ୍ତେ ନଳ ଦମୟନ୍ତୀ
ଋତୁପର୍ଣ୍ଣ ନୃପ ଆଶିଷ ଦେଇ,
ନିଜ ରାଜଧାନୀ ଅଯୋଧ୍ୟାକୁ ଗଲେ
ଅନ୍ୟ ସାରଥିକି ସଙ୍ଗରେ ନେଇ ।
ଶ୍ୱଶୁରାଳୟରେ ରହି କତିଦିନ
ଅଶ୍ୱ ହସ୍ତୀ ସୈନ୍ୟ ଘେନି ସଙ୍ଗରେ,
ନିଜ ରାଜଧାନୀ ନିଷଧକୁ ଯାଇ
ପୁଷ୍କରକୁ ନଳ ଡାକିଲେ ଖରେ ।
"ପୂର୍ବବତ୍ ପଣ ରଖି ଆଉ ଥରେ
ପଶା ଖେଳିବାକୁ ଆସ ସତ୍ୱର,
ଜିତିଲେ ମୋ ରାଜ୍ୟ ଦେବ ବାହୁଡାଇ
ହାରିଲେ ଗଜାଦି ହେବ ତୁମ୍ଭର" ।
ମଣିଷଶୋଣିତ ବାଜିଥିଲେ ମୁଖେ
ମଣିଷ ଦର୍ଶନେ ବ୍ୟାଘ୍ର ଯେସନ,

ପାଶକ କ୍ରୀଡାରେ ଲଭିଥିବା ମନ
ନଳ ବଚନରେ ହେଲ ତେସନ ।
କ୍ରୀଡନେ ପୁଷ୍କର ପାଦେ ପ୍ରେମ ଶ୍ରବ
ବସିଲ ପୁନଶ୍ଚ ଖେଳିବା ପାଇଁ,
ହାରିଲା ଏଥର ଫେରାଇଲା ରାଜ୍ୟ
ପ୍ରତିକୂଳ ଚାର ଏଥର ସାଇଁ ।

ରାଜ୍ୟ ପାଇ ନଳ ମହାମୋଦଭରେ
ପୁଷ୍କରଙ୍କୁ ଗୃହେ କଲେ ପ୍ରେରଣ,
ଅମାତ୍ୟାଦ ସବେ ହେଲେ ହୃଷ୍ଟ ଅତି
ଅଣାଇଲେ ପତ୍ନୀ ସନ୍ତାନଗଣ ।

—★—



ଉଦ୍ଧବୋକ୍ତ ଶୁଣି ଦେବକୀନନ୍ଦନ,
ଯାଗକୁ ଯିବାକୁ ବଳାଇଲେ ମନ ।
୧ବିସତନ୍ତୁ ପରି ବିଶଦ ଚାମର,
ମଧ୍ୟେ କୃଷ୍ଣ ରହି ଦିଶନ୍ତି ସୁନ୍ଦର ।
ମଣ୍ଡଳ ମୁକୁଟ ରତନେ ଖଚିତ,
କର୍ଣ୍ଣେ ୨କାର୍ତ୍ତସ୍ୱର କୁଣ୍ଡଳ ଶୋଭିତ ।
ନଖାଗ୍ର ଅରୁଣବର୍ଣ୍ଣ ଅଛି ଧରି,
୩ହିରଣ୍ୟାସ୍ତ୍ର ଦିଶେ ନ ଲିଭିଲା ପରି ।
ଅମ୍ବୁଜ ପରାଗ ସମୀରଣ ଆଣି,
ବୋଳିଦେଇ ମୁଖେ ବଢ଼ାଏ କି ଠାଣି ?
ବିଭୂଷଣ ବିଭୂଷିତ କାନ୍ତତନୁ,
ଦେଖିଲେ ନଯାଏ ପାସୋରି କା ମନୁଁ ।
ହିରଣ୍ୟକଶିପୁ ବକ୍ଷବିଦାରକ,
ହରିଙ୍କ ଗମନେ ବାହାରି ବାହକ ।
ଘେରିଗଲେ ଆସି ହେବାରୁ ଖବର,
ଘନ ଘନ ଏଣେ ବାଜିଲା ୪ମୁଖର ।
ଯୁବତୀଏ ଆସି ଗୃହପଟେ ରୁଣ୍ଡ,
ସଙ୍ଗେ ଯିବାଲାଗି କହୁଛନ୍ତି ତୁଣ୍ଡ ।
ସୁଦର୍ଶନ ଚକ୍ର ରହିଛି ସ୍କନ୍ଧରେ,
ଧରିଲେ ୫ନନ୍ଦକ ଦକ୍ଷିଣ ହସ୍ତରେ ।
ପାଞ୍ଚଜନ୍ୟ ଶଙ୍ଖ ହେଲା ସନ୍ନିହିତ,
ସୁଦୃଢ଼ ନିର୍ମିତ ଧନୁକ ସହିତ ।
୬ପୁଷ୍ୟରଥେ ଶୌରି ଆରୋହଣ ପରେ,
ହେଲେ ଉପସ୍ଥିତ ଗରୁଡ଼ ସଙ୍ଗରେ ।
ପଟହ ପ୍ରଣାଦ (ଆନନ୍ଦଧ୍ୱନି )ଉପୁଜନ୍ତେ କ୍ରମେ
ଗର୍ଜେ ବାରିଧି ଅସିଲା କି ଭ୍ରମେ ।
ଦରଶନ କରି ହରିଙ୍କ ଗମନ
ଟଳିଲେ ସେ ନାଜେ ନୁଆଁଇଁ କେତନ ।
୭ଶିତିକଣ୍ଠ ପିଚ୍ଛ ଖଚିତ ସ୍ୟନ୍ଦନ,
ପୁରପ୍ରାନ୍ତ କ୍ରମେ କଲା ଉଲ୍ଲଙ୍ଘନ ।

୧ ମୃଣାଳର ସୂତା ୨ ସ୍ୱର୍ଣ୍ଣ ୩ ହିରଣ୍ୟର ଅସ୍ତ୍ର (ଚକ୍ର) କାନ୍ତ-କୃଷ୍ଣ ୪ ଶଙ୍ଖ ୫ ଖଡ୍ଗ ୬ ହୀରରଥ ୭ ମୟୂରପୁଚ୍ଛ

୮ଅଷ୍ଟାପଦ ହାର ମାଧବ ବେକର,
କରେ ଆଲୋକିତ ଭୂଧରକନ୍ଦର ।
ଅଶ୍ୱମାନଙ୍କର ଅବାରିତ ଗତି,
କରନ୍ତି ଆବୃତ ଧୂଷଣ ସାରଥି ।
ଧୂଳି କ୍ରୀଡ଼ାରତ ୯ପୃଥୁକମାନଙ୍କୁ,
ଜନନୀଏ ଆସି ନଅନ୍ତି କୋଡ଼କୁ ।

## ଦ୍ୱାରକା ବର୍ଣ୍ଣନା

୧୦ରୂପ୍ୟକର ଗଢ଼ା ୧୧ବପ୍ର ଦ୍ୱାରକାର
କରେ ଉଦ୍‌ଭାସିତ ସଦା ଆଶାକୁ (ଦିଗ)
କିନ୍ତୁ ବଙ୍କନର ଶେଷ ସମ୍ପତ୍ତିକୁ
ଥୋଇଲେକି ଆଣି ୧୨ କର୍ତ୍ତୃ ଏଠାକୁ ।
୧୩ଉଡୁବୃନ୍ଦ ତୁଲ୍ୟ ଦିଶେ ଝଲମଲ
ଖଞ୍ଜା ଯାଇଥିବା ମଣି ନିକର,
ସମୀପସ୍ଥ ସିନ୍ଧୁ ଉତ୍ତାଳ ତରଙ୍ଗ
ଧୁଏ କି ଚରଣ ଠଗକୁ ଥରେ ।
୧୪ଜାତବେଦ ପରି ଦିଶେ ଦାଉ ଦାଉ
ଛଣା କାଞ୍ଚନରେ ଗଢ଼ା ଅଟ୍ଟାଳି,
୧୫ଚନ୍ଦ୍ରକା ୧୬ଆଲେଖ୍ୟ ଆଙ୍କି କାରିକର
ଦେଇଥିଲା କରେ ମାଧୁରୀ ଢାଳି ।
୧୭ଭୂମିଭୃତଙ୍କର ନିବାସ ମନ୍ଦର
ଧରିଥିଲା କୋଳେ ମହା ନଗରୀ,
ପୁଣି ଚଢ଼ିଥିଲା ଭୂମିଭୃତମାନ (ପର୍ବତ).
ଯହିଁ ବିହରନ୍ତି ମୁଦେ ଶ୍ରୀହରି ।
ଶୁକାଙ୍ଗ ସଦୃଶ ମରକତ ନିର୍ମିତ
ରାଜପଥ କଡ଼ ସୌଧ ଅଳିନ୍ଦ (ବାରଣ୍ଡା)
ପାଶେ ପୁରସ୍ତ୍ରୀଏ ଗଲାବେଳେ ଆସି
ଦେଖିଲେ ମୁରାରି ମୁଖାରବିନ୍ଦ ।
ଲବଙ୍ଗ କୁସୁମ ମାଳ ଶିରେ ଧରି,
ଶ୍ରୀଫଳାଭ୍ୟନ୍ତର ଜଳପାନ କରି ।

୮ ସୁବର୍ଣ୍ଣ ୯ ଶିଶୁ ୧୦ ରୂପା ୧୧ ପାଚେରି ୧୨ ବ୍ରହ୍ମା ୧୩ ତାରାସମୂହ ୧୪ ସୁନା ୧୫ ମୟୂର ୧୬ ଚିତ୍ରପଟ ୧୭ ରାଜା

ଆଦ୍ର୍ପୁଗ (ଗୁଆ) ଫଳ କରି ଆସ୍ୱାଦନ,
ଚମୂଚରମାନେ କରନ୍ତି ଗମନ ।
ପ୍ରବେଶନ୍ତେ କ୍ରମେ ଉପୋଧି ତଟରେ
ସରବେ ବିଶ୍ରାମ କେଲେ ମୋଦଭରେ
୧ଅମ୍ଭୋଧି ତଟାଧିବାସୀଏ ଭରେ
ମୁରାରି ଦର୍ଶନ ଲଗି ମୁଦରେ
୨ଲତାନ୍ତସ୍ରକକୁ ଧରି ହସ୍ତରେ
ଗଳାଇଲେ ତାଙ୍କ କଣ୍ଠ ଦେଶରେ
ପଦାରଜ ଶ୍ରୀପଦର
ନେଇ ଲଗାଇଲେ ଯେ ଯାହା କପାଳେ
କରି ସ୍ତବ ଥରଥର ।
ଊର୍ମିରୂପ ବାହୁ ପ୍ରସାରି କରି
ପାଦ୍ରେଟି ନେଲା କି ସିନ୍ଧୁ ଶ୍ରୀହରି
୩ଅବ୍ଦ ଶବ୍ଦ ତୁଲ୍ୟ ଯାଇ ନିକ୍ୱଣ
ଶୁଣି ଚମକନ୍ତେ ୪ଧ୍ୱଜୀ ବାରଣ (ହାତୀ)
ତକ୍ଷଣେ ବାହକଗଣ
ଆସି ସମ୍ଭାଳିଲେ ୫ତୂର୍ଣ୍ଣ ସେମାନଙ୍କ
କ୍ଷୁଧା କରି ନିବାରଣ ।
ରୈବତକ ଗିରି ପଙ୍କ୍ତେ ନେତ୍ରରେ
ବାହାରିଲେ ସର୍ବେ ଆନନ୍ଦ ମନରେ ।
ଆସି ବୁଲି ବୁଲି ମନ୍ଦ ମନ୍ଦରେ
ଝୁଲାଉନ୍ତି ୬ଇଭେ ପ୍ରମୋଦଭରେ
ତା ପଛରେ ଥିଲେ ୭ଭୂଚେଶଖର
ହାସ୍ୟପ୍ରଦଭାବେ ବୁଲନ୍ତି ଖର
ଘଷିଲେ ଗିରିଦେଶରେ
୮ହରିହରଙ୍କର ଖୁରାଘାତରେ
ଭୂରେଣୁ ନଭେ ପ୍ରସରେ ।
ନାନାବିଧ ୯ନଗେ ୧୦ନଗ ପୂରିତ
ଫଳପୁଷ୍ପଭରେ ସଦାନମିତ
ତରୁମାନଙ୍କର ମହାଶ୍ରୀ ରୁଇ
ଦେଖି ଅଧ୍ୱଗାମୀ ଯାନ୍ତି ଓହ୍ଲାଇ

୧ ସମୁଦ୍ର ୨ ପୁଷ୍ପମାଳା ୩ ମେଘ ୪ ଅଶ୍ୱ ୫ ଶୀଘ୍ର ୬ ହାତୀମାନେ ୭ ଗଧ ୮ ଘୋଡ଼ା ଗଧ ହରି-ଗଧ ୯ ବୃକ୍ଷ ୧୦ ପର୍ବତ

ନିର୍ମାଣି ତହିଁ ଶିବିର
ଆଶ୍ରୟ ନେବାକୁ କେଶବ ସହିତ
ସରବେ ହେଲେ ଅସ୍ଥିର
୧ପିଚୁମର୍ଦ୍ଦ ପଲ୍ଲବ ଖାଇବା ଲାଗି
ଶିରୋଧି ଟେକି ଉଷ୍ଟ୍ର ହେଲା ସରାଗୀ
ବଂଶାଙ୍କୁର ଶ୍ୟାମ ମରକତ ମଣି
ଖଣ୍ଡିମାନ କିଏ ପାରିବ ଗଣି ।
ଧରିଅଛି ଗିରି ଚତୁର୍ଦ୍ଦିଗରେ
ଆସି ସ୍ଫଟିକରେ ଅର୍କକରରେ
ହାଏ ଆଖି ଝଲସାଇ
ଦୂର୍ବାଦଳ ଯୁକ୍ତ ହୋଇ କୁକ୍ଷି ଦେଶ
ଦେଉଅଛି ପ୍ରଭା ବଢ଼ାଇ ।
୨ବିଟପ ବିହାରି ୩ବନସ୍ପତିଦଳ
୪ପର୍ଣ୍ଣ ପରିପୂର୍ଣ୍ଣ ହରଷେ ଶ୍ୟାମଳ
ନବ ମାଧବନ ପୁଷ୍ପ ୫ଭୂଷିତ
୬ଚଞ୍ଚରୀକାବଳୀ ଦେଖି ମୋହିତ
ଗଲେ ଧମୀପକୁ ଚିପି
ମଧୁ ପିଇ ପିଇ ପେଟ ପୂର୍ଣ୍ଣ କରି
ପୁହାଇଲେ ରାତ୍ରି ହସି ।
ନବନିମ୍ନଗା ଯାଇ ବାହକ ଗଣ
ପଶୁ ସଙ୍ଗରେ କଲେ ତୃଷା ହରଣ ।
ଜଳକୁଳ ଆମ୍ଭୋଜ ହସ୍ତ ଅଗ୍ରରେ
ମଣ୍ଡି ଆଣି ଉଡ଼େଲେ ସେଥି ଅଙ୍ଗରେ
୭ଗମ୍ଭୀରବେଦୀ ନିଦେଶ ଅଙ୍କୁଶାଘାତ
ଯାଇଲେହେଁ ନମାନି ହୁଏ ଉଦ୍ଭ୍ରାନ୍ତ ।
୮ଶୁକ୍ଳାଂଶୁକପଟ ହାର ନିର୍ମିତ
୯ଚନ୍ଦ୍ରାକାର ନଭ ଅତି ଶୋଭିତ
ନଗାଧିପ ତମ୍ବୁ ଗୃହପଟରେ
ଘେରିଛନ୍ତି ଗଜ ଅତି ମୋଦରେ
ବେଳେ ବେଳେ ଧ୍ୱନ ଶୁଣ୍ଡ

୧ ନିମ୍ବପତ୍ର ୨ ଶାଖା ୩ ବୃକ୍ଷ ୪ ପତ୍ର ୫ ଶୋଭିତ ୬ ଭ୍ରମର ଶ୍ରେଣୀ ୭ ମତ୍ତଆଳ ହାତୀ ୮ ଶୁଭ୍ରବସ୍ତ୍ର ୯ ଚନ୍ଦ୍ରଙ୍କ ଆକାର ସଦୃଶ୍ୟ

ଥୋଇଲେ ଆଗରେ          ଇକ୍ଷୁ କାଣ୍ଡ ଖଣ୍ଡ
ଚଅନ୍ତି ଘଟେ ଫେଁପାଡ଼
ଅବଗାହନାନ୍ତେ ତୁରଗଗଣ
୧ଦନ୍ତଚର୍ବିତ ନିକ୍ୱଣ ଧାରଣ
କରି ଲେଉଟିଲେ ବିଶ୍ରାମ ସ୍ଥାନେ
ଅଶ୍ୱପାଳ ସଙ୍ଗେ ଦିନାବସାନେ
ହରିତ ତୃଣକୁ ଚରି
ଗ୍ରୀବାରେ ଲୋଳ          ୨କିଙ୍କିଣୀକା ସହ
୩ଦନ୍ତଲକା ମୁଖେ ଧରି ।

ଶଇଳ ମାଧୁରୀ ଦେଖି ଘନ ଘନ
କୃଷ୍ଣ ମନେ ହେଲା ବିସ୍ମୟ ଉତ୍ପନ୍ନ
ହର୍ମ୍ମ୍ୟନାକୁ କାନ୍ତ ଦିବା ବାଟ ଜାଣି
ସୁମେରୁ ଶୃଙ୍ଗକ ରାଜବଳ ଆଣି
ଦେଇଛନ୍ତି ତୋଳ ବାସଗୃହକୁଳ
ହୋଇଛନ୍ତି ଯହିଁ ସବୁ ଜାବଠୁଳ ।

## ସନ୍ଧ୍ୟା

୪ଅତୁଷାରକର ଅସ୍ତାଚଳରେ
ଲୁଚି ଦିବାକ୍ଷଣି ମେଘା ମାଡ଼ରେ
୫ଶକୁନ୍ତ ବିତତି ପଶି ୬ଉଭସେ
ଶାବଙ୍କୁ ଖୁଆଇ ଦେଲେ ୭ଉଭସେ
ଆଣିଥିବା ଖାଦ୍ୟତତି
୮ଚକ୍ରଦମ୍ପତିଙ୍କ          ଏ ପ୍ରଦୋଷକାଳ
ହେଲାଣି ଦୁଃଖ ଦାୟକ ।
ଗୁହାଭ୍ୟନ୍ତରୁ ତମଃ ପଟଳ
ଆସି ଘୋଡ଼ାଇଲା ଏ ଭୂମଣ୍ଡଳ
ପଦ୍ମିନୀ ବଦନ ଦିଶେ ମଳିନ
ତେଜୋନିଧି ରବି ହୁଅନ୍ତେ ଲୀନ
ଦୈବ ହେଲେ ପ୍ରତିକୂଳ

ପାରିବ କେ ଏଡ଼େ          ତା ଦାଉ ଜଗତେ
ସରେଲେ ଅର୍ଥ ସପୁନ ।
ତମୋବ୍ୟାପ୍ତି ୧ତମୀ ନକ୍ଷତ୍ରେ ପାଇ
ଝଟକିଲେ ନଭେ ଜ୍ୟୋତି ଦେଖାଇ
୨ଶୀତରଶ୍ମି ପ୍ରାଚୀ ଦିଗେ ଉଦିତ
ହୁଅନ୍ତେ ଧରଣୀ ଶୁଭ୍ରେ ପ୍ଳାବିତ
ତମଗଲା ଅପସରି
ବୀଚି ଜାଲ ପରି          ତଳ ଉପରକୁ
ନର୍ତ୍ତନ୍ତି ଲୋକଙ୍କୁ ହରି ।
୩ପ୍ରାଚୀ ଲଲାଟରେ ଚନ୍ଦନ ବିନ୍ଦୁ
ପରି ଦିଶୁଥିଲା ଏକାଳେ ଇନ୍ଦୁ
କୁମୁଦମା ବାଳା ସର ଭିତରେ
ଅନାଇଁ ଦେଲେକ ପ୍ରେମାଦଭରେ
୪ତୁହିନଦୀଧିତିଗାତ୍ର
ସୌଦାମିନୀ ବେଗେ          ତା ଅଙ୍ଗ ପ୍ରବେଶେ
୫ଫୁଲ୍ଲେ ମୋଟ କଲା ସ୍ଥିତି ।
୬ଉଷ୍ଣାଂଶୁ ପୀଡ଼ିତ ୭ଓଷଧିପତି
କରନ୍ତେ ଷୋଭିତ ୮ବାହିନୀପତି
ଉର୍ମି ଭୁଜ ଟେକି ବାରିକୁ ବାର
ପ୍ରଳୟ ଗର୍ଜନ କରୁଥିବାର
ଶୁଭିଲା ରାତ୍ରି ଭିତରେ
ଇନ୍ଦୁମଣ୍ଡଳକୁ          ଗ୍ରାସ କରିବାକୁ
ପାଞ୍ଚିଲା କି ରୋଷଭରେ ?
ନିଶା ଅବସାନେ          ଉଠି ବୈତାଳିକେ
ନିଦ୍ରାଭଙ୍ଗ ଲାଗି ମାଧବଙ୍କର
ମୃଦଙ୍ଗ ବଜାଇ          ହରିନାମ ଗାଇ
କଲେ ଶିବଧ୍ୱନି ଥରକୁଥର
ସେହି ମଞ୍ଜୁଘୋଷ          ପଡ଼ନ୍ତେ କାନରେ
ତତ୍ପର ହୋଇ ୯ନୃପନିକର
୧୦ଶୟନୀୟୁ ଉଠି          ପ୍ରାତଃକୃତ୍ୟ ସାରି
ଦେବା ଅର୍ଚ୍ଚନ ଲାଗି ହେଲେ ତତ୍ପର

୧ ହ୍ରେଷାଧ୍ୱନି  ୨ କ୍ଷୁଦ୍ରଘଣ୍ଟି ବେକରେ ଝୁଲୁଛି
୩ ମୁଖରେ ଲଗାମ  ୪ ସୂର୍ଯ୍ୟ  ୫ ପକ୍ଷୀମାନେ
୬ ଆନନ୍ଦରେ ୭ ଚଞ୍ଚଳ  ୮ ଚକ୍ରବାକ ପକ୍ଷୀ

୧ ତମୀ - ନକ୍ଷତ୍ରମାନେ ଅନ୍ଧକାରବ୍ୟାପ୍ତ ରାତି ପାଇ
୨ ଚନ୍ଦ୍ର ୩ ପୂର୍ବଦିଗ ୪ ଚନ୍ଦ୍ର ୫ ଫୁଟିଲା ୬ ସୂର୍ଯ୍ୟ
୭ ଚନ୍ଦ୍ର ୮ ସମୁଦ୍ର ୯ ନୃପସମୂହ ୧୦ ଶଯ୍ୟାରୁ

## ୩ୟ ସର୍ଗ

### ପ୍ରଭାତ

ପ୍ରସବିଲା କରେ ୧ବାର୍ଦ୍ଧିପଟଳ,
ଧ୍ୱାନ୍ତଧ୍ୱଂସକାରୀ ୨ସପ୍ତସପ୍ତି ।
ଦିଶଇ ଅରୁଣ ଶୁଭ୍ର ଶରୀର,
ହୋଇଅଛି ବୋଳା ଅବା ରୁଧିର
ତମ ସଙ୍ଗେ କଳି କରି
ସର୍ବାଙ୍ଗେ ୩ଅଙ୍ଗଜ ଲାଗୁଅଛି ପରି
ଯାତ ବକ୍ଷତରୁ ଝରି ।
ପ୍ରାଭାତିକ ବାୟୁ ବହିଲାଣି ଧୀରେ,
ଭାଙ୍ଗି ନାହିଁ ନିଦ ଯେ ଥିଲେ ଶିବିରେ ।
କମଳ ବିକଚ ପଡ଼ି ରବିକର,
୪ରଥାଙ୍ଗଦମ୍ପତି ଭେଟି ପରସ୍ପର ।
୫କ୍ଷପାକ୍ଷୟ ପ୍ରାପ୍ତେ ତାରକା ବିଲୟ,
ଶୋକାକୁଳ ଇନ୍ଦୁ ହେଲାଣି ଅଥୟ ।
୬ଅବଲକ୍ଷ ବପୁ ଦିଶିଲାଣି ମ୍ଳାନ,
ଓଲେନ ବଲେନ ବିଧିର ବିଧାନ ।
ହୁଅନ୍ତେ ଅସହ୍ୟ ଭାସ୍କର ମୟୂଖ,
ରଖିଲା ବିବର୍ଣ୍ଣ କୁମୁଦଙ୍କ ମୁଖ ।
୭ଅନବସ୍ଥବାୟୁ ବହି ନିରନ୍ତର,
ଦିଏ ଦୋହଲାଇ ପ୍ରସୂନ ପ୍ରକର ।
ଉପହସିତ କି ଭ୍ରଷ୍ଟଶ୍ରୀ ହିମାଂଶୁ,
ପ୍ରାଚୀ ଲଲାଟରେ ଦର୍ଶନେ ଉଷ୍ଣାଂଶୁ ।
ଉଦୟାଦ୍ରି ଶିରେ ତରୁଣ ତପନ,
ଦର୍ଶନେ ଉତ୍କଣ୍ଠ ନହେବ କାମନ ।
ସୁଧାଂଶୁ କରେ ଯା ଥିଲା ଧବଳିତ,
୮ଭାନୁ ୯ଭାନୁ ବାଜି ହେଲା ଅରୁଣିତ ।
୧୦ହରିଦଶ୍ୱ ଡେଇଁ ଉଦୟ ପର୍ବତ,
ନିଜ ବୃଦ୍ଧି ଲାଗି ହେଲେଣି ଉଦ୍ୟତ ।

୧ସାଗର ୨ସୂର୍ଯ୍ୟ ୩ ରକ୍ତ ୪ ଚକ୍ରବାକ ଚକ୍ରବାକୀ
୫ ରାତ୍ରି ୬ ଶୁଭ୍ର ୭ ଅସ୍ଥିର ୮ ସୂର୍ଯ୍ୟ ୯ କିରଣ

ସରୋଜ ଆବଦ୍ଧ ଷଟ୍‌ପଦ ପ୍ରକର,
ବନ୍ଧନରୁ ମୋକ୍ଷ ବାଞ୍ଛ ଭାନୁକର ।
୧ଦିବସନାୟକ ବୀକ୍ଷଣେ ଉଲୂକ,
ଡରିହରି ମୁଦ ପାଲଟିଲା ମୂକ ।
ବିହଙ୍ଗ ରାବ ଶୁଭେ ଘନ ଘନ,
ଭାଙ୍ଗିଗଲା ନିଦ କୃଷ୍ଣଙ୍କ ବାହନ ।

### ବସନ୍ତ

ପ୍ରବେଶ ହେବାରୁ ମଧୁ ସମୟ,
ନାନାଜାତି ଫଳ ପୁଷ୍ପନିଚୟ ।
ଧରି ଉପଗତ ପ୍ରକୃତି ତ୍ୱରେ,
ଭେଟି ଦେବା ଲାଗି କଂସାରି କରେ ।
୨ନବ ପଲ୍ଲବ ପଲାଶ
ଦେଖାଏକ ଛଟା ଆବୋରି ଅଙ୍ଗରେ୩
ଲୋହିତ ୪ଲତାନ୍ତ ବାସ ?
ଆଣି ସମୀରଣ ସରୋଜ ରଜ
ବୋଳି ଦେଲାକରେ ଶ୍ରୀଅଙ୍ଗ ବ୍ରଜ (ସମୂହ)
କୁରୁବକ ଫୁଟିଲେ ମଧୁପଗଣ
ଧବଳରେ ନୀଳବର୍ଣ୍ଣ ସ୍ଫୁରଣ
କାଞ୍ଚନ କାନ୍ତି ଚମ୍ପକ
ଫୁଟି ସଉରଭ କଲରୁ ବିସ୍ତାର
ସରବେ ତାର ସ୍ତାବକ ।
ମଧୁ ସଙ୍ଗୀ ପ୍ରିୟ ୫ସରଘାପନ୍ତି,
୬ସାର ସହକାର ଖୋଜି ବୁଲନ୍ତି
କୁହୂକଣ୍ଠ ଆସି ଆଗୁଁ ସେ ଡାଳେ
ଲୁଚି କୁହୁ ରବେ ତା ବାର୍ତ୍ତା ଢାଳେ
ଶୁଣି ତା ମଧୁର ସ୍ୱନ
କିବ ଜଗତରେ ତା ପାଶେ ଯିବାକୁ
ନହେବ କାହାର ମନ ?
ମାଧବୀ ଲତାକୁ କରି ଆଦର
ଉଡ଼ି ଯାଉଛନ୍ତି ଥରକୁ ଥର

୧ ସୂର୍ଯ୍ୟ ୨ ନୂତନ ପତ୍ରଯୁକ୍ତ ପଳାଶ ୩ ସୂର୍ଯ୍ୟ
୪ ଶରୀରରେ ୫ ମହୁମାଛି ୬ ବଉଳ

ଭୃଙ୍ଗାବଳି ମୋଦେ କରି ଗୁଞ୍ଜନ
ମକରନ୍ଦ ଶୋଷି ଦେଇ ଚୁମ୍ବନ
ବାହୁଡ଼ନ୍ତି କି ବେଗରେ
ଉଡ଼ନ୍ତ ଗତିକ ଯୋଡ଼ ଦେଲାପରେ
ପ୍ରଶାନ୍ତ ହୁଏ ମନରେ

## କୃଷ୍ଣଙ୍କ ପ୍ରସ୍ଥାନ

ପ୍ରସ୍ଥାନ ସମୟୁ ଦେବାରିଜୟୀ
ଶୟନରୁ ଉଠି ଶାର୍ଙ୍ଗପାଣି ।
୧ତାର୍କ୍ଷ୍ୟ ୨ତାର୍କ୍ଷ୍ୟ ୩ନାଗ ୪ରବଣଭତ୍ତ,
ଆଣିବାକୁ ଆଦେଶିଲେ ଝଟନ୍ତ
ନରଧ୍ୱଜେ ଆସିଖରେ
ଶ୍ରୀପଦରେଣୁ ଲଗାଇ ମସ୍ତକେ
ବନ୍ଦିଲେ ଭକ୍ତିଭାବରେ ।
ଶୁଭେ ଅନର୍ଗଳ ଶଙ୍ଖ ନିସ୍ୱନ
୫ପଟହନାଦରେ କମ୍ପିତ ବନ
କରେଣୁତୁରଗ ବୃଂହସ୍ୱର
କରନ୍ତେ ଭେଦିଲା ଗିରିକନ୍ଦର
ସର୍ବେ ହୃଷ୍ଟ ଏକଠାରେ,
୬କ୍ରମେଳକ ୭ଖର ଘୋର ବୋହ୍ୱ ବୋହ୍ୱ
ଗଲେ ସମଭିବ୍ୟାହାରେ ।
ବୃଷଭ ୮ବିଷାଣଦ୍ୱୟ ହଲାଇ
ଯାଉଛି ପଛରେ ଲୁଲୁ ଫୁଲାଇ
କରି ତିରସ୍କାର ଗଜବୃଂହିତ
୯ଶିବର ବାହନ ହେଉଁ ଗର୍ବିତ
ଶ୍ରେଷ୍ଠ ଲୋକ ସିନା ଭଦ୍ର
ବଡ଼ଲୋକ ପାଶେ ଅରଜକବକା
କହନ୍ତି କଥା ଗରବେ ।
ଦେବକୀନନ୍ଦନ ଆରୋହି ରଥେ
ଗଲେ ବହୁଦୂର ଅରଣ୍ୟ ପଥେ
୧୦ନିଷାଦୀଏ ବସି ଗଜ ପୃଷ୍ଠରେ
୧୧ସ୍ୟନ୍ଦନ ପଛରେ ଗୋଡାନ୍ତି ଖରେ
ଉଡେ ଧ୍ୱଜା ଫରଫର

୧ ରଥ ୨ ଅଶ୍ୱ ୩ ହସ୍ତୀ ୪ଓଟ ୫ ଢୋଲ ୬ ଓଟ ୭ଗଧ ୮ଶିଙ୍ଗ ୯ଶିବ କରେଣୁ ହାତୀ, ତୁରଗ-ଘୋଡ଼ା ୧୦ ମାହୁନ୍ତମାନେ ୧୧ ରଥ

ତା ଶୋଭା ଦର୍ଶନ କରିବାକୁ ଅବା
ହୁଙ୍କାରି ଉଠେ ବାନର ।
୧ତୋକମଙ୍କର ଦେଖି ପ୍ରତାପ
ଦୂରକୁ ଚଳନ୍ତି ୨ବ୍ୟାଳ କଳାପ
ବ୍ରଜନ୍ତୁ ବୁଝାନ୍ତି ଷଣ୍ଢ ଜାତିର
ଶୁଣୁଥିଲେ ହରି ସାଗ୍ର ମର୍ମର
କ୍ରମେ କ୍ରମେ ଗିରି ପଥ ।
ଅତିକ୍ରମ କରି ପ୍ରବେଶିଲେ ଯାଇ
ନନ୍ଦପଦେ ତାଙ୍କ ରଥ ।
୩ଗ୍ରାମ୍ୟଘୋଷଜନ ବ୍ରଜ ୪ବ୍ରଜରେ
ଦୁହୁଁଥିଲେ ଗାଈ କି ତରବରେ
ଆସୁଥିବା ଦେଖି ଜଗନ୍ନାଥ
ଗୋପାଙ୍ଗନା ସହ ୫ଗୋପାଳବ୍ରାତ
ଶ୍ରୀପଦେ ନୁଆଁଇଲେ ଶିର
ବନ୍ଦ ବ୍ରଜେନ୍ଦ୍ରଙ୍କୁ ଦେଇଥିଲେ ପାନେ
ଦୁହିଁଥିବା ସବୁ କ୍ଷୀର ।
୬ତର୍ଣ୍ଣକମାନେ ୭ରୋହିଣୀ ସହ
ବତ୍ସାଭିତ ନେତ୍ରେ ଦେଖି ୮ପଟହ
ଅନାଇ ରହିଲେ ପଘା ଛିଣ୍ଡାଇ
ଲାଞ୍ଜ ଟେକି ଟେକି ଗଲେ ଚଳାଇ
ଘୋଷିତ କଲେ ଉହ ଉହ
ନଗ୍ରୀକଟରେ ଯାଉଥିଲେ ଧାଇଁ
ଅତିବ୍ୟଗ୍ରେ ଗୋବତ୍ସ ।
ବ୍ରୀଡ଼ା କେଦାରରୁ ଅପସାରଣ
କଲାବେଳେ କୀର ଗୋପିକାଗଣ
ଗାଉଥିଲେ ଗୀତ ମଧୁର ସ୍ୱରେ
ପଡ଼ିଲେ ତା ଯାଇ କୃଷ୍ଣ କର୍ଣ୍ଣରେ
ଚାହିଁଦେଲେ ରଥ ଦକ୍ଷେ
ଦର୍ଶନକୁ ଆସି ଦେଲେ ଗୋପାଙ୍ଗନା
ଦୃଷ୍ଟି ଦଣ୍ଡ ଖଣ୍ଡେ ଖଣ୍ଡେ ।
ପୃଥୁ ଦନ୍ତଯୁକ୍ତ ଏକବାରଣ
ଜନମାର୍ଗ କଲା ୯ତୂର୍ଣ୍ଣ ବାରଣ

୧ସୈନ୍ୟମାନଙ୍କର ୨ହିଂସ୍ର ଜନ୍ତୁ ସମୂହ ୩ଗାଆଁର ଗଉଡ଼ ସମୂହ ୪ ଗୋଷ୍ଠରେ ୫ ଗଉଡ଼ ସମୂହ ୬ ବାଛୁରି ୭ ଗାଈ ୮ ଆଡମ୍ବର ୯ ଶୀଘ୍ର

ଭଙ୍ଗି ଭ୍ରମମାନ ମାର୍ଗ ପାର୍ଶ୍ୱର
ସାଙ୍ଗେ ସାଙ୍ଗେ ଆସି ୧କରପବର
ଦେଖି ତାହାର ଉତ୍ପାତ
କରିବାକୁ ତାକୁ ଅନୁଗତ ତାର
କଲ ଅଙ୍କୁଶେ ଆଘାତ ।
୨ମଣ୍ଡଧାରଣି ତ ଅସଂଖ୍ୟ ଗଜ
କଲେ ଭଙ୍ଗାଭଙ୍ଗ ପାଷାଣ ୨ବ୍ରଜ
୩ଅଧିଗାମୀମାନଙ୍କର ଗମନେ
ଅନେକ ନଗଲ ଭଲ ୪ସ୍ୟନ୍ଦନେ
ହର ଆସୁଥିବା ଜାଣି
ପଥ ପାଶ୍ୱରେ ହୋଇଛନ୍ତି ଠିଆ
ନେବାକୁ ବା ରଥ ଟାଣି ।
ହରବଳ, ମାର୍ଗ ସ୍ଥିତ ଭୂଧର
କଲେ ଅତହନ ଅତକୁଥର
ଦୁର୍ଦ୍ଦାନ୍ତ ବାରଣ ଧର ସଙ୍ଗରେ
ପ୍ଲବଙ୍ଗମ ଦଳ ଦେଖି ପଥରେ
କ୍ଷମାରୁହ ପରେ ବସି
ଏ ତାକୁଁ ସେତାଳ ପଡୁଛନ୍ତି ଡେଇଁ
ତଳକୁ କେବେ ନ ଖସି ।
୫ସ୍ୱତଃତନୟା ୬ଅନ୍ତକସ୍ୱସା
ଯମୁନା ଦର୍ଶନେ କୃଷ୍ଣ ୭ତରସା
ପାର ହେବାପାଇଁ ସେନାଙ୍କବହ
୮ହେମେକ ୯ବାରଣ ୧୦ଖରାଶ୍ୱ ସହ
ଆସନ୍ତେ ତଟକୁ ତାର
ଉର୍ଦ୍ଧ୍ୱ ପ୍ରସାରିତ କର ଗ୍ରୀବାମାନ
ପାଶୁ ଆଶୁ ହେଲେ ପାର ।
ଜନାଧିପନାଥ ଦର୍ଶନେ ଦାସେ (କେଉଟ)
ଛାଇଦେଲେ ତର ଥୋଇ ଉଲ୍ଲାସେ
ବସାଇଲେ ନେଇ ବାହ୍ମଣବର୍ଗ
୧୧କୈଟଭଜିତଙ୍କୁ କର ବସର୍ଗ
ଅନ୍ୟ ନାବଟିଏ ଆଣି

୧ ମାତୁଙ୍ଗଶ୍ରେଷ୍ଠ ୨ ସମୂହ ୩ ବାହୋଇ ୪ ରଥ
୫ ସୂର୍ଯ୍ୟଙ୍କ ଝିଅ ୬ଯମଙ୍କ ଭଉଣୀ ୭ଶୀଘ୍ର ୮ଓଟ
୯ ହାତୀ ଅଶ୍ୱ, ଘୋଡା ୧୦ ଖର-ଗଧ ୧୧ କୃଷ୍ଣ

କଲେ ପାର ତାଙ୍କୁ ବସାଇ ତହିଁରେ
ନ ନେଇ କଛି ମେଲଣି ।

## ୪ଥ ସର୍ଗ

ଯମୁନାତରଣ କୃଷ୍ଣଙ୍କର ଶୁଣି
୧ଅନୁଜନ୍ମ ସହ ଧର୍ମନନ୍ଦନ
ପାଛୋଟି ନେବାକୁ ବେଭସେ ବାଟକୁ
ଛଟୁ ଆରେ ସହ କଲେ ଗମନ ।
ମାରୁତ କମ୍ପିତ ଧ୍ୱଜ ଆରୋପିତ
ଧ୍ୱଜଦଣ୍ଡରେ ବସି ବହୁ ନ୍ତପତ
କୃଷ୍ଣ ଆଗମନ ବାରତା ଶ୍ରବଣ
କର ମୋଦଭରେ ଗଲେ ଚଢ଼ିତ ।
ବାରିଧର ଶବ୍ଦ ଚରିନାନାବଧି
ବାଇଦ ବାଜୁଛି ସଜ ଦାଣ୍ଡରେ
ଅସୁରାର ହର ଦର୍ଶନେ ଚଢ଼ିଲେ
ବହୁ ନଟନାଶ ସୌଧଶିଖରେ ।
ଓହ୍ଲାଇବା ବେଳେ ପାଣ୍ଡୁସୁତ ରଥୁଁ
ଦୂରୁ ମୁରାର ଦର୍ଶନ ପାଇ
ସେମାନଙ୍କୁ ଜବେ ଭୁଜ ପଞ୍ଜରରେ
କଲେ ଆଲିଙ୍ଗନ ପୂର୍ବୁଁ ଓହ୍ଲାଇ ।
ହର୍ଷୋତ୍ଫୁଲ୍ଲ ନେତ୍ରେ ଯାଦବ କୌରବ
କଲେ ଆଲିଙ୍ଗନ ପରସ୍ପରକୁ
କ୍ଷିତିପତିତ ହେଲେ ଆଚମ୍ଭିତ
ଦର୍ଶନ କର ସମାରୋହକୁ ।
୨ଫେନକୂଟ ତୁଲ୍ୟ ବୃନ୍ଦରକୁ ଶ୍ରମ
ଉତ୍ତମବାରଣକୁ ବାସବ ଧର (ଅର୍ଜୁନ ଛତାଧର)
ଆବରହନ୍ତେ ରଥେ ପୁର ଅଭିମୁଖ
ଧର୍ମରାଜ ସଙ୍ଗେ ଗଲେ ଶ୍ରୀହର ।
ଏ ଅନ୍ତେ ନକୁଳ ସହଦେବ ସହ
୩ଅନ୍ତେବାସୀ ଧର ଗଲେ ପଛରେ
ଉଭୟ ଚକ୍ଷର ବାହୁମାଏ ମିଶି
ପ୍ରବେଶିଲେ ପୁରେ ସମାରୋହରେ ।

୧ ସାଇଭାଇମାନଙ୍କ ସହ ୨ ଫେଣ ସମୂହ ୩ଶିଷ୍ୟ

ମାୟାସୁର କୃତ ୧ଏ ମଖଶାଳକୁ
ଦେଖି ଦାନବାରି ହରି ଚକିତ
ବାସବ ଭୁବନ ଆଣି ଥୋଇଲେକି
ବୋଲି ତାଙ୍କ ଚିତ୍ତେ ହେଲା ପ୍ରତୀତ ।
ତେଜପୁଞ୍ଜ ଦ୍ୱାରି ହୋଇ ବିରାଜିତ
କୈଳାସନନ୍ଦନ ହର ପାଣ୍ଡବ
ସଭାଗୃହ ପାଶେ ଓହ୍ଲାଇଲେ ଯଥା
ନଭେ ଅବତୀର୍ଣ୍ଣ ଶଶୀହିରଣ୍ୟ ।
୩ହାଟକ ଇଷ୍ଟକା ନିର୍ମିତ ସଦନ
କରେ ଉପହାସ ଦେବ ନିକେତନ
ଧର୍ଣ୍ଣା ନାନ୍ତର ହେଲେ ଉପବିଷ୍ଟ
ଧର୍ମରାଜ ସହ ମଧୁସୂଦନ ।
ଧାର୍ମିକ ଶରୀର ଅନୁଭବେ ସୁଖ
ମୃଦୁ ପ୍ରଭଞ୍ଜନ ସ୍ପର୍ଶେ ଯେସନ
ଦେବକୀନନ୍ଦନ ଆଗମନ ଯୋଗୁଁ
ପୁଲକିତ ରାଜକୁଳ ତେସନ ।
୪ବିଳାସିନୀଙ୍କର ନୃତ୍ୟ ପ୍ରଦର୍ଶନେ
କଲା ମୁଗ୍ଧ ମନ ମାଧବଙ୍କର
ମଧୁର ଆଳାପେ ପାଇଗଲେ କ୍ଷପା (ରାତ୍ର)
ମଖଶାଳେ ଧର୍ମନନ୍ଦନଙ୍କର ।

## ଯଜ୍ଞ ଆଲୋଚନା

"କହୁଛନ୍ତି ଯୁଧିଷ୍ଠିର ଶୁଣହେ ମାଧବ,
ଗୁଣାକର ଯୋଗୁଁ ତୁମେ ପର ମିତ୍ରାସ୍ତବ ।
ଶୁଣିବାକୁ କେବେହେଁ ନ ବଳଇ ମନ,
ତୋଷୁଛି ସନ୍ତତ କହି କୋମଳ ବଚନ ।
ଭୂୟସୀ ମହିମା ତବ କେ ଜାଣି ନପାରେ,
ମୋହଗ୍ରସ୍ତ ହୋଇ ଲୋକେ ଚଳନ୍ତି ସଂସାରେ ।
୫ସପ୍ତତନ୍ତୁ କରିବାକୁ ମାନସ ବଳାଇ,
ତବ ଆଜ୍ଞା ପାଇବାକୁ ଆଣିଛି ଡକାଇ ।

ତୁମ ଅନୁଗ୍ରହେ ଧର୍ମ କରୁଛି ଅର୍ଜ୍ଜନ
ନଦେଲେ ଆଦେଶ ହେତୁ କରିବ ବର୍ଜ୍ଜନ ।
ଦେଇନାହିଁ ଅଦୋଷୀକି କେବେହେଲେ ଦଣ୍ଡ
ନକରି ଉତ୍ସବ ଯାର କର୍ମ ଲଣ୍ଡଭଣ୍ଡ ।
ଧାନ୍ୟାଦି ଶୋଧନେ ୬ଶୂର୍ପ ଆବଶ୍ୟକ ଯଥା
ନିର୍ଦ୍ଦୋଷ ଇଷ୍ଟି ସାଧନେ ତୁମେ ଲୋଡ଼ା ତଥା ।
ବାସର ଶ୍ରୀ କିଏ କେବେ କରୁଛି ବିନାଶ
୭ସପ୍ତସପ୍ତିର ନଭେ ଘଟିଲେ ବିକାଶ ।
କ୍ଷତ୍ରଧର୍ମ ଅନୁଯାୟୀ ବଢ଼ିଥିବା ବିତ୍ତ
ଧର୍ମକାର୍ଯ୍ୟେ ନିୟୋଗ ତା କରିବା ଉଚିତ ।
ହେବୁଅଛି ବର୍ତ୍ତମାନ ମୋର ଏହି ଯାଗ
ନିର୍ଦ୍ଦୋଷେ ତୁଟିବ ଥିଲେ ତବ ଅନୁରାଗ ।
ଅନଳରେ ଯାହା ଲୋକେ କରନ୍ତି କ୍ଷେପଣ
ଅନଳ ମୁଖରେ ତୁମ୍ଭେ କର ତା ଭକ୍ଷଣ" ।
ତଦନ୍ତେ ୮ବିଷ୍ଟରଶ୍ରବା କହିଲେ ସେପରି
ନିର୍ବିଘ୍ନରେ ମଖ ହେବ ସମାପ୍ତ ଯେପରି ।
"୯ନୟ ମହିମାରୁ ହୋଇଅଛି ତେଜ ତବ
ସ୍ୱୟଂ ତୁମ୍ଭେ ବଢ଼ାଇଛ ଅତୁଳ ଗୌରବ ।
ଶୁଦ୍ଧ କ୍ଷତ୍ରିୟ ଭାବରେ ଅଗ୍ରରେ ବିଜୟ (ଅର୍ଜ୍ଜୁନ)
ସେଥିରେ ସମୀପେ ତବ ସର୍ବକାର୍ଯ୍ୟେ ଜୟ
କରିବ ନିଯୁକ୍ତ ତୁମ୍ଭେ ଇଚ୍ଛା ଅନୁସାରେ
ଭଲଭାବ କେବେହେଲେ ନରଖି ମୋଠାରେ ।
ଭୃତ୍ୟପରି ନ କରିବ ଯେହୁ ଏ ଯାଗରେ
ସୁଦର୍ଶନ ଚକ୍ର ଲଦା ହେବ ତା ଶିରରେ ।
ଏ ସକଳ ଶୁଣି ଯୁଧିଷ୍ଠିର ମୋଦଭରେ
ଆରମ୍ଭିଲେ ୧୦ସପ୍ତତନ୍ତୁ କୃଷ୍ଣ ସାହାଯ୍ୟରେ ।
ଅନନ୍ତର ଋକ ଯଜୁ କଲେ ସାମେ ଗାନ
ନିୟମରେ ଯୋଗାଡ଼ିଲେ ୧୧ଶୁଭରି ବିଧାନ ।
ଉପାସନା ବାକ୍ୟ ହେଉଥିଲା ଉଚ୍ଚାରଣ
୧୨ପ୍ରଜ୍ୟ ୧୩ଆଜ୍ୟ ହେଉଥାଏ ନିୟମେ କ୍ଷେପଣ
ବିକସିତ ରୂପ ଧରି ହବିର୍ଭୁକ ତୁଷ୍ଟ
ଧୀରେ ଧୀରେ ବଢିଲେ ନସ ଅତିଶୟ ପୁଷ୍ଟ ।

୧ ଯଜ୍ଞଶାଳା ୨ ଶୁକ୍ର ୩ ସୁନା ୪ ବେଶ୍ୟା ୫ ଯଜ୍ଞ
୬ କୁଲା ୭ ସୂର୍ଯ୍ୟ ୮ କୃଷ୍ଣ ୯ ମାତ୍ର ୧୦ ଯଜ୍ଞ
୧୧ ଯଜ୍ଞ ୧୨ ପ୍ରଚୁର ୧୩ ଘିଅ

ଦହନ କେତନ ରୂପେ ଉଠି ହୋମ ରସେ,
ବ୍ୟାପିଯାଇ ସଂବାଦ କ ଦେଲେ ସର୍ବଲୋକେ ସେ ।
ଅମୃତଠାରୁ ସୁସ୍ୱାଦୁ ଏ ହବ ଭକ୍ଷଣ,
କଲେ ମହା ଆନନ୍ଦରେ [1]ବିବୁଧଗଣ ।
ଏ [2]ମଖର [3]ହବି ପିଇ ଦେବତା ସରବେ,
ଦାନବଙ୍କୁ ପରାଜୟ କରନ୍ତି [4]ଆହବେ ।
ହିପ୍ରା ବର୍ଯ୍ୟ ବୃଷ୍ଟି କଲା ଯାଗରେ,
ଉତ୍ତରୋତ୍ତର ଉନ୍ନତ ହେଲା ପଦାର୍ଥରେ ।
ଦ୍ୱିଜଙ୍କୁ ଦକ୍ଷିଣା ଦେଇ ରାଜନ ଯଥେଷ୍ଟେ,
ସନ୍ତୁଷ୍ଟ କରନ୍ତି ସବେ ଏ ମଖ ଶେଷରେ ।
ଯାଗ ଦେଖି ଆସିଥିବା ସକଳ ରାଜନ,
ହେଲେ ଅତି ହୃଷ୍ଟ କରି [5]ଦ୍ୱିଜନ୍ମା ଦର୍ଶନ ।
[6]ସବଭୂବ୍ୟସ୍ଥ ଚଳୁଥିଲା ଉପହାର ପାଇ,
ଅଧିକରୁ ଦେଲେ କଏ ବଳନ୍ତ ଫେରାଇ ।
ନାମା ରାଜା ଯୁଧିଷ୍ଠିର ଆପଣା ଇଚ୍ଛାରେ,
ଯାଚକମାନଙ୍କୁ ଧନ ଲଗିଲେ ଦେବାରେ ।
ସତ୍ତ୍ୱଗୁଣାଧିକ୍ୟ ହେତୁ ଲୋଭ ବର୍ଜିତ,
ଯାଚକର ମନୋରଥ କରନ୍ତି ପୂରିତ ।
ପ୍ରିୟବସ୍ତୁ ହେଲେ ମଧ୍ୟ କରନ୍ତି ବଣ୍ଟନ,
ଯେଣୁ ଜାଣି ପାରୁଥିଲେ ଯାଚକର ମନ ।
ମେଘ ଦେଲାପରେ ଜଳ ଉର୍ବର ଭୂମିକି,
ଦେଉଥିଲେ ଅତରେ ସେ ଶତଗୁଣ ବାଞ୍ଛିତ ।
ପରମ ଆନନ୍ଦ ଲଭୁଥିଲେ ଭକ୍ତଜନେ,
ସୁରଭି ସୁସ୍ୱାଦୁ ଚୂତ ଫଳାଦି ଭୋଜନେ ।
ରାଜସୂୟ [7]ଅଧ୍ୱରରେ ଦୁଷ୍ଟମାନଙ୍କର,
ମର୍ଦ୍ଦନ ବିଷୟେ ହରି ଥାଆନ୍ତି ତତ୍ପର ।
ଅକ୍ଷତ ଭାବରେ ଦାନ ହୋମ ଯଜନାଦି,
କାର୍ଯ୍ୟ ଦେଖିବାକୁ ସଦା ରହନ୍ତି ଅନାଦି ।
ଅନନ୍ତର ଧର୍ମରାଜ ଧର୍ମକୁ ବିଚାରି,
ଅର୍ଘ୍ୟ ଦାନ ବିଷୟରେ ବୁଝିଲେ ପଚାରି,
ଶାନ୍ତନୁ ସୁତ ଭୀଷ୍ମଙ୍କୁ ସଭା ମଣ୍ଡପରେ ।
ଜାଣିବାକୁ ତାଙ୍କଠାରୁ ସଠିକ ଭାବରେ ।

[1] ଦେବତା ସମୂହ [2] ଯଜ୍ଞ [3] ଘୃତ [4] ଯୁଦ୍ଧରେ
[5] ବ୍ରାହ୍ମଣ [6] ଯଜ୍ଞ [7] ଯଜ୍ଞ

ଯୁଧିଷ୍ଠିର ସମ୍ମାନିତ ଭୀଷ୍ମ ହୋଇ ପ୍ରୀତ,
ଉତ୍ତରିଲେ କରିବାକୁ ତାଙ୍କୁ ଉତ୍ସାହିତ ।
ସକଳ କାର୍ଯ୍ୟରେ ଯେତୁ ସନ୍ତତ ସମର୍ଥ,
ଉପଦେଶ ଦେବା ତାଙ୍କୁ ନୁହଇ କି ବ୍ୟର୍ଥ !
ବସିଛନ୍ତି ଇଷ୍ଟବନ୍ଧୁ ଗୌରବେ ଯାଗର,
[1]ଭୂବ [2]ମୁଖଭୂବ ଗୁରୁ [3]ଭୂଭୃଜନକର ।
[4]ସୁରଦେବବନ୍ଦ୍ୟ ହରି ପରମାତ୍ମା ଅଂଶ,
ରହିଛନ୍ତି ସଭାମଧ୍ୟେ ଯାଦବାବତଂସ ।
ମାନୁଷ ବିଗ୍ରହ ରୂପେ ଭୂଭାଗେ ଜନମ,
ଲଭି କରନ୍ତି ସନ୍ତତ ଦୁଷ୍କର କରମ ।
ସତ୍ତ୍ୱଗୁଣ ଆଶ୍ରୟରେ ଜଗତ ପାଳନ,
କରନ୍ତି ସେ ବାସୁଦେବ ପୂଜ୍ୟ ସନାତନ ।
ତମୋଗୁଣ ଆଶ୍ରି ହର ଧରା ସଂହାରକ,
ରଜୋଗୁଣେ ବ୍ରହ୍ମା ବୋଲି ସୃଷ୍ଟି ଉତ୍ପାଦକ ।
ଏଣୁ କୃଷ୍ଣ ସର୍ବୋପାସ୍ୟ ପରମ ପୁରୁଷ,
ଯା ଯୋଗୁଁ ଲଭନ୍ତି ଲୋକେ ସର୍ବସ୍ୱ ପୌରୁଷ ।
ନିବିଷ୍ଟ ଚିତ୍ତରେ ତାଙ୍କୁ ସେବନ୍ତି ଯେ ଭବେ,
ତାଠାରେ କଳୁଷ ବୋଲି ନରହଇ ଲବେ ।
ଉତ୍ପତ୍ତି ନାଶରି ହେତୁ ସର୍ବ ବ୍ୟାପୀ ହରି,
ଜନ୍ମିଛନ୍ତି ଭୂଭାଗରେ କୃଷ୍ଣନାମ ଧରି ।
ମଧୁ କଇଟଭ ନାମେ ଦୁଇଟି ଅସୁର,
ସଂହାରି ତ୍ରିଭୁବନରୁ ଭୟ କଲେ ଦୂର ।
ଅଭିନବ ହୋଇ ସୁଦ୍ଧା ଅଟନ୍ତି ସ୍ଥବିର,
ଅର୍ଘ୍ୟ ଦେଇ ଧୋଇ ଦିଅ ପଦୁକେ କ୍ଷୀର ।
ସ୍ୱର୍ଗାପଗାତ୍ମଜଙ୍କର ଶୁଣି ଉପଦେଶ,
କେଶବଙ୍କୁ ଦେଲେ ଅର୍ଘ୍ୟ ତୁରିତେ ଭୂପେଶ ।

## କୃଷ୍ଣ ଅର୍ଘ୍ୟ ପାଇବାରେ ଶିଶୁପାଳର କ୍ରୋଧ

ଚେଦିପତି ଶିଶୁପାଳ ହେଲା ଅତି ଅସମ୍ଭାଳ
ପ୍ରଜ୍ୱଳିଲା ତାର କାଳ କୃଷ୍ଣ ଅର୍ଘ୍ୟରେ
ପୂର୍ବ ବୈର ପ୍ରତିଶୋଧ ନେବା ଲାଗି ବଳି କ୍ରୋଧ
[5]ଅର୍ଭକ ତୁଲ୍ୟ ଅବୋଧ ହେଲା ସେ ଖରେ,

[1] ବ୍ରହ୍ମା [2] ମୁଖଜ ତ ବ୍ରହ୍ମାଙ୍କ ମୁଖରୁ ଜାତ ବ୍ରାହ୍ମଣ
[3] ରାଜା ସମୂହ [4] ଅସୁର [5] ବାଳକ

Digitized by srujanika@gmail.com

ବଦନ ବର୍ଣ୍ଣିଲ କଦନ,
ମୁକୁଟ କର୍ମି ନଶିଲେ ଅଙ୍ଗରୁ ଖାଳ ।
ବାତାହତ ତରୁପରେ ଶରୀର ମାଡୁଛି ଥର
ଭୂପଙ୍କୁ ଭର୍ତ୍ସନା କରି ହେଲ ଅସ୍ଥିର
ନୟନମାନ ତତ୍ପରି ବାରେବାର ଗୋଡ ପିଟି
କଲ ସେ ଘୋଷଣା ପାଟି ୧କ୍ଷୁଭିତ ଶିର
ଘର୍ଷିଲ ପରୁଷ ବଚନ,
ପିଙ୍ଗଳ ସଟାପଟଳ ପରି ନୟନ ।
ନକର ଆଗୁଁ ବର୍ବର ଆତିଥ୍ୟ ଦେଖି ଶ୍ରଦ୍ଧାର
ନ ବାଛିଲ ଗୁଣ କା'ର ହେ ପୃଥାସୁତ ?
ଅପୂଜ୍ୟଙ୍କୁ ପୂଜା କରି ମହତ୍ତ୍ୱ ପାଉଛ ସରି
୨ଗ୍ରାମ୍ୟମୃଗ ସଙ୍ଗେ ଧରି ହେଲ ୩ଅପୂତ
ସତ୍ୟଧ୍ୟାନ ହେଲ ଏଥିରେ,
ଏ ଧରମ କରମ କି ସମ୍ଭବେ ଖିରେ ।
ଧର୍ମରାଜ ବୋଲି ନାମ ଆଜଠାରୁ ହେଲ ୪କ୍ଷମ
ବିଧାତାଙ୍କ ହେଲ ବାମ ବିଫଳ ୫କାମ
ଅପ୍ରଶସ୍ତ ୬ଭୌମବାର ୭ଶିବ ବୋଲି ବୋଲିବାର
ତେମନ୍ତ ମତ ଯାହାର ତା ନିଷ୍ଠା ୮ଶ୍ରୀମ
୯ପଣ୍ଡିତ ଏ ସରିତସୁତ
ବାଳପରି ଆଚରଣେ ହେଲେ ୧୦ଅଭୂତ ।
ହେବାରୁ କୃଷ୍ଣ ପୂଜିତ ଯେତେ ବ୍ୟକ୍ତି ଆମନ୍ତ୍ରିତ
ଭୂପୃଶ ଅପମାନିତ ୧୧ବାଳିଶ ପରି
ଅବଲମ୍ବି ନୀଚ କର୍ମ ତୁଟିଲ ପ୍ରାଚୀନଧର୍ମ
ନ ବାଧିବ କାହା ମର୍ମ କରିଲ ଏପରି,
ବିକ୍ଷୋଭିତ ଅବନୀପତି
ଇଚ୍ଛାକଲେ ଘଟାଇବେ ଘୋର ବିପତ୍ତି ।
ଅନନ୍ତର ଚେଦିପତି ଘର୍ଷିଲ ମାଧବ ପ୍ରତି
ନ୍ଟପଯୋଗ୍ୟ ପୂଜାଚିତ୍ତ କଲୁ ଗ୍ରହଣ,
"କିଏ ମୁଁ ସ୍ଥିର ନକରି ଚନ୍ଦନେ ଲଜ ସମ୍ବରି
ବୋଲି ବୋଲି ହରି ହରି ଯୁଦ୍ଧ ବରଣ
କଲୁ ଆରେ ମେଣ୍ଢଭ ଠୋକା
ଛଡ଼ାଇ ଗଲବ ତୋର କରିବ ବୋକା ।
କରି ୧ସରଘାନାଶନ ବୋଲାଉ ମଧୁସୂଦନ
ମଧୁଦାନବ ହନନ ନୁହଇ ସତ
୨ବୈହଣୀତନୟ ବଳେ ବଳୀ ବୋଲି ଭୂମଣ୍ଡଳେ
ବୋଲାଉଛୁ ଯିନା ଛଳେ ଅନବରତ
ପ୍ରବଞ୍ଚନା ନଗଲ ତୋର
ଡାକିଲେଣି ଲୋକେ ଏବେ ରୁକ୍ମିଣୀ ଚୋର ।
ଯୁଦ୍ଧ କରି ୩ଚାହ ୪ଚାହ ସଙ୍ଗେ ଧରି ୫ଚାହ ୬ଚାହ
ଛଡ଼ାଇବେ ତୋର ୭ଚାହ ଉତ୍ତବ ମୁଣ୍ଡ
ପରାକ୍ରମ ନ ଦେଖାଇ ତୁଚ୍ଛା ବିକ୍ରମୀ ବୋଲାଇ
କୌଶଳ ସଦା ଭୁଆଇ କରିଲେ ଭଣ୍ଡ
କି ବୋଲିବେ ଲୋକେ ଉସାରେ,
ନ ଭାବିଲୁ ଦିନେ ହେଲେ ଜଡ଼ ମାଧ୍ୱାରେ ।
ଅକୁଶଳ ମତି ଭୁତ ସର୍ବଦା
ବୁଲୁ ବୁଲିଆଡ଼େ ଧରି ପ୍ରମଦା
ଯେତେକ ଅପଗୁଣ ଅଛି ତୋଠାରେ
ବନ୍ଦୀ ଉଣ୍ଡି ନ ସାରି ଫସାରେ
୮କୁନ୍ତଳ ଲୁଣ୍ଠିତ ଶିରେ
କୁଣ୍ଡାଇଲେ ତାକୁ ୯କଙ୍କତିକା ଧରି
ହସିବେ ସିନା ମନ୍ତ୍ରୀରେ ।
ନୃପ କେଶବ ଏ ବସି ସଭାରେ
ଫିଟାଉ କାହାକୁ ପାଟି ଲଜ୍ଜାରେ
ପୂର୍ଣ୍ଣାଯୋଗ୍ୟ ୧୦ପ୍ରଶ୍ନମାନସା ପାଇ
ଆସୀନ ପାରୁନେ ବୁକୁ ଫୁଲାଇ
ବୃଷରୂପୀ ଦୈତ୍ୟନାଶୀ
ବଡ଼ ବଡ଼ କଥା କହେ ଅହଙ୍କରି,
ଭଲ ମନ୍ଦ ନ ବିଚାରି ।
ଅଚ୍ୟୁତ ଚୈଦ୍ୟର କଟୁ ବଚନ
ଶ୍ରବଣେ ନକଲେ ମନେ ଗଣନ,

୧କମ୍ପିତ ୨କୁକୁର ୩ଅପବିତ୍ର ସ୍ୱର୍ଗାପଗାସୁଜ-ଭୀଷ୍ମ
୪ କ୍ଷୀଣ ୫ ଅଭିଳାଷ ୬ ମଙ୍ଗଳବାର ୭ ମଙ୍ଗଳ
୮ ସୁନ୍ଦର ୯ ବୃଦ୍ଧ ୧୦ ଅପୂଜିତ ୧୧ ମୂର୍ଖ

୧ ମହୁମାଛି ୨ବଳରାମ ୩ରାଜା ୪ସମୂହ ୫ସୈନ୍ୟ
୬ ସମୂହ ୭ କୁଟବୁଦ୍ଧି ଛଳ ୮ ମୁଣ୍ଡବାଳନାହିଁ
୯ ପାନିଆ ୧୦ ପୂଜା, ସମ୍ମାନ

[୧]ଜାହ୍ନବୀ ନନ୍ଦନ ଉଠି ବକ୍ଷାଦେ
ଅମ୍ବୁଧର ପରି ଗମ୍ଭୀର ନାଦେ
ଘୋଷିଲେ ଏମନ୍ତ ଗିର
"ଅଚ୍ୟୁତ ଅର୍ଚ୍ଚନେ ଯେହୁ ଅସହିଷ୍ଣୁ
ଛେଦିବା ତାହାର ଶିର

ଅବଗତ ହୋଇ ଘୃଷ୍ଟ ଭାଷିତ
ଚୈଦ୍ୟପକ୍ଷ ଭୂପେ କ୍ରୋଧେ ଜ୍ୱଳିତ
ଅରୁଣିତ ନେତ୍ର କରି ସ୍ଫୁରଣ
କରିବାକୁ ବ୍ୟଗ୍ରେ ବୈରି ଦହନ
ଉଠିଲେ ରୋଷବଶରେ
ଉଲ୍ଲସିତ [୨]ସିନ୍ଧୁ ଦର୍ପଣ କି ତ
ବିକୃତ କ କ୍ଷଣକରେ ।
ଅଶନି ସଦୃଶ ଉଚ୍ଚନାଦରେ
ଚେଦିରାଜ ଅତି ଅଟ୍ଟହାସରେ
କଲ ଅଗ୍ନିସ୍ଫୁଲିଙ୍ଗ ଆସି ଭୂତଳେ
[୩]ବ୍ୟାପ୍ତଭୁଜ କରି ପିଟିବା ଛଳେ
କିଏ ବା ବସ୍ତ୍ର ଫିଟାଇ
ବାନ୍ଧିବା ଛଳରେ ଆସନ୍ତେ ଘୃଷ୍ଟଙ୍କୁ
ଧଇଲେ କୃଷ୍ଣ କୁଣ୍ଢାଇ ।
ଅସହିଷ୍ଣୁ ଚୈଦ୍ୟ ହୋଇ ଉଦ୍ଧତ
ଲଢ଼ାଇକି ବାରବାର ଉଦ୍ୟତ
ବିଷବଚନକୁ ଉଦ୍‌ଗାର କରି
ହେଉଥିଲା ମତ୍ତ [୪]ବିଷାଣୀ ପରି
ସମସ୍ତ ଯୁଦ୍ଧାର୍ଥୀ ଚିତ୍ତ
ତୃଣତୁଲ୍ୟ ମନେ କରି ମାଧବଙ୍କୁ
[୫]ନିନ୍ଦାକଲେ କୁରୁପତି ।
ଚେଦିପ ଚତ୍ୱରେ ପ୍ରଚଣ୍ଡ ବଗ
"ମାର, ମାର" ବୋଲି [୬]ବୃଷ୍ଣିଙ୍କୁ ଆଗ
ଦେଉଅଛି ଡାକ ବାରକୁ ବାର
ସ୍ଫୁରିତ ଅଧରେ କରି ଧିକ୍‌କାର
ଭୁଜା ଏତେ ଟଣାଟଣି

[୧] ଘୃଷ୍ଟ [୨] ଢଳ [୩] ପ୍ରସାରିତ [୪] ହାତୀ
[୫] ଗାଳିଦେଲେ [୬] କୃଷ୍ଣ

ଅନୁତ୍ତମୋତ୍ତମ ଜଣାଇବ ସିନା
ପଶିଲେ ଯୁଦ୍ଧ ଏକ୍ଷଣି ।
ସଦ୍ୟ ବଧ ଚୈଦ୍ୟ ନାଟ ଲଗାଇ
ସହସା ସଭାରୁ ଗଲା ପଳାଇ
[୧]ଅନୀକିନୀମାନ ନୃପଙ୍କ ଚରି
ଏକାଠି କଲାଣି ଅତି ତ୍ୱରିତେ
ବାଇଦ ଦେଲା ବଜାଇ
ସେ ରଣଦୁନ୍ଦୁଭି ପ୍ରତିଧ୍ୱନି ଛଳେ
ଚୌଦିଗ ଦେଲା କମ୍ପାଇ ।
ଯେତେ ଯିଏ ଥିଲେ ମିତ୍ର ମଣ୍ଡଳ
ଆସି ଠୁଳ ହେଲେ ଅତି [୨]ପ୍ରବଳ
ଭୂଧର ସଦୃଶ ବର୍ମ ଧରି
ବାରବାର ତୁଳ୍ୟ ନିଧ୍ୱାନ କରି
ଚଢ଼ି [୩]ଦ୍ୱିରଦ ଉପରେ
'ମାର, ମାର' ବୋଲି କରୁଛନ୍ତି ରଡ଼
ଗୁରୁ ଗମ୍ଭୀର ଘୋଷରେ ।

**୫ମ ସର୍ଗ**

## ଶିଶୁପାଳ ଦୂତ ପଠାଇବା

ପରୀକ୍ଷିବା ନିମିତ୍ତ ପର ହୃଦୟ
କହନ୍ତି ଦୂତଦଳ ବଚନ ଦ୍ୱୟ ।
ଧୂର୍ତ୍ତ ଦୂତଟିଏ ଚୈଦ୍ୟ ପ୍ରେରିତ,
ଆସି କୃଷ୍ଣ ସମ୍ମୁଖେ ହୋଇ ମାନିତ,
ଆଗେ କୋମଳ ପରେ ପରୁଷ କଥା,
ଭାଷିଲା ତାଙ୍କ ମନେ ଜନ୍ମାଇ ବ୍ୟଥା ।
"ଚେଦିପ ଆପଣଙ୍କୁ ଅପ୍ରିୟ କହି
କରୁଛି ଅନୁତାପ ସନ୍ତାପେ ରହି
ନିଃସ୍ୱ ଆଲିଙ୍ଗନ କରି ପ୍ରଶାନ୍ତ
[୪]ସ୍ୱାନ୍ତେ ହୁଅଇ ପୁଲକିତ ନିତାନ୍ତ
ତବ [୫]ମାନନା ହୃଦେ ରଖିଛି ଧରି
ପାଶୋରି ଦିଅ ଦୋଷ କୋପ ନକରି
କହିବ ଯାହା ତାହା ହୋଇ ଉନ୍ମନା
କରନ୍ତୁ ପରିହାରି ଅବମାନନା ।

[୧] ସୈନ୍ୟମାନ [୨] ଶୀଘ୍ର [୩] ହାତୀ
[୪] ଚିତ୍ତେ [୫] ପୂଜା କରଣ

ନକଲେ ଜାତ ହୋଇ ଶୂନ୍ୟ ବସ୍ତୁର
ପରିଣାମେ ଭୂଷଣ ତାର ନଗ୍ରହ ।
ଆଗତ ଅନାଗତ ଶତ୍ରୁ ନୃପତି
ତବ ଚରଣାଶ୍ରିତ ହେବେ ଝଟିତି ।
୧ଭସ୍ମଶୂନ୍ୟାଧୀ ଦେଖି ଅଙ୍ଗରାଗଣେ
ଡରଇ ଶତ୍ରୁ ସବା ଅସ୍ତ୍ରଧାରଣେ ।
ବୋଲାଉଛ ଗୋପାଳ ପଶୁ ପାଳନେ
କହନ୍ତି ଉମାଦାସ ଜନେ ଦର୍ଶନେ ।
ନାସ୍ତିକ ବୋଲିବାଟା ଅତି ସଙ୍ଗତ
ଯେଣୁ ମାତୁଳ ମାର ହେଲ ଉଦ୍ଧତ ।
ମାରିଛ ପୂତନାକୁ ପିଇ ତା କ୍ଷୀର,
ତେଣୁ ଜନମହନ୍ତା କହନ୍ତି ଧୀର ।
୨ଘନ ଜାଲ ସଦୃଶ ନଗର ବାନ୍ଧି
ମାସ ନପାଇ କଷ୍ଟୁ ଫେରର ଅନ୍ଥି ।
ଲୁଚିଲ ୩ବୃଷ୍ଣ ପର ୪କ୍ଷମାଭୃନ୍ତରେ
ବଳମଶାଳୀ ୫କ୍ଷମାଭୁକ ଡରରେ ।
ନରକଯାନ୍ତ୍ରି ବୋଲି ବୋଲନ୍ତି ଜନେ
ଯେଣୁ ନକଲ ଭସ୍ମ ୬ବୃଷ ନାଶନେ
ଶତ୍ରୁ ନାଶକାରୀ ନେହପସନ
ଆମ୍ଭମାନେ ଆଙ୍ଗବନ ନର୍ଭୟେ ରହୁ ।
୭ନରଗସ୍ତ ନୋଧ ହେତୁ ରାଜା ପ୍ରଜନ୍ତ
ତବ ଦର୍ଶନେ ହୁଏ ସଦା ମୁଦିତ ।"
ନରଠାରୁ ସକଳ ଶ୍ରବଣ ପରେ
ରଘୁନାଥ ପ୍ରେରିତ ସାତ୍ୟକି ଭରେ
ଉତ୍ତରିଲେ ତାହାଙ୍କୁ ନତୁର ଯନେ
ନରଖି ଅଣରଧା ଅନ୍ତଃ କରଣେ ।
"ମହାକାଳ ସଦୃଶ ତବ ସମ୍ଭାଷ,
ଲୋଡ଼ୁଛି ଶିଶୁପାଳ ୮ବୃଷ ବିନାଶ ।
ପୂଜିଲେ ସୁଅର୍ଚ୍ଚିର ହରକ ଯଦା
ବେଦପ ବଗ ହେବା ନଥିଲା ତଦା ।
ସୁଚର ପୁଷ୍ପମାଳ କଲେ ଧାରଣ,
ଅସ୍ପୃଶ୍ୟା ପ୍ରକାଶିବା ଭୂଷାଚରଣ ।

ପର ମଙ୍ଗଳେ ତୁଷ୍ଟ ସଦା ଉତ୍ତମ,
ହୁଅଇ ସନ୍ତାପିତ ସିନା ଅଧମ ।
ଅସାଧୁ ମଣିଷର କର୍କଶ କଥା
ସଜ୍ଜନ ହୃଦୟରେ ନଦିଏ ବ୍ୟଥା ।
ମଣିର ମୂଲ୍ୟ ଊଣା ହୁଏ କି କେବେ
ଭୂମି ରଜ ଆଚ୍ଛନ୍ନ ହୁଅଇ ଯେବେ ।
୧ଲଘୀୟାନ କେବଳ ନିଜ ଗୁଣକୁ,
ହୁଅଇ ଆମୋଦିତ କହି ପରେକୁ,
ବଡ ପାରଗ ଆତ୍ମଗୁଣ ଗାନରେ,
ସାଧୁ ପ୍ରଶଂସା ନ ଧରିଣ ତୁଣ୍ଡରେ ।
ଅସାଧୁ, ଅଳ୍ପ ସ୍ୱୀୟ ଦୋଷ ଦର୍ଶନେ
ଦିଅନ୍ତି ଦିବ୍ୟ ଦୃଷ୍ଟି ପର ନିନ୍ଦନେ ।
ଏତେ ବିରୋଧ କରିଥିବା ନୃପତି
ମିହତା ବୃଷସହ ଅଦ୍ଭୁତ ଅତି ।
୨ପତଙ୍ଗେ ପଡ଼ି ଯୋଡ଼େ ଦେଖି ପତଙ୍ଗ
ନିଜ ଔଦ୍ଧତ୍ୟ ହେତୁ ଲୋଡ଼ି ତା ସଙ୍ଗ ।
ବାଚ୍ୟ ଅବାଚ୍ୟ କହି ବକ୍ତୃତାନେ
କରିଅଛ ସାହାଯ୍ୟ ଯୋଧୋଦ୍ଦୀପନେ ।
୩ସାତ୍ୟକି ଠାରୁ ଶୁଣି ଏମନ୍ତ ଗିର
ପୁଣି ଭାଷଇ ୪ପ୍ରେଷ୍ୟ ନୁଆଁଇ ଶିର ।
୫ଦୁର୍ବିଧି ଲୋଡ଼ି ଅହରହ ଅନର୍ଥ
୬ଆପ୍ତଜନର ଉକ୍ତି କରଇ ବ୍ୟର୍ଥ ।
ହେଉଛି ଗ୍ରାହ୍ୟ ଯେବେ ମୋର ବଚନ
କୃପାନ୍ତ ହୋଇ କାର୍ଯ୍ୟକର ସାଧନ ।
ତପନ ଅନୁରକ୍ତା ସରୋଜମାର
ନୁହଇ ଗ୍ରାହ୍ୟ ୭କର ଶୀତଳେଶ୍ୱର(ଚନ୍ଦ୍ରର)
ଗୁଣାଗୁଣ ବିଚାର ନାହିଁ ଯାହାର,
ସେ କି ଶୁଣିବ କେବେ କଥା କାହାର ।
ନପାଇ ଅର୍ଘ ଚୈଦ୍ୟ ୮ସହସ ନରେ,
ଉପୁଜିଲା କନ୍ଦଳ ଅନାଦରରେ ।
ହୁଏ ନାହିଁ ଲାଘବ କାହା ସମ୍ମାନ
କଲେ ବା ଅନାଦର ୯ମୂର୍ଖ ବିତାନ

୧ ଭସ୍ମଶୂନ୍ୟମତ୍ତ ୨ ମେଘସମୂହ ୩ ମୂଷିକ ୪ପର୍ବତ ୫ରାଜା ୬ଷଣ୍ଢ ୭ପରିତ୍ୟକ୍ତ ୮କୃଷ୍ଣ

୧ଅତିକ୍ଷୁଦ୍ର ୨ଅଗ୍ନିରେ ୩ଦୂତ ୪ମୂର୍ଖ ଦୁଷ୍ଟ, ୫ଯକ୍ଷରେ ୬ମୂର୍ଖସମୂହ ୭ପୂଜିତ ୮ସୁଦ୍ଧ ୯ରୌଦ୍ର

ମାଂସଲୁବ୍ଧ କେଶରୀ କଣ୍ଠମଣିକି
ଗ୍ରହିଲେ ତାର ନିନ୍ଦା ହେବ କାହିଁକି ?
ଯୋଗ୍ୟତା ଥିଲା ବୋଲି ହେଲ ଗର୍ବିତ
ଅବୁଧ ଚାର୍ଥଦ୍ୱାର ହୋଇ ଅଛିତ ।
୧ପ୍ରଧାନ ପାଇଁ ଡାକ ଦେବା ନିମିତ୍ତ
ହୋଇଅଛୁ ଏଠାକୁ ରାଜ ପ୍ରେରିତ ।
୨ମଳମୂତ୍ର ସଦୃଶ ନମାର ଅର
ବୀରତ୍ୱ ଦେଖାଇବ ସାଧୁ ତାରେ ।
ବେତସ ଭୁଲ୍ୟ ନତ ଏବେ ଦେଖାଇ
ଚୈତ୍ୟ ୩ନକଷା କର ପ୍ରଣତ ଯାଇ ।
ନୁହଇ ଶିଶୁପାଳ ଶିଶୁ ପାଳକ
ତରୁଣ ତରୁଣୀଙ୍କ ସଦା ରକ୍ଷକ ।
ଦେଖାଏ ଅନୁଗ୍ରହ କଲେ ପ୍ରଣତ
ପ୍ରିୟାକାଟରେ ହୁଏ ସନ୍ତୁଷ୍ଟ ଅତ ।
ଅବନତମ୍ବ ଚୈଦ୍ୟକୁ ହୁଅ ପ୍ରଣତ
ଯୁଦ୍ଧ କରିବା ଲଗି ନଥିଲେ ମତ ।
୪ଋଦ୍ଧିମନ୍ତ ଚେଦିପ ହେଲେ ଉଦ୍ଧତ
ଶକ୍ତିଶାଳୀ ଭୂପକୁ କରେ ଆୟତ୍ତ ।
ସବଂଶ ଅଖଣ୍ଡିତ ପରାକ୍ରମରେ
କରଇ କ୍ରୀଡ଼ା ସେହି ଶଙ୍କାଶୂନ୍ୟରେ ।
୫ଅବମାଧ୍ୟ ମୂର୍ଦ୍ଧାରେ ନେଇ ଆଶ୍ରୟ
ଉଦୟ କରୁଅଛ ଆୟୁଷ କ୍ଷୟ ।

## ସୈନ୍ୟଯୁଦ୍ଧ ଆରମ୍ଭ

ଚରକ ବଚନ ଶ୍ରବଣ କରି
ସମୀରଣ ଭୂତ ଅର୍ଣ୍ଣବ ପରି ।
ଉଠିଲେ ୬ଧ୍ୱଜାଏ ୭ଧ୍ୱଜାଏ ଖର
ପାଟିତୁଣ୍ଡ କରି କୃଷ୍ଣ ପକ୍ଷର ।
୮ଧ୍ୱଜା ୯ଧ୍ୱଜା ୧୦ଧ୍ୱଜାମାଏ
ମୁହାମୁହିଁ ହେବା ପାଇଁ ଚଣ୍ଡାକ
ଏକାଠି ହେଲେ ସଭିଏଁ ।

୧ କରଣ ୨ଯଜ୍ଞରେ ୩ ନିକଟ ୪ ବଳଶାଳୀ
୫ ପର୍ବତଶୃଙ୍ଗରେ ୬ ରାଜାମାନେ ୭ ବପ୍ରମାନେ
୮ ରଥ ୯ ଅଶ୍ୱ ୧୦ ସେନାମାନେ

ଯାଦବ ନରେନ୍ଦ୍ର ବଜ୍ର ସମାନ
ଅନ୍ତଃସାର ଯୁକ୍ତ ଆୟୁଧମାନ
ଧରି ଆରୋହିଲେ ଗଜ ପୃଷ୍ଠରେ
ଆଉ କେତେ ୧ହଂସ ୨ହଂସ ଉପରେ
ଝୁଲାଇ ୩ଆସ ୪ଅଂସରେ
ପଟହ ଧ୍ୱନିରେ କମ୍ପାଇ ଅବନୀ
ବାହାରିଲେ ପଟହରେ ।
୫ଅମ୍ଳାନଉଷ୍ଣୁକ ୬କାନ୍ତ ବଂଗ୍ରାମ
ଲମ୍ବାଇଲେ ଆସି ମାଳ କଣ୍ଠରେ
୭ଅମ୍ଳକ ୮ଅମ୍ଳକ ସହ ସ୍ୟନ୍ଦନେ
ନବାମ୍ବୁଦ ପରି ଗମ୍ଭୀର ଧ୍ୱନେ
ଚଢ଼ିଲେ ପ୍ରମୋଦଭରେ
ଏ ଅନ୍ତ କାସ୍ୟପି ଉଡୁଥି ଖସି
ବସିଲେ ଧ୍ୱଜ ରୂପରେ ।
୯ଆନକ ୧୦ଆନକ ବଜାଇ ଅଗ୍ର-
ଯାଉଥିଲେ ବୀରେ ଆହବେ ବ୍ୟଗ୍ର
୧୧ସ୍ୱାଉଙ୍କ ୧୨ସାରଙ୍ଗ ଘୋଷ ଶ୍ରବଣେ
ପ୍ରତିଧ୍ୱନି କଲା ୧୩ସ୍ୱାରଙ୍କ ବର୍ଣ୍ଣେ
୧୪ତିଗ୍ମାଂଶୁ ପ୍ରଦୀପ୍ତ ହସି
୧୫ଦୁର୍ଦ୍ଧର୍ଷ ହେବାରୁ ଚୈଦ୍ୟ ସେନା ନେଇ
ଗଳିଲି ଭିତରେ ପଶି ।
୧୬ଘଟା ୧୭ଘଟା ୧୮ଘଟା ଦେଖି ବରକ୍ଷ
ହେଲ ଧୁଉ ଧୁଉ ତକ୍ଷଣେ ବକ୍ଷ
କହୁଥିଲା ଚୈଦ୍ୟ କଥା ଗରବେ
କେଶବ ମହିମା ନ ଜାଣି ଲବେ
କାଳ ପୂରିଗଲେ ଟର !
ନ ଦିଶଇ ଭଲମନ୍ଦ ସେତେବେଳେ
ଭୁକ୍ତାକୁ ହେଲେ ଗ୍ରେପର ।

୧ ରାଜା ୨ ଅଶ୍ୱ ୩ଧନୁ ୪କାନ୍ଧରେ ୫ ଯୁଦ୍ଧ ୬କୃଷ୍ଣ
୭ ସୈନ୍ୟ ୮ ସମୂହ ୯ ଭେରୀ ୧୦ ମୃଦଙ୍ଗଢୋଲ
୧୧ କୋକିଳ ୧୨ ମୟୂର ୧୩ ସିଂହ ୧୪ ସୂର୍ଯ୍ୟ
୧୫ ଦେଖି ନପାରିବାରୁ, ପଟହ-ଭଣ୍ଡାକ, ଆଡମ୍ବର
ଉଡୁ-ଆକାଶ ୧୬ ଗଜସୈନ୍ୟ ୧୭ ସମୂହ
୧୮ ଆଡମ୍ବର

ଚେଦପ ପ୍ରତାପ ସହି ନପାରି
୧ହରି ୨ହର ଅବା ଆସିଲେ ଘରି
ରଚିବାକୁ ବ୍ୟୂହ କୌଶଳେ
ମରିବେ ଯେପରି ସମରେ ଖଳେ
ଉଲୂକ ବସିଲେ ମୁଣ୍ଡେ
ମନା କରୁ କରୁ କହୁଥାନ୍ତି ଲୋକେ
ନ ଧରିବା କଥା ତୁଣ୍ଡେ
୩ଶତାଙ୍କ ଉପରେ ଶାରଙ୍ଗଧର
୪ସାରଙ୍ଗ ବଜାଇ ଦେଲେ ସତ୍ୱର
ତା ନାଦ ଶ୍ରବଣେ ହୋଇ ଆକୁଳ
୫ସାରଙ୍ଗ ୬ସାରଙ୍ଗ ୭ସାରଙ୍ଗ ଠୁଳ
ବ୍ରଜନାଥ ଧରଣୀନ
୯ଭବ ସିନ୍ଧୁରୁ ପାର ହେବାଲାଗି
ଚାହିଁଲେ କି ମନେ ମନ ?
ଚେଦପ ପକ୍ଷୀୟ ୮ବାହିନୀପତି
ବାହିନୀ ସଙ୍ଗରେ ଆସି ସଂହତି
ପ୍ରତିଯୋଧ ଧରି ଆସୁଥାନ୍ତି
ଦେଖାଇ ହେବାକୁ ସ୍ୱୀୟ ଶକତି
ସମରେ ସବେ ମିଳତି
ଉଭୟ ପକ୍ଷେ ବାଣ ବର୍ଷଣ ହେଲା
ବ୍ୟୋମ ଦେଶ ୧୦ବଧ ନ୍ତ ।
ବୋଝାବନ୍ଧ ଶର ସଙ୍ଗେ ଆସି
କନ୍ୟାସ କରନ୍ତେ ସାତ୍ୟକି ବସି
ନଖର୍ କ ଦୁହାର ଚମୂ ୧୧କାନ୍ତାର
ଅନୁରୂପ କାର୍ଯ୍ୟ କଲେ ସ ର
କେଶବ ଦେଖି ହରଷିତ
ଅଚ୍ୟୁତପୁ ବାଣ ବାଜିବାରୁ କେତେ
୧୨ଦନ୍ତୀ ଦନ୍ତ ବିଖଣ୍ଡିତ ।
କେହୁବା ୧୩ପୁଷ୍କରୁ କୃପାଣ କାଢ଼ି
ବଧିଲେ ମୁଣ୍ଡରେ ଦେଲା କରଡ଼ି
କେହୁ ନିକ୍ଷେପିଲା ୧୪ପୁଷ୍କର ଖରେ
ଦେଖନ୍ତି ୧ପୁଷ୍କର ସୁତେ ୨ପୁଷ୍କର
ହାସ୍ୟ ଜଣା ଏ ମଧ୍ୟରେ
ପଟ ଅଛି ପିନା ନିଯୁକ୍ତ ଇଚ୍ଛାରେ
ଦେଖୁଛୁ ନତ ଦୃଷ୍ଟିରେ ।
କେହୁ ୩ବ୍ୟାଳ ଆସି ୪ବ୍ୟାଳ ଉପରେ
ଯୁଦ୍ଧାବସ୍ଥା ଭୁଲି ଦେଖିଲେ ଖରେ
ପଡ଼ିଛନ୍ତି ଗଡ଼ି ବହୁ ବାହିନୀ
ରୁଧିରମ୍ଳାବିତ ସାରା ମେଦିନୀ
ରଣର କି ପରିଣତି ?
ଅଗଣିତ ବସନ୍ତ ଦିଅନ୍ତି ପାସୋରି
ଅବନ୍ତି ଜନପତି ।
ଭଗ୍ନ ବ୍ୟୂହ ହୋଇ ଭୂମିଶ ସାରି
୫କାଣ୍ଡ ୬କାଣ୍ଡ ୭କାଣ୍ଡ ଗୁଡ଼ ଅସ୍ଥିର
ଅର୍ପି ଦେଲେ ଭୁଜ ଦଣ୍ଡେ ଉପରେ
ନଥିବାରୁ ଅବା ୮କାଣ୍ଡ ୯ଖଣ୍ଡରେ
ପ୍ରେତବଳ ବଡ଼ ଖଣ୍ଡ
କୋଟି କୋଟି ପ୍ରାଣୀ ଭୁଞ୍ଜିଲେହେଁ ନତ
ମେଟିଲୁ ଅବା ନିଅଣ୍ଟ ।
୧୦ପିଶିତାଶୀ ୧୧ପତୀ ୧୨ପନୀ ଉପରୁ
ମୃତ ପ୍ରାଣୀ ୧୩ପକ୍ଷୀ ଦେଖି ଦୂରରୁ
ଉଡ଼ି ଆସି ଅଗ୍ରେ ୧୪ପକ୍ଷୀ ଉପରେ
୧୫ପିଣ୍ଡ ଲୋଭବଶେ ବସିଲେ ଖରେ
ଏ ଅନ୍ତେ ଚଳକୁ ଖସି,
୧୬ତକ୍ଷଣ ମୁଖାଗ୍ରତେ ନିଷ୍ପ୍ରାଣ ପ୍ରାଣୀଙ୍କ
୧୭ପିଶିତ ଭକ୍ଷିଲେ ବସି ।
୧୮ହୋଷ୍ଟ ୧୯ପୂର ଗନ୍ଧ ଦ୍ୱାର ଦୂରରୁ
୨୦ହସ୍ତ କରି କରି ଦନ୍ତ ଉଡ଼ରୁ
ଅନନ୍ତବଳମ୍ବେ ୨୧ଆଜ ଭୂମିକି
ଦନ୍ତେ ଭେଳକେଇଲେ ଆସି ଅଧିକି
ହେଲା ପରା ବଡ଼ ଲୋକ,
ଶବବୀଜ ଆସି ଆସ୍ୟ ବଢ଼ାଇଲା

୧ ଇନ୍ଦ୍ର ୨ ବ୍ରହ୍ମା ୩ ରଥ ୪ ଶଙ୍ଖ ୫ ହାତୀ ୬ ହରିଣ ୭ ସିଂହ ୮ ସେନାଧ୍ୟକ୍ଷ ୯ ଶଙ୍କରେ ୧୦ ପ୍ରକମ୍ପିତ ୧୧ ବୃଷ୍ଣିର ୧୨ ହସ୍ତୀ ୧୩କୋଷରୁ ୧୪ ଶର

୧ଯୁଦ୍ଧ ୨ ଆକାଶରେ ୩ରାଜା ୪ ଦୁଷ୍ଟହସ୍ତୀ ୫ଅସ୍ତ୍ର ଛୁଟାଣ ୬ ସମୂହ ୮ ଜଳ ୯ ଖାଦ୍ୟ ୧୦ ମାଂସଭୋଜୀ ୧୧ ପକ୍ଷୀ ୧୨ ପଦାତ ୧୩ ରଥ ୧୪ବୃକ୍ଷ ୧୫ମାଂସ ୧୬ମୁନିଆଁ ଥଣ୍ଟରେ ୧୭ମାଂସ ୧୮ବିଲୁଆ ୧୯ସମୂହ ୨୦ ନାଦ ଛାଡ଼ିବା ୨୧ ଯୁଦ୍ଧ

ଖାଇବାକୁ ମେଦ ଖୋଜ ।
୧ହରି ହଣ୍ଡ ଦେଖି ହଣଇ ଯଥା
୨ହଳୀ ୩ବେଣୁଦାଣ୍ଡ ବଳେକ ତଥା
୪ରୌରବ ସବରେ କମ୍ପାଇ ଧରା
ଗୋଡ଼ାଇ ତାହାକୁ ନଦେଇ ଧରା
ନ୍ୟାସନ୍ତେ ସେ ୫ଇଷୁ ଚୟ
ଶାଣିତ ୬ସାୟେ ସେ ଦେଲେ ପ୍ରତ୍ୟୁତ୍ତର
ପଳନ୍ତି ହୋଇ ନିର୍ଦ୍ଦୟ ।
୭କାର୍ଷ୍ଣିକ କେତେକ ବରୋଧ କରି
ତେହନ ପକ୍ଷୀସ୍ୱ ବାହନା ଧରି
ଆସିଲେ ଉତ୍ସୁକେ ଭେରୀ ବଜାଇ
ଧାପ୍ୟମାନ ବର୍ମ ଅଙ୍ଗେ ଲଗାଇ
ରଣଭୂମି ହୁଲୁସ୍ଥୁଲୁ
ପ୍ରଦ୍ୟୁମ୍ନ ମାଜରେ ବାହୁଡଲେ ସବେ
ଶ୍ରୀହେ ଚୈଦ୍ୟ ବୁଲୁବୁଲୁ
୮ବଶ୍ରୀ ୯ବଭ୍ରୀ ୧୦ଭାଭ କେଶବ
ଅବାଡ ସହାରେ ଅତ ରୌରବ (ଘୋଷଣ)
ମୁମୁକ୍ଷୁମାନଙ୍କ ସଦା ଶରଣ
ସଂସାର ସାଗରେ ଯେହୁ ତାରଣ
୧୧ବାଜ ୧୨ବାଜ ୧୩ବାଜ ଖାଇ
୧୪ଆଜବଜପୁଂଙ୍ଖି ନେଇ ଅଗ୍ରେସର
ଅବ୍ଜ ବଜାଇ ବଜାଇ ।
୧୫କାନ୍ତପକ୍ଷୀପିଚ୍ଛ ଶିରଭୂଷିତ
କୌସ୍ତୁଭ ମଣିରେ ବକ୍ଷଛୁରିତ (ଶୋଭିତ)
ଶାର୍ଙ୍ଗ ସାୟକ ଶୋହେ ଅଂସରେ
ସୁଦର୍ଶନ ଚକ୍ର ବଦ୍ଧ ହସ୍ତରେ
୧୬ଚେରମ ଜୟାନନ୍ତର
ପରମ ପୁରୁଷ ୧୭ବୃଷ ହେଲେ ଦୃଶ୍ୟ

୧ ସିଂହ ୨ବଳରାମ ୩ ବାଣାସୁର ଘୁବ ୪ଭୟଙ୍କର
୫ ଶର ୬ ଶର ୭ କୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନ
୮ପ୍ରଭାସଚନ୍ଦ୍ର ୯ଐଶ୍ୱର୍ଯ୍ୟ ସଚନ୍ଦ୍ର ୧୦ ନକ୍ଷତ୍ରପର-
ପ୍ରଭା ଯାହାର ସେ ଭଭ (ଭ (ନକ୍ଷତ୍ର)+ଆଭା
୧୧ପକ୍ଷ ୧୨ଘୃତ ୧୩ଅନ୍ନ ୧୪ଯୁଦ୍ଧ ୧୫ମୟୂରପିଚ୍ଛ
୧୬ ଶିଶୁପାଳ ୧୭ କୃଷ୍ଣ

ଯୁଦ୍ଧ ଭୂଇଁରେ ସତ୍ୱର
୧ପୂର୍ବ ୨ରୂପୀ ୩ପର ୪ବେପ ୫ପରର
୬ଯୁଗ ରହିଥିବା ଦେଖି ତତ୍ପର
ଜଗନ୍ତ ବ୍ୟାପକ ନାରାୟଣ
କ୍ଷଣକେ କ୍ଷେପଣ କରନ୍ତେ କ୍ଷୟ
ଇତସ୍ତତ ଖରେ ପର
ଜୀଇବାର ଆଶା କ୍ଷୀଣ ବୋଲି ଜାଣି
ଚେଦିପ ହେଲା କାତର ।
୭ଅଳକୁଳ କାଳ ୮କଳ ୯ଅକଳ
କାନ୍ତ ଦେବାପାଇଁ କୃତାନ୍ତ ବଳ
ବର୍ମଧାରୀ ବୈରୀ ଅକ୍ଷି ତାରକୁ
ବନ୍ଧନ୍ତେ ସାୟକ ଫୁଟାଇବାକୁ
ଭେଦିଲା ଲକ୍ଷ୍ୟ ଅକ୍ଷିରେ
କାତର ଆରବ ପରି ଘୋର ନାଦ
କରି ପଡ଼ିଲେ ଭୂଇଁରେ ।
୧୦ଶବରୁ ସୈନ୍ୟଙ୍କୁ ୧୧ଶ୍ରୀଶଶ୍ୱରଶ
କ୍ଷେପି ୧୨ଅଶିଶିର ଶଲ ବଶେଷ
ବପକ୍ଷମାନଙ୍କୁ କରି ବାରଣ
ଅଚ୍ୟୁତ ବଗ୍ରହ କଲେ ଧାରଣ
୧୩ଗ୍ରାଣ ହୋଇ ବନ୍ଧୁ ଗାର
ମଲୁ ମଲୁ ବୋଲି କରୁଛନ୍ତି ରଡ
ହୋଇଣ ଅତ ଅସ୍ଥିର ।
୧୪ହୂର ନାଶନେ ସଦା କର୍କଶ (କର୍କଶ
୧୫କୁସ୍ତର ଳଦବେ ଶାର୍ଙ୍ଗଧର
ଅମ୍ବର ଘୋଡାଇ ଦଅନ୍ତେ ଶରେ
ତାଦେଖି ଶତ୍ରୁ ଫେର ଭୟରେ
ଜଣାଇଲେ ଶିଶୁପାଳ
୧୬ବୃଷ୍ଣମୁଖ ସେହି ଭେଟିଲା ୧୭ବୃଷ୍ଣକୁ
ନ ବେଣନ୍ତେ ମୃତ୍ୟୁକାଳ

୧ ପୂର୍ବେ ୨ ମତ୍ସ୍ୟକୁର୍ମାଦି ରୂପଧାରୀ ୩ ପରମାତ୍ମା
କୃଷ୍ଣ ୪ ଶର ୫ ଶତ୍ରୁର ୬ ନିକଟରେ ୭ ଭ୍ରମର
ସମୂହ ପରି କୃଷ୍ଣବର୍ଣ୍ଣ ୮ ମଧୁରଭାଷୀ ୯କଳହରହିତ
୧୦ ହିଂସ୍ର କ୍ଷତକାରକ ୧୧ ଶ୍ରୀ (ଲକ୍ଷ୍ମୀ) ପ୍ରାଣନାଥ
ଲକ୍ଷ୍ମୀଙ୍କର ପ୍ରାଣନାଥ କୃଷ୍ଣ ୧୨ ତୀକ୍ଷ୍ଣ ୧୩ ପଳାୟନ
୧୪ ଦୁଷ୍ଟ ନିଷ୍ଠୁର ଶତ୍ରୁ ୧୫ କୁ-ପୃଥ୍ୱୀ ୧୬ଗର୍ବିତ
୧୭ ବଷ୍ଣୁ (କୃଷ୍ଣ)

୧ ଅଣଚୂଗାନ୍ତକ ୨ କାର୍ଷ୍ଣି ସମରେ
ମାର ଅରାତିଙ୍କି ଅନାୟାସରେ
ପ୍ରଦ୍ୟୁମ୍ନ ନାମକୁ କଲ ସାର୍ଥକ
ଏଡ଼େ ବଡ଼ ଭଣେ ହୋଇ ୩ ଅର୍ଭକ
ସମସ୍ତ ଗୁଣରେ ତାର
ଉଠିବା ପଡ଼ିବା ଏଡ଼ଧମାଡ
ନଦେଖେ କେ ବାର ବାର ?
କାର୍ଷ୍ଣି ଅବଦାନ (ଜଗତକର୍ମ) ସନ୍ଧି ନପାର
ଉପ୍ରେ ଯୁଦ୍ଧ ଛୁଡ଼ ଗଲେ ବାହାର
ଅଗ୍ରଣୀ ବୋଲାଉଥିବା ରାଜନେ
ମୂଣ୍ଡ ପୋତି ପୋତି ବତର୍ତ୍ତମନେ
କରଧୃତସି ପକାଇ
କାହାବଳ କେତେ ଆଗରୁ ନଜାଣି
କରବ କଂପା ବଢାଇ
ଯେହେତୁ ଜୟଶ୍ରୀ କଲ ଆଦର
ଚୈଦ୍ୟ କ୍ରୋଧ ତେଣୁ ବଢ଼ିଲ ଖର
ଆରମ୍ଭିଲ ଅଭିଯାନ ତତ୍କ୍ଷଣେ
ବାହିନୀ ସଙ୍ଗରେ ୪ ସଙ୍ଗରଗଣେ
ଗଜ ୫ ବାଜୀ ଧାଡ଼ି ଧାଡ଼ି
ଭଣର ସବାରେ ଡେଇଁଲେ ସଇନେ
ମରଣ ଭୟକୁ ଛାଡ଼ି ।

୧ ଶତ୍ରୁ ସମୂହର ଯମ, ୨ ପ୍ରଦ୍ୟୁମ୍ନ, ୩ ବାଳକ
୪ ସମରଭୂମି, ୫ ଅଶ୍ୱ
ପ୍ରଦ୍ୟୁମ୍ନ – ପ୍ର-ପ୍ରକୃଷ୍ଟ, ଦ୍ୟୁମ୍ନ-ବଳଯାହାର ସେ ପ୍ରଦ୍ୟୁମ୍ନ

ବେନ୍ତିବେଳ ଠାଣ ହେଲ ୧ ପ୍ରଧନ
କରୁଥିଲେ ସୈନ୍ୟ ରୋଷେ ଗର୍ଜନ
ସପକ୍ଷ ବିପକ୍ଷ ଚିହ୍ନି ନପାର
କଏସେ କାହାକୁ ହେଲଣି ମାର
କଣ କେତେ ଅଭିନୟ
କ୍ରୋଧାଗ୍ନି ଜଳିଲେ ଲିଭାଇବା ପାଇଁ
ସକଳେ କରନ୍ତି ଭୟ ।
୨ ଲେଲେ ଅସିମାନ କାଳୀୟ ସର୍ପ
ପଣ କୋପେ ଧର ଦେଖାଇ ଦର୍ପ
୩ ଶିଳୀମୁଖେ ୪ ଶିଳୀମୁଖ ଅଜାଡ଼ି
ହେଲେ ପ୍ରତିପକ୍ଷ ତୁଣୀରୁ କାଢ଼ି
ଖଣ୍ଡନ୍ତେ ତା ଯଦୁବଳ,
ଅଭିମାନୀ ଚୈଦ୍ୟ କଲ ଅସ୍ତ୍ରବ୍ୟସ୍ତ
ପ୍ରୟୋଗ କର କୌଶଳ
୫ ଅନ୍ତକର ଚଳୁ ତୁଲ୍ୟ ବିଶାଳ
ନିସ୍ତ୍ରାଣ ପ୍ରାଣୀଙ୍କ ଶରୀର ମାଳ
ଭଉନ୍ତ ବାୟୁସେ ହୋଇ ମୁଦିତ
ଝାମ୍ପି ନେବାପାଇଁ ପୁନେ ୬ ପିଶିତ
୭ ପାବନ ୮ ପ୍ରହାର ଭୂଇଁ
ମାଈ ହେବ ବୋଲି ଶୁଭେ ଡାକ ଏଣେ
୯ ଗତପ୍ରାଣ ହେଲେ ତୁଇଁ ।

୧ ଯୁଦ୍ଧ, ୨ ଚଞ୍ଚଳ, ୩ ଯୁଦ୍ଧରେ, ୪ ଶର
୫ ଯମର ଶେଯ, ୬ ମାଂସ, ୭ ପବନ, ୮ ଯୁଦ୍ଧ,
୯ ମୃତପ୍ରାଣୀ ।

୧ବିଗ ୨ବାଜି ୩ବୃଷ ୪ଚୈଦ୍ୟ ସ୍ୟନ୍ଦନ
ଦେଖି ତା ଆଗକୁ କଲେ ଗମନ
ଶିଶୁପାଳ ବଧେ ହୋଇ ବ୍ୟାକୁଳ
ବେକ୍ରୁଁ ବେଳ ଦେଖାଗଲେ କରାଳ
ଫିଟାଇ ଶିଖା ବନ୍ଧନ
ଚେମ ମହୀପତି କରି ତା ଦର୍ଶନ
କଲା ଅଘୋର ଗର୍ଜନ ।
ରୁକ୍ମଣୀ ହରାଇ ନେବା ଦିନରୁ
ଯାଉନାହିଁ ରାଗ ଚୈଦ୍ୟ ମନରୁ
କଟୁ ବଚନରେ କେତେ ଧିକ୍‌କାର
ସଞ୍ଚିତ କ୍ରୋଧକୁ ଦେଲା ଉଦ୍‌ଗାର
ଭ୍ରୂଯୁଗ ଉନ୍ନତ କରି
ଉଠିଲା ୫ତାର୍ଷ୍ୟରୁ ବସ୍ତୁପୁ ଜନ୍ମାଇ
ବିଶାଳ କାର୍ମୁକ ଧରି ।
ବହ୍ନି ଶିଖାସମ ଦେଦୀପ୍ୟମାନ
ଦିଶୁଅଛି ତାର ନୟନ ମାନ
ବାଣ ୬ବ୍ରଜ ପାତ କରି ନଭକୁ
ନିକ୍ଷେପିଲା ତହୁଁ ଦୁଷ୍ଟ ବଳକୁ
କେଶବ ୭ବିଶିଖ ଯାଇ
ଅନନ୍ତ ବଳେ ଖଣ୍ଡ ଖଣ୍ଡ କରି
ଭୂପୃଷ୍ଠେ ଦେଲା ପକାଇ ।
ଅର୍କ ମଣ୍ଡଳକୁ ଆଚ୍ଛାଦି ୮ରୋଷେ
କଲେ ବରଷଣ ମାଧବ କୋପେ
ଆଗତ ସୈନ୍ୟଙ୍କୁ ରଘୁକୁଳର
ମାରିଲେ ନିକ୍ଷେପି ସୁତୀକ୍ଷ୍ଣ ଶର
ଏହାଦେଖି ଚେଦିରାଜ
ଚନ୍ଦୁଷୋକ୍ତ କହି ଯାଦବମାନଙ୍କୁ
କ୍ଷେପିଲା ବାଣ ୯ବିଭ୍ରାଜ ।

୧ବି-ପକ୍ଷୀ ଗ-ଗତି କରୁଥିବାରୁ ପକ୍ଷୀ(ଗରୁଡ଼) ଉପରେ ଗମନ କରୁଥିବାରୁ-କୃଷ୍ଣ, ୨ବିଗତ ହୋଇଛି ଖି ବା ଉପୁ ଯାହାର ନାର୍ଥକ ୩କୃଷ୍ଣ ୪ଶିଶୁପାଳ ୫ରଥ ୬ସମୂହ ୭ଶର ୮ଶର ୯ଦୀପ୍ତଶୀଳ

ସଦା ଜାଗରୂକ ମଧୁସୂଦନ
ନିକ୍ଷେପନ୍ତେ ପ୍ରତିବାଣ ଗର୍ଜନ
କରି ରଘୁ ସୈନ୍ୟ କଲା ନିଧନ
ତା ଦେଖି ତକ୍ଷଣେ ଚେଦି ରାଜନ
ବସିଲା ଯାଇ ଜପରେ
ଘୋର ଫଣଯୁକ୍ତ ଭୁଜଗାସ୍ତ୍ରମାନ
ଆବିର୍ଭୂତ ହେଲେ ଭୂରେ ।
୧ପନ୍ନଗମାନଙ୍କ ବିଷ ଫୁତ୍‌କାର
ଚଉଦିଗ କରିଦେଲା ଅନ୍ଧାର
ଚୈଦ୍ୟ ଛଳ ଜାଣି ଗରୁଡ଼ଧ୍ୱଜ
ଆଦେଶିଲେ ତବେ ୨ବିନତାତ୍ମଜ
ପ୍ରଜ୍ୱଳିତ ଶିଖୀ ପରି
ଉତ୍ତ୍ରଡ଼ ଉଦ୍‌ଭଇ ବିହଙ୍ଗମ ଦେଖି
ପଳାଇଲା ତମ ଡରି ।
ଉଦ୍‌ବେଳିତ ସିନ୍ଧୁସମ ଗର୍ଜନ
ଶୁଣି ସେମାନଙ୍କ. ଗୂଢ଼୩ପ୍ରଧାନ
୪ଦନ୍ଦଶୂକ ଭୟେ ଗଲେ ପଳାଇ
ଶିଶୁପାଳ ଖେଦେ ମୁହଁ ଶୁଖାଇ
ଜପିଲା ଆଗ୍ନେୟ ମନ୍ତ୍ର
ଏଣେ ଛଳଭଙ୍ଗ ଦେଲେ ଦମେ ଦମେ
ଚେଦିରେ ୫ତନ୍ତ୍ର ୬ତନ୍ତ୍ର ।
ଅନନ୍ତର ୭ଜାତବେଦ ଜଗତ
ପୋଡ଼ି ଦେବାଲାଗି ହେଲା ଉଦ୍ୟତ
ଜାଣି ବ୍ରଜନାଥ କାଢ଼ି ୮କ ରୁ କଏ
ଅଜାଡ଼ି ଦେଲେ ସେ ଡାକ ବାରୁଣ
ଆସିଲା ଘୋର ବରଷା
ବୃଷ୍ଟି ବୃଷ୍ଟି ବହ୍ନି ହେଲା ଅନ୍ତର୍ଦ୍ଧାନ
ତୁଟିଲା ଚୈଦ୍ୟ ଭରସା ।
କ୍ଷିପ୍ରକାରୀ ଚୈଦ୍ୟ ହୋଇ କୁପିତ
ସାୟକେ ହରିକି କଲା ଆବୃତ

୧ସାପ ୨ଗରୁଡ଼ ୩ଯୁଦ୍ଧ ୪ସାପମାନେ ୫ସୈନ୍ୟ ୬ସମୂହ ୭ଅଗ୍ନି ୮କ-ମସ୍ତକ ୯କ-ଜଳ ୧୦ସାରଥି(କୃଷ୍ଣଙ୍କ)

ସମ୍ଭାଳ ନପାରି ଚନ୍ଦେ ତା ମୁଣ୍ଡ
ଟାଣି କଲେ କୃଷ୍ଣ ତକ୍ଷଣେ ଗୁଣ୍ଡ
ବୃଦ୍ଧ ତାଳ ଗଲା ପଡ଼ି
ଆନନ୍ଦରେ ଗଡ଼ି ଗଲେ କି ସରବେ
ଶୁଣି ମଲା, ମଲା ରଡ଼ି !
ଗ୍ଳଟିପିଠି ହୋଇ ଅଦ୍ଭୁତ ଭୂପ
୧ଧାଦବ ୨ଦାଦାଦ କେଶବ ରୂପ
ଦର୍ଶନେ ପଙ୍କଙ୍କ ଗଲେ ଛିଣ୍ଡି
ଖସିଲେ ଶକୁନ ନଭୋଦ୍ୱାରରୁ
ଘୋର ଶବ୍ଦେ ବୃକ୍ଷପଟେ
ପୁଲା ପୂଲା କରି ଭଣିଲେ ପିଶାଚ
ଅସମୟେ କେ ନିକଟେ ?
ଦେଖଣ ମଞ୍ଚଣେ ୩ଗୀର୍ବାଣଗଣ
ମହାନନ୍ଦେ କଲେ ପୁଷ୍ପ ବର୍ଷଣ
କମ୍ପେ ବସୁମତି ଜୟ ନାଦରେ
୪ଲୋକାଲୋକଙ୍କ କୃଷ୍ଣ ପ୍ରମୋଦଭରେ
ଶତ୍ରୁଙ୍କୁ ଦହନ କରି,
ଲେଉଟିଲେ ରଣ ଭୂମିରୁ ଏ ଅନ୍ତେ
୫ଅନୀକମା ସଙ୍ଗେ ଧରି ।

## ସଂସାର ଚଳଣି

ଯାହାତାହା କରି ଦେଉଛୁ ଟେଲି
ଲାଜ ଉପେକ୍ଷି (ଘୋଷା)
ସଂସାର ଚଳଣି ପ୍ରତ୍ୟକ୍ଷ ଦେଖି ।
ମନ ଚାଉ ନାହିଁ ଯାହା ମୋହର
ଲାଗେନି ଭଲ
ଜଣକ କଥାକୁ କା'ର ଆଦର ।
ଶୁଣୁଅଛୁ ଯେତେ ଏବର ଗୀତ
ଅଛୁକି ପ୍ରୀତ
କିଏ ଅବା ଦେବ କାନ କେମିତି ।
ଘଷାକୁ ନଜାଣି ମଲଖନ୍ତି ବସି
ସାହିତ୍ୟେ ରସି

୧ ଧାମ ୨ ଶୁଦ୍ଧିଦାତା ୩ ଦେବତା ସମୂହ
୪ ତ୍ରୈଲୋକ୍ୟଦର୍ଶୀ ୫ ବାହିନୀ

ପଚାରିଲେ ତାଙ୍କୁ ଦିଅନ୍ତି ହସି ।
ଦେଖି ହସ କାନ୍ଦ ଲଗିଛୁ ନିତି
ପ୍ରକୃତି ମାତି
କରିବୁ ବିଚାର ଦେଖି ଏ ଖ୍ୟାତି ।
ମଦର ପାନରେ ବଳାଇ ମନ
ସରଳ ଧନ
ପେଟକୁ ମୁଠାଏ ନମିଳେ ଅନ୍ନ ।
ସାଙ୍ଗ ସାଥୀ ହୋଇ ଥିଲେ ଯେତକ
ଗଲେ କେତକ
ଘଣ୍ଟିଲୁ କି ମନେ ଦିନେ ଏତକ ?
ଆଚାର ଭେଦରେ ସୁର ଅସୁର
ତୁଚ୍ଛା ଆତୁର
ନାହିଁ କେଉଁଠାରେ ସଦାଚାର ।
ପର ଉପକାରେ ମହତ ଜନ
ସ୍ୱାର୍ଥରେ ମନ
ନଡ଼ିଶି ଖଟଇ ସାର ଜୀବନ ।
ଦୁର୍ବଳକୁ ମାରି ହତ ରାକ୍ଷସ
ମାଡ଼ି ବିଧ୍ୱଂସେ
ରକ୍ତ ମାଂସ ମେଦ ଖାଇ ରଭସେ(ହର୍ଷେ) ।
ପର ମିଥ୍ୟାସ୍ତବ ସନ୍ତତ କରି
ପାପ ଆଚରି
ବୋଲାଉଛୁ ସାଧୁ ଭବେ କପରି ?
ଅସଲଟେ ପଶିଗଲା ଜୀବନ
ଲୋଭରେ ଧନ
ନକରି ଖାତିର ନିନ୍ଦା ବଚନ ।
ପାତର ଅନ୍ତର କରି ବେଭାରେ
ମନ ଇଚ୍ଛାରେ
ଭୋଗିବୁ ତା ଫଳ ଦିନେ ସଂସାରେ ।
ହେଲୁ ହଠହଠା ପଶି ଅକର୍ମେ
ବାନ୍ଧିଲା ମର୍ମେ
କିଏ ସୁଖୀ ଭବେ ଯାଇ ଅଧର୍ମେ ?
କରିବୁ ବିଚାର ପାପ ପୁଣ୍ୟକୁ
ଛାଡ଼ ଲୋଭକୁ
ବାର ବାର ଫେରିବୁ ମନକୁ ।

କଏ ଦଏ କାନ କହ୍ୱଲେ ଡ଼ମ
ଛୁଛାଙ୍କୁ ତମ (ଗର୍ବ)
ଶିଖ ପାଞ୍ଚକଥା ପଢ଼ ଆଗମ (ବେଦାଦ୍ଵ ଶାସ୍ତ୍ର)
ଦଦରା ନାବରେ ବୁଡ଼ାନାଉର
ପଡ଼ୁଛି ହୁର
ଗୁରୁଙ୍କୁ ଅଧୀତ୍ତ ଭୂଷିଲ ଛୁର ।
ଫୁଟୁଛି ଜୀବନେ ଅନେକ ଥର,
କ ହରବର
ତଥାପି ନ ଶିଖେ ଟଦେ ଅନ୍ତର ।
ଝକମକ ଦେଖି ହୋଇଣ ଛନ୍ନ
ଲଖିଲ ମନ
ଟୁହୁଁ ଟୁହୁଁ ଦେଖ ଯାଏ ଜୀବନ ।
ଲଗିଛୁ ଝଗଡ଼ା ଭାଇ ଭାଇରେ
ପେଟ ପାଇଁରେ
ରାତି ଟାଇଯାଏ ଭୂକ୍ଷା କଳରେ ।
ନାନାରଙ୍ଗେ କେତେ ଟୂଳାଚ ଖେଳ
ନାହିଁଟି ବେଳ
କାହା ମନେ କା'ର ନଥାଏ ମେଳ ।
କଳମ ଟୂଷଙ୍କୁ ଗଳାଣି ଡର
ଚିନ୍ତା ନ କର
ବାହାନ୍ତ ବୋଇତ ମନକୁ ଧର ।
ନବ୍ୟ ସମାଜର ନୂଆ ଫେସନ
କର ଦର୍ଶନ
ଫଳାଉଚ ବୁଢ଼ା ବୁଜ ନୟନ ।
ଦାଣ୍ଡକୁ ସୁନ୍ଦର ନନ୍ଦଶେ ଯାହା
ଫୁଲଛ ବାହା
ହୋଇ ଅମାନିଆ କରୁଛୁ ତାହା
ଦେଖିଲୁ ଜୀବନେ ସଂସାର ହାଟ
ଲଟିଛି ନାଟ
ଜାଳିଲେ ଆଲୁଅ ଟୂଳାବୁ ବାଟ ।
ନ ପଶେ ଛୁଆଁ କାହା ଗ୍ରୁଡରେ
ମୃତ୍ୟୁ ଖାତରେ
ତୋର ଅସମୟେ କଏ ସାଥିରେ ।
ଅଡ଼ୁଆ ଭିଡ଼ରେ କେବେ ନପଶି
କଟିବୁ ହସି

କର୍ତ୍ତବ୍ୟରେ ଅନବରତ ରସି ।
ଧର୍ମ ବୋଲି ଯିନା ଅଁଷି ଉପରେ
କାହା ପଡରେ
ନଦେଇ ମୂଠାଏ କନ୍ଥୁ ଟୂଡରେ ।
ବେଳ ଥାଉଁ ଥାଉଁ ଖୋଜିବୁ ସାହା
ଦେଖାଇ ବାହା
ନ ଥାଇ କାତକ ଟୂଳିବୁ କାହା ?
ଜୀବକାରେ ସଦା ଶୁଦ୍ଧ ଆଚର
ତାପସ ପର
ଯାପିବୁ ଜୀବନ ଲୋଭ ସମ୍ବର ।
ଗୁଣୀଗୁଣ କଏ ଚିହ୍ନୁଚି ଏବେ
ପାରଚ ଯେବେ
ଧରାଧର କଲେ ମିଳିବ ତେବେ ।
ନକରେ ବିଶ୍ୱାସ କଏ କାହାକୁ
ପାଚି ଛୁଛାକୁ
ସବେ ହୁସିଆର ନିଜ ଧନ୍ଦାକୁ ।
କେବା ଖାଡ଼ ହୁଏ ଖାଲି କଥାରେ
ଫୁଲଣିଆରେ
ବାହାଦୁର ନେବା ପାଇଁ ବାହାରେ ।
ହସ ଗମାତରେ ଯାଉଚ ଦିନ
ଜ୍ଞାନରେ ହୀନ
ପୂ ରୁଚ ସ୍ୱାନ୍ତିକ ନମଣ ଧ୍ୟାନ ।
ପହିଲି ଆଷାଢେ ଆସେ ବରଷା
ଆନନ୍ଦ ଚଷା
କୁକର୍ମେ ହେଉଚ ଭଗାରି ହସା ।
ବାଟରେ ଘାଟରେ ସଭା ସମିତି
ଲାଗିଚ ନିତି
କଏ କାହୁଁ ଆସି ବୁଝାଏ ମତି ।
ଦୁନିଆଁ ବେଭାର ହଟଚମଟ
ଖେଳନ କପଟ
କଏ କେତେ ଦିନ ଉନ୍ନି ଚମଟ ।
ମିଛ ଗାଇ ଗାଇ ପାଅକ ଲାଭ
ଗୁଣ୍ଡ ସ୍ୱଭାବ
ସନ୍ତୋଷରେ ଯିନା ଟୁଟେ ଅଭାବ ।

ବରଷ ବରଷ ଯାଇଚି ବିତି
ଦୁନିଆଁ ସ୍ଥିତି
ଦେଖି ରହୁଥିଲେ ମିଳଇ ପ୍ରୀତି ।
କାହାପାଇଁ କେବେ ଚଢ଼ୁଚି ଭବେ
ଗର୍ବ ଗୌରବେ
କଲେ ତ କରିବେ ନିନ୍ଦା ସରବେ ।
ତତ୍ତ୍ୱଜ୍ଞାନ ଲଭି ହୁଅ ଆନନ୍ଦ
ନରଖି ଛନ୍ଦ
ନିଜ ନିଜ ମନରୁ ତୁଟାଅ ଦ୍ୱନ୍ଦ୍ୱ ।
କାଙ୍ଗିରିଆ କାଠି ଲଙ୍ଗିଚି କାହିଁ
ତାହାକୁ ବୁଝି
କରିଯାଅ କର୍ମ ମୁଣ୍ଡ ନୁଆଇଁ ।
ସୁଖୀ ନୁହେ କିଏ ସଦା ଏ ଭବେ
ମାତି ଗରବେ
କରେନାହିଁ ଦାନ କାହାରି ଲବେ ।
ସଜ୍ଜନର ସିନା ସଳଖ ମୁଣ୍ଡ
ଫିଟାଏ ତୁଣ୍ଡ
ଯେତେ ଲୋକ ଆସି ହୁଅନ୍ତୁ ରୁଣ୍ଡ ।
ବାହାଦୁରି ଲାଗି ସକଳେ ବାଇ
କଚଡ଼ା ଖାଇ
ଖାଲ ବା ଢିପରେ ପାଦ ପକାଇ ।
ସିଗାର ଟାଣନ୍ତି ବୃଷଭ ପିଲେ
ଗହ୍ୱର ବିଲେ
ଦେଖି ହସୁଛନ୍ତି ଆକାଶ ଚଲେ ।
ମୋ ଦେଶର କଥା ଯାଉଚି ଭୁଲି
ବିଦେଶ ବୁଲି
ହେତୁ କଲେ ଛାତି ଯାଉଚି ଫୁଲି ।
ସିଆଁଣିଆ ଲୋକ ତଳେ ନ ଡରି
ମିଥ୍ୟାକୁ ବରି
କରୁଛନ୍ତି ଦେଖି ଖମାରି ଭରି ।
ନ ବୁଝି ଆଗରୁ ଆପଣା ଫାଟ
ଭୁଞ୍ଜାକୁ ହାଟ
ଶୁଣିବ କିଏ ତୋ ଧରମ ବାଟ ।
ମୃତ୍ୟୁଚିନ୍ତା କିଏ କରେ କି ଲବେ
କେବେ ଏ ଭବେ
ଧନ ସରେ ସିନା ମାତି ଉତ୍ସବେ ।
ଜାତି ଜାତି ବୋଲି ଧରିଥା ବସି
ପାଠରେ ରସି
କେତେ ତୋ କୁଳରୁ ଗଲେଣି ଖସି ।
କଆଁରି ଭିତରେ ବାଜୁଛି ଘଣ୍ଟା
ବୁଲିଚି ବଣ୍ଟା
ନ ଛାଡ଼ିଲି କିଏ ଗେଞ୍ଜୁଛି କଣ୍ଟା ।
ମୋର ମୋର ବୋଲି ବୋଲୁଚୁ କିଆଁ
ଦେଖି ଦୁନିଆଁ
ଟିକିକ କଥାରେ କାହିଁକି ନିଆଁ ।
ପର ଉପକାରେ ନ ଯା ଓହରି
ସର୍ବସ୍ୱ ସରି
ଯାଉ ପଛେ ତଳେ ଚିନ୍ତା ନକରି ।
ଶୁଖିଲି ପତର ପଡ଼ୁଚି ଝଡ଼ି
ଘଡ଼ିକି ଘଡ଼ି
ତଥା କାଳମୁଖେ ଚିବୁଟେ ପଡ଼ି ।
ନପଡ଼ି କଥାରେ ବାହାପିଆରି
ସାର ଅସାର
ବାଛିବୁ ଜୀବନେ କରି ବିଚାର ।
ଜପାମାଳି ଧରି ମୋହ ତୁଟାଇ
ଦେଉଳେ ଯାଇ
କଫଳ ପାଇବୁ ପର କନ୍ଦାଇ ।
କାହାବଳ କେତେ ଆଗୁଁ ନଜାଣି
ଅବଶ୍ୟ ପାଣି
ପିଇବୁ କଳଙ୍କ ଆଣିଲେ ଟାଣି ।
କରି ଯାଅ କର୍ମ କରି ବିଚାର
ମନୁଁ ବିକାର
ଛାଡ଼ିଲେ ମିଳିବ ସୁଖ ଅପାର ।
କାହା ପାଇଁ ଲୋଭ କରୁଛୁ ଏତେ
ବଢ଼ିବ ସେତେ
ତା ପଛେ ଆଶାରେ ଧାଇଁବୁ ଯେତେ ।
ତୋର ବୋଲି କିଛି ନାହିଁ ଏ ଭବେ
ଚିନ୍ତିଲେ ଲଭେ
ଜାଣିବୁ ସମ୍ପଦେ ସଖା ସରିବେ ।

କେତେଦିନ ପାଇଁ କଏ କାହାର
ମାୟା ଫସାଇ
କରୁଥିବୁ ସଦା ନ୍ୟାୟ ବର୍ଜ୍ଜନ ।
ମୂଳୁକ ଟିକୁକ ଅନ୍ୟାୟାଚାର
ଚଳେ ନ ଉର
ଟିପୁଚ୍ଛି ତା ଜନଣ କରୁ କପର ।
ଦପ୍ତରର ମଥା ସଦା ଆନତ
ଦେଖୁଁ ସତତ
କି ଫଳ ପାଉଛୁ ହୋଇ ଉଦ୍ଧତ ।
ମଧୁର ସମସ୍ତ ଯାଉଚି ଭୁଲି
ନବସ ଖାଲି
ଅଳସୁଆ ହେଲେ ସରବ ବାଲି ।
କେବେ ଲଗ୍ନ କେବେ ଆବୃତ ବନ
କରି ଦର୍ଶନ
ଭାବିଲେ ଗ୍ରାମିଆଁ ସବୁରି ମନ ।
ସକାଳ ସଞ୍ଜକୁ କରି ତୁଳନା
ଦେଖିଲୁ ଅନା
ନଦିଏ ଆନନ୍ଦ ବୃଥା ଭାବନା ।
ଚଳିବୁ ଜୀବନେ ନଳୁଦ କଣ୍ଟା
ବାଜିଲେ ଘଣ୍ଟା
ଲଗିବ କେ ଦଣ୍ଡେ ଭଉଁଲେ ଅଣ୍ଟା ?

## ପ୍ରଭେଦ

ଦେଖିଥିଲି ପିଲାଦିନେ କେତେ ବର୍ଷୀୟାନ
ବର୍ତ୍ତରେ ଯାହାର ଥିଲା ସଦା ନ୍ୟାୟଧ୍ୟାନ ।
ଦେଉଥିଲେ ଜଳାଞ୍ଜଳି ନିଜସ୍ୱାର୍ଥପ୍ରତି
କରୁଥିଲେ କାର୍ଯ୍ୟମାନ ଧର୍ମେ ରଖି ମତି ।
କଠୋର ପରିଶ୍ରମରେ ଯାପୁଥିଲେ କାଳ
ଧନ ପ୍ରତି ଥିଲା ତାଙ୍କ ହୃଦୟ ବିଶାଳ ।
ଗୁଟିଏ ଥିଲା ଗ୍ରାମ୍ୟକଳି ଗାଆଁ ମଣ୍ଡପରେ
ମାନ ଚଳୁଥିଲା ଦୋଷୀ ମହା ଆନନ୍ଦରେ ।
ଚଳୁଥିଲା ଦରବାର ଓକିଲ ନଥାଇ
ଫେରୁଥିଲେ ଅଦାଲତୁଁ ଲୋକେ ନ୍ୟାୟ ପାଇ ।

ଜନତା ବଢ଼ିଲା ଯେତେ ବଢ଼ିଲା ଫିସାଦ
ପରିମୁକ୍ତେ ଲଦା ସିନା ତୁଚ୍ଛା ଅପବାଦ ।
ବଢ଼ିଲା ଓକିଲ ଭାଉ ବଢ଼ିଲେ ମାମଲା
ଧାଇଁ ଧାଇଁ ଅଦାଲତେ ଦାବାଦାର ମଲା ।
ବରଷ ବରଷ ଧରି ପଢ଼ିଚି କାଗଜ
ଫିଟାଉ ନାହାନ୍ତି ପାଟି ଅମ ଜନବ୍ରଜ ।
କା ଆଗେ କହିବା ଦୁଃଖ ଲୋଡ଼ୁଚ୍ଛୁ ତ ଆପେ
କଷ୍ଟେ ବଦନେ ଘରେ କାଳ ଏବେ ଯାପେ ।
ସବରି ପଇସାତକ ସଞ୍ଚିଥିଲା ଯାହା
ଟିଙ୍କ ସଙ୍ଗେ କ୍ଷୀର ଖାଏ କଥା ହେଲା ତାହା ।

## ବୋଧୋଦୟ

ରହିବାକୁ ବହିନାରେ କେତେ ଦିନ ବାକି
କଲୁକି ହିସାବ ଦିନେ ଶଯ୍ୟାନେ ଏକାକୀ ?
ଖୋଜିବାକୁ ପରଖିଅ କେତେ ତରବର
ଶତ ଶତ ତଛି ଗ୍ରନ୍ଥ ନିଜ ଜୀବନର ।
ଆତ୍ମସୁଖ ଭୋଗ ଲଗି ଅନାରତ ବ୍ୟସ୍ତ
କେତେ ଦିନ ପାଇଁ ଏତେ ହେଲୁ ମୋହଗ୍ରସ୍ତ ।
ଭଲମନ୍ଦ ନ ବିଚାରୁ କେବେ ତ ଟିକିଏ
ଜାଣିଛଲେହେଁ ଜୀବନଟା ମାତ୍ରକ ଘଡ଼ିଏ ।
ପର ଉପକାରେ ସିନା ଦିନକର ଭୋର
ପର ଉପକାରେ ଅର୍ଥ ସଦା ପାପ ଘୋର ।
ହିଂସା ଦ୍ୱେଷ ଅବିରତ କଲୁଚ ଭୂଷଣ
ମଣିଲୁ ସହସ୍ତୁ ତାକୁ ପରମ ଦୂଷଣ ।
ବୁଲୁଥିବା ଅନ୍ଧ ଗୋଷ୍ଠା ପଡ଼ୁଚି ନୟନେ
କାହିଁକି ଏ ଦଶା ଭୋଗ କରିବଲୁ ମନେ ।
ଶତ ଶତ ପଙ୍ଗୁ ବୁଲି ଭୋଗନ୍ତି ଯେ ଦଶା
ପାଉନ୍ତି କି କରି ସୁଖେ କେବେ ଉପାଦସା ।
ତୋର ପୂର୍ବ ପୁରୁଷଙ୍କ କଥା ହେତୁ କର
ଚଳିଲେ ସକଳ ଦୁଃଖ ଯିବ ଅପସର ।
ନିଜ ଦେହ ଜାତ ଶତ୍ରୁ ନ କଲେ ତାଡ଼ନ
ବଢ଼ିଯିବ ବାହ୍ୟ ଶତ୍ରୁ ଦେବାକୁ ପୀଡ଼ନ ।
ଆହା ! କେତେ ତଣ୍ଡି ଭଣ୍ଡି ସାଇତିଲୁ ଧନ
ତଥାପି ତୋହର କେବେ ନ ପୁରିଲା ମନ ।

ଆସିଥିବ ଯେତେବେଳେ ମରଣ ଡାକରା,
ଭାବିଛୁ କି ସେତେବେଳେ ଦେବ କିଏ ଧରା ।
ବିଷୟାନନ୍ଦରେ ମଗ୍ନ ହୋଇ ଏ ଜୀବନ,
ନଯାଉ ବୋଲି ଅନିଶ କରୁ ଚଣ ମନ ।
ଜନ୍ମଶୀଳ, ମୃତ୍ୟୁଶୀଳ ସଦା ଏ ସଂସାର,
ବେଳ ଥାଉଁ ଥାଉଁ ବାଛିନିଅ ସାରାସାର ।
ସନ୍ତୋଷରେ ଅହରହ ବଢେ ମନୋବଳ,
ସ୍ୱାର୍ଥ କଲେ ପରିହାର ହୃଦୟ ନିର୍ମଳ ।
ଝିମିଟକେ ଖୋଲମର ହୋଇଯାଏ ପ୍ରାଣ,
ତେବେ ତୁଚ୍ଛାଟାରେ କାହିଁ ଦେଖାଉଛ ଟାଣ ।
ମହାମୋହ ଅଗ୍ରଜ ବିବେକ ନୃପତି,
ପରାଜୟ କରି ତବେ ଲଭିଲା ଖ୍ୟାତି ।
ପ୍ରବୃତ୍ତି ନିବୃତ୍ତି ଦୁହେଁ ଲଗିଛନ୍ତି କଳି,
କିଏ ବଡ କିଏ ସାନ ହେଉ ନାହିଁ କଳି ।
ମନକୁ ବିକୃତ କରୁଛି ଯିଏରେ
ଦୂରରେ ରହିବ ତାର,
[1]ଯମନିୟମକୁ ପାଳିବେ ତ ହେବ
ପାର ଭବ-ଅକୂପାର ।
ଉତ୍ପଥଗାମୀ ବା ହେଲେ କେତେବେଳେ
କର ପ୍ରାୟଶ୍ଚିତ ତାର
ନୁହ ବିମୋହିତ ସୁଗନ୍ଧିତ ବାୟୁ
ପାଇ ନବ ମଲ୍ଲିକାର,
ନବ ଯଉବନା କାମିନୀମାନଙ୍କୁ
ଦେଖି ହୁଅ ନିର୍ବିକାର ।
ବିବେକ ଲଗାମ ଦୃଢମନେ ଧରି
ରହ ସଦା ହୁସିଆର ।
ଚନ୍ଦ୍ରମା କିରଣ ଉଦ୍ଭାସିତ ରାତ୍ରି
ଅଟଇ ସଦା କ୍ଷଣିକ
ଅତି ଯତନରେ ରଖିଲେ ସାଇତି
ଯିବ କି ସଙ୍ଗେ [2]ମାଣିକ ।
ବେଳ ଥାଉଁ ଥାଉଁ ମୋହକୁ ମନ୍ଥନ
କଲେ ବା ପାଇବ ଫଳ

ବିଷୟରେ କାହିଁ ପେଷି ହୋଇ ସଦା
ପିଉଛ ଆଣି ଗରଳ ।
ସହାୟସମ୍ପନ୍ନ ନୁହେଁ ଯା ଜୀବନ
କରୁଥିବ ତାକୁ ଭୟ,
ବିବେକର ବୋଲ କରୁଥିଲେ ସିନା
ହେବ ପ୍ରବୋଧ ଉଦୟ ।
କରି ପରିହାର ଆଳାପ ବିଳାସ
ହାସକ୍ରୀଡ଼ା ଆଲିଙ୍ଗନ,
ପରମ ଚଣ୍ଡାଳ କ୍ରୋଧକୁ ହୃଦରୁ
କରି ଜବେ ଉନ୍ମୂଳନ ।
ବ୍ରହ୍ମ ସଂସର୍ଗରେ ଅବିଦ୍ୟାଙ୍କ ଠାରୁ
'ମନ' ନାମେ ପୁତ୍ରଜାତ,
ପ୍ରବୃତ୍ତି ନିବୃତ୍ତି ତାଙ୍କ ବେନି ପତ୍ନୀ
ହୋଇଛି ସଂସାରେ ଖ୍ୟାତ ।
ମହା ମୋହକୁଳ ପ୍ରବୃତ୍ତିରୁ କ୍ରୋଧ
ନିବୃତ୍ତିଠାରୁ ବିବେକ
ଜନମିଲେ ପରି ମନୀଷୀ ଶାସ୍ତ୍ରରେ
ଦେଖାନ୍ତି ଯେ ଯାହା ଠିକ ।
ବୈରିତା ବଢ଼ଇ ଦୁଇ ଭାଇଙ୍କର
ସଦାଭୋଗ୍ୟ ପଦାର୍ଥରେ
ନୁହଇ କୁଣ୍ଠିତ କରିବାକୁ ପାପ
କ୍ରୋଧ ଉଠିବା କାଳରେ ।
ତରଳାକ୍ଷୀଙ୍କର ସାଧ୍ୱସ କମ୍ପିତ
ସ୍ତନଦ୍ୱୟ ଆଲିଙ୍ଗନ
ପ୍ରବୃତ୍ତି ଇଚ୍ଛାରେ କରିଥାଏ ସିନା
ଅନବରତ ଦୁର୍ଜ୍ଜନ ।
ବିବେକ ସମ୍ପର୍କେ ହୋଇଛନ୍ତି ଜାତ
ଯମ ଶମ ଆଦି ଭାଇ
କ୍ରୋଧ ସମ୍ପର୍କରେ ଲୋଭ ଅହଂକାର
ବିଅନ୍ତି ଗୋଳ ଲଗାଇ ।
ଅଗ୍ରଗାମୀମାନଙ୍କ ମନୋରଥ ପୂର୍ଣ୍ଣ
ହୁଏ କି କେବେ ଜୀବନେ
ପୂର୍ବାର୍ଜିତ ପାପ ଘାଣ୍ଟୁଅଛି ବୋଲି
କେ ଚିନ୍ତଇ ଦିନେ ମନେ ।

୧ ଈଶ୍ୱରେ ନିୟୋଗ, ସଂଯତ  ୨ ସୁନାରୂପା

କୁଳ ଷସ୍ପୃକାସ    ପ୍ରବୃତ୍ତିର କେବେ
ନଥାଏ ସ୍ୱପ୍ନର ଜ୍ଞାନ
ଟିକକ କଥାରେ    ଉଦ୍‌ଭ୍ରାନ୍ତ, ତକ୍ଷଣେ
ଉଖୁରେଇବା ତା ଧ୍ୟାନ ।
ପୌରାଣିକ ଗାଥା    ଶୁଣାଇଲେ ତାଙ୍କୁ
ନ ପଡ଼େ ତାହାର ଶ୍ରବେ
ଉଜଟ ହୋଇ ସେ    ଉଡ଼ାଉଡ଼ି ଲାଗି
ଶରବେ ଉଠଇ ଜବେ ।
ଆପଣା ଦୋଷକୁ    ମଣିଷ କଦାପି
ନପାରଇ ଦେଖି କେବେ
ଗର୍ବସ୍ଫୀତ ହୋଇ    ହୀନ ପ୍ରବୃତ୍ତିର
ବଶବର୍ତ୍ତୀ ହୁଏ ଯେବେ ।
ଗର୍ବୋଦ୍ଧତ ଯୋଗୁଁ    କାର୍ଯ୍ୟାକାର୍ଯ୍ୟ ଜ୍ଞାନ
ରହିତ ହୋଇ ମଣିଷ,
ଯଥେଚ୍ଛାଚାରିତା    ହେତୁରୁ ଉତ୍ପଥେ(କୁପଥେ)
ପ୍ରବୃତ୍ତ ସିନା ଅନିଶ ।
ଜଗତ ବ୍ୟାପକ    ଅବ୍ୟାହତ ଜ୍ଞାନ
ଅଟନ୍ତି ପରମେଶ୍ୱର,
ମୋହ ସାଗରରେ    ମଜ୍ଜିମୂଢ଼ ସଦା
ନିନ୍ଦେ ତାଙ୍କୁ ନିରନ୍ତର ।
ଅସତ ଭାବକୁ    କରେ ପ୍ରଦର୍ଶନ
ବାରବନିତା ଯେସନ,
ଅବଗୃର ସିଦ୍ଧା    [1]ଅବିଦ୍ୟା ସଂସାରେ
ଠକୁଚ ସିନାତେସନ ।
ଗୋଟିଏ ଭାସ୍କର    ଶତ ଜଳ ପାତ୍ରେ
ପ୍ରକାଶଇ ରୂପ ଯଥା,
ଏକ ହେଲେ ମଧ୍ୟ    ଦେଖାଏ ମନ ତା
ଭିନ୍ନ ଭିନ୍ନ ଛଟା ତଥା ।
ସଦା ଧୈର୍ଯ୍ୟଧାରୀ    ଶାନ୍ତ ମହୋଦୟ
ସ୍ୱଚ୍ଛାନ୍ତଃକରଣେ ବସି,

୧ ମାୟା

ନୋହି ପ୍ରତାରିତ    ମାୟା ଦ୍ୱାରା କେବେ
କହେ କଥା ହସି ହସି ।
ପ୍ରବୃତ୍ତିର ବଡ଼    ପୁଅ କ୍ରୋଧ ମାନ
ହିଂସା ଦମ୍ଭ ଅହଂକାର,
ନିବୃତ୍ତିର ପୁଅ    ଶମ ଦମ ଜନ୍ମି
ଶିଖିଲେ ଅସାର ସାର ।
ସର୍ବ ଶକ୍ତିମାନ    ଅବିନାଶୀ ଆତ୍ମା
ଅହଂକାର ବନ୍ଧନରେ
ପଡ଼ି ଶରୀରରେ    ଭୋଗଇ ଯାତନା
ଶମ ଦମ ଅଭାବରେ ।
ମୁଣ୍ଡିତ ମୁଣ୍ଡକୁ    ମଣ୍ଡିତ କରାଇ
ପଣ୍ଡିତ ବୋଲାଇ ଲୋକେ
ପ୍ରମାଣ ସିଦ୍ଧର    ବିରୁଦ୍ଧାଚରଣ
କରି ଠକୁଛନ୍ତି [1]ଲୋକେ ।
ବିବେକ ବିନୟ    ପ୍ରଜ୍ଞାଶୀଳ ଆଦି
ଏକ କୁଟୁମ୍ବରେ ଛନ୍ତି
ପ୍ରବୃତ୍ତି ଅଂଶରୁ    ଜନ୍ମ ଲଭିଥିବା
କ୍ରୋଧ ଦାଉ ଯାନ୍ତି ସହି ।
କଲେ ଉପଦ୍ରବ    ଅହଂକାର ଦମ୍ଭ
ପ୍ରକମ୍ପିତ ବସୁନ୍ଧରା,
ଲୁଚିଯାଏ ସେବେ    ବିବେକ ଭିତରେ
ନଦେଇ କାହାକୁ ଧରା ।
ମାୟିକ ବଂଶର    ବିନାଶ ସାଧନେ
ବିବେକ ହେଉ ତତ୍ପର,
ତୁଟିବ ଅଶାନ୍ତି    ଆନନ୍ଦ ସୁଖରେ
ଚଳିବ ଶରୀର ଘର ।
କଳ୍ପନା ଗଠିତ    ପଦାର୍ଥରେ କେବେ
ହୁଅ ନାହିଁ ବିଡ଼ମ୍ବିତ,
ଆକାଶ ବୃକ୍ଷରୁ    ଫଳ ଆଶା କରି
ନହୁଏ କିଏ ଲଜ୍ଜିତ ।

୧ ଜଗତରେ

କ୍ରୋଧ ଜଗତକୁ କରିଦିଏ ଅନ୍ଧ
ପୁଣି ଶ୍ରୁତି ଶକ୍ତି ହୀନ
କ୍ଷଣକ ମଧ୍ୟରେ ହୋଇଯାଏ ତାର
ହିତାହିତ ଜ୍ଞାନ ଲୀନ ।
ମିଥ୍ୟାପ୍ରିୟ ମତ ଥିବ ଜାଗରୁକ
ତା ପୂଜା ରାଜ ଦୁଆରେ
ବାଟରେ ଘାଟରେ ଯେ ପାଉଛି ନିନ୍ଦା
ତା ପ୍ରୀତି ପୁଣି ବେଶ୍ୟାରେ ।
ମନୋପୂତ ସମ ଆକର୍ଷି ବସ୍ତୁ ତ
ନପୂନ ହିପୂ ମାହାର
ସେହି ମହାମୋହ ଭବ ରଙ୍ଗ ମଞ୍ଚେ
ହୋଇଅଛି ନାଟ୍ୟକାର ।
ଲୋଭ କ୍ରୋଧ ହିଂସା ନଟ ସାଜି ତହିଁ
କରୁଛନ୍ତି ଅଭିନୟ
ତହିଁର ଦର୍ଶକ ଶାନ୍ତି ପୁଣି ଶ୍ରଦ୍ଧା
ମନରେ ଉପୁଜେ ଭୟ ।
ସୁଖୀଠାରେ ମୈତ୍ରୀ ଦୁଃଖୀଠାରେ ଦୟା
ଧର୍ମାତ୍ମାଠାରେ ସନ୍ତୋଷ
ବହି ଉନ୍ମୂଳନେ ନୀଚ ପ୍ରବୃତ୍ତିର
ସହିବ ଜୀବନେ ପ୍ରୋଷ(କ୍ଲେଶ)
ଅନ୍ତରାତ୍ମା କା'ର ନହେଉ ଦୂଷିତ
ରୋଷ ଦ୍ୱେଷ ଅହଂକାରେ,
ଶାନ୍ତି ଶ୍ରଦ୍ଧା ମୈତ୍ରୀ ଖେଳିଲେ ହୃଦୟେ
ମିଳିବ ଯଶ ସଂସାରେ ।
ମୃଗ ମରୀଚିକା ତୁଲ୍ୟ ସାର ଶୂନ୍ୟ
ସଦା ସାଂସାରିକ ସୁଖ
ଆତ୍ମଜ୍ଞାନ ଲଭି ମହା ଆନନ୍ଦରେ
ହୁଅ ତହିଁରୁ ବିମୁଖ ।
ରକ୍ତାକ୍ଷ କ୍ରୋଧକୁ ଜୟ କରିବାରେ
କ୍ଷମାକୁ କର ଆଶ୍ରୟ,
ସହାସ ବଦନେ କୁଶଳ ପ୍ରଶ୍ନରେ
ହେବ କୋପର ବିଲୟ ।

ମେଣ୍ଟିବନି କ ଆଶା କାର କେତେବେଳେ
ଜନମି ବସୁନ୍ଧରାରେ
ଲୋଭାଦି ଚେଷ୍ଟାରୁ ଅପସରି ଯାଇ
ଚଳ ସଦା ଅହିଂସାରେ ।
ଦେଖୁଛ ତ ମୃତ୍ୟୁ ମସ୍ତକେ ସବୁରି
କରେ ନୃତ୍ୟ ଅବିରତ
ଜ୍ଞାନ ଜଳେ ତେଣୁ ଅଜ୍ଞାନ ଧୂଳିକୁ
ଧୋଇ କରିବ ନିର୍ମଳ ।
ଗୃଧ୍ରରୂପୀ କ୍ରୋଧ ଲୋଭ ମାତ୍ସର୍ଯ୍ୟର
ତତ୍ପର ହୁଅ ବିନାଶେ
ଭୀଷଣ ସର୍ପିଣୀ ଜରା କଲେ ଗ୍ରାସ
ପଶୁଛି କିଏ ତା ପାଶେ ।
ସଂସାର ବାସନା ବିଘଟନ ପାଇଁ
କରିଯାଅ ଯାହା ଭଲ,
ମରଣ ଜନିତ ଶୋକାଗ୍ନିରେ ପଡ଼ି
ହୁଅ ନାହିଁ କଳବଳ ।
ରଖିଲେତ ଚିହ୍ନି ହିତୈଷୀ ମାନଙ୍କୁ
ଚଳିବ ସୁଖେ ସଂସାରେ,
ଦେଖିଲେ ଶତ୍ରୁକୁ ନହୋଇ ବିବ୍ରତ
କହିବ କଥା ଶ୍ରଦ୍ଧାରେ ।
ସହସ୍ର ଶିଖାରେ ସ୍ନେହାଙ୍କୁର ଉଠି
ଶୋକବୃକ୍ଷ ହୁଏ ଜାତ
ତା ତତ୍ତ୍ୱ ବିଚାର କରି ଅହରହ
ଲଙ୍ଘିବ କର ଉତ୍ପାତ ।
ନାନାବିଧ କୀଟ ହେଉଅଛି ଜାତ
ଏ ଶରୀରେ ପ୍ରତିଦିନ
ବିନାଶେ ତାଙ୍କର ପ୍ରୟାସୀ ନହେଲେ
ଅବଶ୍ୟ ମଣିଷ କ୍ଷିଣ୍ଣ ।
ପ୍ରବୃତ୍ତିରୁ ଜାତ ମାତ୍ସର୍ଯ୍ୟ ବିଦ୍ୱେଷ
କ୍ରୋଧ ଅହଂକାର ଆଦି
ବିବେକ ୧ଖଁରକେ ନକଲେ ଉଚ୍ଛେଦ
ଆଣିଥାନ୍ତି ନାନା ବ୍ୟାଧି ।

ଚିତ୍ତ ବୃତ୍ତିକାର ନୋହୁ କଳୁଷିତ
ଇନ୍ଦ୍ରିୟ କର ଦମନ
ଶାଶ୍ୱତ ଶକ୍ତିକ ଜାଣିବା ନିମିତ୍ତ
ମଣିଷ କରୁ ଯତନ ।
ଅଭାଗ୍ୟ ସମସ୍ତ ହୋଇଲେ ଉପସ୍ଥିତ
ହୁଅଇ କୃଶ ଶରୀର

ମର୍ମଭେଦୀ କ୍ଲେଶ ଜାତ ହୋଇ ତହୁଁ
ଲୋକଙ୍କୁ କରେ ଅସ୍ଥିର ।
ଅନର୍ଥ ସାଧିକା ଅଟଇ ପ୍ରବୃତ୍ତି
ସମ୍ପତ୍ତି ମୃତ୍ୟୁ କାରକ,
ବୈଷୟିକ ମାର୍ଗ କରେ ତ୍ୟାଗ ତେଣୁ
ପରଂବ୍ରହ୍ମ ଉପାସକ ।



# ନିରାଟ ସତ

ବିଚାରକ ଯଦି କରିବ ଅନ୍ୟାୟ
କାହାକୁ କହିବା ଦୁଃଖ
ଆଳସ୍ୟରେ ନିତି ଯାପିଲେ ସମୟ
ମିଳିବ କି କେବେ ସୁଖ ।
ବୃଷଭ ରାସଭ[1] ଦଣ୍ଡରେ ବାରଣ
କରିହେବ ଅନାୟାସେ
ମୂର୍ଖତା ଦୋଷରୁ ଦୁର୍ଜନ ଆୟତ୍ତ
ହେବନି ଶତ ପ୍ରୟାସେ ।
ବାସ୍ତବିକ ଜ୍ଞାନ ନ କର ଅର୍ଜନ
ପଣ୍ଡିତ ବୋଲାଇ ଥୋକେ
ପଦ ଲେହନର ଆଶ୍ରୟରେ ଆଜି
ପାଉଛନ୍ତି ପୂଜା ଲୋକେ[2]
ଅତି କ୍ଷୁଦ୍ର ପ୍ରାଣୀ ହେଲେହେଁ ପିମ୍ପୁଡ଼ି
ଖଟିଖିଆ ସଦା ଭବେ
କୁଟୁମ୍ବ ଭିତରେ ଥିବାରୁ ଏକତା
ଉଣେନାହିଁ ତାର ଲବେ ।
ଅଧିକାର ଲାଗି ନୋହିବ ବ୍ୟସ୍ତ କେବେ
ସେବାରେ ଲଗାଅ ମନ

୧ ଗଧ ୨ ଜଗତରେ

ଅସହାୟ ପ୍ରତି ଦୟା ବହି ଚିତ୍ତେ
ସାର୍ଥକ କର ଜୀବନ ।
ଭୋଗ ପାଇଁ କେବେ ନହେଉ ବ୍ୟୟିତ
ନିଜ ଉପାର୍ଜିତ ଧନ
ନକର ଅଯାଚିତେ ଦଇନ ପ୍ରକାଶ
ଧର୍ମ ଆଗେ କଦାଚନ ।
ଜାତିର ଟେକକୁ ରଖିବାକୁ ସଦା
କରିବ ଜୀବନେ ପଣ
ସତ୍ୟନ୍ୟାୟ ଲାଗି ସକଳ ବିପଦ
ସତତ କରିବ ରଣ ।
ତୀର୍ଥ ଯାତ୍ରା କରି କି ଫଳ ପାଇବ
ନଥିଲେ ଶୁଦ୍ଧ ହୃଦୟ
ଲୋଭ ବନ୍ଧନରେ ନ ପଡ଼ନ୍ତି ଯେହୁ
କାହାକୁ ତାହାର ଭୟ ।
ମଣିଷକୁ ସ୍ୱାର୍ଥ କଢ଼ାଇଲେ ବାଟ
ପରଦ୍ରବ୍ୟ ଆଶା ବଳି
ଅସାଧୁ ଉପାୟ ମାନ ଧେନ ଯାଇ
ଭିଆନ୍ତି ଭୁଚ୍ଛାକୁ କଳି ।
କୁଳଶୀଳ ବାର ନଜାଣି ସହସା
ନକର ତାକୁ ବିଶ୍ୱାସ

ସଂସାର ସଂଗ୍ରାମେ ରଖିବାକୁ ଟେକ
ବରଜ ଭୋଗ ବିଳାସ
ଜଗତର ଗତି ଦେଖି ନଦେଖି ମତି
ମନକୁ କରବ ଅସ୍ଥି,
ମାତୃଭୂମି ଋଣ ଶୁଝିବା ନିମିତ୍ତ
କରୁଥିବ ସଦାଲସ୍ୟ ।
କୋଟି କୋଟି ପ୍ରାଣୀ ବସୁନ୍ଧରା ମଧ୍ୟେ
ସରଜେ ଯେ ଦଣ୍ଡକରେ,
ତାଗୁଣ କୀର୍ତ୍ତନେ ମନ ଦଅ ତାଳି
ଶୟନେ ବା ଜାଗ୍ରତରେ ।
ଭୁଣ୍ଡେ ହରିନାମ ଭିତରେ ଶଠତା
ଅବଲମ୍ବି କେତେ ଜନେ,
ପାପର ଅଙ୍ଗାଳ ତୋଳୁଛନ୍ତି ବସି
ନିଜ ଜୀବିକା ଅର୍ଜ୍ଜନେ ।
ନସହେ ଦଇବ କାହାର ଅନ୍ୟାୟ
ଯେତେବେଳେ ଯାଏ ବଢ଼ି,
ଦେଖ ପ୍ରତିଦିନ ରସାତଳଗାମୀ
ହୋଇ ଲୋକ ଯାଏ ସଡ଼ି ।
ମିଛ ପ୍ରତି ଘୃଣା କର ଅହରହ
ବଞ୍ଚିଥିବା ଯାଏ ଭବେ,
ସତ୍ୟକୁ ସଙ୍ଖାଳି କରୁଥିଲେ ସିନା
ପୂଜନ୍ତି ତାକୁ ସରବେ ।
ପରରୁଚି ପ୍ରତି ହେଉ ଅନୁକୂଳ
ସଦା ତୁମ ବ୍ୟବହାର,
ଅପମାନ ମାନ ବଡ଼ିଲ ଛୁଡ଼ିଇ
ଆଗୁର ଭେଦରେ କାର ।
ମିଛ ଗାଇ ଗାଇ ଅନ୍ୟକୁ ଠକିବା
ବୃତ୍ତି କରିଥିବ ଯେବେ
ଭାଗବତଗୀତା ଶୁଣୁଥିଲେ ବସି
ଖଣ୍ଡିବ କପାପ କେବେ ?
ନାଶଣୀ ଭବେ କେତେଦିନ ତୁମ
କର ଚିନ୍ତା ବାର ବାର
କର୍କଶ ବଚନ କହି କେଉଁ ବ୍ୟଥା
ଦିଅନାହିଁ ମନେ କାର ।

ନାନା କଥା ଲୋକେ କହନ୍ତି ପଛରେ
ଛାଡ଼ିଲେ ବଚନ ଥରେ,
ତେଣୁ ପଛଦୁଅ ଦିଅ ନାହିଁ କେବେ
ଅଙ୍ଗୀକାର ପାଳନରେ ।
କ୍ରୀଡ଼ା ପ୍ରମୋଦରେ ଯାଉଛି ସମସ୍ତ
ଶିଖିବାକୁ ନାହିଁ ବେଳ କାହାର,
ବେଦ ବେଦାନ୍ତକୁ ଗୋଡ଼ରେ ଆଡେଇ
ସ୍ୱାର୍ଥଚିନ୍ତା କଲ କେବଳ ସାର ।
କ୍ରୀଡ଼ାରତ କେହି ନଥାଇ ପୂରବେ
ଥିଲେ ତ ଟାଣୁଆ ଅତି
ସ୍ୱାସ୍ଥ୍ୟ ଅବନତି ନଥିଲା କାହାର
ସଂଯମ ଥିବାରୁ ମତି ।
ଇଂରେଜଙ୍କ ଦ୍ୱାରା ପ୍ରଚାରିତ ହୋଇ
ଦିନ ସନ୍ଥିଅଛି ଯାର,
ବେଦୋକ୍ତ ବଚନ ବୁଝାଇଲେ ତାକୁ
ପଡ଼ିବକି କାନେ ତାର ?
ଅନୁରାଗ ଯୁକ୍ତ ହେଲେହେଁ ମିଳନ
ସହାୟକ ଅନ୍ତରର,
ନୂହଇ କେ ବୋଲି ନଶ୍ୱର ଜୀବନେ
ମଣିଷ କି ହରିବର ?
କର୍ମ କୃତ ଫଳ ନ ଭୋଗୁଛି କିଏ
ଜନମି ବସୁନ୍ଧରାରେ,
ନହୋଇ ଥିଲେ ତା ଫଳିତ ଫଳିତ
ବୁଲନ୍ତେ କି ଦ୍ୱାରେ ଦ୍ୱାରେ ?
ବଞ୍ଚିଥିବା ଯାଏଁ କଞ୍ଚିଟି ପକାଇ
ସଞ୍ଚିଥିବୁ ଯେତେ ଧନ,
ଲଗିବ ତହିଁରେ ଯମମାନ ଆସି
ବୁଜିବା କ୍ଷଣି ନୟନ ।
ବିବେକ ରୂପକ ଅଞ୍ଜନ ଲଗାଇ
ଦେଖିବୁ ଜଗତ ଯେବେ,
ପାର୍ଥିବ ପଦାର୍ଥେ କାର ଅଧିକାର
ନଥିବା ଜାଣିବୁ ତେବେ,
ତୋ ଔରସୁ ଜାତ ସନ୍ତାନ ସନ୍ତତି
ତୋ ଲାଗି କୋହ କାଉଳ,

ଆପଣା ସୁଖକୁ ଲୋଡ଼ି ନିରନ୍ତର
ହୁଅନ୍ତି ପର ବାଉଳ ।
ପତି ପତ୍ନୀଙ୍କର କୁଟୁମ୍ବ ଭିତରେ
ଅନୁକୂଳ ଆଚରଣ,
ପରସ୍ପର ପ୍ରତି ନଥିଲେ ଅବଶ୍ୟ
ହେବ ଦୁଃଖର କାରଣ ।
ହାତ ଯାଉନାହିଁ ଦେବାକୁ ମୁଠାଏ
ଭିକାରିକି ଦେଖି ଯାର,
ଅଣ୍ଡା ଭିଡ଼ି କିଏ ଠିଆ ହେବ ଆସି
ବିପଦ ସମୟେ ତାର ?
ଧନାଧନେ କବି ସର୍ବସ୍ୱ ପୂଜିତ
ହୋଇଥାଏ ସଦାଭବେ,
ଦାରିଦ୍ର୍ୟ ଦୁଃଖରେ ପ୍ରପୀଡ଼ିତ ହୋଇ
ନିଜରେ ସେ ଚିନ୍ତା ଲଭେ ।
ଆସୁଛି ଯାଉଛି ବସନ୍ତ ଯେପରି
ଜୀବନ ସେପରି ଭବେ,
ଏଣୁବା କାହିଁକି କରିବ ଭାବନା
ପ୍ରାଣ ପାଇଁ କେବେ ଲଭେ ।
ମାନ ଅଭିମାନ ପୋଛିଦେଇ ହୃଦୁଁ
ତୋଳିବ ଶାନ୍ତିର ଘର,
ଜୀବନ ପଥରେ ଭୁଲି ନ ଜାଣିଲେ
ଝୁଣ୍ଟିବ ଥରକୁ ଥର ।
ସକଳ କର୍ମରେ ଈଶ୍ୱର କରୁଣା
କଲେ ସଦା ଅନୁଭବ,
ଦୁଃଖ ବୋଲି କେବେ ଜାଣି ନ ପାରିବ
ଜୀବନ ଯାହାରେ ଲଭ ।
ବଚନେ ଆଦର ସତ୍ୟତା ନଥିଲେ
କରିବ କିଏ ଗ୍ରହଣ,
ଜନ ହିତ ଲାଗି ମନ ଦେଇ ସଦା
କର ଶାନ୍ତି ଉଚ୍ଚାରଣ ।
ଉତ୍ତାଳ ତରଙ୍ଗ ଯା ନାମ ଭକ୍ତିରେ
ଦୋଷୁଅଛି ନିରନ୍ତର,
ତା ନାମ ହୃଦୟେ ଜପମାଳ କରି
ତରିବ ଭବ ସାଗର ।

ଜୀବନେ କା ପ୍ରତି ଶତ୍ରୁତା ନରଖି
ଆନନ୍ଦେ ଯାଉ ସମୟ,
କଳହରୁ ଯିବା କ୍ଷାନ୍ତ ହେଲେ କାର
ହୃଦୟେ ନଥିବ ଭୟ ।
ଐଶ୍ୱରିକ ଜ୍ୟୋତି ପାଇବା ନିମିତ୍ତ
ସତତ କଲେ ଯତନ,
ଦୁର୍ବଳତା କ୍ଳାନ୍ତି ନପଶି ଶରୀରେ
ପ୍ରଫୁଲ୍ଲ ରହିବ ମନ ।
ଖୋଜୁଛି ପବନ ଯାହାକୁ ସତତ
ନକରି ବିଶ୍ରାମ ଲବେ,
ଧୃତ ମନେ ତାକୁ ଧ୍ୟାୟି ଦିନ ରାତି
ମରଣ ଜିଣିବ ଭବେ ।
ବନ୍ଧୁ ବନ୍ଧୁ ମଧ୍ୟେ ଗାଢ଼ ଅନୁରାଗ
ରହିଥାଉ ନିରନ୍ତର,
କୁଳର ମର୍ଯ୍ୟାଦା ରହିଥାଏ ଯିବା
ଥିଲେ ସ୍ନେହ ପରସ୍ପର ।
ସାଂସାରିକ ବସ୍ତୁ ପାଇବା ନିମିତ୍ତ
ସ୍ୱଧର୍ମକୁ ଦେଲ ଛାଡ଼ି,
ନକର ଉପେକ୍ଷା ନିନ୍ଦା ଅପମାନ
ହେଉଛି ତୁଚ୍ଛାକୁ ଝାଡ଼ ।

ମନିଷର ଗର୍ବ ଦମ୍ଭ କେତେ ଦିନ ଭବେ
କେହିହେଲେ କେତେବେଳେ ନ ବଞ୍ଚିଛଲବେ
ନକର ନିନ୍ଦିତ କର୍ମ ପ୍ରାଣାନ୍ତ କାଳରେ
କି ବୋଲିବେ ପଛେ ଲୋକେ ବିଚାର ତ ଥରେ
ଆପଣା ଆମୋଦ ଲାଗି ପରଧନ ହରି
କେ ପାଇଛି ସୁଖ ଭବେ କିହ ଚିନ୍ତା କରି ।
ପରକ୍ଷୁଧା ନିବାରଣେ ଯେ ସଦା ତତ୍ପର
ଧରଣୀ ମଧ୍ୟେ ସେ ଯିବା ହୁଅଇ ଅମର ।
କ୍ଷମତାର ବ୍ୟବହାର ଅନ୍ୟାୟ ପନ୍ଥାରେ
କଲେ ତାର ପରିଣାମ ଭୋଗିବ ସଂସାରେ ।
ବେଶ୍ୟା ପରି ବହୁରୂପୀ ଭବେ ରାଜନୀତି
କ୍ଷମତା ଲୋଭରେ ପରା ଏପରି ଅମାତ ।
ମୁହୂର୍ତ୍ତେ କା ସଙ୍ଗେ ବୁଲିଲେ ଦୁନିଆଁ
ନୂଆ କଥା ଦେଖି ହେବୁରେ ଛୁନିଆଁ ।

ଗୁଞ୍ଜିବାକୁ ମୁଣ୍ଡ ନଥିଲା ଯାହାର
ସେ କବି ବସିଛି କୋଠା ମାଳ ମାଳ ।
ଶଠତାର ଏତ ଜ୍ୱଳନ୍ତ ପ୍ରମାଣ
କହିଲେ ଏକଥା ଉଠୁଛି କୃପାଣ ।
ନିଫଳ ମିଳିବ କଲେ ବା ଗୁହାରି
କାଳଧଳା କଲେ ଓକିଲ ବାହାର ।
ପାଣି ମନ୍ଦେ ପାଇଁ ଲୋକ ସଠାବଠା
ହେଉଛି ଯା କାମ ସବୁ ହଟହଟା ।
ସାରା ଦୁନିଆଁକୁ ଯେ ଯୋଗାଏ ଦାନା
ତା କଟିରେ କିଆଁ ନାହିଁ ଖଣ୍ଡେ କନା ।

୨

ବେଦ ବେଦାନ୍ତକୁ ଗଲେ ଭୁଲି ସବେ
ପାହୁଣ୍ଡ ପଡ଼ୁଛି ଆହା ! କେତେ ଗର୍ବେ
ଆଇନ ଯେତେକ ହେବାରୁ ଗୋଳିଆ
ହେଲେ ହଟହଟା ଗରିବ ମୂଳିଆ ।
ଗାଁ ଗହଳରେ ପଣ ଯାଇ ଥୋକେ
ଦେଖିବ କି ଭଲ ରହିଛନ୍ତି ଲୋକେ ।
ତେଲିଆ ମୁଣ୍ଡରେ ହେଲା ତେଲ ଘସା
କଣ୍ଟ୍ରୋଲରେ ସବୁ ଗଲାଣି ତ ଚଷା ।
କରିବ ପବିତ୍ର ନିରତ ହୃଦୟ
ଜୀବନ କ୍ଲେଶକୁ ନ କରିବ ଭୟ ।
ଏ ଜୀବନ ଭବେ ମୁହୂର୍ତ୍ତେ ମାତର
ବୁଝୁଥିଲେ ଏହା ମଣିଷ ଅନ୍ତର ।
ମିଛ କହିବାକୁ ବଳନ୍ତା କି ମତି
ଅବା କରିବାକୁ ଅପକର୍ମଗତି ?
ଜଗତ ଆଲୋକ କରୁଅଛି ଯିଏ
ତା ମହିମା ଗାନ କରୁଅଛି କିଏ ?
ଅନୁରାଗ ଘେନ କର୍ମମାନ କରି
ସଂସାର ସାଗର ଯାଅ ଜଣେ ତରି ।
ସାହସ ଦମ୍ଭରେ କଲେ କର୍ମମାନ
କରନ୍ତି ସାହାଯ୍ୟ ପ୍ରଭୁ ଭଗବାନ ।
ପଥର ଭିତରେ ଭେଦିବ କି ଜଳ
ବୁଡ଼ାଇ ରଖିଲେ ତାକୁ କେତେ କାଳ ।

ଆଧ୍ୟାତ୍ମିକ ବୋଧ ପଶେ କି ତା ମନେ
ରହିଛି ବୁଡ଼ି ଯେ ସଂସାର ବନ୍ଧନେ ।
ଆଖି ଥାଉ ଥାଉ ନ ଦେଖିଲା ପରେ
ରହିଛି ମଣିଷ ସ୍ୱାର୍ଥକୁ ଆବୋରି ।
ନାହିଁ ପଟାନ୍ତର ମହିମା ଯାହାର
ପଡ଼ୁ ନାହିଁ ଦୃଷ୍ଟି ତା ଉପରେ କାର ।

୩

ବିଶ୍ୱକର୍ତ୍ତାଙ୍କର ନିୟମ ଯାହା
କିଏ ସେ ଜଗତେ ଖଣ୍ଡିବ ତାହା ।
ସେ ନିୟମ ଦେଖି ସତତ ଚଳ
ଜୀବନେ ଭ୍ରମର ହେବ ମଙ୍ଗଳ ।
ଦୋଷ ଦିଅ ନାହିଁ କେବେ କାହାକୁ
ରଖିବ ସଂଯତ ସଦା ଭାଷାକୁ ।
ବିବାଦ ବହ୍ନି କି ଜ୍ୱଳିବ ଯେବେ
ଜାଳି ପୋଡ଼ି ଦେବ ସର୍ବସ୍ୱ ତେବେ
ହେ ମଣିଷ, ହେ ସଜାଗ ଭବେ ।
ଧୂର୍ତ୍ତର କବଳେ ନ ପଡ଼ ଲବେ
ନାସ୍ତିକ କଥାରେ ନ ଦେବୁ କାନ
ଯେତେହେଲୁ ଲଘବ ହେବ ସମ୍ମାନ ।
ସତ୍ୟର ସନ୍ଧାନେ ଯାଉ ଜୀବନ
ପରମାତ୍ମା ସଙ୍ଗେ ହେବ ମିଳନ ।
ଯାଅ ଅପସରି ଭୁଲା କଳରୁ
ପାଉଅଛ କ୍ଲେଶ ସିନା ତହିଁରୁ ।
ହେଉଛ ମଣିଷ କି ହରିବର
ପ୍ରତିଶୋଧ ଲାଗି ହୋଇ ତତ୍ପର ।
କା ସଙ୍ଗେ ଶତ୍ରୁତା କରିଣ ଭବେ
ଯହିଁରୁ ମିଳଇ ଅଶାନ୍ତି ଲବେ ।
ଦେଖୁଛି ଚୌଦିଗ ଯେ ନିରନ୍ତର
ନାହିଁ କିଛୁ ଭବେ ତା ଅଗୋଚର ।
ଉତ୍ତାଳ ତରଙ୍ଗ ସିନ୍ଧୁ ମଧ୍ୟରେ
ଗାଉଛି ତା ଗୀତ କେତେ ସ୍ୱରରେ ।
ହିମାଳୟ ଶୃଙ୍ଗ ବସିଛି ଲୁଚି
ତାର ଦରଶନ ପାଇବା ପାଇଁ ।

ଗ୍ରହ ଉପଗ୍ରହ ତାର ଆଦେଶ
ପାଳୁଛନ୍ତି ନିତ ନ ବହି କ୍ଳେଶ ।
ଉଠରେ ମଣିଷ ପାହିଲା ରାତି
କରଯାଆ କର୍ମ ପଡାଇ ଗ୍ଲାନି ।
ଜୀବନ ଯାବାରେ ହେଲେ ନିଷ୍କ୍ରିୟ
ବିଶ୍ୱକର୍ତ୍ତାଙ୍କର ହେବ ଅପ୍ରିୟ ।
କରନ୍ତୁ ଜଣାଣ ତାର ପୟରେ
ମନ୍ଦ ବୁଦ୍ଧି ଦେଇ ଅଧମ ନରେ ।
ଜଗତର ଲୀଳା କର ଦର୍ଶନ
ପରଦ୍ରବ୍ୟେ କେବେ ନ ବଳୁ ମନ ।
ସହଯୋଗ ବିନା ଚେଷ୍ଟା ସକଳ
ନହେବ ଜୀବନେ କାଉ ସଫଳ ।
ସୁଖର କାରଣ ନୁହେ ସମ୍ପତ୍ତି
ଗୋଟିଏ ଖଣ୍ଡ ଲାଗି ବଡ଼ ବିପତ୍ତି ।
ବଦାନ୍ୟ ବ୍ୟକ୍ତିର ସମ୍ପତ୍ତି ଶୂନ୍ୟ
ହୁଏ ନାହିଁ ଦାନେ ବଢଇ ପୁଣ୍ୟ ।
ମନ ଅନିର୍ମଳ ଥିବ ଯାହାର
ଜୀବନେ ଆନନ୍ଦ ନାହିଁ ତାହାର ।
ପ୍ରବୃତ୍ତିକ ଲାଗି ଚଞ୍ଚଳ ଭବେ
ଅସମ୍ମାନ ଲୋକ ଯା ଉପଦ୍ରବେ ।
ଏକୁଟିଆ ବସି କର ବିଚାର
ସ୍ୱାର୍ଥ ଅଭିଳାଷେ କି ନାହିଁ ଜୋର ।
ଯେତେ ଧନ ଭବେ ଅନ୍ଧାରେ ଥିବ
ଦରିଦ୍ର ଦରିଦ୍ର ଜୀବନ ଯିବ ।
ନଥିବ ଅଭାବ ନଥିବ ଭୟ
ଈଶ୍ୱର ଚିନ୍ତାରେ ଥିଲେ ହୃଦୟ ।
ହସୁଛୁ ଆଜ ଯେ କାନ୍ଦୁଛୁ କାଲି
ସମ୍ପଦ ଭଣ୍ଡାର ପଡୁଛି ଖାଲି ।
ନରହି ଗରବ ମର ଶରୀରେ
ମିଶିବ କାଲି ଯା ଧୂଳି ମାଟିରେ ।
ଅମରତ୍ୱ ଲାଗି ବଡ଼ ଲାଳସା
ନହେଉ ଜୀବନ ଉଗାଡସା ।
ମାୟା ଦୁନିଆଁରେ କି ଛଟପଟ
ହେଉଛି ମଣିଷ ବହି କପଟ ।

କିଏ ସେ ଆତ୍ମୀୟ କିଏ ବା ପର
ଧନ ସରିଗଲେ ସବୁ ଅନ୍ତର ।
ନ ପାଏ ଗରିବ ମୁଠାଏ ଅନ୍ନ
ଅପଥାଭେ କେତେ ସଞ୍ଚିତ ଧନ ।
ଅନ୍ୟାୟ ପନ୍ଥାରେ ଅର୍ଜି ଧନ
କର ନାହିଁ ଧର୍ମକାର୍ଯ୍ୟେ ବଣ୍ଟନ ।
ଚପଳ ମନକୁ କର ସଂଯତ
ଗୁଲ୍ଥିବ ବାଟ ହୋଇ ଜାଗ୍ରତ ।

## ଦୁନିଆଁ ରୀତି

ସୁଖଦୁଃଖ ଭାବ, ମନ ବିକାର
ନୁହଇ ଏ ଭବେ କିଏ କାହାର
ଆସିଅଛୁ ଏକା, ଯିବୁ ତୁ ଏକା
ଭୁଞ୍ଜାଇ ଉଡ଼ୁଛୁ ମୁଣ୍ଡରେ ଠେକା
ଶୂନ୍ୟ ହାତେ ଆସି ଭବେ
ଅଟେଳିଲୁ ଯାହା ରଖିଲୁ ସାଇତି
ନେବୁ କି ତହିଁରୁ ଲବେ (୧)
ପଡିଗଲେ ଥରେ ରୋଗ ଶଯ୍ୟାରେ
ତୋ କ୍ଳେଶ ବୁଝୁଛି କିଏ ସଂସାରେ
ମାଡୁଛି କି ପାଖ ପଡ଼ଶା ଘର
ମାହାକୁ କରୁଛୁ ବଡ ଆଦର
ଦୁନିଆଁ ରୀତି ଏପରି
ଅସମୟ ବେଳେ କିଏ ତୋ ପାଖରେ
ଜାଣିଲୁ କି ଚିନ୍ତା କରି (୨)
ଭୁଞ୍ଜାନ୍ତାଣ କର ବିଷମ ଫଳ
ପାଇ, ଝରୁଅଛି ଲୋତକ ଜଳ
ଆଗରେ ପଛରେ ନଥାଇ କିଏ
ନପାଇ କାହାର ସାହା ଟିକିଏ
ହେଉଅଛୁ ହଟହଟା
ପଡ଼ୁଛି କି କାନେ କେବେ ହେଲେ ଧନେ
କରନ୍ତି ଲୋକେ ଯା ଥଟା (୩)
ଯାଉନାହିଁ ଧନ ସମାନ କା'ର
କରନାହିଁ ତେବେ ଭୁଞ୍ଜା ବିଚାର

ଯେତେବେଳେ ପଡ଼ୁଅଛୁ ଖାଲରେ
ବସୁଛ ଗୃପୁଡ଼ା ନିଜ ଗାଲରେ
ଦୁନିଆଁ ଖଣ୍ଡିକ ଦେଖି
କେବେ ହେଲେ କିଏ ଅସତ କରମ
ନକରୁ ଲାଜ ଉପେକ୍ଷି (୪)
ସମ୍ପଦେ ବିପଦେ ସାହା ଶ୍ରୀପତି
ତାଙ୍କ ପଦ ତଳେ ରହୁ ସୁମତି
ଜୀବନର ସଖା ସେହି କେବଳ
ନାହିଁ ମଣିଷର ଅନ୍ୟ ସମ୍ବଳ
ତେଜି ମନୁ ଅହଙ୍କାର
ମଧୁର ବଚନେ ତୋଷି ପରଚିତ୍ତ
କରିନେବୁ ଆପଣାର (୫)
ଶୁଦ୍ଧ ଚରିତ୍ର କରୁଥିବୁ ବିସ୍ତର
ସ୍ୱାର୍ଥକୁ କରିବୁ ସଦା ଧିକ୍କାର
ତେବେ ଦୁନିଆଁରେ ଗୌରବ ପାଇ
ଗଲାବେଳେ ଯିବୁ ମନ ଫୁଲାଇ
ନଥିବ ସୋରିଷେ କ୍ଷୋଭ
ଆଖି ଆଗେ ଦେଖି ମରଣ କଷଣ
କାହାପାଇଁ ଏତେ ଲୋଭ (୬)
ବଳବୀର୍ଯ୍ୟ ଗଲେ ମଣିଷ ମ୍ଳାନ
ହାଲି ଭାଲି ଏବେ ନଯରେ ଦିନ
ଗଡ଼େ ଲହଡ଼ାର ଆସେପ ନେହରୁ
ଆପଣା କୁଟୁମ୍ବ ହତାଦରରୁ
ରଖିଥିବ ମାହା ସଞ୍ଚି
ପାଇବା ଆଶାରେ ପରିବାର ବର୍ଗ
ନିଅନ୍ତି ଛଡ଼ାଇ କାଞ୍ଚି
ଜୀବନ ମୋହର ସଦା ଅସ୍ଥିର
ଜାଣି ଜାଣି କିଆଁ 'ମୁକାର' ଗିର
ଉତ୍ଥାନପତନ ଭାଗ୍ୟ ରଥରେ
ଘୂରୁଛି ସନ୍ତତ ଭବ ଭିତରେ
ସ୍ୱାର୍ଥମାତ୍ର ସଂସାରର
ନ ବିଗୁରି ହୃଦେ ଆପଣା ଲାଭରେ
ବ୍ୟସ୍ତ ହେଉ ନିରନ୍ତର (୭)
ଗ୍ରହିଲୁ ମନ ନ୍ୟାୟ ବିଚାର

ବଶବର୍ତ୍ତୀ ହୋଇ ସଦା ଆଶାର
ହେଉ କରୁଥିଲେ ଇହପରକୁ
ଆସିବୁ ଫେରି ବା ନ୍ୟାସ୍ତ ବାଟକୁ
ଆଜ ଯେ ପଡ଼ିଚ ତଳେ
କାଲି ଉଠିଲଣି ଉପରକୁ ସେହି
ବିଧି ଅନୁଗ୍ରହ ବଳେ (୮)
ନିଜ ଜୀବନରୁ ଶିକ୍ଷା ନ ପାଇ
ଅସାର କଥାରେ ମଣିଷ ବାଇ
ନିଯୁକ୍ତ ବିଧାନ କେ ପାରେ ଖଣ୍ଡି
କି ଯଶ ମିଳୁଚି ପରକୁ ଦଣ୍ଡି
ବିଚିତ୍ର ଦୁନିଆଁ ଗତି
କିଏ ଭାବିଲା କି କେତେ ଯେ ଅକାଳେ
ଲଭନ୍ତି ମରଣ ନିତି (୯)
ନିନ୍ଦା ପ୍ରଶଂସାକୁ ଦେଇ ନଜର
ବୁଝି ଦେବୁ ହୃଦୁ ସ୍ୱାର୍ଥ ଅନ୍ତର (ଛିଦ୍ର)
ଅଭିନୟ ସାରି ଭବ ମଞ୍ଚରେ
ପହଞ୍ଚିବୁ ଯେବେ ଅଜଣା ଘରେ
ଘଟିବ ତାହାଙ୍କ ଦଶା
ଧନେ ହେଲେ କେବେ ନଥିବ ମନରେ
ହେଉପିନା ଲୋକହସା (୧୦)
ଅଧା ବୟସରୁ ଘର ପଠାଇ
ସତର୍କ ଘଣ୍ଟି କେ ଦିଏ ବଜାଇ
ମୂଢ ମଣିଷ ତା ଜାଣି ନପାରେ
ବିଷୟ ଜଞ୍ଜାଳେ ହେଉଛି ଘାରେ
ବନ୍ଧୁ, ଛବ କାରବାର
ବୁଝିବାକୁ ଲବେ ଏମନ୍ତ ସଂସାରେ
କରେ କି କିଏ ବିଚାର (୧୧)
ବଳ ଯିବା ନାହିଁ ହାତ ଗୋଡ଼ରେ
କଥା ବାହାରୁଚି ବଜ୍ର ସ୍ୱନରେ
ଲଇଁଲଣି ଅଣ୍ଟା ହାଡ଼ରେ ବାଡ଼
ସାମାନ୍ୟ କଥାରେ ହେଉଛୁ ଖାଡ଼
ନ ବିଚାରି ଭଲମନ୍ଦ
ପାଚିଲଣି ବାଳ ପଡ଼ିଲଣି ଦାନ୍ତ
ତଥାପି ହୃଦସ୍ପୃ ଛନ୍ଦ (୧୨)

ଆକ୍ଷିରେ ପରଳ ଗଲାଣି ମାଡ଼ି
ଜୀବନ ମରଣ ଲଗିଛି ଧାଡ଼,
ଆଗ ଭାଗ ପାଳ ପଛରେ କାର
ଲବେ ନଜାଣେ କେ କଲେ ବଗୁର
ମଣିଷ ଜୀବନ ଦଣ୍ଡେ
ନିତ ଦେଖି ଦେଖି ନକର ଉପେକ୍ଷା
ପଣି ନାନା ଲଣ୍ଡଭଣ୍ଡେ (୧୩)

କରିଥିଲେ ଯିନା ସେବା କାହାର
ତୋ ଦେବା ନିମିତ୍ତ ହେବେ କାହାର
ଦୁନିଆଁର ଗତି ନଭାବ ମନେ
ବଳଇଛି ପ୍ରୀତି କେବଳ ଧନେ
ସେ କି ହେବ ତୋର ସାହା
ବେଳ ଥାଉ ଥାଉ ଭୁଲାଇଲେ ମୋହ
ଉଦ୍ଧରିବେ ଚଉବାହା (୧୪)

ଫିଟାଇ ଅକ୍ଷିକ ଦିବ୍ୟ ଚିତ୍ତରେ
ଚାହିଁଲେ ଜାଣିବୁ ସବେ ମୋହରେ
ଘାଣ୍ଟି ହେଉଛନ୍ତି ସାରା ଜୀବନ
ବଳିଦେଇ ନିଜ ମାନ ସମ୍ମାନ
ଅତେଇ ଦିନକୁ ଭବେ
କୁକ୍ରିୟାରେ ରତ ହେଉଛ ନିରତ
ନଭାବ ମାନସେ ଲବେ (୧୫)

ଧିକ ଧିକ, ମନ କଞ୍ଜାଳେ ପଡ଼ି
କେତେ ଦୁଃଖ ସହି ଗଲୁଣି ସଢ଼ି
ନୟନ ଫେରାଇ ଦେଖିବୁ ଥରେ
କିଏ ଅଛି ତୋର ଅସମୟରେ
ସକଳ ସାଥି ସୁଖରେ
ପଡ଼ିଲେ ସ୍ୱାର୍ଥରେ ପାଏ ଖାଦ୍ୟକଏ
ନ ବସି ମୁଥ ଗାଲରେ (୧୬)

ଅସମ୍ଭାଳ ଆଜ କୁଟୁମ୍ବ ଦାଉ
ବୃଖଣ୍ଡେ ପେଟକୁ ନମିଳେ ଯାଉ
ଗନ୍ତାଘର ପୁର ରହିଚ ଯାଉ
ଦେବାକୁ ମୁଠାଏ କେତେ ବଗୁର
ହେଲେହେଁ ସନ୍ତାନହୀନ
କି ଯିବ ସାଥିରେ ଖୁବୁଛି କି କଏ
ଖବୁ ହେବ ଯେବେ ଲୀନ (୧୭)

ଭବ ରଙ୍ଗମଞ୍ଚ ବଡ଼ ବଚିତ୍ର
ଦେଖିବାକୁ ମିଳେ ବଭିନ୍ନ ଚିତ୍ର
ବବେକ ଯିନା ତା କରି ଚିନ୍ତନ
ଛିଣ୍ଡାଇ ପାରୁଚ ଯେତେ ବନ୍ଧନ
ଯିବାକୁ ସହଜ ବାଟେ
ଅପନ୍ତ୍ରା ବାଟ ହେଉଚି ଓଲାଇ
ଦେଖୁଛୁ ଯା ଭବ ହାଟେ (୧୮)

ଆଗକୁ ପଛକୁ ଚିଆ ସକଳ
ଥିବାଯାଏ ନିଜ ବାହୁରେ ବଳ
ପଡ଼ିଗଲେ ବାହା ସବୁ ଅନ୍ଧାର
ଦୃଷ୍ଟି ପଡ଼ୁନାହିଁ ସ୍ୱର୍ଗ କି କା'ର
ସ୍ୱାର୍ଥ ନିଶା ଦିଏ ଘାର
ଖବୁନାହିଁ ଦିନେ କେଉଁ ଭଗ ଧରି
ଭବ ସିନ୍ଧୁ ହେବା ପାର (୧୯)

ଜୀବ ଜଗତର ପ୍ରାଣ ଧାରଣେ
ବବଧ ପଦାର୍ଥ ସୃଜି ଛତରଣେ
ଯୋଗାଉଚି ଯିଏ ଖଟି ସନ୍ତତ
ଅଖିଳ ବ୍ରହ୍ମାଣ୍ଡ ଯା ଅନୁଗତ
ତା ନାମ କେବେ ନସ୍ମରି
ଭବ ଜାଲେ ପଡ଼ି ଛଟପଟ ଅବା
ଅସଲଟ ବାଟ ଧରି (୨୦)

## କୋଇଲି

ଉଦୁଉଦିଆ ଖରାରେ
ଯାଚ ଖେଳୁଥିଲ ଆମ୍ବ ତୋଟାରେ
କଳା ପିକରେ, ପିଲ ଦିନେ ସରାଗରେ ।୧।
ଶୁଣି ତୋ ମଧୁର ସ୍ୱନ
ଆନନ୍ଦ ନହୁଏ କାହାର ମନ
କଳା ପିକରେ, ଜାଣୁ କି କାହା ସୃଜନ ।୨।
ବେଣୁଧର ବଂଶୀ ସ୍ୱନ
ସଙ୍ଗେ ମିଶାଇଲୁ ତୋ କୁହୁତାନ
କଳା ପିକରେ, ବଚିତ୍ର ବଧିବଧାନ ।୩।

ପକ୍ଷୀ ଜନମରୁ ପାର
ହେବା ଲାଗି ଅବା ଡ଼ାକୁ ମୁରାରି
କଳା ପିକରେ, ଶୁଣିବେ ସେ ତୋ ଗୁହାରି
ସେତକ ପିଲା ଦିନର
ମନେ ପଡ଼ିଗଲେ ଥରକୁ ଥର
କଳା ପିକରେ, ଗଡ଼ୁଚି ଲୋତକ ଝର ।୪।

ବର୍ଷକୁ ଆସି ଥରେ
ରସାଉ ମାନସ କୁହୁ ତାନରେ
କଳା ପିକରେ, କଳା ବୋଳା କଳେବରେ
ଆମ୍ବ ବଉଳକୁ ରସି
ପତ୍ର ଗହଳରେ ଲୁଚିଲୁ ବସି
କଳା ପିକରେ, ପଖାଳକୁ ଆମ୍ବ କସି ।୫।



# ସଂକୀର୍ଣ୍ଣତା

ଏହିକ ସେ ଗଣତନ୍ତ୍ର ବିଶୃଙ୍ଖଳା ଯହିଁ,
କରୁଚ ରାଜସ୍ୱ ଥୋଇ କଲ୍ ଦଣ୍ଡ ତହିଁ ।
ପୂଜ୍ୟଙ୍କର ହିତ ବାଣୀ ନପଡ଼େ କା କାନେ,
ଇହେ ମନ ବ୍ୟସ୍ତ ସଦା ସ୍ୱାର୍ଥର ସନ୍ଧାନେ ।
ନ୍ୟାଯ୍ୟା ନ୍ୟାଯ୍ୟ ବିଚାରକୁ ନାହିଁ ଅବସର,
ଯେସା ତେସା ମତ ଧରି ନେତା ଆଗଭର ।
ଦେଖ ଦେଖ ଭାରତର ରାଜନୀତି ଖେଳ,
ବିଛୁଆତି ବାଇଡ଼ଙ୍କ ହୋଇଛନ୍ତି ମେଳ ।
ଛକା ପଞ୍ଜା ମତ ଧରି ଯେ ଯାହା ସ୍ୱାର୍ଥରେ,
ରହିଛନ୍ତି ଅହରହ ଅତି ସଜାଗରେ ।
ମୃତ୍ୟୁର ପୂର୍ବ ଶୀତା ପରି ହୁଏ ମନେ,
ସହଜ କି ବିଚରିବା ରାଜନୀତି ବନେ ?
ଲଗିଛି ଯେତେକ ଲୀଳା ପ୍ରତ୍ୟହ ଏ ଭବେ,
ଶକତ ନାହିଁ କାହାର ବୁଝିବାକୁ ଲବେ ।
ଗ୍ରାମେ ଗ୍ରାମେ ସଢ଼ୁଛନ୍ତି ଏଣେ ଲୋକ ଶୋକେ,
କାହିଁ ବା ନ ପାନ୍ତି ପାଣି ପିଇବାକୁ ଢୋକେ ।
ଭଙ୍ଗା ରୁଜା ମାତ ଏବେ ହୋଇଅଛି ବଳ,
ହେଉଛି ପାର୍ଟିଶ ଯୋଡ଼ ଜାତିର ସମ୍ବଳ ।
ଅସାର କଥାରେ ସଦା ବିଳୁଅଛି ମନ,
ଅସନ୍ତୋଷ ବହ୍ନି ଶିଖା ଉଠେ ଘନ ଘନ ।
ସ୍କୁଲ ଅଟ୍ଟାଳିକା ତଳେ କୋଟି ଟଙ୍କ ଥାଇ,
ଖେଳୁଅଛି ନାନା ଖେଳ କୌଶଳ ଭିଆଇ ।
ପାଶ୍ଚାତ୍ୟ ପ୍ରଭାବ ପଡ଼ି ଏ ଦେଶ ଶିକ୍ଷାରେ,
ନ ରହିଲ ସୁସମ୍ପର୍କ ଗୁରୁ ଶିଷ୍ୟ ଠାରେ ।

ଫେସନ ଭାବରେ ଗୃହା ଆଜି ବଡ଼ ଲୋକେ,
ସାରୁଛନ୍ତି କେତେ ଅର୍ଥ ପିଇ ଢୋକେ ଢୋକେ

ପ୍ରସରିଲ ଦିନୁଁ ଦିନ ଦେଶେ ସୁରାପାନ,
ରୋକିବାକୁ ଡାକେ ହେଲେ ନକରେ କେ ଧ୍ୟାନ ।

ମିଛକୁ ନମଣି ପାପ ଗଟେ କୁହାଳିଆ,
ଛଳକୁ ଚାଳ କରାଇ ଲଗାଏ ଜଟିଆ ।

ହୋଇ ଅପବ୍ୟସ୍ତ କେତେ ପଡ଼ି ତା ଫାନ୍ଦରେ,
ମୁଣ୍ଡେ ହାତ ଦେଇ ରହୁଛନ୍ତି ମଉନରେ ।

ନ ଥିବାରୁ ଲୋକଙ୍କର ନଜା କୁଉଆରେ,
ପାଉଛନ୍ତି କ୍ଲେଶ ଅତି ଦେଢ଼ ବରଷାରେ ।

କଣ୍ଟ୍ରୋଲ ହେତୁରୁ ବଢ଼ି ଚୋର କାରବାର,
ଶୁଭୁଅଛି ଜନତାର ରଡ଼ି ହା ହା କାର ।

ଅଣ୍ଟା ଖୋଷା ପାଇବାରୁ ହାକିମ ନିକର,
ମୂଲ୍ୟବାନ କାଠ ବୋହି ନିଏ କଣ୍ଟ୍ରାକ୍ଟର ।

ହେଉଅଛି ଲୁଟି ଯେତେ ଠାକୁର ସମ୍ପତ୍ତି,
ନପଡ଼େ କାହାର ଦୃଷ୍ଟି ଟିକିଏ ତା ପ୍ରତି,

ପରନିନ୍ଦା କରିବାକୁ କେହି ବା ତତ୍ପର ,
ନ ପରଖି କେତେବେଳେ ଆପଣା ଅନ୍ତର ।

ହୁଗୁଳା ହେବାରୁ ଦେଶେ ଶାସନର ବଳ,
ବଢ଼ୁଅଛି କ୍ରମେ କ୍ରମେ ଗୁଣ୍ଡାମିର ଦଳ ।
ହାତରେ ନଥିଲା କିଛି ହେଲା ଠିକାଦାର,
ବରଷ ଧାଆଁଠା ମଧ୍ୟେ ଜମିଲା ଅପାର ।

ସମବାୟ ସମିତିଙ୍କୁ ପଶ ଯାଇ ଥରେ,
ବୁଝିବ ଯା କାରସାଦ ଦେଖ ସ୍ୱନେତ୍ରରେ ।
ତନଖି ହାକମ ଯାହା ଲେଖନ୍ତି କାଗଜେ,
ଧରାଧରି କରି ଦୋଷୀ ଫିଟଇ ସହଜେ ।
କଚେରିକି ଧାଇଁ ଧାଇଁ ପାଦ ଯାଏ ସରି,
ନ କହନ୍ତି କେହି କିଛି ହାକମଙ୍କୁ ଡରି ।
କୃଷି ପାଇଁ କୃଷୀ ମନେ ପାଉନାହିଁ ଜଳ,
ବରଷା ଅଭାବେ ଏଣେ ହେଉଛି ବିକଳ ।
ମୁଣ୍ଡେ ହାତେ ଦେଇ ବସି ଅଛନ୍ତି ବୁଣାଳୀ
ମିଲ୍‌ରୁ ବାହାରେ ଏଣେ ଲୁଗା ଭଲ ଭଲ ।
ଯୋଜନା ନାଆଁରେ ଦେଶୁ କୋଟି କୋଟି ଟଙ୍କା
ବୋହିଗଲା ପାଣି ପରି କିନ୍ତୁ ସବୁ ବଙ୍କା ।
ଗରିବର ହୋଇ ନାହିଁ ଲବେ ଉପକାର
ବଢ଼ିଛି ଧନୀର ସିନା ସବୁ କାରବାର ।
ଏ ପଟୁ ସେ ପଟ ଖାଲି କଲମର ଗୃଷ
ବୁଲାବାରୁ ହାକମଙ୍କ ନାହିଁ ଅବକାଶ ।
ହଜାର ହଜାର ଟଙ୍କା ଉଡୁଛି ଗସ୍ତରେ
ହୋଇଛି କି କିଛି ଲାଭ ପରଖ ତ ଥରେ ।
ଗରିବ ଖର୍ଚ୍ଚରେ ଆଜ ବସି ଆସନରେ
ସେମାନଙ୍କ ପାଇଁ କେହି ନ ଭାବନ୍ତି ଥରେ ।
ନ ପାଉ ପଛକେ ଘନ ମୁଠାଏ ପେଟକୁ
ଧନ ମଜୁରିରୁ ଏଣେ ବାହୁଚି କଟକୁ ।
ସଜ ଦେଖି ନେତାଗଣ ଯେ ଯାହା ଫିକରେ
ଭାଷନ୍ତି ମୃଦୁ ବଚନ ଅତି ସବାଗରେ ।
ନରହେ କାହାରି ମନ ଭାଷଣରେ ଆଉ
ଯେଣୁ ବାଧା ହଏ ସଦା କୁଟୁମ୍ବର ଦାଉ ।
ବଢୁଅଛି ବେଳୁବେଳ ଜିନିଷର ଦର
ରୋକିବାକୁ ଶକ୍ତି ନାହିଁ ଆମ ନେତାଙ୍କର ।
ସେବା ମନୋଭାବ ଛାଡ଼ି ଭୋଗାହରେ ମନ
ବଳିବାରୁ ନେତାଙ୍କର ପ୍ରଜାଏ ଉଚ୍ଛନ୍ନ ।
ମନ ଯାର ବ୍ୟସ୍ତ ସଦା ପରସ୍ୱ ହରଣେ
ଧନ ଯାର ବଦଳିତ ଗଣିକା ଚରଣେ ।
ଅବିରତ ରଖେ ଲକ୍ଷ୍ୟ ପରେ ଠକିବାର
ବୋଲନ୍ତି ଏ ଯୁଗେ ତାକୁ ଧର୍ମ ଅବତାର ।

ସରଳତା ସ୍ଥାନେ ଆଜ ବସି ଆଡମ୍ବର
ଲଗାଇଛି ଦେଶ ମଧ୍ୟେ ବଦଧ ହୁନ୍ଦର ।
ଚିର ସ୍ରୋତା ନଦୀମାନ ଯହିଁ ବଦ୍ୟମାନ
ପରିକୁ ବତାଏ ହାତ ଆଜ ତା ସନ୍ତାନ ।
ଯେ ଦେଶ ଶିଳ୍ପୀ ଗଢ଼ିଲା କୋଣାର୍କ ମନ୍ଦିର
ତାହାର ଦାୟାଦ ଆଜ ଦାଣ୍ଡର ଫକୀର ।
ବେକାର ସମସ୍ୟା ବଢ଼ୁଅଛି ଦିନୁଁଦିନ
କଲେଜରେ ପଢ଼ାସାରି ପିଲେ କର୍ମହୀନ ।
ଗଢ଼ା ହେଲା ଦିନୁ ଦେଶେ ଗ୍ରାମ ପଞ୍ଚାୟତ
ଆପଣା ଆପଣା ମଧ୍ୟେ କଳହ ସତତ ।
ପୂର୍ବ ନୈତିକତା କାହିଁ ଗଲା ଭାରତର
ଥକଲା ଯା ଦେଖି ମହାଶକ୍ତି ବ୍ରିଟେନର ।
ରାଜନୀତି ଦିନୁଁଦିନ ଅତି କଳୁଷିତ
ସାହି ସାହି ଡାକଲେଣି ଦେଶର ଶାସିତ ।
ବଢ଼ୁଛି ସମାଜେ କ୍ରମେ ଦୁର୍ନୀତିର ବଳ
ଏଥିଲାଗି ଚାରିଆଡେ ପଡ଼ୁଛି ଚହଳ ।
ନୋଟ ନେଇ ଭୋଟଦେବା ଦେଶୁ ହେଲା ଲୋପ
ଛୁଏଁ ଛୁଏଁ ଯୁଝିବ ଅମାନ୍ତ ପ୍ରକୋପ ।
ଅର୍ଥହେତୁ ଗ୍ରାସି ଅଛି କ୍ଷମତାର ମୋହ
ଆପଣା ଆପଣା ମଧ୍ୟେ ଏଣୁ ଆଜ ଦ୍ରୋହ ।
କାହିଁ ଗାନ୍ଧିତ୍ୟାଗ କାହିଁ ପୂର୍ବ ସେବା ଧର୍ମ
ନ ବୁଝନ୍ତି କେହି ତଳେ ଏମନ୍ତ ମର୍ମ ।
ଅହଂକାର ପଶି ପ୍ରତି ସ୍ତରେ ସମାଜର
କାଟି ପକାଉଛି ଏବେ ଏକତା ଦେଶର ।
ବଢ଼ୁଅଛି ଚାରିଆଡେ ଅନ୍ୟାୟର ରୁଚି
କାହାରି ଇଚ୍ଛା ନ ବଳେ ହେବା ପାଇଁ ଶୁଚି ।
ନିଜ ସ୍ୱାର୍ଥ ଲାଗି ଏବେ ନେତାଏ କାଉଳ
ସନ୍ନିପାତ ମଲ୍ଲୁ ଭଳି ହୁଅନ୍ତି ବାଉଳା ।
ହୋଇଛି ଷାଠିଏ ହାତ ଘରଚେ ଯେ ସାନ
ଜାଣେ କି ସେ ତଳେ ହେଲେ ମାନ ଅପମାନ ।
ଜନମି ଏ ପୁଣ୍ୟ ଭୂମେ କେତେ ମହାଜନ
ଯୋଗ ବଳେ କରିଥିଲେ ଅସାଧ୍ୟ ସାଧନ ।
ଆତ୍ମବଳ ଦେବା ପାଇଁ ଅକୁଣ୍ଠିତ ଚିତ୍ତେ
ହେଉଥିଲେ ଆଗଭର ସଦା ପର ହିତେ ।

ତାଙ୍କର ଦାୟାଦ ହୋଇ ବାପୁଜୀ ଆମର ।
ଅହିଂସା ପ୍ରଦୀପ ଜାଳ ଦେଲେ ଘରେ ଘର ॥
ଆଜି ନାହିଁ ମନେ ତଳେ ଥିଲେ ଯା ଶିଖାଇ ।
କାହା ହୃଦ ଘାଣ୍ଟି ହେବ ଗରିବଙ୍କ ପାଇଁ ?
ଦୂଷିତ ପଡ଼ିଚ ପୂର୍ବ ସଂସ୍କୃତି ଦେଶର ।
ସେଥି ପାଇଁ ଏବେ ଫେରି ଏତେ ହରବର ॥
ସ୍ୱର୍ଣ୍ଣ ପ୍ରସୂ ଏ ଭାରତ ଦୀନ ହୀନ ଆଜ ।
ଏଥିପାଇଁ ଦୋଷୀ କିଏ କହ ନେତା ରାଜ ?
ଆପଣାକୁ ବଡ଼ ବୋଲି ବୃଥା ଭାବନାରେ ।
ମାତ ନାହିଁ କେତେବେଳେ ମର ଦୁନିଆଁରେ
ସଂଯମ ଶବ୍ଦଟି ଯିନା ରହିଚ ଭାଷାରେ ।
ଅସଂଯତ ଆଜ ଲୋକ ସାମାନ୍ୟ କଥାରେ ॥
ତେଜ ହୃଦୟରୁ ନୀଚ ପ୍ରବୃତ୍ତି ନିକର ।
ମାତୃଭୂମି ସେବା ଲାଗି ହୁଅ ତତପର ॥
ଭଣ୍ଡାମିଆ ନ କରିବୁ ସଂଗ୍ରହ ଭୋଟର ।
ହେଉ ଦେଶ ଅନୁବର୍ତ୍ତୀ ବାପୁଜୀ ବାଦର ॥
ଗାନ୍ଧିବାଦ ପ୍ରଚାରରେ କିଛି ନାହିଁ ଲାଭ ।
ନ ପାରିଲେ ବଦଳାଇ ନିଜ ମନୋଭାବ ॥
ଜୀବନର ଧନ୍ଦା ସାରି ଯିବ ତ ବାହୁଡ଼ ।
ଏ ନିମିତ୍ତ ଦେଶର କର୍ମୀ ହୁଅ ଦୃଢ଼ ॥
ବସନ୍ତ ମାଧୁରୀ ପଛେ ତାପ ଗ୍ରୀଷ୍ମର ।
ଅନୁଭବ ହୁଏ ଭବେ ସଦା ମଣିଷର ॥
ନୀତି ଭ୍ରଷ୍ଟ ହୋଇ କଟାଇବ କେତେ କାଳ ।
ବିଷମ ବିଷମ ହୋଇ ଧରଣୀ ଜଞ୍ଜାଳ ॥
କରିଚ ସୁକର୍ମ ମନୁ ସଙ୍କୀର୍ଣ୍ଣତା ଛାଡ଼ ।
ହବ ବିନମୟ କରି ଦେଶ ନିଅ ଗଢ଼ ॥
ରଖିଲେ ହୃଦୟ ମଧ୍ୟେ କଳୁଷିତ ଲାଳସା ।
କେତେ ବେଳେ ନ ଘୁଞ୍ଚିବ ଏ ଦେଶୁ ଦୁର୍ଦ୍ଦଶା ॥
ସମସ୍ତ ଗତିକ ଧରି ଫେରାଅ ନୟନ ।
ଗଣତନ୍ତ୍ର ଦୃଢ଼ ହେଉ ଚଳୁ ସୁଶାସନ ॥
କେତେଦିନ ଧନ ଭୋଗ ଯଶ ଆଉ ଭବେ ।
ନିଦ୍ରାବେଳେ ସ୍ମିତମନେ ଶାନ୍ତାକର ଲଭେ ।
ପରଦୋଷ ଖୋଜିବାକୁ ନ ବଳାଅ ମନ ॥
ବ୍ରତ ହେଉ ନିରନ୍ତର କର୍ତ୍ତବ୍ୟ ସାଧନ ।

କୁରୁକ୍ଷେତ୍ର ଆଡ଼େ ଥରେ ଫେରାଇ ନୟନ ।
କି ଦଶା ଭୋଗିଲା ଦେଖ ଦୁଷ୍ଟ ଦୁର୍ଯ୍ୟୋଧନ ॥
ନଶୁଣି କାହାର କଥା ପଶିଲା ସମରେ ।
ମରାଇ ସବଂଶ ଆପେ ମରିଲା ଶେଷରେ ॥
ନ୍ୟାୟର ନିଷ୍ପତ୍ତି କଲା ସମର ଅଙ୍ଗନ ।
ଯେତେ ଥିଲେ କୁରୁପକ୍ଷ ଲଭିଲେ ନିଧନ ॥
ମୃତ୍ୟୁଠାରୁ ବଳି ଦୁଃଖ ନାହିଁଟି ସଂସାରେ ।
ଅନୁଭବୀ ବିନା ତାହା ବୁଝି କେ ନପାରେ ॥
ଲୋଭ ବଶେ କର୍ଣ୍ଣବୀର ଦେଇଥିଲେ ବଳ ।
ତାଙ୍କ ସଙ୍ଗେ ମିଶିଥିଲେ ଯେତେଥିଲେ ଖଳ ॥
ଜନକ ଜନନୀ ପୁଣି ଭୀଷ୍ମ ଦ୍ରୋଣ ସହ ।
ତୁଟାଇ ପାରିଲେ ନାହିଁ ସାମାନ୍ୟ କଳହ ॥
ପିତାମାତା ମହାଶୋକେ ପଡ଼ି ଘରକଣେ ।
ଝୁରଣା ସଦାଏ ହେଉଛନ୍ତି ଅନୁକ୍ଷଣେ ॥
ଦୁର୍ଭର ନୟନ ନାହିଁ ଶଠତା ଶଠର ।
କଲା ଚୂର୍ଣ୍ଣୀଭୂତ ସବୁ ପ୍ରହାର କାଳର ॥
ଅଧର୍ମର ପରାଜୟ ଧର୍ମର ବିଜୟ ।
ଏହି ମହାଶିକ୍ଷା ମନୁ ନ ହେଉ ବିଲୟ ॥
ବିବେକ ଲଗାମ ଧରି ଇନ୍ଦ୍ରିୟ ଘୋଟକ ।
ଚଳାଇ ପାରିଲେ ହେବ ଦେଶ ନିଷ୍କଣ୍ଟକ ॥
ମିଛକାହିଁ ଭୁଞ୍ଜ ନିନ୍ଦା ଅରଜ କପାଇଁ ।
ପରଧନ ଅପହରି ସଞ୍ଚୁଛ କା ପାଇଁ ?
ଲାଗିଛୁ ଯିବାଆସିବା ଦେଖ ଏ ମରତେ ।
କିଏ ରହେ କହୁଛନ କେ ବା ମୁହୂରତେ ॥
ହୁଅ ନାହିଁ ମହାମୋହେ ବଶବର୍ତ୍ତୀ ଆଉ ।
ହିତକାମେ ମନଦିଅ ଜୀବ ଥାଉ ଥାଉ ॥
ଖଳ ଖୋସାମତିଆଙ୍କୁ ନ ମଡ଼ାଅ ପାଶ ।
ଯାହା ଯୋଗେ ମଣିଷର ଘଟେ ସର୍ବନାଶ ॥
ବାହାରେ ବାବାଜି ସାଜି ଭିତରେ ଶଠତା ।
ଆଚରିଲେ ନ ରହିବ ଆମ ସ୍ୱାଧୀନତା ॥
ନ ହୋଇ ଅର୍ଥରେ ବଶ କଲେ ତାଙ୍କୁ ଦାସ ।
ଅନନ୍ତ କାଳମଧ୍ୟେ ହେବ ମହତ୍ତ୍ୱ ପ୍ରକାଶ ॥
ଅପର ହାତରେ କେବେଁ ନୋହି କୀଡ଼ନକ ।
ଆପଣାକୁ ମଣ ସଦା ଦେଶର ସେବକ ।

# ଚି ନ୍ତା ମ ଣି

ପୁରାତନ କା'ର କେବେ ଅସାର କଳ୍ପନା
ନ ଦେଖୁଛି କିଏ କେତେ ମରଣ ଯାତନା ?
ସାଂସାରିକ ଭୋଗ ବିଳାସରେ ସଦା
ହୃଦୟ ରହିଛି ଯାର ।
ଅନ୍ତିକରେ ତାର ପୋଛିବାକୁ ବେଳ
ଦୀନର ଲୋତକ ଧାର ?
ଅଚିନ୍ତ୍ୟ ଶକତି କରୁଛି ରାଜତ୍ୱ
ସମଗ୍ର ଭୂ-ମଣ୍ଡଳରେ
ନ ଜାଣି ମଣିଷ ଭ୍ରମି ହେଉଅଛି
ନିରନ୍ତର ଅନିତ୍ୟରେ ।
କିଏ କେତେବେଳେ ପଡ଼ୁଛି ଝଡ଼ି
ଏ ବିଷୟ କେବେ ଜଣା ନ ପଡ଼େ ।
ତେବେ ଲଢ଼ାଇରେ କି ଫଳ ପାଅ
ଈଶ୍ୱର ଚିନ୍ତାରେ ମନ ଲଗାଅ ।
ପାଇବ ସୁଖ ପଛରେ
ବିଷୟ ଜଞ୍ଜାଳ ମହାକାଳ ଫଳ
ବୋଲି ଭାବ ହୃଦୟରେ ।
ବରଷ ବରଷ ଗଲାଣି ବିତି
ଦେଖି ଚଉଦିଗେ ଦୁନିଆଁ ରୀତି ।

ନ ଶିଖିଲ ପଦେ କାହିଁରୁ କିଛି
"ମୋର ମୋର" ବୋଲି ସତତ ଇଚ୍ଛି ।
ଚିନ୍ତିଲ କି କେବେ ଥରେ
ଭବରଙ୍ଗ ଭୂମି ଛାଡ଼ିବ ଯେବେ
କି ଯେନି ଯିବ ସଙ୍ଗରେ ।
ଭେଦଭାବ ଭୁଲି ହୁଅରେ ଏକ
ତେବେ ଜନତାର ରହିବ ଟେକ ।
ପଛଆଡ଼ୁ ଛୁରୀ ନମାର କା'ର
ନିର୍ମଳ ହୃଦୟ କର ବିସ୍ତର ।
ସ୍ୱାର୍ଥ ପାଇଁ ଲାଗି କଳି,
ପୂର୍ବର କାହାଣୀ ପାସୋର ମନରୁ
ଦେଶକୁ ନଦିଅ ବଳି ।
ବୃଟିଶ ଶାସନ ଲାଞ୍ଛି ମିଛରେ
ଉପୁଜଇ କୋହ ଦେଖି ହୃଦରେ
ଶିଖାଇବାକୁ କେ ନାହିଁ ତାହାର
କ୍ଷମତା ମୋହରେ ଦିଶେ ଅନ୍ଧାର ।
କାହାକୁ ଏବେ କହିବା
ରାଜନୀତି ତନ୍ତ୍ର ଭେଦଭେଦନ ପାଇଁ
ବହ୍ନିର ଚୁନ ରହିବା ।

ଗରବଙ୍କ ସଙ୍ଖ୍ୟା କର ତୁଳନା
ତାଙ୍କ ପାଇଁ ଦୃଢ କର ଭାବନା ।
ପେଟକୁ ନପାଇ କେତେ ଉପାସ
କର ଘନ ଗ୍ରନ୍ଥ ଶେଷ ନିଶ୍ୱାସ,
ଧନୀବର ବୁଝାମଣା
ଜାଣିବାକୁ ଯୋଗୀ   ହେଲ ସିନା ଧନ୍ଦ
ନ ପଡ଼ିଲ୍ ତଳେ ଜଣା ।
କେତେକ ବଡ଼ ବୈଷ୍ଣବ ସାଜ,
ବାର ବାର ଦେଲେ ଭାଷଣରାଜ ।
ଗସ୍ତଖର୍ଚ୍ଚ ଲାଗି ଅବା ବ୍ୟାକୁଳ
ମଲେଣି ଦେଶର କୃଷକକୁଳ
ମାଗି ମାଗି ପାଣି ମନ୍ଦ
ପଥ ଭଡ଼ାଏରେ   ଅଯଥା ଖରଚ
ଟୋପେ ପାଣି ନାହିଁ ଖନ୍ଦ ।
କ ବୋଲନ୍ତି ଜନେ ଚୋର ପଛରେ
କାନ ଦେଉଥିବୁ ନିଶିବାସରେ ।
ଅନ୍ୟର ସମ୍ପଦେ ନ ବଳ ଆଶା
ସନ୍ତୋଷରେ ନିଭ ତୃଷ୍ଣା ପିପାସା
କାହିଁକି ଏ ଅହଂକାର
ହୃଦ କେଦାରରୁ   ଉପାଡ଼ ଘାସକୁ
ଆନନ୍ଦ ମିଳୁ ଅପାର ।
ଭଲ ମନ୍ଦ ଯାହା ନିତି ତଉଲ
କରିଯାଅ କର୍ମ ସ୍ୱାର୍ଥକୁ ଭୁଲି
ଗୋଡ଼ାଣିଆ କେବେ ନହୁଅ କା'ର
ମଣିବ ସଂସାର ସଦା ଅସାର
ମିଛକୁ ଛଡ଼ ଅନ୍ତରୁ
ଅବିନାଶୀ ବ୍ରହ୍ମ-   ପଦେ ରଖି ଲୟ
ଫିଟିବ ମାୟା ଜାଲରୁ ।
ମଣିଷ ଭିତରେ ରହିଚ ଲୋଭ
ତା ପ୍ରତି କିଏ କି ପ୍ରକାଶେ କ୍ଷୋଭ ?
ଯାପଢ଼େ ହାବୁଡ଼େ ଦିଅନ୍ତି ଗିଳି
ପେଟ ଭର୍ତ୍ତିରେ ତା ଯାଉଚି ମିଳି
ସକଳେ ପଡ଼ ମୋହରେ
ଯାହା ଇଚ୍ଛା ତାହା   କରି ଯାଉଛନ୍ତି
[illegible]ନ୍ତ ଭାବ ସ୍ଥିର ମନରେ ।

ଫିଟାଇ ଦିଅରେ ଲୋଭ ବନ୍ଧନ
ଜନ ସେବା କର ଯାଉ ଜୀବନ
ଓଳିଏ ଉପାସ ଓଳିଏ ଜାଉ
ଖାଇ ସମ୍ମାନେ କେ ଉଦର ଦାଉ
ମେଲି ଆଖି ଦେଖ ଥରେ
କ୍ଷମତାରେ ରହି   କହୁଥିଲେ ଗୁଡ଼ାଏ
ଶୁଣିବ ନଦା ଧନରେ ।
କିବା କୋଟିପତି କିବା ପଣ୍ଡିତ
ନିସ୍ପୃହ ଜନ୍ମାରେ ସବୁ ଗୃହୀତ
ଲଟିନ ଭୂଷାକୁ ଆପଣା ପାଇଁ
ଧର୍ମ ଅଧର୍ମକୁ ପଛେ ପକାଇ
କା ଲାଗି ହୋଇଲ ବଡ଼
ଧନେ ହେଲେ ଲୋଭେ   କରନ୍ତି ମାନସେ
ପାଖରୁ ତାହାକୁ ତର୍ଜ ।
କାମନା ପୂରିତ ହୃଦୟ ଯା'ର
ସେ କାହୁଁ ଶିଖିବ ସାଧୁ ଆଚାର ?
ନିଜ କୁ ବଳି ଦେଇ ଜୀବନେ
ଅସୁର ସ୍ୱଭାବ ସନ୍ତତ ମନେ
କାହିଁକି ଟଣା ଓଟରା
ସଂସାର ଚକ୍ରରେ   ଜନ୍ମ ଜରା ମୃତ୍ୟୁ
ଗୋଡ଼ାଗୋଡ଼ି ନିତି ପରା ।
ମିଥ୍ୟାକୁ ମଣିଲ ଅମିଥ୍ୟା ବୋଲି
ନ କହିଲ ପଦେ ହୃଦୟ ଖୋଲି
ଅରପି ଚିତ୍ତକୁ ବ୍ରହ୍ମ ପଦରେ
ହୁଅ ଅଗ୍ରସର ମୁକ୍ତି ମାର୍ଗରେ
ହେଲେହେଁ କଣ୍ଟକମୟ
ଅଭ୍ୟାସ ବଶରେ   ଫୋପାଡ଼ ଦେଲେ ତା
ତୁଟିବ ସକଳ ଭୟ ।
ତରିବ କିପରି ଭବ ସାଗରୁ
ନ ଶିଖି ଜୀବନେ ପଦେ ଗୁରୁରୁ
ହୃଦୟର ଯେତେ ଅଜ୍ଞାନ ଗଣ୍ଠି
ନ ଫିଟାଇ କଲ ଗଳାରେ କଣ୍ଠି
କେତେ ଧନ ପାଇଁ ଭବେ
ଶୋଷଣ ପ୍ରକୃତି   ବହି ଅହରହ
ନ ଚଳିଲ ଧନେ ଲୋଭେ ।

ନକର ବିଶ୍ୱାସ ତାହାଙ୍କୁ ଭବେ
କୃତଜ୍ଞତା ଯାର ନଥାଏ ଲବେ
ଗୃହ କଥାରେ ସେ ଦିଏ ଭୁଲାଇ
ମାନ ମହାତ୍ମ୍ୟକୁ ସଦା ହରାଇ
ପାଉ ସେ ଯେତେ ସୁବିଧା
ଉଣ୍ଡି ବେଳକାଳ ନିର୍ଲଜ୍ଜ ଭାବରେ
ପଛରୁ ମାରୁଛି ବିଧା ।

ପାଳ ବେଦୋକ୍ତ ନୀତି ଅନବରତ
ଯାପିବ ଜୀବନ ହୋଇ ସଂଯତ
ନଥିଲେ ଆବିଳ କେବେ ହୃଦୟ
ଦିଶିବ ଜଗତ ଈଶ୍ୱରମୟ
ନ ରହିବ ହିଂସା କ୍ଷଣେ
ହୃଦ କବାଟକୁ କିଳ ଦେଇ ଭାଇ
ନଚଳ ଛଳଚରଣେ ।

ପରମାତ୍ମାଙ୍କର ଅସ୍ତିତ୍ୱ ଜାଣି
ତାଙ୍କଠାକୁ ନେବ ହୃଦୟ ଟାଣି
ଅବିନାଶୀ ବ୍ରହ୍ମଜ୍ଞାନ ଅର୍ଜ୍ଜି
ଲଭ ଅମରତ୍ୱ ସ୍ୱାର୍ଥ ବରଜି
ହୋଇ ମୁକତି ଭିକାରି
ବିଷୟ ସକଳ ତେଜ ମାନସରୁ
ହୁଅ ଭବସିନ୍ଧୁ ପାରି ।

ବୁଡ଼ି ଗାଧୋଇ ଦାନେ ଅଛି କି ଫଳ
ଚଞ୍ଚଳ କି ମନ କର ନିର୍ମଳ
ନହୋଇ ପଥିକ ନ୍ୟାୟ ମାର୍ଗର
କୁନଠା ବେଶରେ ପୂର୍ଣ୍ଣ ଅନ୍ତର
ସହିବ ନାହିଁ ଦଇବ
ଆଜ ଯେ ବସିଛି ରତ୍ନ ସିଂହାସନେ
କାଲି ସେ ଭିକ ମାଗିବ ।

ଏ ଦେଶର ବେଦ ଉପନିଷଦ
ନୁହେ କି ଜାତିର ଶ୍ରେଷ୍ଠ ସମ୍ପଦ ?
ଗୋଡରେ ଆଡ଼େଇ ଦେଉଛ କିଆଁ ?
କି ବୋଲିବ ଏହା ଦେଖି ଦୁନିଆଁ
ମରଣଧର୍ମା ମନୀଷ

ସବୁ କଥା ଦେଖି କାହିଁକି ସତରୁ
କଳୁଷ ପଙ୍କେ ଅନିଶ ।
ଭୋଗ୍ୟବସ୍ତୁ ସଦା କ୍ଷଣ ଭଙ୍ଗୁର
ତା ନିମିତ୍ତ ଆହା ! କେତେ ଆତୁର
ବଢ଼ୁଅଛି ଆଶା ଉତ୍ତରୋତ୍ତର
ଆତ୍ମତୃପ୍ତି କାହିଁ କେବେ ମନର
ଆତ୍ମଜ୍ଞାନେ ରହୁ ମତ
ଜରା ମରଣର ଶରୀର ଧାରଣେ
ହେଉଛୁ ଘୃଣ୍ୟ ପତନ !

ଅବଲମ୍ବି ୧ପ୍ରେୟ ମାର୍ଗ ଜୀବନେ
ମତ୍ତ ଚମ୍ପ ଲୋକେ କି ପ୍ରଲୋଭନେ !
ବିଷମ୍ବାଦ ଗୃହଚର୍ଯ୍ୟାରେ ଭୁଲି
କଥା କହୁଛନ୍ତି କି ଫୁଲି ଫୁଲି
୨ଶ୍ରେୟକୁ କରି ବର୍ଜ୍ଜନ
ଅସାଧ୍ୟ ସାଧନ କରିଥିଲେ ପରା
ଏ ଦେଶ ମହର୍ଷିଗଣ ।
ମାୟା ହେତୁ ହୃଦେ ନାନା କାମନା
ପୂରିତ ହୋଇ ତା ଦିଏ ଯାତନା
ସମୂଳେ ବିନଷ୍ଟ ହେବ ଯେପରି
କରିବ ସତତ କର୍ମ ସେପରି
ମନକୁ ଆୟତ୍ତ କରି
ନ ଚଳିଲେ ଭବେ ଅପଯଶ ପାଇ
କେତେବେଳେ ଯିବ ସରି ।
ଜୀବନର ବନ୍ଧୁ ପରମେଶ୍ୱର
ଜାଣୁଛନ୍ତି ତୋର ଯେତେ ହୃଦର
ତାଙ୍କୁ ଭୁଲାଇ କେ ପାରିବ ଭବେ ?
ବେଦ ବେଦାନ୍ତକୁ ନମାନି ଲବେ
ସଂସାରକ ଜାଲେ ପଡ଼ି
ପରମାତ୍ମା ଚିନ୍ତା ନ କରି ଜୀବନେ
କି ହେବ ଗଡ଼ୁଥିଲେ ଗଡ଼ି ।
ନିବୃତ୍ତି ମାର୍ଗର ପଥିକ ହୋଇ
ହୃଦୟରୁ ଦିଅ କପଟ ଧୋଇ

୧ ପ୍ରେୟ — ବିଷୟ ବାସନାର ପର ଭୋଗରେ ସୁଖ
୨ ଶ୍ରେୟ — ବ୍ରହ୍ମ ସାକ୍ଷାତରେ ସୁଖ

ମନୁଷ୍ୟ ଜୀବନ ହେବ ସାର୍ଥକ
ବୋଲଇଲେ ଜନତା ଦେଶ ସେବକ
ଉଦେଷି ସଦା ଆସକ୍ତ
ବାଛୁ ଗୁଣ ଦୋଷ କରଗଲେ କର୍ମ
ବଢ଼ିବ ଆପଣା ଶକ୍ତ ।
ଇନ୍ଦ୍ରିୟମାନଙ୍କୁ କର ସଂଯତ
କଳୁଷ କର୍ମରୁ ହୁଅ ବିରତ
ସାଂସାରିକ ମାୟା ଜାଲରେ ପଡ଼
[illegible]
ମୁହ ଭ୍ରିକ ଲାଗି ପରି
ସୃଷ୍ଟିକାରୀମାନେ ଚଉପାଟଣ ବେଢ଼ି
କରନ୍ତି କେତେ ଠାପରି ।
ସର୍ବ ଶକ୍ତିମାନ ପରମେଶ୍ୱର
ଭକ୍ତମାପ୍ତ ଅବିରାମ ମଉର
ଆଜ ଯା ଦେଖୁଛ ନଥିବ କାଲି
ଭରତ ଭଣ୍ଡାର ହେଉଚ ଖାଲି
ଜନ୍ମ ଜରା ମୃତ୍ୟୁ ବର
କ ସୁଖ ପାଉଚ ଶକ୍ତିଲ କ ଧନେ
ନିତ୍ୟ ଅନିତ୍ୟ ଆଦର ।
ଯେ ସଂସାରେ ସଦା ସର୍ବ ବ୍ୟାପକ
ଦେଖୁଚ ସେ ତୋର କରମତକ
ତାଙ୍କୁ ଭଣ୍ଡାର କେ ପାରିବ ଭବେ
ତା ନାମ କେବେ କ ଧଇଲୁ ଲବେ ?
ହେଉଥିବା ଉଚ୍ଛୃଙ୍ଖଳ
ଆସିବ ତା ବେଳ ବେନି ନୟନରୁ
ବୋହିବ ଲୋତକ ଜଳ ।
କା ଘରେ ଶୁଭୁଚ କ୍ରନ୍ଦନ ରୋଳ
ଆମୋଦ ପ୍ରମୋଦ କାଏ ବା ଖେଳ
ଭାବିବାକୁ ତର ଅଛୁ କ କା'ର
ଭାଙ୍ଗିଗଲା ସିନା ବଳ ଅଣ୍ଟାର
ଯେ ଯାହା ଧନ୍ଦାରେ ବ୍ୟସ୍ତ
ପରମେଶ ପଦେ ନ ରଖି ମାନସ
ହେଉଛୁ ଜୀବନ ଅସ୍ତ ।
[illegible]
ଏଥିଲାଗି ଗୁରୁଆତେ 'ଚହଳ
ଗରିବର ଦୁଃଖ ଶୁଣୁଚ କଏ
ନିଜ ପାଇଁ ଭାବେ ଆଜ ସଭିଏଁ
ସ୍ୱାର୍ଥର କ କରାମତ
ନ ବସ୍ତୁର ଆଜ ପଦାନତ ତାର
ଅହରହ କୋଟିପତ ।
ନିଶକୁ ଫୁଲାଇ ବୁଲୁଛ କଥାଁ
ତୋ ଚଳଣି ଦେଖି ହସେ ଦୁନିଆଁ
ଦେଖିଛୁ କ କେବେ କା'ର ଗରବ
ରହିଅଛୁ ଲବେ ସାର ସରବ ?
ଘସିଗଲେ ସ୍ୱାର୍ଥ ଜନେ
ନଥିବ ନାଉରୀ ଉଦ୍ଧାରିବା ଲାଗି
ଜୀବନ ଯିବ ବିକଳେ ।
ସଞ୍ଚିଲେ ଗୁଡାଏ କ ହେବ ଫଳ
ତୋର ପଛେ ପଛେ ଯିବ ସକଳ
ଦେଖ ପ୍ରତିଦିନ ଦୁନିଆଁ ଖେଳ
କାହିଁକି ଧନରେ ରଖିଛୁ ପ୍ରୀତ
ହେବ କ ଶେଷେ ତା ସାହା
ଅଜ୍ଞାତ ଭବିଷ୍ୟ ନ ଚିନ୍ତ ଜୀବନେ
ଭୁଚ୍ଛାକୁ ପିଠୁଛୁ ବାହା ।
ଦାନ-ହେଉ ପଛେ କହିବୁ ସତ
ଆଚରିବୁ ସଦା ଅହିଂସା ବ୍ରତ
ମନକୁ ସନ୍ତୋଷ କଏ ସଂସାରେ
କର ପାରିଚ କ ବହୁ ଚେଷ୍ଟାରେ ?
ଅଯଥା କର କାମନା
ଧନ ଲାଗି ନାନା ଅଶାନ୍ତିରେ ପଶି
ନ ଭୋଗେ କଏ ଯାତନା ?
ଆଗକୁ ପଛକୁ ବିଚାର କର
କରିଚିବୁ କର୍ମ ତଳେ ନ ଡ଼ର
କେତେବେଳେ କା'ର ଛୁଟିବ ପ୍ରାଣ
ନ ଦେଖାଇ କେବେ ଜୀବନେ ଠାଣ
ପାଞ୍ଚିବୁ ପର ମଙ୍ଗଳ
ବନମ୍ର ସ୍ୱଭବ ଥିଲେ ଅବରତ
କରିବେ ପୂଜା ସକଳ ।
ତୋ ପୂର୍ବ ପୁରୁଷେ କେତେ ସରଳେ
ଯାପୁଥିଲେ ଦନ ଗାଆଁ ଗହଳେ

ମାଣ୍ଡିଆ ଜାଉରେ ପେଟ ପୂରାଇ
କରୁଥିଲେ କାମ ରାତି ପୁହାଇ
ନ ଥିଲା ଏ ଆଡ଼ମ୍ବର
କୋମଳ କଥାରେ ସକଳ ମାନସ
ତୋଷୁଥିଲେ ନିରନ୍ତର ।

କୋଠଘରେ ରହି ଗାଆଁ ମଝିରେ
ଭାଗବତ ଶୁଣୁଥିଲେ ରାତିରେ
ନଥିଲା କପଟ ନ ଥିଲା ଛନ୍ଦ
ଖେଳୁଥିଲା ମୁଖେ ସଦା ଆନନ୍ଦ
କାହିଁ ସେ ସୁଖ ସମୟ ?
ନୈରାଶ୍ୟ ପବନ ବହୁ ବର୍ତ୍ତମାନ
ମାନସ କରେ ଅଥୟ ।

ପ୍ରଭୁ ନାମ ଧର ଉଠି ଶେଯରୁ
ଅବର୍ଜନା ପୋଛି ହୃଦ କନ୍ଦରୁ
ତାଙ୍କର ମହିମା କର କୀର୍ତ୍ତନ
ହସ ହସ ମୁଖେ ଯାଉ ଜୀବନ
ଧର୍ମପ୍ରାଣ ଏ ଭାରତ
ଅନ୍ୟାୟକୁ କେବେ ନ ଦେଇ ପ୍ରଶ୍ରୟ
ଜନ ସେବା ହେଉ ବ୍ରତ ।

ମନ ଘୋଟକକୁ କର ଆୟତ୍ତ
ବିବେକ ଲଗାମ ଧର ସତତ
ସ୍ୱାର୍ଥ ଦେଖାଇବ ଯାହାକୁ ବାଟ
ଲାଗିଥିବ ତାର ଜୀବନେ ନାଟ
ବିରୂପ ଚଳିବ ଭବେ
ନୋଇଁବାକୁ ମୁଣ୍ଡ ନପଡିବ କେବେ
ଆପଦ ନଥିବ ଲବେ ।

ନୀଚ କରମରୁ ଯାଅ ଓହରି
ପାଇବ ପ୍ରଶଂସା ପଛେ ଯେପରି
ଆଦର୍ଶ ମଣିଷ ହେବାକୁ ଭବେ
ଲୋଭ ହିଂସା ହୃଦେ ନରଖ ଲବେ
ଜୀବନ କର ସାର୍ଥକ
ଦୁଃଖୀରଙ୍କୀଙ୍କର ପେଟ ରଖ ସଦା
ସତ୍ୟର ହୋଇ ପୂଜକ ।

ମୋ ଦେଶର ବୁଦ୍ଧ ମୋ ଦେଶ ଗାନ୍ଧି
ସକଳ ମାନସ ରଖିଲେ ବାନ୍ଧି
ଶିଖାଇ ଥିଲେ ଯା ଗଲା ପାସୋରି
ଚଉଦିଗେ ଦେଖ ଦୁର୍ନୀତି ଭରି
ପ୍ରବଞ୍ଚଣା କଥାରେ ମନ
ନଦେଇ କେଉଁସେ ନୂଆ ଫେସନରେ
ଅତିବାହିତ ଜୀବନ ।

ବିଳାସ ବ୍ୟସନେ ନ ଦେଇ ମନ
ଭକ୍ତିରସ ପାନେ ଯାପ ଜୀବନ
ଆପଦ ପଡିଲେ ନୋହି ବିବ୍ରତ
ଧୈର୍ଯ୍ୟ ଧରିଥିବ ଅନବରତ
ସଂଯମ ସଦା ଆଚରି
ଚଳିଲେ ଜୀବନ ହେବ ସୁଖମୟ
ନୀରୋଗରେ ଯିବ ତରି ।

ମଇଳା ଯେପରି ଧୂଆ ଦେହରୁ
ଠକାମି ଭଣ୍ଡାମି ପୋଛ ହୃଦରୁ
ଯା ନାମ ଧଇଲେ ମିଳେ ମୁକତି
ଶ୍ରୀଚରଣେ ତାର ରହିବ ମତି
କଢ଼ାଇବ ବାଟ ଧର୍ମ
ଭବରଙ୍ଗ ଭୂମି ଛାଡ଼ି ଯିବ ଯେବେ
କର ସତତ ସୁକର୍ମ ।

ନ ପୂରିଲେ ପେଟ ଉପୁଜେ କଳି
ଦେଶକୁ ଗଢିବ ଚିନ୍ତା କ ଭଲି
କ୍ଷେପାଇ ହେବ ନରହୁ ଲବେ
ବିରାଜୁ ଏକତା ଦେଶରେ ସବେ
ନ ରହୁ ସ୍ୱାର୍ଥ ମନରେ
ଏ ମାଟିରେ ବଢି ଏ ମାଟି ମହତ୍ତ୍ୱ
ଗାଅ ଅମୃତ କଣ୍ଠରେ ।

ଯୌବନ ତରଙ୍ଗେ ଭାସି ନଯାଇ
ଗଢ଼ିବ ଜୀବନ ହାତ ମିଶାଇ
ନମଣିବ କେବେ କାହାକୁ ସାନ
ସମାଜ କଲ୍ୟାଣେ ସର୍ବେ ସମାନ
ପାଦମୁଣ୍ଡ କାହିଁ ଭିନ୍ନ

ତେବେ କାହିଁପାଇଁ ତୁମର ଗାଇକ
ମଣୁଛ ତୁଚ୍ଛାକୁ ହୀନ ।
ଧରିଥିବ ନିତି ନ୍ୟାୟ ନିକିତି
ନଥିବ କାହିଁରେ କାହାର ପ୍ରୀତି
କେବେ କେଉଁବାଟେ ଯାଏ ପରାଣ
ନପାଏ କେ ତଳେ ତାର ସନ୍ଧାନ
ତୁଚ୍ଛା ବୋଲି ମୋର ମୋର
ଯାଉଅଛୁ ସରି ମହତ ଜୀବନ
ବୁଡ଼ି କଳୁଷେ ଅଘୋର ।
ଜୀବନ ସମସ୍ୟା ଜଟିଳ ଅତି
କୋହ୍ନ ତରିବର କର ନିଷ୍ପତ୍ତି
ଦିଶୁନାହିଁ ପିଠି କେବେ ନିଜକୁ
ଡେରିଥିବ କାନ ସଦା ଜଭକୁ
ଆଗରେ ରହିଚ ଗାଡ଼
ଜୀବନ ପଥରେ ଚାଲି ନ ଜାଣିଲେ
ଭାଙ୍ଗିଯିବ ମେରୁ ହାଡ଼ ।
ଧନ ଲାଗି ତେଜି ମାନ ମହତ୍ୱ
ଧାଉଁଛନ୍ତି ଲୋକେ ନବୁଝି ତତ୍ତ୍ୱ
ମିଛ କଲି ବସା ସଦା ତୁଣ୍ଡରେ
ଭଲ କଥା ପଶୁନାହିଁ ମୁଣ୍ଡରେ
ଧନ୍ୟ ଧନ୍ୟ ଯୁଗ ଗୁଣ
ଜଣକ ପିଠିରେ ବସିଲେ ପ୍ରହାର
ଅନ୍ୟର ହୃଦୟେ ପ୍ରୀତି ।
ଜୀବନ ନୀରସ ନୁହଇ କା'ର
ଚନ୍ଦ୍ରା ଛାଡ଼ଦେଲେ ସୁଖ ଅପାର
ଅଳସୁଆ ହେଲେ ବୁଡ଼ିବ ଭେକ
ଶ୍ରମବଳେ ରହୁ ଦେଶର ଟେକ
ନଦେଖି ସ୍ୱାର୍ଥ ଚଉରେ
ରୋପି ଯାଅ ଗଛ ଯା ଫଳ ଖାଇବେ
ଭବିଷ୍ୟତ ବଂଶଧରେ ।
ଧରାଧର ଜାଲେ କେବେ ନ ପଡ଼
ନ୍ୟାୟେ ନେଉଥିଲେ ଦେଶକୁ ଗଢ଼
ଲଭିବେ ସନ୍ତୋଷ ଲୋକ ସକଳ
ଦୂଷିତ ନହେବ ବାୟୁ ମଣ୍ଡଳ
ନିର୍ମଳ ଥାଉ ଅନ୍ତର
ଗୁରୁଜନ କଥା ନଶୁଣି ଜୀବନେ
ହୁଅ ନାହିଁ ହରବର ।
ଚାଲିଚ ଆଗରେ ମିଛ ସନ୍ତ୍ର
ପଶୁଚ ଅବାଟେ ନୋହି ବିବ୍ରତ
ଯା ଆସିଲା ତୁଣ୍ଡେ ଦେଉଚ କହି
ଫତୁଆ ହେଲେହେଁ ପାରୁଚ ସହି
ଲାଜକୁ ନଥିଲେ ଡ଼ର
କେତେବେଳେ ସେହି ଜୀବନେ କାହାକୁ
କରିବ ଅବା ଖାତର ।
କେତେ କବିଙ୍କର ପଢ଼ିଲ ଗୀତ
ଅକ୍ଷର ଯୋଡ଼ାରେ ସବୁ ପଣ୍ଡିତ
ଥାଉ ବା ନ ଥାଉ ଭାବ ତହିଁରେ
ପୁରସ୍କୃତ ଆଜ ଧରାଧରରେ
ନବଯୁଗ ବୁଝାମଣା
ଜାଣିବାରୁ ଚଗ ବାଟରେ ଘାଟରେ
ବାଜୁଚି ନିତି ବାଜଣା ।
ସମବାୟ କଥା କହିବ କେତେ
ଚୋର ଆଡ଼େ ଲୁଟି ଚାଲିଚ ଯେତେ
ଆଉ ନ ବହିକ ଲେଉଟାଇଲେ
ଦେଖିବ ସୁବିଧା ଧନ ପାଇଲେ
କାରସାଦ ହାକମର
ନ ବୁଝି ନେତାଏ କରନ୍ତି ମଞ୍ଜୁର
ହାନି କର ଗରବର ।
ଦେଶଯାକ ଏବେ ହେଲାଣି ଲୁଟି
ଲୋକଙ୍କର ଆଖି ଗଲାଣି ଫୁଟି
ଦେଖି ସବୁ ଯେବେ ଫିଟାଇ ପାଟି
ନ କହିବା ପଦେ ବସିବ ଲାଠି
ଆସିବ ଯେବେ ତା ବେଳ
ସେତେବେଳେ କିଏ ପଡ଼ିବ ପିଠିରେ
ବଳୁର ହେବାକ ମେଳ ?
ଘରଖଣ୍ଡେ ନାହିଁ ଦେଖ ଗାଆଁରେ
ଭୂଲିଣିଆ କଥା ଶୁଭେ ସଭାରେ
ସିଆଣିଆ ବୋଲା ଭାବ ମନରେ

ଘୁଷ ଖରଚ ଅକାତରରେ
ସମ୍ଭବ ନାହିଁ ଦଇବ
କେତେବେଳେ କଏ ଖଣାକୁ ପେଲାଲେ
ଆଖିରୁ ଲୁହ ଗଡ଼ବ ।
ନକର ଜୀବନେ କାହାର ହାନି
ମାତ୍ର ନିୟମକୁ ଟଳବ ମାନି
ଦିଏ ଯାହା କରୁ ପରିମାଣରେ
ଭୋଗିବ ତା ଫଳ ନିଃସନ୍ଦେହରେ
ଅଡ଼ୁଆ ଭିତରେ ପଶି
ଭୁଆଇଲେ କଳ କେତେବେଳେ ରୂମ
ମର୍ଯ୍ୟାଦା ଦିବଟି ଖସି ।
ଗୁଞ୍ଜିବାକୁ ମୁଣ୍ଡ ଥାନ ଟିକଏ
ନାହିଁ ଗରିବର ଦେଖୁଛୁ କଏ
ସହୁଚ ନିଦାଘ ବର୍ଷା ଶୀତ
ଯାହା ମିଳେ ଖାଇ ହୁଅଇ ପ୍ରୀତ
ହେଉଚ କି ସମ୍ମାନ
ଏବେ ଜନମ- ଯାକ ଭୋଗିଲେ ହେଁ
କରୁଛୁ କଏ ସଧାନ ।
ଗାଆଁ ଗହଳର କୁଡ଼ିଆ ଦେଖି
ପୁରାଣରେ ହେବ ବସିଲେ ଲେଖି
ମଣିଷ ଭିଆଣ ଯେତେ କଥାରେ
ରେଖ ହେବ ତାକୁ କଲମଗାରେ
ଆଜିକ ଉଚ୍ଚ ଆସନ
ବୋଲି ନ ଭାବଲେ ମଣିଷ ପଣିଆ
ନରହିବ କଦାଚନ ।
ଧିକ ଧିକ ଲୋଭ ତୋର ଫାନ୍ଦରେ
ପଡ଼ି ଲୋକଗଣ ଅଜାଣତରେ
ହୁଅନ୍ତି ହିନସ୍ତା ବାଟଘାଟରେ
ସେ ଦୁଃଖ ପଡ଼ୁଚି କାହା କାନରେ
ଦୁନିଆଁର ଭଲମନ୍ଦ
ଖୋଜିଲେ ଜାଣିବ ତନ୍ନ ତନ୍ନ କରି
ହୃଦୟେ ନରଖି ଛନ୍ଦ ।
ନାଗରକୁ ଯଥା ବାଚିବନତା
ସଜ ସୂତ୍ରଧାରେ କାଟୁଚି ଚଡ଼ା

ଆଜି କାଲି ତଥା ରାଜନୀତିରେ
ଘୁଷ ଠକାମି ଅଧର୍ମତରେ
ବୁଝୁଚି କଏ ଦେଶରେ
ପବନକୁ ଦେଖି ଛତା ଦେଖାଇଲେ
କ ହେବ ଶନ୍ତ ଶେଷରେ ।
କଉଳ ଘୁଷ ରାଜନୀତିରେ
ଜାଣି ନ ପଶିଲେ ଅରେ ଏଥିରେ
ଟାଉଟର ସଙ୍ଗେ ବୁଲୁରୁବୁହା
ମିଶି କରୁଚନ୍ତି ସୁନାକୁ ଲୁହା
ଯାର ଅଛି ଟଙ୍କା ହାତେ
ଧର୍ମ ଅଧର୍ମକୁ ନକର ଖାତର
ପଛରୁ ମାରୁଚି ନାତେ ।
ଜଗତେ ସରବେ ବଶ ଅର୍ଥରେ
ରହୁଅଛି ନ୍ୟାୟ ତାର ପଛରେ
ଦେଖିଲେ ବକଳ ଲଗୁଚି ସିନା
କେ ଅଛି ଜୀବନେ ସାଥି ତା ବିନା
କେଡ଼େ ବଳ [1] ଧର୍ମ ଦ୍ୱାରେ
କାଳଚକ୍ରେ ପଡି ଠକାମି ଭଣ୍ଡାମି
ପରାଜିତ ସବୁଠାରେ ।
ନକର ମନକୁ ସଦା ଚଞ୍ଚଳ
ତରଙ୍ଗ ଜୀବନେ ନ୍ୟାୟ ହିଁ ବଳ
ମୁହଁ ଦେଖାଣିଆ ବେଭାର ଖୁଲ
ସୁନାର ଦେଶଟା ହେଉଛି ଖାଲି
ଦେଖି ଅଭାବ ତ୍ୟାଗର
କୁଚକ୍ର ଜାଲରେ ନ ପଡିବା ଲାଗି
ଖସିଲଣି ନିଷ୍ଠାପର ।
କ୍ଷମତା ଲାଳସା ବିଷମ ବଡ଼ି
ଏଥିଲାଗି ଲୋକ କି ଧଡ଼ପଡ଼ି
ମାତ୍ର ନିୟମକୁ ପାଦରେ ଦଳି
ଆଚରଣ କରୁଚନ୍ତି କି ଛଳି
ପରିଣାମ ଉପ୍ଯାବଢ଼
ନକର ଆପୃତ ଆପଣା ମନକୁ
ସନ୍ତାପିତ ଅହରହ ।

[1] ଯମଦ୍ୱାରେ

ଭ୍ରଷ୍ଟୁଡ଼ ପଡ଼ୁଚି କ୍ରମେ ଶାସନ
ଦେଖି ସବୁ ଖିନ୍ନ ଦୁନିଆଁ ମନ
ଧରୁଚି ଯେ ଯାହା ସୁବିଧା ବାଟ
ପଡଗଲେ ଧରା ଲଗୁଚି ନାଟ
ଆଚ୍ଛାଦିହେଲା ଗଣତନ୍ତ୍ର
କ୍ଷମତା ଭୋଳରେ ଦିନରାତି ପରି
ଲାଗିଅଛି ତନ୍ତ୍ର ମନ୍ତ୍ର ।
ଅତିବ୍ୟୟ ଏବେ ବ୍ଲାକଟି ବଢ଼ି
କଳା ଖଣ୍ଡ ଯାଇ ଉହ୍ଲିଚି ଧଡ଼ି
ଉଦ୍ଧାର ସଖା କେ ନାହିଁ ଭବେ
କାଳ ପ୍ରଭାବେ ତା ମିଳଇ ଜବେ
ଆଗରୁ ହୋଇ ସତର୍କ
କରିଯାଅ କାର୍ଯ୍ୟ ଲୋକମତ ଶୁଣି
ନ କର କିଛି ବିତର୍କ ।
ନ୍ୟାୟ ଅନ୍ୟାୟକୁ ପରଖି ଭାଇ
କରିଯାଅ କର୍ମ ଛାତି ଫୁଲାଇ
ଜୀବନ ଯୌବନ ଅଢ଼େଇ ଦିନ
ଦେଖୁନ୍ତୁ ସକଳ ଧୂଳିରେ ଲୀନ
ଛଟପଟ କା ନିମିତ୍ତ
ମୂଲ୍ୟହୀନ କଥା ଗଳାଇ ସମୟ
ହେଉଛି ଅତିବାହିତ ।
ନିଜ ସୁବିଧାକୁ କରି ଜୀବନେ
ଲାଗିଛନ୍ତି ଲୋକେ ସ୍ୱାର୍ଥ ସାଧନେ
ନମଣି ଜଗତ ଅସାରମୟ
ଜଞ୍ଜାଳରେ ପଶି ନିତ ଅଥୟ
କାଳର କୁଟିଳ ଗତି
ଜାଣି ଜାଣି ସବୁ ଆଖି ବୁଜିଦେଲେ
ମିଳିବ କାହୁଁ ମୁକତି ।
ଗାଆଁ କଲ୍ଲୋଳ ଗାଆଁରେ ଉଠୁ
ଆନନ୍ଦ ଉଲ୍ଲାସ ମୁହଁରେ ଫୁଟୁ
ଅଯଥା ପଇସା ଖରଚ କରି
ଅରଜିବା ଧନ ଯାଉଚି ସରି
ଓକିଲ ଭାଇର ଲାଭ

ଫିଶାଦ ଶିଖିଲେ ଦାବାରେ ପଶିବ
ଗତି ଉତ୍ତମ ସ୍ୱଭାବ ।
ନ ଘାଞ୍ଜ ଅନିଷ୍ଟ କେବେ କାହାର
ଆସିଲାଣି କାଳ ନେବ ଓଟାର
ଯେ ଯାହା କରମ ଫଳ ଭୋଗିବ
ତେବେ କାହାଲାଗି ଚିନ୍ତା କରିବ
ହାଲଚାଲ ଦୁନିଆଁର
ଯେତେବେଳେ ଯାହା ଦେଖୁଛ ଶୁଣୁଛ
କଳଙ୍କ ଦିନେ ନଶ୍ୱର ।
ଯେତେବେଳେ ଯାର ପଡ଼ୁଚି ପାଳି
ସେତେବେଳେ ସେହି ମାରୁଚି ତାଳି
ଦିଶେ ଯିନା ରମ୍ୟ ଯୌବନ ଅଙ୍ଗ
ପରେ ପରେ ଆହା ! କେତେ ବିଭଙ୍ଗ
ଏହିତ ଦୁନିଆଁ ରୀତି
ନ ପଡ଼ ମୋହରେ ଭାବ ବାର ବାର
କେତେ ଦିନ କା'ର ସ୍ଥିତି ।
କ ମାଟିରେ ବୃଳାଅଛି ସଂସାର
ବିକଟେ କାହାର ନାହିଁ ବିସ୍ତର
ଏ ଜୀବନ ସଦା ପାଣି ଫୋଟକା
ନିଜନ୍ତରେ କେତେ ବାଜୁଚି ଧକ୍କା
ପଡ଼ି ଅନ୍ୟାୟ ମୋହରେ
କରୁଚି କୁକର୍ମ ନଜାଣିଲା ପରି
ଯା ଫଳ ଥୁଆ ଶେଷରେ ।
ତତ୍ତ୍ୱଜ୍ଞାନ ଯେବେ ପାଇବ ସ୍ଥାନ
ତେବେ ହୃଦୁଁ ଯିବ କଳୁଷମାନ
ନ ରହିବ ସତ୍ତା ମାୟା ମୋହର
ନିର୍ମଳ ଦିଶିବ ପୁଣି ଅନ୍ତର
ନ ବାଜିବ କେବେ କଣ୍ଟା
ନୋଇଁବ କି ମୁଣ୍ଡ କା ଆଗେ ଜୀବନେ
ରହିଥିବ ଆଣ୍ଠୁ ଅଣ୍ଟା ।
କେତେ ଲେଖି ଲେଖି ହେଲାଣି କବି
ନପଡ଼ ପେଟରେ ଚୋପାଏ ହବ (ପାଣି)
କରିଚି ମନକୁ ସଦା ଆପୂତ
ଆଦରି ଜୀବନେ ସଂଯତ ବ୍ରତ

ଦୁଃଖମୟ ଏ ସଂସାର
ନ ଚିନ୍ତି ମଣିଷ କ ଘଟିବ କାଲି
ହେଉଅଛୁ ମାତୋଯାର ।

## ସ୍ତୁତି

ଶରଣ ରକ୍ଷକ ହରି ତୁମେ ଭବସିନ୍ଧୁ ତରି
ଦୁଷ୍ଟଙ୍କୁ ଦମନ କରି ଅର୍ଜ୍ଜୁଛ ଯଶ
ଜୀବଙ୍କୁ ଦେଇ ଜନମ ଚିରଖୁଚ ତ କରମ
ନଜାଣି ତଳେ ଅଧମ ଜୀବନ ରସ
ଉପଭୋଗେ ବଳାଏ ମନ
ଧିକ ଧିକ ମଣିଷରେ, ଧିକ ଯୌବନ ।
ଡ଼େରଥାଉ କାନ ଶୁଣିବାକୁ ଭକ୍ତଗାନ
ନାହିଁ କା'ର ଶକ୍ତି ଜ୍ଞାନ ତୋ ଗତିଗତି
ଜାଣିବାକୁ କେବେ ଲବେ ଭୁକ୍ତଙ୍କୁ ଧନ ଗରବେ
ଭଆଟେବା ଗୋଳ ଜଗତେ ଦେଖୁଛ ନିତି
କାହିଁ କା'ର ଜ୍ଞାନ ନୟନ
ଧିକ ଧିକ ମଣିଷରେ, ଧିକ ଯୌବନ ।
ଯା ନାମ କରୁଣା ସିନ୍ଧୁ ତାହାଁରୁ ପାଲଲେ ବନ୍ଧୁ
ଉଇଁବ ବା ହୃଦେ ଇନ୍ଦୁ ଭବଜଳରେ
ପଡଯାଉଅଛୁ ବୁଡ଼ି ଅନ୍ୟଙ୍କୁ ଦେଇ ବୁଡ଼ି
ପ୍ରାଣପକ୍ଷୀ ଯିବ ଉଡ଼ି, କାହାସଙ୍ଗରେ
ଭେଟିବ କ କାହା ଜୀବନ
ଧିକ ଧିକ ମଣିଷରେ, ଧିକ ଯୌବନ
ଅନ୍ୟାୟଙ୍କୁ ଲୋପ କର ଆହେ ! ପ୍ରଭୁ ଚକ୍ରଧର
ହେଲାଣି ପ୍ରବଳତର ମନ ଅଥୟ
ସ୍ୱାର୍ଥପାଇଁ ଲାଗି କଳି ମହତ୍ତ୍ୱକୁ ଦେଇ ବଳି
ପଡ଼ିଲେଣି କେତେ ଡ଼ଳି ଲାଗୁଚି ଭୟ
ଭବ ଢ଼ଙ୍ଗ କର ଦର୍ଶନ
ଧିକ ଧିକ ମଣିଷରେ, ଧିକ ଯୌବନ ।
ଚଳିଲେ ମାଟିରେ ପଡ଼ି କୁଆଁ କୁଆଁ କରି ରଡ଼ି
ମାଆର କୋଳରେ ବଢି ହେଲୁ ମଣିଷ
ପିଲାଦିନର ସେକଥା ସେହୁନାହିଁ ଟଳେ ମଥା
ଭାବିଲେ ଲାଗୁଚି ବ୍ୟଥା ଚିନ୍ତା ଅଶେଷ
ଆପଣାର ସୁଖ ବର୍ଦ୍ଧନ
ଧିକ ଧିକ ମଣିଷରେ, ଧିକ ଯୌବନ ।
ଲୋଡିଲୁ ସଙ୍ଗ ଯାହାର ଦେଖି ସେ ଭୋଗ ଆଗର
ଛଆଡିଲା ବାର ବାର ନଦେଲୁ କାନ
ଧଇଲୁ ଆପଣା ବାଟ ଭଆଇଲୁ ନାନା ନାଟ
ପଟ୍ଟଙ୍କୁ ବଜାଇ ଘଣ୍ଟ କାହିଁ ସମ୍ମାନ
ଲୋଡ଼ିଲୁ ସତତ ବ୍ୟସନ
ଧିକ ଧିକ ମଣିଷରେ, ଧିକ ଯୌବନ ।
ହୃଦୟେ ଆସୁ ଭକତି ଚପଳ ନ ହେଉ ମତି
ଉପୁଜୁ ଧୀରେ ଶକତି ଯାଉ ଜୀବନ
ତବନାମ ଧରି ଧରି ତବ ପଦ ସେବା କରି
ଏତିକ ମାଗୁଣି ହରି ସବୁ ସ୍ୱପନେ
ଅନ୍ୟ ଯାହା ଦେଖେ ନୟନ
ଧିକ ଧିକ ମଣିଷରେ, ଧିକ ଯୌବନ ।

## ରାମ ଜନ୍ମ

୧ଦନୁଜର ୨ଭାର ୩ଉର୍ବୀ ଭାର ହରଣ
ଲାଗି ପ୍ରତିବିଧାନେ ଦେବତାଗଣ ।
ପ୍ରବେଶିଲେ ୪ପ୍ରଣବ ପାଶେ ଦୁଃଖରେ
ଯେତେବେଳେ କମଳା ଥିଲେ ସଙ୍ଗରେ ।
ରାବଣ ଉପଦ୍ରବ କରେ ଅଥୟ
ବୋଲି କଲେ ଗୁହାରି ସୁରନିଚୟ ।
ପ୍ରସନ୍ନ ହୋଇ ହରି ଚାରି ଅଂଶରେ
ଗର୍ଭ ବଧ୍ୟଂସୀ ୫ରବିବଂଶ କୁଳରେ ।
ଶତ୍ରୁଘ୍ନ ଭରତ ରାମ ଲକ୍ଷ୍ମଣ
ଦଶରଥ ଔରସେ ହେଲେ ଜନ୍ମନ ।
ଶ୍ରୀରାମଚନ୍ଦ୍ର ରଘୁକୁଳ ତିଳକ
ସକଳ ଗୁଣନିଧି କାର୍ଯ୍ୟ ସାଧକ ।

---

୧ ଅସୁର ୨ ପରିପୂର୍ଣ୍ଣ ୩ ପୃଥିବୀ ୪ ବିଷ୍ଣୁ
୫ ସୂର୍ଯ୍ୟବଂଶରେ

କରନ୍ତେ ଲକ୍ଷ୍ମଣଙ୍କୁ ଅତି ଆଦର
ତାଙ୍କର ଅନୁଗାମୀ ସେ ନିରନ୍ତର ।
୧ସତ୍ୟବତୀକୁମାର ଆସିଲେ ଥରେ
ଦଶରଥ ୨ନୃପଙ୍କ ଦୈତ୍ୟ ଭୟରେ ।
ନେବାକୁ ଶ୍ରୀରାମଙ୍କୁ ତାର ତାଡ଼ନେ
ଅର୍ପିଲେ ନରବର ବଶିଷ୍ଠ ମନେ ।
୩ବଳାତିବଳ ବିଦ୍ୟା ତନ୍ତ୍ର ଶିଖାଇ
ନେଲେ ମୁନିପୁଙ୍ଗବ ଆଶ୍ରମେ ଯାଇ ।
ଯଜ୍ଞ ଆରମ୍ଭ ଦେଖି ବିଶ୍ୱାମିତ୍ରର
ଆସନ୍ତେ ଆଶ୍ରମକୁ ଦୈତ୍ୟନିକର ।
ଗୋଟି ଗୋଟି ନାଶିଲେ ରଘୁପ୍ରବର
ହେଲେକ ବିଶ୍ୱାମିତ୍ର ହରଷଭର ।

## ରାମଙ୍କ ମିଥିଳା ଗମନ

ରାମ ଲକ୍ଷ୍ମଣ ସଙ୍ଗରେ
ଗଲେ ବିଶ୍ୱାମିତ୍ର ମିଥିଳା ଖରେ
ଖଞ୍ଜଘାଟରେ, ଜନକ ଆମନ୍ତ୍ରଣରେ ।
ପ୍ରବେଶି ମିଥିଳା ପୁରେ
ଦେଖିଲେ ଜନକ ଅନନ୍ତ ଦୂରେ
ଖଞ୍ଜଘାଟରେ, ସମୀପେ କେତେ ଅସୁରେ ।
ଦଶରଥ ସୁତେ ଯାଇ
ଚଉଦରେ ନେତ୍ର ଦେଲେ ବୁଲାଇ
ଖଞ୍ଜଘାଟରେ, ଆପଣା ଧନୁ ହଲାଇ ।
ସୀତାଙ୍କୁ କରି ଦର୍ଶନ
ଦଶାନନ ହେଲା କ ଛନ୍ନଛନ୍ନ
ଖଞ୍ଜଘାଟରେ, ପଣ ଶୁଣି ଅପ୍ରସନ୍ନ ।
ରଘୁଶ୍ରେଷ୍ଠ ପିନାକରେ
ଗୁଣ ଆରୋପଣ କରନ୍ତେ ଖରେ
ଖଞ୍ଜଘାଟରେ, ଅଟ୍ଟକ ରାବଣ ଡରେ !
ଜନକ କୁମାରୀ ମନ
ଆକର୍ଷଣ କଲା ରାମବଦନ
ଖଞ୍ଜଘାଟରେ, ୪ଭାର୍ଗବ ଗର୍ବଗଞ୍ଜନ ।

ନୃପତିଏ ଲଜ ପାଇ
ଦଶମୁଣ୍ଡ ସହ ଗଲେ ପଳାଇ
ଖଞ୍ଜଘାଟରେ, ଆପଣା ମାନ ହରାଇ ।
ପିନାକ ଭଙ୍ଗ ଶବ୍ଦରେ
୫ହେଲେ ୬ଦସ୍ୟୁଳିକ ମେଘ ଭିତରେ
ଖଞ୍ଜଘାଟରେ, ପଶିଗଲେ ତରବରେ ।

## ସୀତା ବିବାହ

ଜାନକୀ ବିବାହ ଦେଖିବା ପାଇଁ
ଗୃହେ ଆଉ ଲୋକେ ଆସିଲେ ଧାଇଁ ।
ବାଜୁଅଛି ବାଜା ନାନା ପ୍ରକାର
କେତେ ରାଜା ଆସି ଦେଲେ ବେଭାର ।
ବିଷ୍ଣୁରୂପୀ ରାମ ବସି ବେଦିରେ
ଦେଉଥିଲେ କାନ ପୁରୋଧା ଗୀତରେ ।
ହୁଳହୁଳି ଧ୍ୱନି ଫାଟୁଛି କାନ
ପାଉଥିଲେ ବିପ୍ରେ ୭ଭୂଷଣ ଦାନ ।
ହାତଗଣ୍ଠି ବେଳେ ସୀତାକୁ ଆଣି
ଛନ୍ଦିଲେ ପୁରୋଧା ଦୁହିଁଙ୍କ ପାଣି ।
ବେଦଶାସ୍ତ୍ର ବୋଲି ତୋଷି ସକଳ
ଧରିଲେ ଦକ୍ଷିଣା ଇଚ୍ଛି ମଙ୍ଗଳ ।
ଭୁଣ୍ଡକୁ ଲୋକବ କଏ ଫସାରେ
କଏ କେତେ କଥା କହେ ଥଟ୍ଟାରେ ।
ବସିଥିଲେ ସୀତା ପୋତି ମୁଣ୍ଡକୁ
ଚୁମ୍ବିଁଦେଲେ ଥରେ ରାମ ମୁଦ୍ରିକୁ ।
ଅଗ୍ନି ସାକ୍ଷୀ କରି ବନ୍ଧାଣ ସାରି
ବରକନ୍ୟା ନେଲା ଦାସୀ ବାହାରି ।
କଅର ଭିତରେ କଉଡ଼ି ଖେଳ
ଲାଗିଲା କୌତୁକେ ବହୁତ ବେଳ ।
ବଶୁଅଛି ମୁହିଁ ବଡ ଶୁଖିଲା
ଦକ୍ଷୀକ ଉଦ୍ଧ ଦୁହେଁ ଭୋଜିକଲା ।
ବଢ଼ାହେଲା ଅନ୍ନ କରି ଭକ୍ଷଣ
ନିଦ୍ରାଦେବୀ ପାଶେ ନେଲେ ଶରଣ ।

୧ ବିଶ୍ୱାମିତ୍ର ୨ କୈକଟ ୩ ବଳା+ଅତିବଳା
୪ ପର୍ଶୁରାମ

୫ ସୂର୍ଯ୍ୟ ୬ ଦସ୍ୟୁ+ଆଳ = ଅଶ୍ୱସମୂହ
୭ ବସ୍ତ୍ର

## ଜନ୍ୟାଧର ରାମ ଅଯୋଧ୍ୟା ଫେରିବା

ପୁଚ୍ଛିବ ଦଗରେ ନଳଙ୍ଗ ବାନ୍ଧବ
ବୋବାଳି ଶୁଣି କାକର
ଥରବର ହୋଇ ପ୍ରତିବଶୀ ଧର୍ତ୍ତରେ
ଚୁମ୍ବିଲେ ଅବ୍‌ଜ କର ।
୧ତମସ୍ତୋମ ହେମ ଅପସର ଯାନ୍ତେ
ନିଜ କାର୍ଯ୍ୟେ ସର୍ବେ ବ୍ୟସ୍ତ
୨କୈରବମାନଙ୍କୁ ୩ସିନ୍ଧୁସୂନୁ ଦୁଃଖ
ଦେଇ ଅସ୍ତାଚଳେ ଅସ୍ତ ।
ଆନନ୍ଦେ ଜନକ ଯଉତୁକମାନ
ବରକନ୍ୟା ସଙ୍ଗେ ଦେଇ
ବିଦା କରିବାରୁ ବିଶ୍ୱାମିତ୍ର ମୁନି
ଗଲେ ସେମାନଙ୍କୁ ନେଇ ।

### ପର୍ଶୁରାମ ଭେଟ

ପରଶୁ ଧରି ହାତରେ
ଠିଆ ହେଲେ ଆସି ରାମ ଆଗରେ
ଖଞ୍ଜଘାଟରେ, ପରଶୁରାମ ଗର୍ବରେ ।
ତାଙ୍କୁ ଦେଖି ସୀତା ଡରି
ପଛଆଡ଼େ ଆସି ଅତ୍ୟନ୍ତ ଥରି
ଖଞ୍ଜଘାଟରେ, ରହିଲେ ପଣତ ଧରି ।
ରେ ରାମ, ବଳ ଦେଖାଇ
ତ୍ରିଲୋକରେ କୋଳାହଳ ପକାଇ
ଖଞ୍ଜଘାଟରେ, ଭାଙ୍ଗିଲୁ ଧନୁ ଉଠାଇ ।
ହେବାରୁ ମୁନି କୁମାର
କ୍ଷତ୍ରିୟକୁଳକୁ କଲି ସଂହାର
ଦାଶରଥିରେ, ଯୁଦ୍ଧ କରି ବାର ବାର ।
୪କାମାରି ଶିବ କୋଦଣ୍ଡ
କରିଅଛୁ ବୋଲି ତାକୁ ଦ୍ୱିଖଣ୍ଡ
ଦାଶରଥିରେ, ପାଇବୁ ମୋ ହାତେ ଦଣ୍ଡ ।
କହନ୍ତି ରାମ ବିନୟେ

୧ ଅନ୍ଧାରବର୍ଣ୍ଣ ୨ କଇଁଫୁଲ ୩ ଚନ୍ଦ୍ର
୪ କାମ+ଅରି

ବୃଦ୍ଧାଙ୍କୁ ବନ୍ଦୁଛି ରାମ ହୃଦୟେ
ପର୍ଶୁରାମହେ, ସମରି କି ଏ ସମୟେ ।
ଆପଣ କୁଠାରହସ୍ତ
ବାଟୋଇ ଯିବାକୁ ଘରକୁ ବ୍ୟସ୍ତ
ପର୍ଶୁରାମ ହେ, କରନ୍ତୁ ପଥ ପ୍ରଶସ୍ତ ।
ଯଜ୍ଞୋପବୀତ ଧାରଣ
କରି ବନ୍ଧୁଥର କରିଚ ରଣ
ପର୍ଶୁରାମ ହେ, କପାଁ ଏ ପାପାଚରଣ ?
ନକର ଦୁଃଖାନୁଭବ
ଜନନୀକି ମାରି ପୁଣି ଗରବ
ପର୍ଶୁରାମ ହେ, ଧିକ ଧିକ ଏ ଗୌରବ ।
ପର୍ଶୁରାମ ରୋଷଭରେ
ଏହି ଧନୁ ଭାଙ୍ଗ ବୋଲି ହାତରେ
ଦାଶରଥି ରେ, ବଢ଼ାଇଲେ ଡରବରେ ।
ଭୁଙ୍କାକୁ ହଠା ବାଟରେ
ବୋଲି ଦାଶରଥି ଶାନ୍ତ ହୃଦରେ
ଖଞ୍ଜଘାଟରେ, ଭାଙ୍ଗିଲେ ତା କ୍ଷଣକରେ ।
ପରଶୁରାମ ଲାଜରେ
ଅବତାର ବୋଲି ମଣି ମନରେ
ଖଞ୍ଜଘାଟରେ, ନମିଲେ ରାମ ପାଦରେ ।
ବାଟରେ ବାପଡ଼ି ଖଣ୍ଡି ସୀତାପତି
ବାହାରିଲେ ଆନନ୍ଦରେ
ସାୟଂକାଳ ବେଳେ ପହଞ୍ଚିଲେ ପୁରେ
ଭାଇ ଭରିଯା ସଙ୍ଗରେ ।
ଆନନ୍ଦବିଭୋର ଦଶରଥ ପୁରେ
ରାମର ପ୍ରତ୍ୟାବର୍ତ୍ତନେ
ପୁତ୍ରବଧୂମାନେ ଗଲେ ନବରକୁ
ଅତି ପ୍ରମୋଦିତ ମନେ ।
ତନୁଜଙ୍କୁ ଦେବାକୁ ରାଜ୍ୟ ଶାସନ
ଜରାଗ୍ରସ୍ତ ନୃପତି କଲେକି ମନ ।
ପୁରୋଧା ବଶିଷ୍ଠଙ୍କୁ ଡାକି ସତ୍ୱର
"ଯୋଗ ଦେଖନ୍ତୁ" ବୋଲି ନୃପତିବର ।
କହି ରାମଙ୍କୁ ଜଣାଇଲେ ତତକ୍ଷଣେ
ଯୌତବେଳେ ସେ ଖେଳୁଥିଲେ ପ୍ରାଙ୍ଗଣେ ।

ଚହଳ ପଡ଼ିଗଲା ରାଜ୍ୟ ଭିତରେ
ଏଣେ ଗୁଣ ଖେଳିଲା କୁଜା ହୃଦରେ
କିଛୁକ୍ଷଣ ପରେ    ମନ୍ଥରା ବୋଲରେ
କୁଟୀଳା କୈକେୟୀ ନୃପ ପାଶରେ
କହିଲା "ରାମଙ୍କୁ    ପଠାଇ ବଣକୁ
ଭରତଙ୍କୁ କର ରାଜା ଦେଶରେ" ।
ଦେଇଅଛ ପୂର୍ବେ    ବର ହେତୁ କର
ଏ କାର୍ଯ୍ୟ ନକଲେ ତେଜିବି ପ୍ରାଣ
ନ ଲଙ୍ଘି ବଚନ    ଆହେ, ନରରାଣ
କର ଆଗେ ସତ୍ୟ ନରଖି ଗୁଣ ।
ପରର ବୋଲରେ    ପଡ଼ୁଅଛୁ ଯିଏ
ନ ଶୁଣେ ସେ କେବେ କାହା ବଚନ
ଅଜସୁତ କଥା    ଶୁଣିବ କପରେ
ଧରି ବସିଲା ସେ ପାଇ ନନ୍ଦନ ।
ପିତୃସତ୍ୟ ପାଳ    ଗଲେ ରାମ ବନ
କରି ପରିଧାନ ବଳ୍କଳ ବସନ
ତଥା ହେଜ ହେଜ    ଚିନ୍ତା କରି କରି
ଦଶରଥ ପ୍ରାଣଗଲା ବହନ ।
ଅଳ କରି ସୀତା    ସୁମିତ୍ରା ନନ୍ଦନ
ଗଲେ ଅରଣ୍ୟକୁ ରାମ ପଛରେ
ପଞ୍ଚବଟୀ ବନେ    କୁଡ଼ିଆ ନିର୍ମାଣି
ରହିଲେ ତିନହେଁ ମହା ସୁଖରେ ।
ଜାନକୀ ହରଣ    ପାଇଁ ଦଶାନନ
ଚନ୍ତ୍ର ମାରୀଚକୁ ଦେଲା ପଠାଇ
ମାୟାବୀ ଦଇତ    ସ୍ୱର୍ଣ୍ଣମୃଗ ବେଶେ
କୁଡ଼ିଆ ଚୌହଦେ ଡେଇଁଲା ଯାଇ ।
ତାକୁ ଦେଖି ସୀତା    ଧରିବା ନିମିତ୍ତ
କହନ୍ତେ ରାମଙ୍କୁ କଉତୁକରେ
ତକ୍ଷଣେ କୋଦଣ୍ଡ    ଧରି ଗୋଡ଼ାଇଲେ
ପଛେ ପଛେ ତାର ବଣ ଭିତରେ ।
ବଣ ମଧ୍ୟେ ଯାଇ    ସେ ମାୟାବୀ ଦୈତ୍ୟ
ରଖିହେ, ଲକ୍ଷ୍ମଣ ବୋଲି ଡାକିଲା
ଶୁଣି ଏ ବଚନ    ସୀତା ହୋଇ ଛନ୍ନ
ସୁମିତ୍ରା ସୁତଙ୍କୁ ତରେ ପ୍ରେରିଲା ।

ଲକ୍ଷ୍ମଣ ଯିବାରୁ    ବିଶ୍ରବା କୁମାର
ଦେଖି ପ୍ରବେଶିଲା କୁଟୀର ପାଶେ
ଭିକ ଦେବାଲାଗି    ସୀତାକୁ ଡାକନ୍ତେ
କିଏ ତୁମେ ବୋଲି ପୁଚ୍ଛିଲେ ତ୍ରାସେ ।
ଚତୁରୁ ଚତୁରୁ    ପାପୀ ଦଶମୁଖ
ଟେକି ନେଇ ତାକୁ ରଥେ ବସାଇ
ନିଅନ୍ତେ ଲଙ୍କାକୁ    କାହାକୁ ନକହି
ରଖିଲା ଅଶୋକ ବନେ ଲୁଚାଇ ।

## ଅଶୋକ ବନରେ ସୀତା

ଅଶୋକ ବନରେ ସୀତା
ଅସୁରୁଣୀ ମେଳେ ହେଲେଣି ଚିନ୍ତା
ଦଶାନନରେ, ହରିଲୁ ରାମ ବନିତା ।
ଭଣ୍ଡ ତପସ୍ୱୀ ବେଶରେ
ପ୍ରବେଶିଲୁ ଯାଇ କୁଡ଼ିଆ ଘରେ
ଦଶାନନରେ, ବସାଇ ନେଲୁ ରଥରେ ।
କଲୁ ତୁ କେଡ଼େ ସାହସ
ବିଷ୍ଣୁରୂପୀ ରାମ ଦାନବ ବଂଶ
ଦଶାନନରେ, କରିବେ ଜବେ ବିଧ୍ୱଂସ ।
ନ ପଶି ରାମ ଶରଣ
ପର ରମଣୀକି କଲୁ ହରଣ
ଦଶାନନରେ, ଆଣିଲୁ ଡାକି ମରଣ ।
ପତିବ୍ରତା ସୀତାସତୀ
ଘଟାଇଲୁ ବହୁ ଏଡ଼େ ବିପତ୍ତି
ଦଶାନନରେ, କେଡ଼େ ତୁ ନିଷ୍ଠୁର ମତି ।
ଋଷିର ହୋଇ ନନ୍ଦନ
ପାପ କରମରେ ବଳାଇ ମନ
ଦଶାନନରେ, କୁଳକୁ କଲୁ ନିଧନ ।
ଡିଣ୍ଡିମ ଚଉହାଗରେ
ନାଶ ହେବ ବୋଲି ବାଜିଲା ତୁରେ
ଦଶାନନରେ, ଲାଜ ନାହିଁ ତୋ ମୁହଁରେ ।
ଜନଙ୍କ ରାଜ କୁଳରେ
ଯୁଗେ ଯୁଗେ ରହିଥିବ ଶାସ୍ତ୍ରରେ
ଦଶାନନରେ, ପଡ଼ିଲୁ କ ହରିବରେ ।

ଲଙ୍କା ହେଲେ ଛାରଖାର
ଜୀଇଁଥିଲେ ହେବୁ କି ନାରଖାର
ଦଶାନନରେ, ଭାବିଲୁ କି ବାର ବାର ।
ଖାଇଲୁ ତୋତେ ଗରବ
ତ୍ରିପୁର ବିଜୟୀ ନାମ ଗୌରବ
ଦଶାନନରେ, ହରାଇ ଦେଲୁ ସରବ ।
ଥିଲେ ତୋତେ ଭଲ ଗତି
ଫେରାଇବୁ ନେଇ ଜାନକୀ ସତୀ
ଦଶାନନରେ, ରାମ ପଦେ ରଖି ମତି ।

## ମୃଗମାରି ରାମ ଫେରିବା

ମିରିଗ ବଧି କାନନରେ
ଲକ୍ଷ୍ମଣ ସହିତ ରାମ ମୋଦରେ
ମନ୍ଦବହ୍ନରେ, ବାହୁଡ଼ିଲେ ଧରି ଭରେ ।
ହୋଇଛି ମେଲ୍ ଦୁଆର
ନ ଦେଖିଲେ କାହିଁ ସୀତା ଥିବାର
ମନ୍ଦବହ୍ନରେ, ଗଡ଼ିଲା ଲୋତକ ଧାର ।
ବହିର୍ଭାଗ ଅଭ୍ୟନ୍ତର
କୁଡ଼ିଆରେ ଦେଖି ରାମ କାତର
ଖଞ୍ଜରୀଟରେ, କି ବନ୍ଧୁର ଦଇବର ।
ସୀତା ବିରହ ବାଧାରେ
ଶୋକ କରି ରାମ ପଡ଼ି ଧରାରେ
ମନ୍ଦବହ୍ନରେ, ଅସମର୍ଥ ଚଳିବାରେ ।
ସୁମିତ୍ରା ସୁତ ଉଠାଇ
ହାତ ଧରି ନେଲେ ବାଟ ଦେଖାଇ
ମନ୍ଦବହ୍ନରେ, ଜଟାୟୁ ଭେଟିଲେ ଯାଇ ।
ପକ୍ଷୀନ୍ଦ୍ର କହେ ଦୁଃଖରେ
"ରାବଣ ସୀତାକୁ ନେଲା ରଥରେ
ମନ୍ଦବହ୍ନରେ, ମୃତପ୍ରାୟ ତା ମାଡ଼ରେ" ।
ବୋଲନ୍ତି ରଘୁପ୍ରବର
ସ୍ୱର୍ଗଧାମେ ଯାଇ ବସତି କର
ପକ୍ଷୀରାଜ ହେ, ମଙ୍ଗଳ ହେଉ ତୁମର ।
ଦେଖିଲେ ମୋର ପିତାଙ୍କୁ
ରାବଣ ହରାଇ ନେଲା ସୀତାଙ୍କୁ
ପକ୍ଷୀରାଜ ହେ, ବୋଲି ନ କହିବ ତାଙ୍କୁ" ।
ବିରୂପ ତନୁ ସୁନ୍ଦରୀ
କେତେ କଥା ହେଲା ବୋଲି ଅନ୍ତର
ମନ୍ଦବହ୍ନରେ, ଦହି ହେଲା ନିରନ୍ତର ।
ଦେଖି ବାତାହାସ୍ତ ସାପ
ତା ପାଶରେ ବସି କଲେ ଆଳାପ
ମନ୍ଦବହ୍ନରେ, ନ ତୁଟିଲା ମନସ୍ତାପ ।
ପଶି କିଷ୍କିନ୍ଧ୍ୟା ବନରେ
ପବନ ପୁତ୍ରକୁ ଦେଖି ବାଟରେ
ମନ୍ଦବହ୍ନରେ, ପ୍ରେରିଲେ ବନପୁରେ ।
ଶୁଣ ହେ, ବାୟୁ ନନ୍ଦନ
ଦେଖିଛ କି ମୋର ନାରୀ ରତନ
ହନୁମାନ ହେ, ତାଠାରେ ରହିଛି ମନ ।
ଗଗନ ମାର୍ଗେ ରାବଣ
ନେଉଥିଲା ଏକ ନାରୀ ରତନ
ଦାଶରଥି ହେ, ଏ ତାର ଅଙ୍ଗଭୂଷଣ" ।
ଏ ସବୁ ଦେଖି ଅଙ୍ଗର
ଜାନକୀର ବୋଲି ଜାଣି ନିକର
ମନ୍ଦବହ୍ନରେ, ଗଡ଼ିଲା ଲୋତକ ଝର ।
ସମ୍ବୋଧି ବାୟୁ ନନ୍ଦନ
ବୋଇଲେ "ନ ଦେଖି ସୀତା ବଦନ
ହନୁମାନ ହେ, ଯାଉନାହିଁ ଏ ଜୀବନ ।
ଉତ୍ତରିଲ ହନୁମାନ
"ତେଜ ହୃଦୟରୁ ଶୋକବିତାନ
ଦାଶରଥି ହେ, କରିବ ସୀତା ସନ୍ଧାନ" ।

କପିପତି ସୁଗ୍ରୀବର ପାଇଲେ ଆଦେଶ
ତତକ୍ଷଣେ ଆଣିବ ଯାଇ ଜାନକୀ ସନ୍ଦେଶ ।

କରନ୍ତୁ ଆପଣ ଆଗେ ସୁଗ୍ରୀବ ଦର୍ଶନ
ମିତ୍ରତା ସୂତ୍ରରେ ଦୁହେଁ ହୁଅନ୍ତୁ ବନ୍ଧନ ।

ନ ସରୁଣୁ କଥା ସୁଗ୍ରୀ ହୋଇ ଉପସ୍ଥିତ
ଗୋଟି ଗୋଟି କହିଥିଲ ବାଳୀର ଚରିତ ।

ଶୁଣିବା କ୍ଷଣି ଶ୍ରୀରାମ ଦୁଷ୍ଟାମି ବାଳୀର
ତାକୁ ବଧିବାକୁ ଚିନ୍ତା ହେଲେ ସେ ଅଧୀର ।

ଏଥ ଅନ୍ତେ କପିପତି ବାସବ ନନ୍ଦନ
ଇଚ୍ଛାକଲା ସୁଗ୍ରୀ ସଙ୍ଗେ କରିବାକୁ ରଣ ।
ଦୁହିଁଙ୍କ ହୁଂକାର ଶୁଣି କୌଶଲ୍ୟା ନନ୍ଦନ
ନାରାୟଣ ବାଣେ ନେଲେ ବାଳୀର ଜୀବନ ।
ଭୂମିଶାୟୀ କପିପତି ଭର୍ତ୍ସିଲା ରାମକୁ
ନିରପରାଧୀକୁ ବଧି ଅର୍ଜିଲ ପାପକୁ ।
ଯେଉଁ କାର୍ଯ୍ୟ କରିବାକୁ ନେଲ ମୋ ଜୀବନ
ସେହି କାର୍ଯ୍ୟ କରିଥାନ୍ତା ବାସବ ନନ୍ଦନ ।
ଏତିକରେ ପ୍ରାଣବାୟୁ ଉଡ଼ିଗଲା ତାର
କଲେ ଏବେ କପିବୃନ୍ଦ ଶବର ସତ୍କାର ।
ସ୍ତ୍ରୀ ହରଣ ଠାରୁ ବଳି ନାହିଁ ପରାଭବ
ବୋଲି ବାନର ମାନଙ୍କୁ କହିଲେ ରାଘବ ।
କିଷ୍କିନ୍ଧ୍ୟାରେ ସୂର୍ଯ୍ୟସୁତ ହେଲେ ଅଭିଷିକ୍ତ
ଯୁବରାଜ ପଦେ ହେଲେ ଅଙ୍ଗଦ ଭୂଷିତ ।

## ହନୁମାନର ଲଙ୍କା ଗମନ

ବରଷା ଆସିଲା ଶାଗୁଆ ଦିଶିଲା
ଝାଙ୍ଗର ବନ ପ୍ରାନ୍ତର
୧କଦମ୍ବ କଦମ୍ବ ଫୁଟି ଗୁରୁଆଡ଼େ
ବଣେ ଧରା ମନୋହର ।
ଖାଇବାକୁ ବେଳ ନପାଇ କୃଷକ
ବଳସାରା ଲଗେ ବଳେ
ମାଛ ଖାଇବାକୁ ଗୁରୁଆଡ଼ୁ ଆସି
ଉଡିଲେ ଆକାଶେ ଚିଲେ ।
ବୁଲିଯାଇ ଯାଇ ସୀତା ଗୁଣ ଗାଇ
ରହିଲେ ମାଲ୍ୟବନ୍ତରେ
ବରଷା ଅନ୍ତର ହେବାରୁ ଧରାରୁ
ଆସିଲେ ସବୁ ବାନରେ ।
ପଡ଼ିଲା ଘରେଣି ସୀତା ଠାବ କରି
ଆସିବ କିଏ ସେ ଖରେ ?
'ବୋଲି ପଚୁରନ୍ତେ ବାହାରିଲା ହନୁ
ମୋଦେ ଆକାଶ ମାର୍ଗରେ ।

୧ କଦମ୍ବ ସମୂହ

ଗଲାବେଳେ ଦେଇ ସ୍ୱହସ୍ତ ମୁଦ୍ରିକା
କହିଲେ ରାମ ବୁଝାଇ
"ମୋର ଦୂତ ବୋଲି ବୁଝିବ ଜାନକୀ
ମୁଦିଟି ଦେଲେ ଦେଖାଇ ।

## ହନୁ ଅଶୋକ ବନରେ

ଅଶୋକ ଗଛରେ ହନୁ
କରିଦେଲା କ୍ଷୀଣ ତକ୍ଷଣରେ ତନୁ
ମନ୍ଦ ବହିରେ, ଫଗୁ ଭୁଲାଇ ମନୁ ।
ଅସୁରୁଣୀଙ୍କ ସଙ୍ଗରେ
ଯେତେ କଥା ସୀତା ହେଲେ ଗର୍ବରେ
ମନ୍ଦ ବହିରେ, ଶୁଣୁଥିଲା ମଉନରେ ।
ଗାଳିବାରୁ ଏଣେ ରାତି
ବୋବାଇଲେ କାକ କଜଳପାତି
ମନ୍ଦ ବହିରେ, ଫୁଲାଇଲା ହନୁ ଛାତି ।
ବଢ଼ାଇ ନିଜ ଶରୀର
ରାକ୍ଷସୀମାନଙ୍କୁ କଲା ଅସ୍ଥିର
ମନ୍ଦ ବହିରେ, ନ ଫିଟିଲା କାହାର ଗୀର ।
ତଥୁଁ ହୋଇ ଜଣେ ଜଣେ
ଲୋଟି ଲୁଚିଲେ ଭୟରେ ବଣେ
ମନ୍ଦ ବହିରେ, ସୁବିଧା ହେଲା କ୍ଷଣେ ।
ଗଛରୁ ହନୁ ଓହ୍ଲାଇ
ରାମ ଦେଇଥିବା ମୁଦି ଦେଖାଇ
ମନ୍ଦ ବହିରେ, ସୀତାକୁ ଦେଲା ବତାଇ ।
ମୁଦି ପାଇ ମୋଦଭରେ
ମଥାମଣି ମୁଣ୍ଡୁ ହନୁ ହାତରେ
ମନ୍ଦ ବହିରେ, ମୈଥିଳୀ ଦେଲେ ଖରେ ।
ଏଥ ଅନ୍ତେ ପରସ୍ପର
କଥା ଭାଷା ହେଲେ ରାମ ଖବର
ମନ୍ଦ ବହିରେ, ବୋହୁଚି ଲୋତକ ଝର ।
ଦୁଃଖ ଶୁଣି ଜାନକୀର
ରାଗେ ଜଳାଗଲା ବାନର କାୟ
ମନ୍ଦ ବହିରେ, ଶୋଭା ସେହି ଅନ୍ଧାର ।

ବନର ଦେଖି ଏ ଦଶା
ଗୃହ ନେଇ ବାନ୍ଧି ଦେଲ ସହସା
ମନ୍ଦ ବନ୍ଧରେ, କପାଳେ ଲଗାଇ ହସା ।
କବ କହେ ଯୋଡ ହାତ
ଉପୁଜ ଏଥିରୁ ନାନା ବଜ୍ରପାତ
ମନ୍ଦ ବନ୍ଧରେ, ହେବ ସବୁ ଧୂଳିସାତ ।

## ହନୂ ରାବଣ ସଭାରେ

ଯେତେବେଳେ ହନୁମାନ ଅଶୋକ ବନରେ
ଭଙ୍ଗୁଥିଲ ପୁଷ୍ପୋଦ୍ୟାନ ଅତି କ୍ରୋଧଭରେ ।
ମେଘନାଦ ଆସି ଧରିନେଇ ତାକୁ ଖରେ
ଠିଆ କଲ୍ ସଭା ମଧ୍ୟେ ଜନକ ଆଗରେ ।
ମାଗିବାରୁ ପରିଚୟ କହେ ହନୁମାନ
"ଆସିଥିଲି କରିବାକୁ ଜାନକୀ ସନ୍ଧାନ ।
ପଞ୍ଚବଟୀ ବନେ ଯାଇ ପାପିଷ୍ଠ ରାବଣ
ଏକୁଟିଆ ଦେଖି ସୀତା କରିଛି ହରଣ ।
ଭବେ କଏ କରିନାହିଁ ଏପରି ଅନ୍ୟାୟ
କିଷ୍କିନ୍ଧ୍ୟା ରାଜନ ଏବେ ରାଘବ ସହାୟ ।
ତାଙ୍କପାଶେ ଦଶମୁଣ୍ଡ ନପଶି ଶରଣ
ଦେଖାଉଛି ଆପଣାର ଏବେ ବଡପଣ ।
ଏ ବାରତା ଦେଲେ ମୁହିଁ ଶ୍ରୀରାମ ପାଶରେ
ପଶିବେ ସେ ସେତୁବାନ୍ଧି ଏ ଲଙ୍କା ଗଡରେ ।
ଗର୍ବ ଅହଂକାର ତେଜି ଫେରାଇ ସୀତାକୁ
ନକଲେ ସେ ଭସ୍ମୀଭୂତ କରିବେ ଲଙ୍କାକୁ" ।

## ରାବଣର ଉତ୍ତର

ହନୁମାନ ଠାରୁ ଶୁଣି ଏମନ୍ତ ବଚନ
ହାନ୍ତ କଡମଡ଼ି କରି କହେ ଦଶାନନ ।
"କଏ ଅଛି ବାନ୍ଧ ଆଗୁ ଦମ୍ଭ ନ ଦେଖାଇ
ଶିଖାଉଛି ବୁଦ୍ଧି ମୋତେ କପିଜନ୍ମ ପାଇ ।
ତ୍ରିପୁର ବଳସ୍ୱାମୀ ଯେଉଁ ସେ ପୁଣି ଶରଣ
ପଶି ରାମଠାରେ ସୀତା କରିବ ଅର୍ପଣ ।
ଧିକ ବାହୁବଳ ମୋର, ଧିକ୍ ଏ ମର୍କଟ
ପୋଡ଼ିବଅ ସ୍ୱା ଲଙ୍ଗୁଳ ହେଉ ଛଟପଟ ।
ଦୂର କର୍ମ କରିବାକୁ ଆସିଅଛୁ ଲଙ୍କା
ଏ ଗୁରୁ ବାନର ମନେ ନାହିଁ ଲବେ ଶଙ୍କା ।
ଦଶାସ୍ୟର ବଳ କଏ ନଜାଣେ ଭବରେ
ଫୋପାଡ଼ି ଦେଲେ ପଡ଼ିବ ସାଗର ଗର୍ଭରେ ।

## ହନୂର ପ୍ରତ୍ୟୁତ୍ତର

ଏ ବଚନମାନ ଶୁଣି ଘୃଷେ ହନୁମାନ
"ମଣିମା ଶୁଣିମା ହେଉ ହୋଇ ସାବଧାନ,
ଗୁଡ଼ାଇ ମୋ ଲଙ୍ଗୁଳରେ ଯେତେ ଲୁଗାପଟା
ନିଆଁ ଜାଳ ଗୁଡ଼ାଇ ନଥାଉ ଏ ହଟା ।
ଏକଥା ବୋଲନ୍ତେ ହନୁ ପାଇଲ ମନକୁ
ଲୁଗା ଆଣିବାକୁ ଗଲେ ଅସୁରେ ଘରକୁ ।
ଅଗଣିତ ଲୁଗା ଅଣାହେଲ୍ ସେହିକ୍ଷଣି
ଗୁଡ଼ାଇଲେ ତା ଲାଞ୍ଜରେ କୁମାର ସ୍ୱବର୍ଣ୍ଣି ।
ଯେତେବେଳେ ଲୁଗାତକ ଗଡ଼ୁଗର୍ଲ୍ଲ ଠୁଳ
କେ ଜାଣି ନଥିଲ୍ ବଢ଼ଥିବା ତା ଲଙ୍ଗୁଳ ।
ଚତୁର୍ଥାଂଶ ଗୁଡା ହେଲ୍‌ବେଳେ ଲଙ୍ଗୁଳର
ଲୁଗା ସରିଗଲ୍ ବୋଲି କହେ କପିବର ।
"ଆଉ ଲୁଗା ଆଉ ଲୁଗା" ବୋଲି ଡାକ ହନୁ
ଧୀରେ ଧୀରେ ବଢ଼ାଉଛି ଏଣେ ତାର ତନୁ ।
ଯେ ଯାହା ଘରୁ ଯେତେକ ଆଣିଲେ ବସନ
ନିଅଣ୍ଟ ହେବା ଅସୁରେ ଜାଣି ହେଲେ ଛନ୍ନ ।
ବିପଦ ପଡ଼ିଲେ ଲୋକ ହୁଅଇ ଯେପରି
ଲଙ୍କାଗଡ଼ ଅଧିବାସୀ ହେଲେଣି ସେପରି ।
ଯେତେକ ନୂଆଁ ପୁରୁଣା ବହୁମୂଲ୍ୟ ବାସ
ଗୁଡ଼ାଇ ଗୁଡାଇ ଲାଞ୍ଜେ ପାଉଅଛୁ ହ୍ରାସ ।
ଅସୁରଙ୍କ ବୁଦ୍ଧି ବଣା ପବନ କୁମାରି
ଦେଖି କହେ ରାବଣକୁ କରି ତିରସ୍କାର ।
ମୋ ଲଙ୍ଗୁଳେ ବାନ୍ଧିବାକୁ ତୋ ଘରେ ବାସ
ନାହିଁ ଯେବେ ତୁ ରାମକୁ କପର ବିନାଶ ।
କରିବୁ ବୋଲି ପାଞ୍ଚୁ ଅଛରେ ଦଶାନନ
ତାଙ୍କ ବାଣେ ଦେଖିବୁ ତୁ କାହାର ପତନ ।
ବାକ୍ୟ ବାଣ ବାନରର ବାଜନ୍ତେ କାନରେ
କାଢ଼ିଲ ଯେତେକ ଥିଲ ଆପଣା ନବରେ ।

ହନୁର ମାୟାରେ ପଶି ନପାରି ରାବଣ
ଗୁଡ଼ାଇ ଗୁଡ଼ାଇ ହେଲା କଥା ଅଘଟଣ ।
ଅର୍ଦ୍ଧାଂଶ ଲାଙ୍ଗୁଳେ ଗୁଡ଼ା ହୋଇଛି ବସନ
ଲୁଚା ଆଣ ବୋଲି କହେ ଦୁଃଖେ ଦଶାନନ
କ୍ରୋଧେ କହେ କପି ଏବେ ଆଣ ହୁତାଶନ
ତୁମ ଆଗେ ଲାଙ୍ଗୁଳର ସରିବ ଦହନ ।
ହନୁ ତୁଣ୍ଡୁ ଶୁଣି ଦୈତ୍ୟେ ଚଇନ ଅଜାଡ଼ି
ନିଆଁ ଲଗାଇ ତହିଁରେ ଦେଇଥିଲେ ଘୃତ ।

## ଲଙ୍କା ପୋଡ଼ି

ହନୁ ଗଲା ହସି ହସି
ଅସୁରମାନଙ୍କ ମୁଣ୍ଡରେ ବସି
ଖଞ୍ଜଘଟରେ, ଦେଉଥିଲା ଲଞ୍ଜ ଦଣ୍ଡି ।
ମାର୍କଡ଼ ହେଲଣି କାଳ
ମରିଲେଣି କେତେ [1]ରାକ୍ଷସଜାଳ
ଖଞ୍ଜଘଟରେ, ଡେଇଁଲା ବୃକ୍ଷକୁ ବୃକ୍ଷ ।
ଲଙ୍କାରେ ଲାଗିଛି ନିଆଁ
ଦେଖି ହନୁମାନ ମାଇଲା ଡିଆଁ
ଖଞ୍ଜଘଟରେ, ଅସୁରୁଣୀଏ ଗ୍ଲାନିଆଁ ।
ଶୁଭେ ଉଚ୍ଚ ହାହାକାର
ତା ଭିତରେ ପୁଣି ହନୁ ହୁଂକାର
ଖଞ୍ଜଘଟରେ, ଦେଖ ଲଙ୍କା ଛାରଖାର ।
କେତେ ଦୈତ୍ୟ ଗଲେ ମରି
କଏ ବା କପିକି ରହିଲେ ଡରି
ଖଞ୍ଜଘଟରେ, ପାପକର୍ମୁ ଏତେ ସରି ।
ଏ କର୍ମ ଦେଖି ପୂଅରି
ବହି ପ୍ରଭଞ୍ଜନ ଥରକୁ ଥର
ଖଞ୍ଜଘଟରେ, ଜାଳି ଦେଲା ବହୁ ଘର ।
ଲୁଡ଼ ଲୁଡ଼ ଶବ୍ଦ ଉଡ଼ି
ବାହାରୁଛି ଗନ୍ଧ ଘଡ଼ିକ ଘଡ଼ି
ମନ୍ଦ ବହ୍ନିରେ, ଶୁଭୁଛି [2]ଶିବାଳି ଉଡ଼ି ।

[1] ସମୁଦ୍ର [2] ବାଲୁଆ ସମୁଦ୍ର

ବୃଷଆଡ଼ ଶ୍ମଶାନରେ
ହେଲା ପରିଣତ ମୁହୂର୍ତ୍ତକରେ
ମନ୍ଦ ବହ୍ନିରେ, ଜାନକୀ ଅଭିଶାପରେ ।
ପହଞ୍ଚି ସିନ୍ଧୁ ତଟରେ
ବୁଡ଼ାଇ ଲାଙ୍ଗୁଳ ପାଣି ଭିତରେ
ମନ୍ଦ ବହ୍ନିରେ, ଗାଧୁଏ ହନୁ ମୋଦରେ ।
ଚଞ୍ଚଳ ଗାଧୁଆ ସାରି
ଗଗନ ମାର୍ଗରେ ଗଲା ବାହାରି
ମନ୍ଦ ବହ୍ନିରେ, ହେଲା [3]ଜବେ ସିନ୍ଧୁପାରି ।
ପ୍ରବେଶି ମାଲ୍ୟବାନରେ
ଜୁହାରି ରାମକୁ ଭକତିଭରେ
ମନ୍ଦ ବହ୍ନିରେ, ମଥାମଣି ଦେଲା କରେ ।
ଅଳଙ୍କାର ରାମ ପାଇ
କହିଲେ ହନୁକୁ ଲୁହ ଗଡ଼ାଇ
ମନ୍ଦ ବହ୍ନିରେ, ରହିଛି ପ୍ରାଣ ନ ଯାଇ ।
ଅସୁର କୁଳ ବିନାଶ
ନ କଲେ ଦେବଙ୍କ ମନରୁ ତ୍ରାସ
ମନ୍ଦ ବହ୍ନିରେ, ହେବ ନାହିଁ କେବେ ହ୍ରାସ ।
କପିବଳକୁ ଡକାଇ
ବାହାରିଲେ ଲଙ୍କା ସେ ବେନି ଭାଇ
ମନ୍ଦ ବହ୍ନିରେ, ସୀତାକୁ ମନେ ପକାଇ ।
ବନ୍ଧ ବାନ୍ଧ ବାରିଧିରେ
ପହଞ୍ଚିଲେ ଲଙ୍କା ସର୍ବେ ଅଚିରେ
ମନ୍ଦ ବହ୍ନିରେ, କମ୍ପିଲା [4]ଉର୍ବୀ ଉଡ଼ରେ ।

## ଲଙ୍କା ପ୍ରବେଶ

ଲଙ୍କାରେ ପ୍ରବେଶ କରନ୍ତେ ରାମ
ରାବଣର ଆଉ ନାହିଁ ବିଶ୍ରାମ
ମୁହଁରେ ଫୁଟାଣି ଭିତରେ ଦାହ
ବୁଡ଼ାଇ ଦେଲାଣି ଚିନ୍ତା ପ୍ରବାହ
ବିଭୀଷଣ କହେ ରାଜ ସଭାରେ
"ଭକ୍ତି ରଖ ଭାଇ, ଶ୍ରୀରାମ ଠାବରେ

[3] ଶୀଘ୍ର [4] ପୃଥିବୀ

ଜନ୍ମିଛନ୍ତି ସେହି ବିଷ୍ଣୁ ଅଂଶରେ
ଫେରାଅ ଜାନକୀ ଅବିଳମ୍ବରେ ।
କରୁଛି ପ୍ରାର୍ଥନା ନୋହି ତାମସ
ଚିରକାଳ ରଖ ବଂଶର ଯଶ ।
ଶୁଣୁ ଶୁଣୁ ଦଶାନନ ରାଗରେ
ପିଟିଲା ଭାଇକୁ ବାମ ପାଦରେ ।
ବିଭୀଷଣ ଏହା ସହି ନ ପାରି
ଶ୍ରୀରାମ ୧ନିକଟା ଗଲା ବାହାରି" ।
ହେବାରୁ ରାମଙ୍କ ଶରଣାପନ୍ନ
ପ୍ରଫୁଲ୍ଲ ହସିଲା ସକଳ ମନ ।
ଯାହା ଅଛି ଯାର ୨ପିନାକ ପାଣି
ସେ କପିଁ ଶୁଣିବ କାହାର ବାଣୀ ।
ଏତେକ ରାବଣ କହେ ସଭାରେ
ନ ଫିଟିଲା ମାଟି କା'ର ସେଠାରେ ।

## ଅଙ୍ଗଦ ରାବଣ ନିକଟକୁ ଆସିବା

ଅଙ୍ଗଦ ଦୂତ ଭାବରେ
ଯାଇ ପ୍ରବେଶିଲା ଲଙ୍କା ଗଡରେ
ଖଞ୍ଜଣିଟରେ, ରାବଣକୁ ଡାକେ ଖରେ ।
ଉଚ୍ଚସ୍ୱନ ବାନରର
କମ୍ପାଇଲା ଅବା ଲଙ୍କା ନଗର
ଖଞ୍ଜଣିଟରେ, ଦୈତ୍ୟ ଶୁଣି ଥରହର ।
ଚଳେ ନାହିଁ ତାର ଡର
କଲା ଆଉଥରେ ବିକୃତ ସ୍ୱର
ଖଞ୍ଜଣିଟରେ, କି ସାହସ ବାନରର ।
ଯାଇଅଛି ଏକୁଟିଆ
ଆଡମ୍ବର ଦେଖି ନୋହି ଛାନିଆଁ
ଖଞ୍ଜଣିଟରେ, ଦଶାସ୍ୟ ଆଗରେ ଠିଆ ।
ରାବଣ ତା ପରିଚୟ
ମାଗିବାରୁ କହେ ବାଳି ତନୟ
ଦଶାନନରେ, ନାହିଁକି ତୋ ମୃତ୍ୟୁଭୟ ।
ଦେଉଛୁ ଝାସ ନଆଁରେ

କପିବଳ ସହ ରାମ ଲଙ୍କାରେ
ଦଶାନନରେ, ପଶି ଜଗିଲେଣି ଦ୍ୱାରେ ।
ଅବଜ୍ଞାରେ ଦଶାନନ
ପଚାରୁଚି କେଉଁ ବାଳୀନନ୍ଦନ
ମନ୍ଦ ବହ୍ନିରେ, ଥରାଇ ତା ଅପଦନ ।
ଅଙ୍ଗଦ କହେ ରାଗରେ
ଯେଉଁ ବାଳୀ ତୋତେ ଯାକ କାଖରେ
ଦଶାନନରେ, ଭ୍ରମୁଥିଲା ମୋଦଭରେ ।
ରେ ୩ରକ୍ଷବଂଶ ଘାତକ
ରାମବାଣେ ହେବୁ ଛିନ୍ନ ମସ୍ତକ
ଦଶାନନରେ, ନଥିବ କେ ତୋ ରକ୍ଷକ ।
ପରଦାରା ହରଣରେ
ବଡିଛି ତୋ ନାମ ଭୂମଣ୍ଡଳରେ
ଦଶାନନରେ, ଅଛୁକି ଲାଜ ମୁହଁରେ ।
ତପସ୍ୱୀ କୁଳେ ଜନମ
ହୋଇ ନାଶି ପ୍ରେମ କଲା ବିଭ୍ରମ
ଦଶାନନରେ, ଗୁଡ଼ିଲା ତୋତେ ଧରମ ।
ରାବଣ ଅଟ୍ଟହାସରେ
ଭାଷିଲାରେ କପି ମୋର ଆଗରେ
ଖଞ୍ଜଣିଟରେ, ନକହ କିଛି ଗର୍ବରେ ।
ଆରେ କଟୁଭାଷୀ କପି
ରାମ ଲଙ୍କାଗଡ଼ ପଶେ ଯଦ୍ୟପି
ଖଞ୍ଜଣିଟରେ, ମାରିବ ଆକାଶେ ଛପି ।
୪ଶକ୍ର ଯାର ମାଳାକାର
ମାୟାରେ ପାରିବ ଯା ଚରିବାର
ଖଞ୍ଜଣିଟରେ, ଭୟ ନାହିଁ କେବେ ତାର ।
କହିଗଲୁ ତୋ ବଡ଼ିମା
କି ଭନାହିଁ ଯେତେ ତୋର କାଳିମା
ଦଶାନନରେ, ନ ଜାଣୁ ରାମ ମହିମା ।
ରାମ ରମଣୀ ଫେରାଇ
ନଦେଇ ଦେଖାଉ ଏତେ ବଡାଇ
ଦଶାନନରେ, ତ୍ରିଲୋଚନ ବରପାଇ ।
କହିଲି ଏତେ ବୁଝାଇ

୧ ନିକଟକୁ ୨ ଶିବ
୩ ଅସୁର ୪ ଇନ୍ଦ୍ର

ନ ଶୁଣିଲ ପର ରହୁ କପଟାଇ
ଦଶାନନରେ, ମରିବୁ ଏଚପଟ ଖାଇ ।
ଏତେ କହି ରାବଣକୁ
ଅଙ୍ଗଦ ଫେରିଲ ରାମ ପାଶକୁ
ମନ୍ଦ ବିହ୍ୱରେ, ଆସିଲେ ସର୍ବେ ଇଣକୁ ।

## ମନ୍ଦୋଦରୀ ପ୍ରବେଶ

ସୁନ୍ଦରୀ ମନ୍ଦୋଦରୀ ଏ ଅନ୍ତେ ଆସି
ଝାଙ୍କି ହେଲ ପତିଙ୍କ ଏମନ୍ତ ଭାଷି ।
"ବୃନ୍ଦାରକ ବୃନ୍ଦଙ୍କ ମନ୍ଦାରତରୁ
ମକରନ୍ଦ ବନ୍ଦୁରେ ଚରଣଦ୍ୱୟ ।
ଯେଉଁ ମନ୍ଦୋଦରୀର ହେଉଚ ଧୂଆ
ସେ ଆସି ଜଣାକରେ ସାର ଗାଧୂଆ ।
ପରନାରୀକ ଆଣି ରଖିଲ ବନେ
ଅଯଥା ପୀଡ଼ା ଦେଇ ରାଘବ ମନେ ।
ଜାଣି ନଥିବ କି କେବେ ତାଙ୍କର ବଳ
ଫେରାଇ ଦିଅ ପରପତ୍ନୀ ଚଞ୍ଚଳ ।
ଅକୀର୍ତ୍ତି ବାଜା ଉଡ଼େ ଚଉଦଶରେ
କପାଳ ଧୁଅ ରାମ ପଦରଜରେ ।
ନୋହିଲେ ଦୈତ୍ୟକୁଳ ପାଇବେ ଧ୍ୱଂସ
ତୁମ ସ୍ୱଭାବ ହେତୁ ବୁଡ଼ିବ ବଂଶ ।
ଉତ୍କଟ କାଳକୂଟ ବିଷ ଗ୍ରାସରେ
ଜୀବନ ଧରିବି କେ ମର୍ତ୍ତ୍ୟ ମଧ୍ୟରେ ।
ଦେବରାଜ ଦମ୍ଭୋଳି ପଡ଼ି ବକ୍ଷରେ
ଚୂର୍ଣ୍ଣ ହୁଅଇ ସିନା, କ୍ଷତ ନ କରେ ।
କହିଲ ଦଶାନନ ଏହା ପରୀକ
ନ କହ ଫେରାଇବା କଥା ଏଣିକି ।

## ରାଗ

ବଜଣ ଉତରେ ଲାଗିଲେ କଳ
ରାଜରଭି ହୃଦୟ ଭାଜିତ ଜଳ ।



ବାହାରୁଚ ତୁଣ୍ଡୁ କଥା ଅଡୁଆ
ମାତ୍ର ନାହିଁ ଲଜ ହେଲେ ଫଗୁଆ ।
ମୁହଁ ଫଣ ଫଣ ନୟନ ରଙ୍ଗ
ଶରୀର ଗୋଟାକ ଦଶେ ବିଭଙ୍ଗ ।
ଦେଖାଇ ହୁଅନ୍ତୁ ପାର ଆପଣ
ରହିବ କ କା'ର ଆପଣା ପଣ ।
ନ କରି ସ୍ୱଭାବ ପରିବର୍ତ୍ତନ
ନ ଦେଖାଅ ଆଉ ନାସା କୁଞ୍ଚନ ।

## କୁମ୍ଭକର୍ଣ୍ଣଙ୍କୁ ଉଠାଇବା

ଶୋଇଚ କୁମ୍ଭକର୍ଣ୍ଣ କିଛି ନଜାଣି
ଉଠାଇଲେ ମନ୍ତ୍ରୀଏ ବାହୁକୁ ଟାଣି ।
ଶଯ୍ୟାରୁ ଉଠି ମାଂସ କରି ଭକ୍ଷଣ
ମଦ୍ୟପାନରେ କଲା ତୃଷ୍ଣା ହରଣ ।
ପଶି ଲଙ୍କେଶ ପାଶେ ବୁଝିଁ କାରଣ
ଘଟିଥିଲା ଯାହା ଜ ଭାଷେ ରାବଣ ।
ଏ ଅନ୍ତେ କୁମ୍ଭକର୍ଣ୍ଣ ରାବଣ ବାଣୀ
ଶୁଣି ରଣକୁ ଗଲା ରଥକୁ ଆଣି ।
ଅବତରଣ କରି ଯୁଦ୍ଧ ଭୂମିରେ
ଆପଣା ବଡ଼ପଣ ଉଦ୍ଧତ ଗୀତରେ ।
କହିଲା ଯେତେବେଳେ, ପ୍ଲବଗପତି
ନାକ କାନ ଛିଣ୍ଡାଇ ଦେଲା ଝଟତି ।
କୁମ୍ଭକର୍ଣ୍ଣ ଲଜରେ ଧରି ତ୍ରିଶୂଳ
ତତକ୍ଷଣେ ବାହ୍ୱମାନ କଲା ଠୁଳ ।
ତାକୁ ଦେଖି ବାନରେ ଗିରି କନ୍ଦରେ
ଛପିଲେ ଯାଇ ସେକ୍ଷଣି ଭୟରେ ।
ନୋଧାଗି ଯେତେବେଳେ ଉଠିଲ ଜଳ
ହାବୁଡ଼େ ପା ପଡ଼ିଲା ଦେଲା ସେ ଦଳ ।
କପୀନ୍ଦ୍ର ସୁଗ୍ରୀବକୁ ଦେଖି ରାକ୍ଷସ
ମୁଦ୍‌ଗର ପ୍ରହାରିଲା ଆସି ଲଭସ (ଶୀଘ୍ର)
ସଙ୍ଗେ ସଙ୍ଗେ ଶ୍ରୀରାମ ନାରାଚ ମାରି
କାଟନ୍ତି ତାହାର ପ୍ରାଣ ଗଲା ବାହାରି ।
ଜୟ ହେଲା ଆନନ୍ଦ ଜୟ ନାଦରେ
ପୂଜାଇଲେ ରଜନୀ ଦୈତ୍ୟ ବଧରେ ।

## ମେଘନାଦ ବଧ

ଭାଇର ମରଣ ଦାରୁଣ କଷଣ
ଦେଲେହେଁ ରାବଣ ମନେ
ନ ରହି ନୀରବ ଦେଲା ପରାଭବ
ସୀତାଙ୍କୁ ଅଶୋକ ବନେ ।
ଡାକି ମେଘନାଦ ବଦନ ବିଷାଦ
ରଖି କହଇ ଏସନ
ହେଉଛି ବିପତ୍ତି ଅଥୟ ମୋ ମତି
କରି ଯୁଦ୍ଧକୁ ଗମନ ।
କପିବଳ ସହ ଦଇତ ନିବହ
ଯୁଝନ୍ତୁ ଯୁଦ୍ଧ କ୍ଷେତ୍ରରେ
ଶ୍ରୀରାମ ଲକ୍ଷ୍ମଣ ସଙ୍ଗେ ଲୁହ ରଣ
କରିବୁ ଅବଲମ୍ବରେ ।
ଅସ୍ତ୍ର ଶସ୍ତ୍ର ଭରି ଭଣ୍ଡାର ମୋହର
କାହାରିକି ନାହିଁ ଡର
ଯାର ସାହା ଶିବ ତାହାର ୧ଅଶିବ
ନହେବ କେବେ ମାତର ।
ବାପର ବଚନ ଶୁଣି ତା ନନ୍ଦନ
ଆଣିଲା ସ୍ୟନ୍ଦନ ଜବେ
ଅକ୍ଷୌହିଣୀ ରଥରି ବାନର ନିକର
ଦେଖି ନ ଡରିଲେ ଲବେ ।
ଆଗରେ ତାହାର ସୁମିତ୍ରା କୁମାର
ଠିଆ ହେଲେ ଧନୁ ଧରି
ହେଉଛ କାହିଁ ରାମ ହେବ ମୋ ସଂଗ୍ରାମ
ଆସିଛୁ ମନସ୍ଥ କରି ।
ଲୁହାର ମେଘଜ ହେଲୁ ଧଡଚଡ଼
ମେଘନାଦ ସଙ୍ଗେ ରଣ
କରିବାକୁ ଡରି ସହିବ କି ଧରା
ହେଲେ ଏଠାରେ ମରଣ ।
ଦୈତ୍ୟ ଏହା କହି ବିହାୟସେ ରହି
ଦୁହିଁଙ୍କ ନାଗପାଶରେ
କରିଣ ବନ୍ଧନ କଲା ଆର୍ତ୍ତନାଦନ
ସୃଷ୍ଟି ତକ୍ଷଣେ ଗଡ଼ରେ ।
କ୍ରୋଧରେ ଅଥୟ ହୋଇ ୨ବୈନତେୟ
ପ୍ରବେଶି ରଣ ଅଙ୍ଗନେ
କଲା ସଚେତନ ଦୁହିଁଙ୍କ ବନ୍ଧନ
ଅମୃତ ସିଞ୍ଚ ବଦନେ ।
କ୍ରୋଧରେ ଲକ୍ଷ୍ମଣ ଧରି ଧନୁବାଣ
ନିକ୍ଷେପି ଇନ୍ଦ୍ରଜିତକୁ
ମସ୍ତକ ଛିଣ୍ଡାଇ ତା ତଳେ ପକାଇ
ପ୍ରେରିଲେ ଯମଲୋକକୁ ।
ମେଘନାଦ ବଧେ ଦଶାନନ କ୍ରୋଧେ
ଏକଘ୍ନୀ ଶକତି କାଢ଼ି
ନିକ୍ଷେପନ୍ତେ, ହନୁ ବିସ୍ତାରି ତା ତନୁ
ତତ୍କ୍ଷଣେ ଦେଲା ଫୋପାଡ଼ି ।

## ନାରଦଙ୍କ ଦ୍ୱାରା ହନୂ ଅନ୍ୟତ୍ର ପ୍ରେରିତ

ଏକଥା ଦଶ ନ କରି ଦୁଷ୍ଟ ଦଶାନନ
ଲକ୍ଷ୍ମଣଙ୍କ ମରଣ ପାଇଁ କଲା ଆୟୋଜନ ।
ଜାଣିପାରି ପୁତ୍ରକୁ ସେ ସ୍ମରନ୍ତେ ବହନ
ନାରଦ ତକ୍ଷଣେ ତହିଁ କରି ଆଗମନ ।
ଧୂର୍ତ୍ତାନ୍ତ କାରଣେ, ପିତା କହିଲେ ବୁଝାଇ
"ମୁନି ପୁତ୍ରୀ ହନୁକୁ ଦେଲେ ଯୁଦ୍ଧୁ ନିବର୍ତ୍ତାଇ ।
ରହିବ ଚରଣ ମୋର, ବୋଲିଲେ ରାବଣ
ଡାକ୍ତରଙ୍କ ମେଘନାଦଙ୍କୁ ଏବେ ମୋ ପ୍ରାଣ ।
ଥିବାଯାଏ ହନୁମାନ ସମର ପ୍ରାଙ୍ଗଣେ
ଘଟାଇବ ନାନା ବାଧା ଶକତି କ୍ଷେପଣେ ।
ଯାଇ ସ୍ଥାନାନ୍ତର କରି ତାହାକୁ ସେଠାରୁ
ରାବଣ ଏକଘ୍ନୀ ଶକ୍ତି ଲକ୍ଷ୍ମଣଙ୍କୁ ମାରୁ" ।
ଶିରୋଧାର୍ଯ୍ୟ କରି ପୁତ୍ର ପିତାଙ୍କ ବଚନ
ଅନ୍ୟତ୍ର ହନୁକୁ ପ୍ରେରି ଫେରିଲେ ବହନ ।
ଲକ୍ଷ୍ମଣଙ୍କୁ ଲକ୍ଷ୍ୟ କରି ଏକଘ୍ନୀ ଶକତି
ଫୋପାଡ଼ନ୍ତେ ଆଉ ଥରେ ଦୈତ୍ୟ ମୂଢ଼ମତି ।

---

୧ ଅମଙ୍ଗଳ

୨ ଗରୁଡ଼

ଆସି ଜବେ ତା ଭେଦିଲା ଲକ୍ଷ୍ମଣ ବକ୍ଷରେ
ଯୁଦ୍ଧ ଛାଡ଼ି ପଳାଇଲେ ଅନେକ ଭୟରେ ।

## ଲକ୍ଷ୍ମଣ ମୂର୍ଚ୍ଛିତ

ମୂର୍ଚ୍ଛିତ ହୁଅନ୍ତେ ଲକ୍ଷ୍ମଣ ରାମ କଲେ କ୍ରନ୍ଦନ
ଏ ସମୟେ ହନୁ ପ୍ରବେଶି କହେ ଧୈର୍ଯ୍ୟବଚନ ।
ସୁଷେଣକୁ ଡ଼ାକି ଆଣିବା ଲାଗି ଭାଷନ୍ତେ ରାମ
ହନୁମାନ ମାନି ଆଦେଶ ତ୍ୱରେ କଲା ଏ କାମ ।
"ଦ୍ରୋଣାଙ୍କ ପର୍ବତୁଁ ବିଶଲ୍ୟ ଲତା ରାତ୍ର ଭିତରେ
ଆଣି ଲଗାଇଲେ ବଞ୍ଚିବ ଭାଇ ନିଃସନ୍ଦେହରେ" ।
ବୋଲି କହିବାରୁ ସୁଷେଣ ଗଲା ବାନରଶିବିର
ହନୁମାନ ନଭମାର୍ଗରେ କ୍ଷୀଣ କରି ଶରୀର ।
ଆଗେ ସୁଷେଣକୁ ଲଙ୍କାରେ ଛାଡ଼ି ଗଲା ବହନ
ପର୍ବତ ଉପାଡ଼ି ଫେରିଲା ସ୍ୱର ପିତା ପବନ ।
ଏକାଳେ କୈକେୟୀନନ୍ଦନ ଦେଖି ହନୁମାନକୁ
ପାଖେ ଥିବା ଥିବା ୧ଶିଳୀମୁଖକୁ ନିକ୍ଷେପିଲେ ଉର୍ଦ୍ଧ୍ୱକୁ
ମୂର୍ଚ୍ଛା ହୋଇ ହନୁ ପଡ଼ିଲା ଲକ୍ଷେ ରଖି ପର୍ବତ
ହା ରାମ ଲକ୍ଷ୍ମଣ ଉଚ୍ଚାରି ଶୁଣିଲେ ତା ଭରତ ।
ଶ୍ରୀରାମ ଲକ୍ଷ୍ମଣ ନାମକୁ ଶୁଣି ଗଲେ ସଜଳ
ମୂର୍ଚ୍ଛା ଦୂର କଲେ ବଶିଷ୍ଠ ମନ୍ତ୍ର ଟେକି ଅଞ୍ଜଳ ।
ଭରତକୁ ହନୁ ଭାଷିଲା, ନେଇ ଗିରି ତ୍ୱରିତ
ପହଞ୍ଚିଅ ରାମ ସମୀପେ ଯେଣୁ ମୁହିଁ ପୀଡ଼ିତ" ।
ହନୁମାନ କଥା ଶ୍ରବଣେ ଶରରୁ ଭରତ
ଉଠାଇବାକୁ ସେ ପର୍ବତ ହୋଇଥିଲେ ଉଦ୍ୟତ ।
ହନୁମାନ ହୋଇ ପ୍ରସନ୍ନ କରି ପ୍ରଶଂସା ତାକୁ
ଆକାଶ ମାର୍ଗରେ ପର୍ବତ ଧରି ଗଲା ଲଙ୍କାକୁ ।
ଏଣେ ରାମଚନ୍ଦ୍ର ଉଠାଉଛନ୍ତି ଶୋକେ ଲକ୍ଷ୍ମଣ
"ଉଠ, ଉଠ ବାବୁ ଉଠରେ ଧନୁ କର ଧାରଣ ।
ହେ ମାତ ! କୈକେୟୀ ହେମାତ ! ଆଜ ପୁତ୍ରବଧରେ
ତୁମେ ମଧ୍ୟ ହୁଅ କୃତାର୍ଥ ସୁଖେ ରହ ନଗରେ" ।
ତୁମ ଯୋଗୁଁ ସ୍ୱାମୀ ତୁମର ଝୁରି ଝୁରି ରାମକୁ
ଦୁଃଖେ ତେଜି ଶେଷ ନିଃଶ୍ୱାସ ଗଲେ ସ୍ୱର୍ଗଧାମକୁ ।

ମନ୍ତ୍ରୀବର ମନ୍ତ୍ରଣା ଗ୍ରହଣ କରି ନନ୍ଦା ଶୁଣିଲ
ସିନ୍ଦୂର ଲଗାଇ କପାଳୁଁ କରୁ କାଚ କାଢିଲ ।
ଏ ସମୟେ ଦ୍ରୋଣ ପର୍ବତ ହସ୍ତେ କରି ଧାରଣ
ଅର୍ଦ୍ଧରାତ୍ର ବେଳେ ମାରୁତି କଲା ଅବତରଣ ।
ପ୍ରଜ୍ୱଳିତ ଗିରି ତେଜକୁ ଭ୍ରମେ ମଣି ପ୍ରଭାତ
କାନ୍ଦୁଥିଲେ ବସି ସମସ୍ତେ ଦେଇ ମସ୍ତକେ ହାତ ।
ଅନନ୍ତର ହନୁ ପ୍ରବେଶ କଲା ରାମ ନିକଟ
ଆନନ୍ଦ ହୃଦୟେ ଚରଣେ ଥୋଇ ଲଲାଟପଟ ।
ବିଶଲ୍ୟକରଣୀ ଲଗାଇ ଦେବା ମୁହୂର୍ତ୍ତକରେ
ସଚେତନ ହୋଇ ଲକ୍ଷ୍ମଣ ଉଠି ବସିଲେ ଖରେ ।
ପୁଲକିତ ହୋଇ ଶ୍ରୀରାମ ଲକ୍ଷ୍ମଣଙ୍କୁ କୁଣ୍ଢାଇ
ଗାଢ ଆଲିଙ୍ଗନ ପୂର୍ବକ କୋଳେ ଦେଲେ ଶୁଆଇ ।
ରାତ୍ର ପାହିବାରୁ ଉଠି ରାବଣ
ଲଙ୍କାଗଡ଼ ମଧ୍ୟେ କଲା ଭ୍ରମଣ ।
ଶୁଣିଲା ଲକ୍ଷ୍ମଣ ଗଲାଣି ଜୀଇଁ
ବିଶଲ୍ୟକରଣୀ ରାତ୍ରରେ ପିଇ ।
ଡ଼କାଇ ଆଣିଲା ଲୋହିତାକ୍ଷକୁ
କହି ପଠାଇଲା ରାମ ପାଖକୁ ।
"ଦେବ ଯେବେ ସେହି ଶିବ ପରଶୁ
ଫେରାଇବ ନେଇ ଜାନକୀ ୨ଆଶୁ" ।
ଏକଥା କହନ୍ତେ ରାମକୁ ଯାଇ
ଫେରିଲା ଯଥାର୍ଥ ଉତ୍ତର ପାଇ ।
ପଠାଇଲେ ଶକ୍ର ରଥ ନିକର
ଆରୋହିଲେ ତହିଁ ରଘୁ ପ୍ରବର ।
ହନୁକୁ ବସାଇ ରଥ ଆଗରେ
ସମର ଭୂଇଁକି ଗଲେ ବ୍ୟଗ୍ରରେ ।
ଦଶାନନ ଦେଖି ଲୋହିତାକ୍ଷକୁ
ପୁଚ୍ଛେ, କେ ବସିଛି ଧ୍ୱଜ ପାଖକୁ ?
ଯେ ଦ୍ରୋଣ ପର୍ବତ ଆସିଲା ଧରି
ଫେରିଥିଲା ଲଙ୍କା ଦହନ କରି ।
ସେହି କପିବର ଧ୍ୱଜ ପାଖରେ
ବସିଛି ବୋଲି ସେ ଉତ୍ତର କରେ ।

୧ ଶର

୨ ଶୀଘ୍ର

## ରାବଣ ବଧ

ମନ୍ଦୋଦରୀ ଗୃହେ ପ୍ରବେଶ କରି ରାବଣ ଲାଜେ
"ଅର୍ପିବି କି ସୀତା ରାମଙ୍କୁ ବୋଲି ଛଳରେ ବ୍ୟାଜେ
ଅବା ରାମ ବାଣେ ସ୍ୱର୍ଗକୁ ଯିବି କରି ସମର
ତୁମ ଅଭିମତ ଜାଣିବା ଲାଗି ଆସିଛି ଖର ।
ବଂଶ ଧ୍ୱଂସ ପରେ ଏପରି ହେଲା ଜ୍ଞାନ ଉଦୟ
ବୋଲି ମନ୍ଦୋଦରୀ ଭାଷିଲା ତେଜି ସକଳ ଭୟ ।
ଏଣେ ରାମାଙ୍କରେ କପିଏ ଲଙ୍କା ଉତ୍ତର ଦ୍ୱାର
ଅବରୋଧ କରି ଦେଲେଣି କରି ଘୋର ହୁଁକାର ।
"ଆହେ ପ୍ରାଣେଶ୍ୱରୀ ସ୍ୱସ୍ୱାମୀଠାରେ ଥାଉ କରୁଣା
ରାମଠାରୁ ପରାକ୍ରମରେ ମୁଁ ତ ନୁହଇ ଊଣା ।
ଦୈବ ପ୍ରେରଣାରେ ରାବଣ ଆଗଭର ଯୁଦ୍ଧକୁ
ବାହାରିଲା ରଥ ଉପରେ ନମି ତ୍ରିଲୋଚନକୁ ।
ରେ ମାନବ ରାମ, ମୋ ଆଗେ କର ଧନୁ ଟଙ୍କାର
ବାନର ଗୁଡ଼ାଏ ତୁଚ୍ଛାକୁ କରୁଛନ୍ତି ହୁଁକାର ।
ତୋ ପୂର୍ବ ପୁରୁଷ ଜାଣିଛି, ଜାଣିଅଛି ତୋ ବଳ
ଆସିଛୁ ଏଠାକୁ ନଜାଣି ମୋର ରଣ କୌଶଳ ।
ଏମନ୍ତ ଭାଷାରେ ରାବଣ ତୁଚ୍ଛ କରି ରାମକୁ
ବୋଲନ୍ତେ ରାଘବ ଧିକ୍କାର କଲେ ତାର ବଳକୁ
ମହାଦେବ ଏକ ପାଦରେ ଠିଆ ହୋଇ ସାଗରେ
ପୁଣି ଦେବତାଏ ଦେଖନ୍ତି ଯୁଦ୍ଧ ବହାୟୁସରେ ।
କଳ୍ପାନ୍ତ କାଳୀନ କୃତାନ୍ତ ସମ ଦିଶିଲେ ରାମ
ଏକାଳେ ଦୁହିଁଙ୍କ ମଧ୍ୟରେ ଲାଗିବାରୁ ସଂଗ୍ରାମ ।
ନବ ମୁଣ୍ଡ ଏକା ବେଳକେ ଛିଡ଼ି ପଡ଼ନ୍ତେ ତଳେ
ଆଉ ଥରେ ହେବା ଉତ୍ପନ୍ନ ଦେଖୁଥିଲେ ସକଳେ ।
ଏ ଅନ୍ତେ ବ୍ରହ୍ମାସ୍ତ୍ର ଶ୍ରୀରାମ ହୃଦୟରେ ପ୍ରହାର
କରିବାରୁ ନିମିଷକରେ ଗଲା ପରାଣ ତାର ।

## ଯୁଦ୍ଧ ଭୂଇଁର ଦୃଶ୍ୟ

ମେକାତାର ବଂଶଜର    ପଡ଼ିଅଛି ଲଙ୍କେଶ୍ୱର
ଦେଖିଲେ ମାଡୁଛି ଉଡ଼ର ଆହା ! ଦଇବ
ହୋଇଥିଲା କୁହାଳିଆ    ପୁଣି ଅତି ଅମାନିଆ
ଦଶେ ଭଲ ନିନ୍ଦୁଟିଆ କିଏ ସହିବ
ଭାଗରୁ ବଳକା ହୋଇଲେ
ଅବା କ୍ରୋଧ ଅହଂକାର ହୃଦ ମନ୍ଥିଲେ ।
ଯାଉଥିଲା ଦିନ ଯାର    କରି ସ୍ୱଚ୍ଛନ୍ଦ ବିହାର
ସବୁଠାରେ ବଳାତ୍କାର ତା ଭୁଜବଳେ
ଯା ନାମ ଶୁଣିଲେ ସୁରେ    ଲୁଚନ୍ତି ଭୟରେ ଦୂରେ
ଖଟନ୍ତି ଇନ୍ଦ୍ର ଯା ପୁରେ, ସେ ଗଡ଼େ ତଳେ
ପରନାରୀ ଧର୍ଷଣ କରି
କେତେ ଦିନ ରହିବ କେ ଜୀବନ ଧରି ।
ଭାଗ୍ୟହୀନା ମନ୍ଦୋଦରୀ    କାନ୍ଦୁଛି ଚରଣ ଧରି
ଭବଲୀଳା ତ ଏପରି ଜାଣି ସକଳ
ତୁଚ୍ଛାକୁ ବଣା ମୋହରେ    କିଏ କାହାର ଭବରେ
ଏକଥା ନାଚୁ ହୃଦରେ ନୁହ ବିକଳ
ବିଧିର କେ ଛନ୍ଦ ବୁଝିବ
ପୂର୍ବକୃତ ଫଳ ନିଶ୍ଚେ ଭୋଗିବ ଜୀବ ।
ଯା ମୁଣ୍ଡ [୧]ରୁଦ୍ର ମୁଣ୍ଡରେ    ଲୋଟୁଥିଲେ ଆନନ୍ଦରେ
ଆଜ ତା ଗୃଧ୍ର ପାଦରେ ହେଉଛି ଦଳା
ଦେବଙ୍କୁ ଯେ ଟାଣି ଟାଣି    ଖଟାଇଲା ଘରେ ଆଣି
ଅକାମୀ ସେ ବଂଶପାଣି ଦେଉଛି ଗଲା
ବିଧିର କେ ଛନ୍ଦ ବୁଝିବ
ପୂର୍ବକୃତ ଫଳ ନିଶ୍ଚେ ଭୋଗିବ ଜୀବ ।
ହେଲାଣି ଲଙ୍କା ଶ୍ମଶାନ    ପଡ଼ିଅଛି ଶବମାନ
ମନ୍ଦୋଦରୀ ମ୍ରିୟମାଣ ହେଲା ଶେଷକୁ
ଦିନରେ ଶକୁନି କାକ    ରାତିପାକ ଶିବା ଡାକ
ସହୁ ନାହିଁ କାନ ନାକ ରଡ଼ ଗନ୍ଧକୁ
ବିଧିର କେ ଛନ୍ଦ ବୁଝିବ
ପୂର୍ବକୃତ ଫଳ ନିଶ୍ଚେ ଭୋଗିବ ଜୀବ ।

## ସୀତାଙ୍କୁ ଅଣାଇବା

ଆସିଲେ ଜାନକୀ ବିମାନେ ଚଢ଼ି
ଗଲେଣି କପିଏ ଆନନ୍ଦେ ଗଡ଼ି ।
ଅଶ୍ରୁପୂର୍ଣ୍ଣ ନେତ୍ର ଦଶେ ତାଙ୍କର
ନ କହିଲେ କଥା ରଘୁ ପ୍ରବର ।

---

[୧] ଶିବ

ବହୁକାଳ ସୀତା ପର ଗୃହରେ
ଥିବାରୁ ସନ୍ଦେହ ଜାତ ମନରେ ।
ପରୀକ୍ଷା କରି ମୁଁ ନେବି ସୀତାଙ୍କୁ
ବୋଲନ୍ତି ରାଘବ ଡ଼ରି ନିନ୍ଦାକୁ ।
ବ୍ରହ୍ମାଦି ଦେବତା ଆସି ଆକାଶୁ
ଲଗାଇଲେ ଅଗ୍ନି ନିକଷା ଆଶୁ ।

## ସୀତାଙ୍କର ଅଗ୍ନି ପ୍ରବେଶ

ରାମ ବିନା ଅନ୍ୟ ପୁରୁଷ ଠାରେ ଥିଲେ ମୋ ମନ
ଅବଲମ୍ବେ ମୋର ଶରୀର ତୁମେ କର ଦହନ ।
କହି ସୀତା ଦେବୀ ଅଗ୍ନି କ ପ୍ରବେଶି ତା ଭିତରେ
ପ୍ରଜ୍ୱଳିତ ହୁତାଶନରୁ ବାହାରିଲେ ସେ ଖରେ ।
ଉତ୍ଫୁଲ୍ଲ କମଳ ସଦୃଶ ହସୁଥିଲା ବଦନ
ଭକ୍ତିଭରେ ରାମ ଚରଣେ କଲେ ସେ ଆଲିଙ୍ଗନ ।
ପବିତ୍ରା ଏ ବୋଲି କହନ୍ତେ ବ୍ରହ୍ମା ଦେଖି ଆନନ
ଆକାଶ ମଣ୍ଡଳ ବ୍ୟାପିଲା କର୍ଣ୍ଣି ଫୁତ୍କାର ଧ୍ୱନି
ହରଷ ଚିତ୍ତେ ରାମଚନ୍ଦ୍ର ସୀତା ଗ୍ରହଣ କରି
ଦେଖାଇଲେ ଯୁଦ୍ଧ ଭୂଇଁକି ତାଙ୍କୁ ସଙ୍ଗରେ ଧରି ।

## ବିଭୀଷଣର ରାଜ୍ୟ ଲାଭ

ବିଭୀଷଣ ରାଜା ହେଲା ଲଙ୍କାରେ
ନାନା ଆଡ଼ମ୍ବର ହରଷେ ସେଠାରେ ।
ଅଙ୍ଗଦ ତାହାରି ରାମ ଆଗରେ
ଏମନ୍ତ ବଚନ କହେ କ୍ରୋଧରେ ।
ନିର୍ଦ୍ଦୋଷ ମୋ ପିତା ତୁମ ହାତରେ
ଲଭିଲେ ମରଣ ଅଛି ମନରେ ।
ତେଣୁ ଏକୁଟିଆ କରିବି ରଣ
ହୃଦୟ ଜଳୁଛି କରି ସ୍ମରଣ ।
ତା ବଚନ ସବୁ କରି ଶ୍ରବଣ
କୃତାଞ୍ଜଳି ହୋଇ ଠିଆ ଲକ୍ଷ୍ମଣ ।
ଆକାଶରୁ ବାଣୀ ଶୁଭେ ଏମନ୍ତ,
"କୃଷ୍ଣ ଅବତାରେ ହେ ବଳବନ୍ତ
ବ୍ୟାଧ ବେଶୀ ବାଳୀ ତୁମେ ବଧିବ
ଏକଥା ଅନ୍ୟଥା କେବେ ନୋହିବ ।"

ଶ୍ରବଣେ ଅଙ୍ଗଦ ଯୁଦ୍ଧୁ ବିରତ
ଅଯୋଧ୍ୟା ଯିବାକୁ ରାମ ଉଦ୍ୟତ ।

## ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ

ବନବାସନ ବାସ ଚଉଦ ବରଷ
ପୁରିବାରୁ ରାମ ସୀତା ଲକ୍ଷ୍ମଣ
ରାକ୍ଷସ କୁଳର ଘଟାଇ ନିଧନ
ଫେରିଲେ ଅଯୋଧ୍ୟା ପାଇ କଷଣ ।
ବୈଦେହୀ ବିଭୀଷଣ କପିକୁଳ ସହ
ଅଛନ୍ତି ସଙ୍ଗରେ ସେମାନଙ୍କର
ଘଣ୍ଟ କାହାଳୀର ଘନ ଘନ ସ୍ୱନ
ବୁଝ ଦେଲା କିରେ ? କର୍ଣ୍ଣ କୁହର ।
କଏ ନିଆଁ ହୁକା କଏ ବା ମସାଲ
ଜଳାଇ କଲେଣି ଆଲୁଅ ଦାଣ୍ଡ
ଦୁଇ ଭାଇଙ୍କର କାନ୍ଧରେ ଝୁଲୁଚି
୧ରକ୍ଷ ରକ୍ତ ପିଆ କୋଦଣ୍ଡ କାଣ୍ଡ ।
ଦ୍ୱାରର ଦ୍ୱାରରେ କୁମ୍ଭ ବନ୍ଧା ହୋଇଅଛି
ଦାଣ୍ଡ ଶୋଭା ବଢାଉଚି ତୋରଣେ
ଛତ୍ର ଚାମର ଧରି ଭରତ ବଶିଷ୍ଠ
ଆସିଲେଣି କରିବାକୁ ବରଣେ ।
ଆପଣା ଆପଣା ଭିଡ଼ କରି କରି
ଓଟ ହାତୀ ଘୋଡ଼ା ଲୋକ ଭିତରେ
ଦୋହଲା ଦୋହଲି ମୋଦେ ଯାଉଛନ୍ତି
ନ ଜନ୍ମାଇ ଭୟ କାହା ମନରେ ।
କେତେ ନରନାରୀ କେତେ ଆଡୁ ଆସି
ହୋଇଛନ୍ତି ରୁଣ୍ଡ ରାମ ଦର୍ଶନେ
ବୃଦ୍ଧ ରମଣୀଏ ହୁଳହୁଳି ଦେଇ
ବୁଲନ୍ତି ଦାଣ୍ଡରେ ଆନନ୍ଦ ମନେ ।
ଜଟାଧାରୀ ରାମ ବଶିଷ୍ଠଙ୍କ ଆଗେ
ନମି ଭରତଙ୍କୁ ସ୍ନେହେ କୁଣ୍ଢାଇ
ପଶିଲେ ନଗରେ ପ୍ରଶାନ୍ତ ଚିତ୍ତରେ
ଜନନୀମାନଙ୍କୁ ଦେଖିବା ପାଇଁ ।

---

୧ ରାକ୍ଷସ

ବଳ୍କଧାରୀ ରାମ ଜାନକୀ ଲକ୍ଷ୍ମଣ
ଜନନୀମାନଙ୍କୁ ନମି ହରଷେ
ବନବାସ ଦୁଃଖ ଭୁଲାଇ ଭୁଲାଇ
କହୁଥିଲେ ଯାହା ଥିଲା ମାନସେ ।
ଅନୁତପ୍ତା କୈକେୟୀ ଲୋତକ ବୁହାଇ
ଯୋଗାଡ଼ିଲେ ଜବେ ଖିଆପିଆକୁ
ସୁଗ୍ରୀବ ମାରୁତି ବିଭୀଷଣ ସହ
ଦେଖିବାକୁ ଗଲେ ପାକଶାଳାକୁ ।
ମିଷ୍ଟାନ୍ନ ଉଠନ୍ତି ସୁଗନ୍ଧେ ନଅର
ପୁଲକିତ ଆଗନ୍ତୁକ ସକଳ
ଖାଦ୍ୟପାନ ସାରି ବାଛୁ ନେଲେ ଆସି
ଆପଣା ଆପଣା ଶୟନ ସ୍ଥଳ ।
ପୁହାଇ ରଜନୀ ଆମୋଦ ପ୍ରମୋଦେ
ରାମ ଅଭିଷେକ ଲାଗି ଭରତ

ଆଦେଶିଲେ ଖରେ ବଶିଷ୍ଠ ଗୁରୁଙ୍କେ
ଶୁଭ ଯୋଗ କାଢ଼ିବାକୁ ତୁରିତ ।
ଲଗ୍ନ ବାଛି ମୁନି ଦିଅନ୍ତେ ଭରତ
ଯୋଗାଡ଼ିଲେ ସବୁ ଅବଲମ୍ବରେ
ରାଜ୍ୟରେ ଚହଳ ପଡ଼ନ୍ତେ ଚଞ୍ଚଳ
ଦେଖିବାକୁ ଲୋକେ ଜମିଲେ ଖରେ ।
କରନ୍ତି ବଶିଷ୍ଠ ବେଦ ମନ୍ତ୍ର ପାଠ
ବସିଛନ୍ତି ରାମ ସିଂହାସନରେ
ଶତ୍ରୁଘ୍ନ ଭରତ ଲକ୍ଷ୍ମଣ ସହିତ
ହୋଇଛନ୍ତି ଠିଆ ଦୁଇ ପାର୍ଶ୍ୱରେ ।
ଅପ୍ସରନ୍ତି ରମ୍ଭା ହୋଇଛି ଯୋଗାଡ଼
ଚାଲିଛି ନୃତ୍ୟ ଅନବରତ
ବାଦ୍ୟ ବାଜଣାରେ କମ୍ପୁଛି ଅଯୋଧ୍ୟା
କିଏ ଅଭିଷେକ ଦର୍ଶନେ ରତ ।



